# ସାରଳା ମହାଭାରତ

# ସଭାପର୍ବ

## ପ୍ରଥମ ଖଣ୍ଡ



ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସଂପାଦକ

ଡକ୍ଟର୍ ✓ ଆର୍ତ୍ତବଲ୍ଲଭ ମହାନ୍ତି

ଏମ୍. ଏ., ଡି. ଲିଟ୍., ପଦ୍ମଶ୍ରୀ

# ସଭାପର୍ବ

## ପ୍ରଥମ ଖଣ୍ଡ

## ସୂଚିପତ୍ର

| ବିଷୟ | | ପୃଷ୍ଠା |
|---|---|---|

---

# ସାରଳା ମହାଭାରତ

## ସଭା ପର୍ବ



## [ ପ୍ରଥମ ଖଣ୍ଡ ]

### ଗଣେଶଙ୍କ ବନ୍ଦନା

ଜୟ ତୁ ଅମୃତାକ୍ଷ ଜୟ ତୁ ଗଣପତି
ପ୍ରଳୟ ଉଦ୍ଧାରଣ ନାଥ ବିଶ୍ୱମ୍ଭର ମୂରତି ।୧।
ପରଶୁ ପାଶ ଅଂକୁଶ ଅମୃତ ଲଡ଼ୁ ଭୋଜୀ
କଣୟ ସୁଧାରସ ହରଷେଣ ଭୁଂଜ ।୨।
ବିଘ୍ନ ନିବାରଣ ନାଥ ବିଘ୍ନଂକ ଅଇରି
ପ୍ରସନ୍ନେ ପରମବନ୍ଧୁ ଜୟ ତୁ ଦିଗାମ୍ବରୀ ।୩।
ପ୍ରଳୟ ଉଦ୍ଧାରଣ ତୁ ନାଥ ବିଶ୍ୱବାସୀ
ଦର୍ଶନେ ସର୍ବସିଦ୍ଧି ଅପାଦ ଦୁଖ ଧ୍ୱଂସି ।୪।
ଯେ ଶରୀରକୁ ଆପାଦ ଯେ ଅଛଇ ମହାବିଘ୍ନ
ବିଘ୍ନରାଜ ବନ୍ଦନେ ନାହିଂନା ମନ ଆନ ।୫।
ନାଶଗଲ ପ୍ରାଣୀକ କୃତାନ୍ତେକ ଦିଅଇ ଶାସ୍ତି
ସେ କୃତାନ୍ତକ ଧ୍ୱଂସନକୁ ଅଭୟେ ଗଣପତି ।୬।
ମରଣକଇ ମୂଳ ଯେ ଅଛଇ ଯେଉଂ ବିଘ୍ନମାନ
ତେଣୁକରି ଯମର ଦର୍ପ ଗଂଜିଲୁ ଗଜାନନ ।୭।
ଯମକଇ ଗଂଜିଲୁ ନାଥ ଯେ ସଂସାର ଦୁଖ ଦେଖି
ନାଶିତ ବୁଦ୍ଧି କଲୁ ତୋହୋର ଦୟା ଯେ ଉପେଖି ।୮।

* । ୨ ବିଘ୍ନ ବର୍ଣ୍ଣି ନ ପାରଲେ ହୋଇ ନାଶପାନ । (ଛ,କ)

ବକଲେ ନାଶକର ପଳାଇଲା ଗୋପ୍ୟେ
ବବରେ ପଶିଲା ଯାଇଂ ଇନ୍ଦୂର ସରୂପେ ।୯।
କାଳଫାସି ଲଗାଇ ତାକୁ କଲୁସି ବନ୍ଧନ
ହାସେଣ ଶରଣ ତୋତେ ପଶିଲା ଜନ୍ତୁବ୍ରଣ ।୧୦।
ଶରଣ ଉଦ୍ଧାରଣ ତୁ ଅଟୁ ହୋ ବିଶ୍ୱବାସୀ
ଶରଣ ରକ୍ଷାକଲୁ ଦେବ ତାହ୍ୱ ପ୍ରାଣେ ନ ନାଶି ।୧୧।
ଭଗତଜନ ମଙ୍ଗଳ ତୁ ଦେବ ଗଜାନନ
ସେ ଯମ ଇନ୍ଦୂରକଇ ଦେବ କଲୁସି ବାହାନ ।୧୨।
ମହାଭାବ ରୂପ ତୋର କହ୍ୱିତ କେ ପାର
ଯମ ସେ ଇନ୍ଦୂର ରୂପେ ବାହାନ ତୋହୋର ।୧୩।
ବଧ୍ନମାନଂକ ରାଜା ରାଜ୍ୟେ ଅଟେ ମୂଳ
ଅତି ଦୁଷ୍ଟପଣ ଦେଖି ତାକୁ ଥୋଇଲୁ ଜାନୁତଳ ।୧୪।
'ମହାମନ୍ଦ ଆଗୃଖି ସେ ଅଟଇ ଦେବ ଜର
ସଂସାର ନାଶକଲା ସେ ଅମୃତାକ୍ଷ ଅସୁର ।୧୫।
ଯମ୍ ବୋଇଲା ଦେବ ମୋତେ କୋପକଲୁ
ଜର ସେ ବଡ ମନ୍ଦ ତୁ ଯେହାକୁ ରଖିଲୁ ।୧୬।
ପ୍ରାଣୀକୁ ନାଶ କରବ'କୁ ଜ୍ୱର ମୋହୋର ଦଣ୍ଡ
ଶତେ ଶତେ ରୋଗ ଯେ ଅଟଇ ତ ଦୁର୍ଦ୍ଦଣ୍ଡ ।୧୭।
ପ୍ରଥମ ସେନାପତି ସେ ଅଟଇ ମୋହୋର
ଯେହାକୁଇଂ ଘେନି ସେ ମୁଂ ପ୍ରାଣୀଂକର ଦର୍ପ ହର ।୧୮।
ଯମର ବଚନେ ଦେବ ଧଇଲୁ ଦୁଷ୍ଟ ଜର
ପାଦେଣ ମାଡଲୁ କଠାଉ ଚୂରଣ ମହାଭାର ।୧୯।
ଯେ କଳକାଳେ ହୋଅନ୍ତା ଅନେକ ଅମାତି
ଜାଣିଣ ସର୍ବଗ୍ୟଂନାଥ ଯେ ସବୁନ୍ତ ନିବର୍ତ୍ତି ।୨୦।

---

୧୫।୨ ମନ୍ଦର ସମାନ ଅଟେ ଜରର ଶରୀର
ସଂସାର ନାଶକଲା ସେ ଦୁଷ୍ଟ ଅସୁର ॥ (୦)
୧୯ । ଦେବଂକର ବଚନେ ଦେବ ଧଇଲୁ ଦୁଷ୍ଟ ଜର
ପାଦେ ମରଦ୍ଧିଲୁ ଦେବ କଣ୍ଠସ୍ଥ ଗିର ଭାର ॥ (ଛ)

ଜୟତୁ ଜୟତୁ ଦେବ ନିଶାକର ମଉଳି
ଜୟତୁ ଜୟ ଦେବ ପ୍ରସନ୍ନେ କପାଳୀ ।୨୧।
ଜୟତୁ ଜୟ ଦେବ ଅନ୍ଧକ ଦର୍ପଧ୍ୱଂସା
ଜୟତୁ ଜୟ ଦେବ ବ୍ୟାଘ୍ର ବସନ କଷା ।୨୨।
ଜୟତୁ ଜୟ ଦେବ ଅଭୟେ ବରଦାତା
ଜୟତୁ ଜୟ ଦେବ ଶାସ୍ତ୍ରରେ ନିର୍ଣ୍ଣିତା ।୨୩।
ଜୟତୁ ଜୟ ଦେବ ପ୍ରସନ୍ନ ଗଣପତି
ଜୟତୁ ଜୟ ଦେବ ସୁଦୟା ଶୁଦ୍ଧ ଶାନ୍ତ ।୨୪।
ଜୟତୁ ଜୟ ଦେବ ପ୍ରସନ୍ନ ଏକଦନ୍ତ
ଜୟତୁ ଜୟ ଦେବ ଭୋଜନ ଅମୃତ ।୨୫।
ଜୟତୁ ଜୟ ଦେବ ପଦ୍ମ ଆସନ ମୂର୍ତ୍ତି
ଜୟତୁ ଜୟ ଦେବ ସୁଗ୍ୟାମୀ ମହାଯତି ।୨୬।
ଜୟତୁ ଜୟ ଦେବ ପରଂବ୍ରହ୍ମ ଦେବତା
ଜୟତୁ ଜୟ ଦେବ ପ୍ରସନ୍ନେ ବରଦାତା ।୨୭।
ଜୟତୁ ଜୟ ଦେବ ପ୍ରସନ୍ନ ଗଣପତି
ଜୟତୁ ଜୟ ଦେବ ନୀଳ ଉତ୍ପଳ ମୂରତି ।୨୮।
ଜୟତୁ ଜୟ ଦେବ ଶରଣ ପଂଜର
ଜୟତୁ ଜୟ ଦେବ ଦୁରିତ ନାଶ କର ।୨୯।
ଜୟତୁ ଜୟ ଦେବ ପ୍ରସନ୍ନେ ବ୍ରହ୍ମଋଷି
ଜୟତୁ ଜୟ ଦେବ ନିରାକାର ଗୋପ୍ୟବାସୀ ।୩୦।
ଜୟତୁ ଜୟ ଦେବ ତ୍ରିପୁର ଦର୍ପ ଗଂଜା
ଜୟତୁ ଜୟ ଦେବ ନାଶକର ଦର୍ପ ଭଂଜା ।୩୧।
ଜୟତୁ ଜୟ ଦେବ ପ୍ରସନ୍ନେ ଅଭୟା
ଜୟତୁ ଜୟ ଦେବ ସାଧୁ ଶୁଦ୍ଧ କାୟା ।୩୨।
ଜୟତୁ ଜୟ ଦେବ ମହା ବିନାୟକ
ଜୟତୁ ଜୟ ଦେବ ମହାବର ଦାୟକ ।୩୩।
ଜୟତୁ ଜୟ ଦେବ ପର ଦୁଖେ ଦୁଖୀ
ଜୟତୁ ଜୟ ଦେବ ପ୍ରାପତ ସର୍ବ ସୁଖୀ ।୩୪।

ମନ ବଚନ କର୍ତ୍ତବ୍ୟ ଯେ ବାଞ୍ଛା ସଂକଳ୍ପେ
ତବ ଦର୍ଶନେ ନାଥ ଧ୍ୱଂସ ନ ହୋନ୍ତି ଚିର ପାପେ ।୩୫।
ନିରାଲମ୍ବ ପୁରୁଷ ବଚନେ ସର୍ବକଳ୍ପି
କଳକାଳ ଧ୍ୱଂସି ନାଥ ରକ୍ଷଣ ସର୍ବତପୀ ।୩୬।
ଶ୍ରୀ ଭୃଗୁସାର ବଲ୍ଲଭ ଚରଣ ଧରି ଶିରେ
ସର୍ବପାପ ହରୁ ନାଥ ବିନାୟକ ଅବତାରେ ।୩୭।
ଦୟାକଇଂ କାରଣ ତୁ କାରଣକଇଂ ସାଧୁ
ମମ ପାତକ ବିଧ୍ୱଂସନ୍ତା ଜଗତ ଜନ ବନ୍ଧୁ ।୩୮।
ମୁହିଂତ ମୂର୍ଖ ଦେବ ଅଟଇ ଅଗ୍ୟାନ
ତବ ଲୟେ ଗ୍ୟାନ ମୋତେ ହୋଇବା ପ୍ରସନ୍ନ ।୩୯।
ଶ୍ରୀ ବିପ୍ରରାଜଂକ ଚରଣେ ଶତେସହସ୍ର ଦଣ୍ଡ ପ୍ରଣମ୍ୟ
ତେଣୁକରି ଶୂଦ୍ରମୁନି ସାରୋଳା ଦାସ ମୋର ନାମ ।୪୦।
ଜଙ୍ଗେରପୁର ବାସୀ ଯେ ଅଭୟେ ଅପର୍ଣ୍ଣା
ସେ ମୋହୋର ଶରୀରକୁ ଅଟଇ ବଜ୍ରସେନହା ।୪୧।
କୃପାଜଳ ନନ୍ଦନୀ ଚରଣେ ସର୍ବଦା ଚିତ୍ତ
ତବ ପ୍ରସନ୍ନେ କହିବ ଗୋ ଶ୍ରୀ ମହାଭାରଥ ।୪୨।
ହରିହୁଖଣ୍ଡ ଆଖ୍ୟାନ ଯେ ସଭାପର୍ବ ଶାନ୍ତି ବାଣୀ
ତୋହୋର ପ୍ରସନ୍ନେ ଗୋ କହିବ ଠାକୁରାଣୀ ।୪୩।
ତୁଅସି ପ୍ରସନ୍ନ ମୋତେ ଅଭୟେ ହିଙ୍ଗୁଳା
ପ୍ରସନ୍ନେ ବଞ୍ଚାଇଲେ ଯାହା ସେ ସିଦ୍ଧ ସାରୋଳା ।୪୪।
କୁମ୍ଭଋଷି ନନ୍ଦନ ଯେ ଅଗସ୍ତିଂକ ପାଦତଳେ
ତହିଂ ମୋର ଚିତ୍ତ ଯେ ଥାଉ ସର୍ବ କାଳେ ।୪୫।
ଯେଉଂଣ ମୁନି ବିନୋଦ କଲେ ବାଳଲୀଳେ
କ୍ଷୀରୋଦ୍ର ଗଣ୍ଡୂଷ କଲେ ଖେଡ଼ର କୂତୋହୋଳେ ।୪୬।
ସେ ମୁନି ପାଦପଦ୍ମେ ସର୍ବଦା ମୁହିଂ ଦାସର ଦାସ
ବଦନ୍ତି ସାରୋଳା ଦାସ ଜନ୍ମେ ଜନ୍ମେ ଅଭ୍ୟାସ ।୪୭।

——*——

## ବଳରାମଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଯମପୁର ଦର୍ଶନ ବର୍ଣ୍ଣନ ଓ ନାରଦଙ୍କଠାରୁ ଯୁଧିଷ୍ଠିରଙ୍କର ପାଣ୍ଡୁ ରଜାଙ୍କ ଦୁର୍ଦ୍ଦଶା ଶ୍ରବଣ

ବଳିଂକ ଦେଶର ରଜା ବଇବସ୍ୱତ ମନୁ
ପାଦ୍ୟ ଅର୍ଘ୍ୟ ଦେଇ ପୂଜାକଲା ସେ ଘଟଋଷିର ତନୁ ।୧।
ବସନ କୁଣ୍ଡଳ ରତ୍ନମାଳ ଧୂପଦୀପ ନଇବେଦ୍ୟ
ପଞ୍ଚଲକ୍ଷ ହିରଣ୍ୟ ଦେଇଣ ପୂଜିଲା ମୁନିଂକ ପଦ୍ମପାଦ ।୨।
ହେ ବ୍ରହ୍ମଋଷି ତବ ଚରଣେ ମୋର ସେବା
ଯେତେ ସଭାପର୍ବ କଥା ମୋତେ ବିଶେଷି କହିବା ।୩।
ବୋଇଲ ଯେ ଆଦିପର୍ବେ ପଣ୍ଡୁରଜା କଲେ ବ୍ରହ୍ମହତ୍ୟା
କେମନ୍ତେ ପଣ୍ଡୁ ବ୍ରହ୍ମହତ୍ୟା ଧ୍ୱଂସନ ଗଲା ବ୍ରହ୍ମବେତ୍ତା ।୪।
ଯେହୁ ମହାତମା ମୋତେ କହିବା ଅଗସ୍ତିଯେ
ବଂଶେ ବ୍ରହ୍ମହତ୍ୟା ଥିଲେ କେମନ୍ତେ ନିଭ୍ରାନ୍ତ ହୋଇବ ମୁନି ହେ ।୫।
ବଦନ୍ତି ଅଗସ୍ତି କଳପି ମହାତମା
ପ୍ରତକ୍ଷେ ନାରାୟଣ ସେ ଅନାଦି ସିଦ୍ଧବ୍ରହ୍ମା ।୬।
ତୁଳମାସ ଶୁକଳ ପକ୍ଷ ଦଶମୀ ଗୁରୁବାର
ଧନିଷ୍ଠା ନାମେ ନକ୍ଷତ୍ର ଅଛଇ ସେ ଦିନର ।୭।
ତଇତିଳ ନାମେ କରଣ ବୃଦ୍ଧି ନାମେ ଯୋଗ
ତୁଳ ସଂକରାନ୍ତିକ ପାଞ୍ଚଦିନ ଭୋଗ ।୮।
ବିଜୟେ ନାରାୟଣ ଦେବ ମାଳାମ୍ବରେ
କାମପାଳେ ପୁଚ୍ଛାକଲେ ଗୋବିନ୍ଦଂକ ଛାମୁରେ ।୯।[୧]
ପରବେଶ କଥାଯେ ପୁଚ୍ଛା କଲେ ଦେବରାଜେ
ଯମର ସଂଜୀବନୀ ପୁରକୁ ହରି କରିଥିଲୁ ବିଜେ ।୧୦।
ଗୁରୁ ପଞ୍ଚପୁତ୍ରନ୍ତ କଲୁଟି କେମନ୍ତ
ଖୋଜି ପାଇଲୁନା ହୋ କହ ଦେବ ଜଗଭୂତ ।୧୧।

---

୯ । ଦିନେ ନାରାୟଣ ବିଜେ ଦ୍ୱାରକା ସୁଧର୍ମା ସଭାରେ
କାମପାଳ ପୁଚ୍ଛାକଲେ ଗୋବିନ୍ଦ ସନ୍ନିଧିରେ ॥ (ଥ)

ବଦନ୍ତି ଜଗନ୍ନାଥେ ଶୁଣିମା ଦେବ କାମପାଳେ
ଯମର ସଭାକୁ ମୁଂ ଗଲି ଯେତେବେଳେ ।୧୨।

ଦେଖିଣ ଅନେକ ପାପୀ ହୋଇଲେ ମୁକତ
ନାଶକର ଅନେକ ଶାସ୍ତି ଯେ ଦେଉଥିଲେ ମନୁଷ୍ୟନ୍ତ ।୧୩।

ମୋହୋର ଦ୍ରଶନେ ଅନେକ ପାପୀଜନେ
ପାଇଲେ ପରମ ଗତି ଯେ ବସିଲେ ସ୍ୱର୍ଗସ୍ଥାନେ ।୧୪।

ଗୁରୁଂକ ପଞ୍ଚପୁତ୍ର ମୁଂ ଯାଉଥିଲି ଲେଡ଼ି
ଯମଗଣେ ମାରୁଥିଲେ ଅନେକ ପାପୀଂକ ବାହାଡ଼ି ।୧୫।

ମୋତେ ଦେଖିକର ଭୟେ ପଳାଇଲେ ତାହାନ୍ତି ଛାଡ଼ି
ବହୁତ ପାତେକୀମାନେ ନର୍କକୁଣ୍ଡେ ଥିଲେ ପଡ଼ି ।୧୬।

ମମ ଦ୍ରଶନେ କରି ପାଇଲେ ମୋକ୍ଷଗତି
ଦେଖିଣ ହାସିଲା କୃତାନ୍ତକ ଆଧିପତି ।୧୭।

ସୁବର୍ଣ୍ଣ ଥାଳରେ ଦୁର୍ବାକ୍ଷତ ଅର୍ଦ୍ଧ୍ୟ ଘେନି
ମମ ପାଦ ପୂଜାକଲା ଯେ ନାଥ ସଂଜୀବନୀ ।୧୮।

ଅନେକ ହାସେଣ ସେ ବହୁତ ବିନୟେ
ପ୍ରଣପତ୍ୟ କରି ସେ ବସାଇଲା ସଭାୟେ ।୧୯।

ଶ୍ରୀମୁଖରେ କରପତ୍ର ଯୋଡ଼ିଣ ନାଶକର
କ୍ଷାନ୍ତରିଲି ସ୍ୱାମୀ ଆଜ ଅନେକ ଭାଗ୍ୟ ମୋହୋର ।୨୦।

ୟେ ସଂଜୀବନୀ ପୁରେ ପଡ଼ିଲା ୟେ ତୋହୋର ପାଦରଜ
ବହୁତ ଅପ୍ରାଧି ପାପୀ ହାହିକଲୁ ଦେବରାଜ ।୨୧।

ମୋତେ ଅନୁଗ୍ରହ କ ତବ କାର୍ଯ୍ୟ ଅର୍ଥେ
ନାଶକର ପୂରକୁ ସ୍ୱାମୀ ହେ ବିଜୟେ କ ନିମନ୍ତେ ।୨୨।

ବୋଲନ୍ତି କେଶବ ତୁମ୍ଭେ ଶୁଣ ହୋ ଜନ୍ତୁପତି
ଅଳପ କାର୍ଯେଂ ଆମ୍ଭେ ଅଇଲୁ ତୋହୋର ସ୍ଥିତି ।୨୩।

---

୧୫ । ୨ ଯମଗଣେ ମାରୁଥିଲେ ଯେ ଅନେକ ଶାସ୍ତି କରି ।

(ଅ, ଙ, ଝ, ଘ, ଛ)

ଶାନ୍ତିପନୀ ପଣ୍ଡା ଯେ ଆମ୍ଭର ବିଦ୍ୟାଗୁରୁ
ତାହାଂକର ପୁତ୍ରଙ୍କୁ ତୁ କମ୍ପାଇ ହାଦେ ହରୁ ।୨୪।

ଆମ୍ଭଂକୁ ଦକ୍ଷିଣା ସେ ମାଗିଲେ ହାଦେ ଗୁରୁ
ଗ୍ୟାନ ପାଇଲେ ସେ ଆମ୍ଭର ଶାସ୍ତ୍ର ପଢ଼ୁ ।୨୫।

ମୃତ ପଞ୍ଚୁପୁତ୍ର ମାଗିଲେ ବହୁତ କଷ୍ଟାଲେ
ତଦ ଅର୍ଥେ ଅଇଲୁଂ ତୋର ସଂଜୀବନୀ ମଣ୍ଡଳେ ।୨୬।

ସେ ଗୁରୁପୁତ୍ରମାନେ ଅଟନ୍ତି ମୋର ଧର୍ମଭ୍ରାଥ
ତାହାନ୍ତ ହଲେ ଆମ୍ଭନ୍ତ ବିଦ୍ୟା ହୋଇବ ପ୍ରାପତ ।୨୭।

ସ୍ୱାମୀ ଅନେକ ତ୍ରାସ ମୋତେ କରଥିଲ୍ ଜନ୍ମରସ୍ୱେ
ସ୍ୱେକଥା ଶୁଣିଣ ଥୋକାସ୍ୱେ ହୋଇଲ୍ ନିର୍ଭସ୍ୱେ ।୨୮।

ଯମ ପଚ୍ଚରିଲ୍ ଚିତ୍ରଗୁପତକଇଂ ହକାରି
ଆହେ ଶାନ୍ତିପନୀ ବ୍ରାହ୍ମଣର ପୁତ୍ରେ ଅଛନ୍ତି କେଉଣ ଯେ ପୁରି ।୨୯।

ଯମର ବଚନେ ଚିତ୍ରଗୁପତେ ପରଣାମି
ପଶ୍ଚିମ କୋଣରେ ଯେ କାଶୀଦେଶ ଅଛି ସ୍ୱାମୀ ।୩୦।

ଶିବ ପାଦ ଗଙ୍ଗା ଉତ୍ତରାଂକୁର ନଦୀକୂଳେ
ଦକ୍ଷିଣିକ ନାମେ ଲିଙ୍ଗ ଅଛି କଉଣିକ ବଟତଳେ ।୩୧।

ସେ ନଗ୍ରେ ପଞ୍ଚୁପୁତ୍ରେ ହୋଇଛନ୍ତି ଜନ୍ମ
ବ୍ରତନ୍ତ ହେଉରେ ଯେ ତାହାଂକର ଚଉର୍ଯ୍ୟପଣ ।୩୨।

---

୨୪ । ଆହେ ଆମ୍ଭର ଗୁରୁ ଯେ ଶାନ୍ତିପନୀ ବାହ୍ମଣ
ତାହାଂକର ପଞ୍ଚପୁତ୍ରେ ହରଲେ ତୋହୋର ଗ୍ରହଗଣ ।
(ଙ, ଛ, ଥ, ଠ, ଢ)

୨୫।୧ "ଗ୍ୟାନ ପାଇଲେ ସେ ଆମ୍ଭର ଶାସ୍ତ୍ର ପଢ଼ୁ" ପାଦାନ୍ତ ପରେ
"ଛ" ପୋଥିରେ ଅଧିକା ପାଠ:—
ବିଚକ୍ଷଣ ଦେଖିଲେ ଜାଣିଲେ ଗୁରୁଦେବ
ନିଚସ୍ୱେ ଜାଣିଲେ ସ୍ୱେ ଅଟନ୍ତି ମାଧବ ।

୩୧।୨ ତ୍ରିଶୂଳେକ ବୋଲି ଲିଙ୍ଗେକ କାଶୀବଟ ତଳେ । (ଞ, ଙ)

୩୧।୨ ଦକ୍ଷିଣେସ୍ୱ ବୋଲି ଲିଙ୍ଗେକ କାଶୀବଟ ତଳେ । (ଛ)

ଅନେକ ଦ୍ରବ୍ୟନ୍ତ ସେ ଆଣନ୍ତି ବାଟପାଢ଼ି
ସେ ଦ୍ରବ୍ୟ ବାଣ୍ଟନ୍ତି ସେ ବେନିଭାଗ କରି ।୩୩।
ରୁଦ୍ର ଦେବତାଙ୍କୁ ସେ ଦିଅନ୍ତି ଅଧେ ଧନ
ଅର୍ଦ୍ଧେକ ଧନ ଘେନି ବଞ୍ଚନ୍ତି ପଞ୍ଚୁଜନ ।୩୪।
ଶୁଣିଣ ଆଜ୍ଞାଂଦେଲ ଯେ ଜନ୍ତୁ ଅଧିକାରୀ
ପାପପୁଣ୍ୟ ତାହାଂକର ଅଟଇ ଅଇର ସର ।୩୫।
ଚିତ୍ରଗୁପ୍ତଂକ ବଚନେ ନାଶକର ଆଖଣ୍ଡଳ
ସନ୍ନିଧେ ହକରାଇଲେ କାଳ ଯେ ବିକାଳ ।୩୬।
କାଳ ବିକାଳଂକୁ ବୋଇଲ ଜନ୍ତୁପତି
କୋଶଳ ଦେଶକୁ ତୁମ୍ଭେ ଯିବରେ ତଡ଼ିତ ।୩୭।
ଶାନ୍ତପମା ବ୍ରାହ୍ମଣର ପଞ୍ଚୁ ଯେ ନନ୍ଦନ
ତାହାନ୍ତ ଯାଇଂରେ ବନ୍ଧନ କରି ଆଣ ।୩୮।
ଆଜ୍ଞାଂ ପ୍ରମାଣେ ଯେ ଗଲେ ବେନି ଦୁଷ୍ଟେ
ଚତୁର୍ଥ୍ୟ କୁମାରନ୍ତ ହୋଇଲେ ଯାଇଂ ଭେଟେ ।୩୯।
ପ୍ରାତସ୍ନାନ କରନ୍ତେ ପାଞ୍ଚହେଂ ରୁଦ୍ର ପାଦଗଙ୍ଗା ଜଳେ
ଧାଡ଼ିକାରେ ଗଭୀରେ ବୁଡ଼ାଇଲେ କାଳ ଯେ ବିକାଳେ ।୪୦।
ନାଶକର ବୋଇଲ ତୁମ୍ଭେ ଶୁଣିମା ମଧୁହାରୀ
ଭ୍ରାଅମାନେ ହୋଇଲେକି ତୋହୋର ଜଳ ଯେ ଅନ୍ଧାର ।୪୧।
କାଳେ ଜଳେ ବୁଡ଼ମଲେ ଜଳେ ହୋଇଲେ ଜାତ
ଗୁରୁଂକୁ ନେଇ ସମର୍ପଣ କର ହୋ ଜଗନ୍ନାଥ ।୪୨।
ନାଶକର ବଚନେ ମୁଂ ସତ୍ୱରେଣ ଗଲି
ଗୁରୁଂକ ପଞ୍ଚପୁତ୍ର ମୁଂ ନେଇଣ ସମର୍ପିଲି ।୪୩।
ଦେଖିଣ ବେନିଜନେ ହୋଇଲେ ସନ୍ତୋଷ
ତଦନ୍ତରେ ମୁଂହି ଯେ ଅଇଲି ନିଜ ବାସ ।୪୪।

---

୩୯।୧ "ଚତୁର୍ଥ କୁମାରନ୍ତ ହୋଇଲେ ଯାଇଂ ଭେଟେ" ପରେ 'କ' ପୋଥିରେ ଅଧିକା ପାଠ—
ଯମ ଆଜ୍ଞାଂ ଦେଇଥିଲେ କାଳବିକାଳଂକୁ
ହେ ଚତୁର୍ଥ କୁମାରନ୍ତ ଆଣିଲେ ଯମୁକୁ ।
୪୧।୨ ଭ୍ରାଅମାନେ ଅଛନ୍ତି ତୋର ଜଳଅନ୍ଧାର ପୂରୀ । (ଝ)

କହନ୍ତି ବାସୁଦେବ ଶୁଣିମା କାମପାଳେ
ପଣ୍ଡୁଙ୍କୁ ଦେଖିଲ ଦେବ ଯମର ସଭାତଳେ । ୪୫।
ଯହିଁ ସେ କୃତାନ୍ତେକର ପଡଇ ପାଦରଜ
ତହିଁ ତଳପାବଛର ତଳେ ଦେଖିଲ ଉଭା ପଣ୍ଡୁ ମହାରାଜ ।୪୬।
ସ୍ୱାମୀ ଯେତେକସ୍ତର ବରଷ ଗଲାନି ପଣ୍ଡୁ ପ୍ରାଣତ୍ୟାଜ ହୋଇଲା
ଆସ୍ଥାନ ତଳେ ଉଭା ହୋଇଛି ଯମ ବସବୋଲି ନ ବୋଇଲା ।୪୭।
ପୁଣ୍ୟଲୋକମାନେ ବସନ୍ତି ଯେ ଆସ୍ଥାନ ଉପରେ
ତାହାଂକର ପାଦରଜ ପଡଇ ପଣ୍ଡୁ ରାଜାର ମଥାରେ । ୪୮।
ଜଗନ୍ନାଥଂକ ମୁଖରୁ ଯେସନକ ବାକ୍ୟ ଶୁଣି
ଥମ୍ଭୀଭୂତ ପ୍ରାୟେ ହୋଇ ବସିଲେ ହଳପାଣି ।୪୯।
କହନ୍ତି କାମପାଳେ ଶୁଣ ହୋ ଶ୍ରୀହରି
କେଉଣ ଦୋଷେ କୃତାନ୍ତେକ ପଣ୍ଡୁଂକୁ ଯେତେ ଶାସ୍ତି ଦେଉଅଛି।୫୦।
ଜଗନ୍ନାଥେ ବୋଇଲେ ପଣ୍ଡୁ ବ୍ରହ୍ମହତ୍ୟା କଲା
ଅଗ୍ନିକା ମହର୍ଷିଂକ ସେ ନାରଜେ ମାଇଲା ।୫୧।
ପଣ୍ଡୁ ଶାସ୍ତି ପାଉଅଛି ଯେବଣ ଦୋଷ କରି
ସେ ହତ୍ୟାଦୋଷ ତାଂକୁ ନୋହିଲା ଅପହାରି ।୫୨।
ବଳରାମେ ହସିଲେ ଯେ ଜଗନ୍ନାଥଂକ ବଚନେ
ତୁ ସେ ବୋଇଲୁ ନା ମୋତେ ଦେଖି ମୋକ୍ଷ ହୋଇଲେ ଅନେକ ପାପୀଜନେ ।୫୩।
ହରି ନାନା ପାତେକ ମୋଚନ ହୋଇଲା ତୋତେ ଦେଖି
ପଣ୍ଡୁର କଥାକୁ ହରି ନୋହିଲୁ କଂପେ ସାକ୍ଷୀ ।୫୪।
ଗୋବନ୍ଦେ ବୋଇଲେ ସ୍ୱାମୀ ଅପାର ପାତେକ
ବ୍ରହ୍ମହତ୍ୟା ପାତେକ ଦେବ ବଡାଇ ଦୁରନ୍ତେକ ।୫୫।
ବଳରାମେ ବୋଇଲେ ହରି ଯୁଷ୍ଠେଷ୍ଟିଂକ ତୋର ମାୟା
ଯେବେ ସେ ଜାଣିଲ ବାବୁରେ ପାଣ୍ଡେବଂକୁ ନାହିଁ ତୋର ଦୟା ।୫୬।

୪୭ । ଆଗକୁ ପଛକୁ ସେ ଯାଇ ନୁଆରଇ
ବସିବାକୁ ଆଗ୍ୟାଂ ସେ ନ ହଅଇ କଳୁସାଇଂ । (ଛ)
୫୫ । ଗୋବନ୍ଦେ ବୋଇଲେ ନାନା ପାତେକମାନ ଯିବ
ବ୍ରହ୍ମହତ୍ୟା ପାତକ ସ୍ୱାମୀ ବଡାଇ ଦୁର୍ଲଭ । (ଝ, ଛ)

ଯଥାର୍ଥ ହୋଇଣ ଯେବେ ତୋହୋର ଚିତ୍ତରେ ଶୁଦ୍ଧ ଥାନ୍ତା
ସମର ଦର୍ପରେ କାହିଂ ପଣ୍ଡୁଙ୍କୁ ଯେତେ ଶାସ୍ତି ଦିଅନ୍ତା ।୫୭।
କରପଦ ଯୋଡ଼ିଣ ଜଗନ୍ନାଥେ ବୋଇଲେ
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା କଲେ ।୫୮।
ସେହି ଅନେକ କଷ୍ଟେରେ ପାରକରି ନୁଆରିଲେ
ବ୍ରହ୍ମାର କପାଳ ଘେନି ତ୍ରଇଲୋକ୍ୟ ବୁଲିଲେ ।୫୯।
ବ୍ରହ୍ମହତ୍ୟା ଦୋଷରେ ସେ ପାତାଳେ ପଶିଲେ
ପାତାଳେ ହାଟକେଶ୍ୱର ରୂପରେ ରହିଲେ ।୬୦।
ମୁଂ କି ସାମରଥ ପଣ୍ଡୁର ହତ୍ୟାଦୋଷ ମୋଚନ କରିବାକୁ
ଯେ ହତ୍ୟାଦୋଷ ପାରି ନ ଗଲା ଈଶ୍ୱରଦେବତାଂକୁ ।୬୧।
ବଳରାମେ ବୋଇଲେ ଯେବେ ତୁ ଦେଖିଲୁ ଦେବହରି
ଯୁଧିଷ୍ଠିଂକର ସ୍ତୁମୁତରେ ଯେହା କହିବୁ ନା ନିର୍ଣ୍ଣେକରି ।୬୨।
ଭଗୀରଥୀ ବୋଲି ପୁବେକ ସୂର୍ଯ୍ୟବଂଶେ ଥିଲା
ସଗର ରଜାର ଷାଠିଏ ସହସ୍ର ପୁତ୍ରନ୍ତ ମୁକତ କଲା ।୬୩।
ହିଗପାଳ ସମାନେ ପଣ୍ଡୁର ଅଛନ୍ତି ପଞ୍ଚପୁତ୍ରେ
ପିତାର ପାତକ ସେ ଖଣ୍ଡନ୍ତୁ ଜଗନ୍ନାଥେ ।୬୪।
କରପଦ ଯୋଡ଼ିଣ ଯେ ବୋଲନ୍ତି ଦେବରାଏ
ଯେ କଥା ଯୁଧିଷ୍ଠିଂକ କହିତେ କରଇ ମୁହିଂ ମହାଭୟେ ।୬୫।
ବଳରାମେ ବୋଇଲେ ତୁ ଯେବେ ନ କହିବୁ ତାହାଂକୁ
ଆନ କେ ବାରତ ଦେବ ଯୁଧିଷ୍ଠି ଦେବଂକୁ ।୬୬।
ଯେମନ୍ତେ ତ ଜଗନ୍ନାଥ ପଣ୍ଡୁ ନାଶଗଲା
ଯୁଧିଷ୍ଠି ପରାଏ ପୁତ୍ର ଥାଉଂ ପଣ୍ଡୁ ନର୍କଗତି ପାଇଲା ।୬୭।
ବଳରାମଂକ ତୁଲେ କଥା ହୁଅନ୍ତେଣ ଦେବହରି
ଯୋଗଲୟ କରି ଦେବ ନାରଦେ ସୁମରି ।୬୮।
ବଦରିକା ଆଶ୍ରମେ ଯେ ଥିଲେ ମୁନିବର
ଯୋଗବଳେ ଜାଣିଲେ ମୋତେ ଚିନ୍ତିଲେ ଜଗତ ଈଶ୍ୱର ।୬୯।

---

୬୯ । ବ୍ରହ୍ମାର ନନ୍ଦନ ଯେ ଜାଣିଲେ ଯୋଗବଳେ
ଆସନ କମ୍ପିଲା ଜଗନ୍ନାଥେ ସୁମରିଲେ । (ଘ)

ତକ୍ଷଣେ ବ୍ରହ୍ମା ନନ୍ଦନ  ମନଦଣ୍ଡକୁ ଆରୋହି
ଦ୍ୱାରକା ଭୁବନେ ମୁନି ପ୍ରବେଶ ହୋଇଲେ ହାତେ ଯାଇଂ ।୭୦।
ଦେବର୍ଷିଂକ ଦେଖି ଜଗନ୍ନାଥେ କଲେ ପୂଜା
ଜଗନ୍ନାଥେ ବୋଇଲେ ଯେହ୍ନେକ୍ଷଣି ନାରଦ ତୁମ୍ଭେ
ହସ୍ତିନାକୁ ଯାଅ ଯା ।୭୧।
ଅସ୍ଥାନର ମଧ୍ୟେ ଯାଇଂ ତୁମ୍ଭେ ବଜସ୍ତେ କରିବ
ଯୁଧିଷ୍ଠି ପଚ୍ଛରିଲେ ସଂଶୟମା ପୁଚ୍ଛରେ ଥିଲୁ ବୋଲିଣ କହିବ ।୭୨।
ଯୁଧିଷ୍ଠି ଦେବେ ପଚ୍ଛରିବେ ଯେବେ ପିତାର ବାରତା
ଆମ୍ଭର ପାଇଂ ମୁନି ହେ କହିବ ତୁମ୍ଭେ ମିଥ୍ୟା ।୭୩।
ବିସ୍ତରି କହିବ ତୁମ୍ଭେ ଯୁଧିଷ୍ଠି ଦେବଂକୁ
ଯମର ଭୁବନ ପାବଚ୍ଛ ତଳେ ଦେଖିଲୁ ତୋ ପିତା ପଣ୍ଡୁଂକୁ ।୭୪।
ସେ ପଚ୍ଛରିବେ ମୁନି ହେ ପିତା ମୋର କଲେ କେଉଂଣ ପାପ
ବ୍ରହ୍ମହତ୍ୟା ଦୋଷ ବୋଲି କହିବ ସରୂପ ।୭୫।
ଆନ କଥା କିଛି ନ କହିବ ଯୁଧିଷ୍ଠି ଦେବଂକୁ
ନାରାୟଣ ଆଗ୍ୟାଂ ଦିଲେ ମହାଋଷି ନାରଦଂକୁ ।୭୬।
ଆଗ୍ୟାଂ ପ୍ରମାଣେ ସେ ଚଳିଲେ ମହାଋଷି
ହସ୍ତିନା ପୁରେଣ ସେ ମିଳିଲେ ବେଗେ ଆସି ।୭୭।
ଛଡଉତ୍ତର ଶତେଭ୍ରାଥ ବଜସ୍ତେ ଆସ୍ଥାନେ
ସଭାରେ ଧାଡକାରେ ବଜସ୍ତେ ମହାମୁନେ୍ୟ ।୭୮।
ନାରଦଂକୁ ଦେଖିଣ ସର୍ବେ ଉଠିଲେ ଧାଡକାରେ
ଯୁଧିଷ୍ଠି ପ୍ରଣପତ୍ୟ ନାରଦଂକ ପୟରେ ।୭୯।
ଶ୍ରୀହସ୍ତରେ ଅର୍ଘ୍ୟେକ ଘେନିଣ ଯେ ଦେବରାଜା
ମୁନିଂକ ପୟର ତଳେ କଲେ ଦ୍ରବ୍ୟ ପୂଜା ।୮୦।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ସୁବର୍ଣ୍ଣ ଥାଳୀରେ ଅର୍ଘ୍ୟ ଦିଲେ ଯେ ମାନଗୋବିନ୍ଦ ।୮୧।

---

୭୬ । ୧  ବିସ୍ତାରି କିଛି ନ କହିବ ଯୁଧିଷ୍ଠି ଦେବଂକୁ ।  (ଙ,ଘ)
୭୮ । ୧  ପାଞ୍ଚଉତ୍ତର ଶତେ ଭ୍ରାତ ବଜସ୍ତେ ଆସ୍ଥାନେ ।   (ଘ,ଙ,ଛ)

ପ୍ରଣିପତ୍ୟ ହୋଇ ଶୁଣିଲେ ଛତ୍ରଉପର ଶତେ ଭାଇ
କନେକ ସିଂହାସନେ ମୁନୀଂକ ବସାଇଲେ ନେଇ ।୮୨।
କୁଶଳବାର୍ତ୍ତା ହୋଇଣ ବଦନ୍ତି ଦେବଋଷି
ଆରୋଗ୍ୟ ଆପଦମାନ ଖଣ୍ଡଣହୋଉ ବାବୁ ପରମ କଲ୍ୟାଣ
ହୋଅସି ।୮୩।
ନାରଦେ ବୋଇଲେ ବାବୁ ଅଛନା ସର୍ବେ କ୍ଷେମେ
ଶତ୍ରୁ ଉପଦ୍ରବ ତୁମ୍ଭନ୍ତ ନାହିଁନା ସାଂଗ୍ରାମେ ।୮୪।
ପୁତ୍ର ପଉତ୍ରୀ ସୋଦର ଆବର କୁଟୁମ୍ବ ଭରସା
ସମସ୍ତେ କୁଶଳକ୍ଷେମେ ଅଛନ୍ତିନା ହେ ମହାରାଜା ।୮୫।
ତପୀଜନେ ଉପଦ୍ରପ ନ କରନ୍ତିନା କଉଣୋପେ
ପୂର୍ବ ବିଧାନେ ଖଟିଛନ୍ତିନା ପାରିଦଣ୍ଡ ସର୍ବ ନୃପେ ।୮୬।
ଦଇତ ଦାନବ ଉପଦ୍ରବ ନାହିଁନା ତପବନେ
ହବିର୍ଭାଗେ ଅଛନ୍ତିନା ତପୋଧନମାନେ ।୮୭।
ସୁବିଧାନେ ମେଘମାନେ କରନ୍ତିନା ବୃଷ୍ଟି
ଶସ୍ୟ ଫଳ ସର୍ବଦା ଦେଉଛନ୍ତିନା ସୃଷ୍ଟି ।୮୮।
ସୋଦରେ ଅନ୍ୟୋଅନ୍ୟି ନାହିଁନା ତୁମ୍ଭର ଦ୍ୱନ୍ଦ
ରାଜ୍ୟ ଜନମାନେ ହୋଇଅଛନ୍ତିନା ପରମ ସାନନ୍ଦ ।୮୯।
ସକଳ ସୁବିଧାନେ ବ୍ରତଅଛୁନା ମହାରାଜା
କୁଶଳେ ବର୍ତ୍ତନ୍ତି କି ତୁମ୍ଭର ଜନପ୍ରଜା ।୯୦।
ଅନୁକୂଳେ କାର୍ଯ୍ୟ ତୋର ହେଉଛିନା ସିଦ୍ଧି
କୃଷିକାଶ୍ରମାନନ୍ତ ନାହିଁନା ଅବଧି ।୯୧।

---

୮୨।୧ ସ୍ୱେକା ଦୁର୍ଯୋଧନର ଯେ ନମସ୍କାର ନାହିଁ । (କ)
୮୨ କନକ ସିଂହାସନେ ନେଇ ମୁନୀଂକି ବସାଇଲେ
ପାଦ୍ୟ ଅର୍ଘ୍ୟ ଦେଇ ଯେ ଋଷିଂକ ବନ୍ଦୋଇଲେ ।—(କ)
୮୬।୨ ସୁବିଧାନେ ଖଟିଛନ୍ତିନା ପାରିଦଣ୍ଡ ଅମନାତ୍ୟେ । ଘ, ଙ
୮୭।୨ ହବିର୍ଭାଗ ଭୁଞ୍ଜନ୍ତି କି ଦେବଗଣମାନେ । ଛ, ଝ
୮୮।୨ ସମ୍ପୂର୍ଣ୍ଣେ ଫଳଦାୟକ ହୁଅଇନା ସୃଷ୍ଟି । ଘ, ଙ, ଡ
୯୧।୨ କୃଷିକର୍ମେ ପ୍ରଜାନ୍ତ ନାହିଁନା ଅବଧି । ଖ, ଝ, ଚ,

ଦେଶାନ୍ତରେ ବାରତା ତୋତେ କହନ୍ତି କି ଭଲେ
ଧାର୍ମିକ ଦେଖି ବରଗିବୁ ଦଣ୍ଡ ପରବସ୍ତୁ ପଡଲେ ।୯୨।
ଦୁର୍ଯୋଧନ ବୋଇଲା ସର୍ବ କୁଶଳ ମହାମୁନେ୍ୟ
ସକଳ ସୁବିଧାନ ମୁନି ତୋହୋର ପରସନ୍ନେ ।୯୩।
ହେ ମହାମୁନି ତୁମ୍ଭେ କେଉଂଣ ପୁରେ ଥିଲ
କେଉଣ ଭୁବନେ କେଉଣ ଉପାଧି ଦେଖିଲ ।୯୪।
ନାରଦ ବୋଇଲେ ତୁମ୍ଭେ ଶୁଣ ହେ ଧୃତିସୃଷ୍ଟି
ସଂଜୀବନୀପୁରେ ଥିଲୁ ସ୍ନେହ ଲକ୍ଷଣି ନିକଟି ।୯୫।
ଯୁଧିଷ୍ଠି ବୋଇଲେ ଥିଲ ଯେବେ ସଂଜୀବନୀ ପୁରୀ
ପିତା ପଣ୍ଡୁଂକୁ ମୋର ଦେଖିଲ କି ବ୍ରହ୍ମଗୃହୀ ।୯୬।
ଯୁଧିଷ୍ଠିଂକ ବଚନେ ଯେ ନାରଦେ ବୋଇଲେ
ପିତା ପ୍ରାଣତ୍ୟାଜ ତୋହୋର ସ୍ୱେକଶତ ବରଷ ହୋଇଲେ ।୯୭।
ସହିଂ ଯମରାଜାର ପଡଇ ପାଦରଜ
ତହିଂତଳେ ଦେଖିଲୁ ତୋର ପିତା ପଣ୍ଡୁରାଜ ।୯୮।

୯୨।୨ "ଧାର୍ମିକ ଦେଖି ବରଗିବୁ ଦଣ୍ଡ ପରବସ୍ତୁ ପଡଲେ" ପାଦାନ୍ତ ପରେ ପୋଥିରେ ପାଠ—
ଚୋରୁଂକୁ ଦଗଧ ନ କରିବେ କୃପିକାରି
ସ୍ୱେକା ଲଙ୍ଗଳେ ଥିବେ ବଳଦ ଗୃହ ଗୃହ ।
ଗୁହାର ଶୁଣିବୁ ଦେବ ଦେବାର୍ଚ୍ଚନ ସାର
ପରଦାରି ବସେ ପ୍ରବେଶ ନୋହିବୁ ଦଣ୍ଡଧାରୀ ।
ଋଷି ବ୍ରାହ୍ମଣେ ତୁ ଭଗତ ନା କୁରୁପତି
ଦେବତାରେ ଶୀତଳ ଦେବୀ କରିଉନା ଶାନ୍ତ ।
ଗ୍ରହଶାନ୍ତ ମତେ କରିଉନା ଜପମନ୍ତ
ଯୁଧିଷ୍ଠିଂକ ସେବା କରିଥାଉନା ଅନୁବ୍ରତ ।
ମାତା ପିତା ସେବ ସଦାରିସ୍ୱେ ସ୍ୱେକଚିତ୍ତ ହୋଇଟି ଆଦର
ଜନପ୍ରଜାଂକୁ ଅନୀତ ନ କରୁନା କୁରୁବୀର ।
ତାର ରାଜ୍ୟ ବାରତା ବୁଝୁନା ତଥ୍ୟକରି
ସମସ୍ତ କୁଶଳ ବାରତା ପଚ୍ଚୁରନ୍ତ ତପସ୍ୱୀ ।

ଯୁଧିଷ୍ଠିର ପଚାରିଲେ ଶୁଣିମା ତପୋଧନ
ଯମ ପୁରେ ଶାସ୍ତି ହେଲା ପିତାଂକୁ ମୋହୋର କେଉଣ ଦୋଷ ଘେନ ।୯୯।
ନାରଦେ ବୋଇଲେ ପୂର୍ବେ ପିତା ତୋହୋର ବ୍ରହ୍ମହତ୍ୟା ଦୋଷ କଲା
ଅମ୍ବିକା ମହର୍ଷିଙ୍କ ସେ ନାରଦେ ମାଇଲା ।୧୦୦।
ସେ ଦୋଷ ବଡ଼ର ଶାସ୍ତି ହେଲା ଜନ୍ତୁନାଶ
ମହା ଦୁରନ୍ତେକ ଯେ ବ୍ରହ୍ମହତ୍ୟା ପାପ ଦୋଷ ।୧୦୧।
କର୍ଣ୍ଣବୀର ହସିଲା ଯେ କରତାଳ ଦେଇ
ଦୁର୍ଯୋଧନ ଉପହାସ୍ୟ କଲା ଛିଦ୍ରକଥା ପାଇ ।୧୦୨।
ଯେବେ ଗୋଳକୁଣ୍ଡା ହେଲେ ଯେ ଜାରଜାତକ
ଆବର ବିଶେଷେ କଲେ ପିତା ବ୍ରହ୍ମହତ୍ୟା ପାତେକ ।୧୦୩।
ଯେହାଂକର ମୁଖ ଆବର ଚାହିଁବା କେମନ୍ତେ
ଉପହାସ୍ୟ କରି ଅସ୍ତ୍ରାନୁ ଉଠିଲା, କୁରୁନାଥେ ।୧୦୪।
ଯୁଧିଷ୍ଠିର ମୂର୍ଚ୍ଛାଗତ ନାରଦଂକ ବଚନ ଶୁଣି
ଅର୍ଜୁନକୁ ଚାହିଁ ଆଜ୍ଞା ଦେଲେକ ନୃପମଣି ।୧୦୫।
ଯେତ୍ତିକ୍ଷଣି ଯାଅସି ବାବୁ ଦ୍ୱାରକା ଭୁବନକୁ
ବହନ ଘେନିଣ ଆସ ଶ୍ରୀ ଜଗନ୍ନାଥ ଦେବଂକୁ ।୧୦୬।
ପରମାନନ୍ଦ ନାଥ ସେହି ସେ ମୋତେ ସାହା
ବିଚାର କରିବା ହରି ଆଜ୍ଞା ଦେବେ ଯାହା ।୧୦୭।—୧୫୪

——*——

## ଅର୍ଜୁନ ଦ୍ୱାରକାରୁ ଶ୍ରୀକୃଷ୍ଣଙ୍କୁ ଆନୟନ ଓ ରାଜସୂୟ ଯଜ୍ଞର ପରାମର୍ଶ

ଯୁଧିଷ୍ଠିରଂକ ବଚନ ଶୁଣିଣ ଫାଲଗୁନ
ଚଳଇ ବାସବ ଯେ କରେ ଧନୁଶସ୍ତ୍ର ଘେନ ।୧।
ପବନଗତି ହୋଇ ଚଳଇ ରଥ ଯେ ଦିବସ
କ୍ଷୁଧା ତୃଷା ନାହିଂ ତାର ମନରେ ହରଷ ।୨।

---

୧୦୨। କର୍ଣ୍ଣର ହାଥରେ ରାଜା କରତାଳ ଦେଇ । (ଙ,ଘ,ଟ,ଛ,କ,ଥ)

ତେରଶତ ଯୋଜନ ସେ ଗ୍ରହ ଦିବସକେ ଗମି
ଦ୍ୱାରକାପୁରେ ପ୍ରବେଶ ହୋଇଲା ବୀର ଫାଲଗୁନି ।୩।
ଦ୍ୱାରପାଳେ ଦେଖି ଦ୍ୱାର ଗ୍ଭଡ଼ିଲେ ପାର୍ଥକୁ
ଚଳଇ ବାସେବ ଯେ ନବର ଭିତରକୁ ।୪।
ଚଉବଂଶଦ୍ୱାର ଜିଣିଣ ଗଲାକ ଧନୁର୍ଜୟେ
ସତ୍ୟଭାମା ପୁରେ ଯେ ବିଜୟେ ଦେବରାୟେ ।୫।
ଶଙ୍ଖାବର୍ଣ୍ଣିକ ଘେନିଣ ଯେ ବିଜୟେ ଦେବ ବନମାଳୀ
ବିନୋଦେଣ ଜଗନ୍ନାଥ ପଶାକ୍ରୀଡ଼ା କୁତୂହୋଳୀ ।୬।
ବାସୁଦେବ ସତ୍ୟଭାମା ଯେ ଖେଳର ସମୟେ
ଦ୍ୱାରେଣ ପ୍ରବେଶ ଯାଇଂ ହୋଇଲା ଧନୁର୍ଜୟେ ।୭।
ସତ୍ୟଭାମାକୁ ଦେଖିଣ ପାଣ୍ଡବ ସବ୍ୟସାଚୀ
ସଙ୍କୋଚେ ଭିତରେ ନ ପଶି ଦ୍ୱାରେ ଉଭା ହୋଇଅଛି ।୮।
ଦାନ ବାହାନ୍ତେ ଶଙ୍ଖାବର୍ଣ୍ଣି ଦେଖିଲେ ଅର୍ଜୁନର ବଦନ
ପ୍ରତକ୍ଷେ ନାରାୟଣ ସରୂପ ବର୍ଣ୍ଣି ଚିହ୍ନ ।୯।
ପଶାକାଠି ଘେନି କରେ ବୋଇଲେ ଶଙ୍ଖାବର୍ଣ୍ଣି
ମାୟା ଉପାୟେ କମ୍ପେ ରଚିଲ ଶିଶୁପତି ।୧୦।
ମୂର୍ତ୍ତିକେ ପଶା ଖେଳ ମୋହୋର ସଙ୍ଗତରେ
ଆରେକ ମୂର୍ତ୍ତିକେ ଧନୁଧର ଉଭା ହୋଇଅଛ ଦ୍ୱାରେ ।୧୧।
ମାୟାଧର ମୂରତି ତୁମ୍ଭେ କେହ୍ନେ ଅନ୍ତକରୁ
କ୍ଷଣେ କ୍ଷଣେ ମାୟାରୂପ ଅନୁମାନ ଧରୁ ।୧୨।
ବଦନ ତୋଳି ଲେଉଟି ଗ୍ରହ୍ନାଂଲେ ବନମାଳୀ
ଅର୍ଜୁନର ବଦନ ଦେଖିଲେ ଦେବହରି ।୧୩।
ଦେଖିଣ ପରମସାନନ୍ଦ ହୋଇଲେ ଦେବ ଜଗଭୂତ
ଗୋବିନ୍ଦର ପଦ୍ମପାଦେ ଅରଜୁନ ପ୍ରଣପତ୍ୟ ।୧୪।
ବାହୁ ଭିତରକୁ ଆସ ପ୍ରାଣର ସଙ୍ଘାତ ମୋର ଧନୁର୍ଜୟେ
ସତ୍ୟଭାମାକଇଂ ଦେଖି ତୋର କମ୍ପେ ସ୍ୱେଡ଼େ ଭୟେ ।୧୫।
ତୁ ମୋର ପ୍ରାଣବନ୍ଧୁ ଅଭେଦ ପଞ୍ଚଭୂତ
ହୃଦୟର ବଲ୍ଲଭ ତୁ ମୋର ପ୍ରାଣର ସଙ୍ଘାତ ।୧୬।

ଉଠିଣ ମାଧବ ଯାଇ ଆନନ୍ଦେ ଅର୍ଜୁନଙ୍କୁ କୋଳ କରି
ମୁଖରେ ଚୁମ୍ବନ ଦେଇ ବେନିଭୁଜେ ପାର୍ଥଙ୍କୁ ଭିଡ଼ି ।୧୭।
ସିଂହାସନ ଉପରେ ବସାଇ ଦେବ ହୃଷୀକେଶି
ପୁଣ ପୁଣ ଶ୍ରୀକରେ ଅର୍ଜୁନର ଶରୀର ଆଉଂସି ।୧୮।
ଗୋବିନ୍ଦେ ଆଜ୍ଞାଂ ଦିଲେ ଶଙ୍ଖାବର୍ତ୍ତଙ୍କ ଭାଇ
ରୁକ୍ମଣୀର ଅଗ୍ରତେ କହ ତୁମ୍ଭେ ବେଗେ ଯାଇଂ ।୧୯।
ବେଗ କରି ପାକ ସେ କରନ୍ତୁ ରଞ୍ଜନ
ବୋଲ ଆମ୍ଭ ପୁରକୁ ବିଜେ କୋଇନ୍ତାଂକ ନନ୍ଦନ ।୨୦।
ସ୍ୱାମୀଂକର ଆଜ୍ଞାଂସ୍ତେ ଚଳିଲେ ସତ୍ୟଭାମା
ରୁକ୍ମଣୀଂକ କହିଲେ ଯେ ନାରାୟଣଂକ ବାମା ।୨୧।
ଅର୍ଜୁନର ଆଗତ ବାରତା ଦେବୀ ଶୁଣି
ଅନେକ ସାନନ୍ଦ ସେ ଯେ ହୋଇଲେ ଗୋସାମଣୀ ।୨୨।
ଆପଣେ ଉଠିଣ ତହୁଂ ଦେବ ଜଗନ୍ନାଥ
ତିଳ ଅଷ୍ଟେଂଳା ଲେପନ କଲେ ଅର୍ଜୁନର ମାଥ ।୨୩।
ଜମ୍ବୁବତୀ ସତ୍ୟଭାମା ରତ୍ନ ଘଟେ ଦିଅନ୍ତି ପାଣି ତୋଳି
ଆପଣେ ଶ୍ରୀକରେ ସ୍ୱାମୀ ଅର୍ଜୁନର କେଶ ଯେ ପଖାଳି ।୨୪।
ସ୍ନାହାନ ସାରିଣ ସେ ଦେବ ପଖାଳନ ବସ୍ତ୍ର ଘେନି
ଅର୍ଜୁନର କେଶ ଯେ ପୋଛନ୍ତି ଚକ୍ରପାଣି ।୨୫।
ଜମ୍ବୁବତୀ ସତ୍ୟଭାମା ଆଳଟ ଚାମର ଘେନି ଢାଳି
ଶ୍ରୀକରେ ବାସୁଦେବ ଅର୍ଜୁନର କେଶ ଯେ କୁରୁଳି ।୨୬।
କେଶ ଶୁଖାଇଣ ପୁଣ ଯଦୁକୁଳ ନାଥେ
ଅପୂର୍ବ କୁସୁମ ସାଂଜୋଇଲେ ନେଇ ଜଗନ୍ନାଥ ଅର୍ଜୁନର ମାଥେ ।୨୭।
ଅନେକ ଅପୂର୍ବ ରତ୍ନ ଆଭରଣ କଲେ
ସୁବର୍ଣ୍ଣର ସିଂହାସନେ ନେଇଣ ଅର୍ଜୁନଙ୍କୁ ବସାଇଲେ ।୨୮।
ଆପଣେ ସ୍ନାହାନ ତହୁଂ ସାରିଣ ଦେବହରି
ଅର୍ଜୁନଙ୍କୁ ଘେନିଣ ଦେବ ମୁଣୋହିରେ ବିଜେକରି ।୨୯।
ପାଦ ଶଉଚ କରି ଦେବ ବସିଲେ ଦିବ୍ୟସ୍ଥାନେ
କୃଷ୍ଣ ଅର୍ଜୁନ ବସିଲେ ସୁବର୍ଣ୍ଣ ଆସନେ ।୩୦।

ସତ୍ୟଭାମା ରତ୍ନଝଞ୍ଜରେ ଘେନିଣ ସୁବାସିତ ପାଣି
ହେମଝଞ୍ଜରେ ପାଣି ଭରି ଦେବୀ ବସାଇଲେ ଆଣି ।୩୧।
କାଳନ୍ଦୀ ସତ୍ୟଭାମା ଦୁହେଂ ଚାମର ଢାଳନ୍ତି
ସୁବର୍ଣ୍ଣ ପଇଲମେ ରୁକ୍ମିଣୀ ଦେବୀ ଅନ୍ନ ପରଶନ୍ତି ।୩୨।
ଷଡରସ ମେଞ୍ଜନ ଅମିୟ ରସ ପାଗ
ପରଶନ୍ତି ଗୋସାମଣୀ ଯେ କଉତୁର୍କେ ଦେବ କରନ୍ତି ଭୋଗ୍ୟ ।୩୩।
ଭୋଜନ ସାରିଣ ଦୁଂହେ ଆଂଚମନ କଲେ
କନକ ହାନ୍ଦୋଳାରେ ହରି ଅର୍ଜୁନକୁ ଘେନି ବାହୁଡ଼ିଲେ ।୩୪।
କାଳନ୍ଦୀ ସତ୍ୟଭାମା ହାନ୍ଦୋଳା ପଞ୍ଝାବନ୍ତି
ଜମ୍ବୋବଣ୍ଟ ତୁଳୁସା ଯେ ତାମ୍ବୋଳ ଭୁଞ୍ଜାନ୍ତି ।୩୫।
ଆଗରେ କଳାସୁଣୀଏ କରନ୍ତି ନୃତ୍ୟଗୀତ
କୁସୁମ ବୃଷ୍ଟି ହୋଉଅଛି ହରି ଅର୍ଜୁନଂକ ମାଥ ।୩୬।
ଗୋବିନ୍ଦେ ପଚାରନ୍ତି ତୁମ୍ଭେ ଶୁଣ ଫାଲଗୁନି
ମୋତେ ଅନୁଗ୍ରହ କି ଅଇଲୁ କେଉଣ ଆଗ୍ୟାଂ ଘେନି ।୩୭।
ପୁତ୍ର ପଉତ୍ରୀ ମୋହୋର କୁଟୁମ୍ବ ଦେଖିବା ନିମନ୍ତେ
ଅନୁଗ୍ରହ କରି ବାବୁ ଏଜଏ କଲୁ କି ଯେଥେ ।୩୮।
କିସ ଆଜ୍ଞା ଠାକୁରଂକର ତୁମ୍ଭର କିସ କାର୍ଯ୍ୟ
ପୁଣ ପୁଣ ପୁରସରି ପୁଚ୍ଛନ୍ତି ଦେବରାଜ ।୩୯।
ଅର୍ଜୁନ ବୋଇଲା ପୁଣ ହାନ୍ଦୋଳାରୁ ଓହ୍ଲାଇ
ସ୍ୱାମୀ ଯିସ ଅର୍ଥେ ଅଇଲି ଶୁଣ ସାବଧାନ ହୋଇ ।୪୦।
ନାରଦ ମହର୍ଷି ଏଜଏ ଆମ୍ଭ ପୁରେ
କୁଶଳ ବାରତା ପୁଚ୍ଛିଲେ ଯୁଧେଷ୍ଠି ଦେବ ଠାକୁରେ ।୪୧।
ନାରଦେ କହିଲେ ଯେ ସଂଜ୍ଞାବମାପୁର କଥା
ଆମ୍ଭର ପିତାଂକୁ ଯମ ଦେଉଅଛି ଅନେକ ଅବସ୍ଥା ।୪୨।
ତାହା ଶୁଣି ଯୁଧେଷ୍ଠି ଯେ ହୋଇଲେ ଆରତ
ଉପହାସ୍ୟ କଲ ଶୁଣି ଧୃତରାଷ୍ଟ୍ରର ସୁତ ।୪୩।
ଠାକୁରଂକ ଆଗ୍ୟାଂଏ ମୁଂ ଅଇଲି ବହନ
ବେଗ ହୋଇ ଯିବା ସ୍ୱାମୀ ଜଗତ ମୋହନ ।୪୪।

ଶୁଣିଣ ବାସୁଦେବ ପରମ ସାନନ୍ଦେ
ହସ୍ତିନାପୁରକୁ ସଜ ହୋଇଲେ ଗୋବନ୍ଦେ ।୪୫।
ବଇନେଣ ସୁମରଣା କଲେ ଦେବ ଯେ ଅଚ୍ୟୁତ
ରମ୍ୟେକ ଦ୍ୱୀପୁଁ ଆସି ପ୍ରବେଶ ବିନତାର ସୁତ ।୪୬।
କୋଳକରି ଧରି ବିଜେକଲେ ପାଣ୍ଡବ କଂସାରି
ବିଜୟେ ଜଗନ୍ନାଥ ଖଗେଶ୍ୱର ପିଠି ।୪୭।
ଆକାଶେ ଖେପଇ ସେ ପକ୍ଷୀ ମହାବଳୀ
ଗ୍ରହକେ ବିଜୟେ ଦେବ ହସ୍ତିନାପୁରେ ଯାଇଂ ମିଳି ।୪୮।
ଆସ୍ଥାନେ ବିଜୟେ କରିଛନ୍ତି ଦେବ ଧର୍ମରାୟେ
ଗରୁଡ଼ ପିଠି ତେଜ୍ୟାକଲେ ଶ୍ରୀକୃଷ୍ଣ ଧନୁର୍ଜୟେ ।୪୯।
ଯେତେ ଧୂଳିହୁଂ ହସିଲା ଯୁଧିଷ୍ଠିର ଦେବଂକ ଆସ୍ଥାନ
ଦଣ୍ଡଲଇ ଶୁତିଲେ କୃଷ୍ଣ ଅରଜୁନ ।୫୦।
ଯୁଧିଷ୍ଠିର କଲ୍ୟାଣ କଲେ ବାସୁଦେବଂକ ବଦନ ଗୃହ୍ନଂ
ପାୟେ ଯାଇଂ ନିଜଗ୍ରୁଳ କରନ୍ତି ଯଦୁସାଇଂ ।୫୧।
ସନ୍ନିଧେ ଉଭା ହୋଇଣ ଅନେକ ସ୍ତୁତି ବୋଲି
ସାଷ୍ଟାଙ୍ଗେ ଜଗନ୍ନାଥେ ଶୁତିଲେ ଗଡ଼ଧାଳି ।୫୨।
ଯୁଧିଷ୍ଠିର ଆଜ୍ଞା ଦେଲେ ସାଅସି ରେ ନକୁଳ
କୋଳାଗ୍ରତ କରି ବାବୁ ନାରାୟଣଂକୁ ବେଗେ ତୋଳ ।୫୩।
ମାଦ୍ରୀର ନନ୍ଦନ ସେ ଆଗ୍ୟାଂ ପରମାଣେ
ଶ୍ରୀକୃଷ୍ଣକଇ କୋଳକରି ତୋଳଇ ତତକ୍ଷଣେ ।୫୪।
ଠାକୁରଂକ ଆଗ୍ୟାଂ ହୋଇଲା ଉଠ ହୋ ଦେବହରି
ଉଠି ଉଭା ହୋଇ ପୁରୁଷୋତ୍ତମ ରହିଲେ ଅପସରି ।୫୫।
କରପଦ୍ମ ଯୋଡ଼ି ପୁଚ୍ଛା କରନ୍ତି ଜଗନ୍ନାଥେ
ସ୍ୱାମୀ ମୋତେ ଆଗ୍ୟାଂ ହୋଇଲା କେବଣ କାର୍ଯ୍ୟ ଅର୍ଥେ ।୫୬।
ଯୁଧିଷ୍ଠିର ବୋଇଲେ ଶୁଣିମା ହୋ ଦାମୋଦର
ମୋହୋର ଚରିତ ଦେବ ନାରଦଂକୁ ପଚ୍ଚାର ।୫୭।
ଶ୍ରୀହରି ବୋଇଲେ ମହର୍ଷିଂକ ବଦନ ଗୃହ୍ନଂ
କଳହ ପ୍ରିୟ ମୁନି ହେ କେବଣ ଅଛ ଯେ ଭିଆଇ ।୫୮।

ନାରଦେ ବୋଇଲେ ଦେବ ଶୁଣିମା ନାରାୟଣ
ସମସ୍ତ କୁତୁହୋଳ ହରି ତୋହୋର ଭିଆଣ ।୫୯।
ସ୍ୱାମୀ ସର୍ଣ୍ଣବର୍ଣ୍ଣ ପୁରକଇଂ ମୁଂ ଯେ ହାଦେ ଯାଇଥିଲି
ତହିଂ ସେହୁହାଂକର ପିତା ପଣ୍ଡୁରାଜାଂକୁ ଦେଖିଲି ।୬୦।
ବ୍ରହ୍ମହତ୍ୟା ଦୋଷେ ନାଶକର ଜଳୁପତି
ପଣ୍ଡୁରାଜାଂକୁ ଦେଉଅଛୁ ଅନେକ ଯେ ଶାସ୍ତି ।୬୧।
ଶୁଣି ଅସାଷ୍ଟମ ହୋଇଣ ପଡ଼ଲେ ଯୁଦ୍ଧେଷ୍ଟି
ମୂର୍ଚ୍ଛିତ ହୋଇଣ ଯେ ପଡ଼ଲେ ମହୀଲେଟି ।୬୨।
କୋଳ କରି ଧଇଲେ ସେ ଦେବ ଜଗନ୍ନାଥେ
କାହିଂକ ଅସାଷ୍ଟମ ଦେବ କେବଣ କାର୍ଯ୍ୟ ଅର୍ଥେ ।୬୩।
ଯୁଦ୍ଧେଷ୍ଟି ବୋଇଲେ ଆମ୍ଭେ ଜମ୍ବୁଦ୍ୱୀପେ ଆଧିପତି
ଆବର ବିଶେଷ ଯାହାକୁ ସପକ୍ଷ ଦାଶରଥି ।୬୪।
ଇନ୍ଦ୍ରର ସମାନେ ଆମ୍ଭେ ପଞ୍ଚୁପୁତ୍ରେ ଥାଇଂ
ଆମ୍ଭର ପିତାକୁ ଯମ ବହୁତ ଶାସ୍ତି ଦେଇଂ ।୬୫।
ମୋହୋର ପିତାର ବ୍ରହ୍ମହତ୍ୟା କେମନ୍ତେ ହୋଇବ ପାର
ହୋଇବି ତୀର୍ଥବାସୀ ମୁଂ କରିବି ଦେଶାନ୍ତର ।୬୬।
ଗଙ୍ଗା ଯମୁନା ଗୋଦାବରୀ ପାପ ହରଣୀ ବଇତରଣୀ
କେଦାର ଭଗିରଥୀ ନର୍ମଦା ପ୍ରାଗବେଣୀ ।୬୭।
ଫଲ୍‌ଗୁକ ସୁବର୍ଣ୍ଣଭଦ୍ରା ମଣିଭଦ୍ରା ବାଞ୍ଛାବଟି ମଣିକର୍ଣ୍ଣିକା ତୀର୍ଥେ
ଚମିବି ସକଳ ତୀର୍ଥେ ପିତାର ପାତକ ଖଣ୍ଡନ ନିମନ୍ତେ ।୬୮।
ଭୁ ଜଗମୋହନ ନାଥ ମୋତେ କରସି ଉଦ୍ଧାରଣ
ଗାନ୍ଧାରୀ ପୁଅନ୍ତ ତୋତେଟି କଲି ସମର୍ପଣ ।୬୯।
ଦୁର୍ଯୋଧନକୁ ସୁଦୟା କରିଥାଅ ସର୍ବଦାୟେ
ମୁହିଂ ଯାଉଅଛୁ ପିତାର ପାତେକ କରିବଇଂ କ୍ଷୟେ ।୭୦।
ଶ୍ରୀହରି ପଚ୍ଚରିଲେ ନାରଦଂକୁ ହକାରି
ବ୍ରହ୍ମହତ୍ୟା ପାତେକ କେମନ୍ତେ ଖଣ୍ଡଣ କରି ।୭୧।
ନାରଦେ ବୋଇଲେ ହୋ ଅଛୁ ଗୁରି ପ୍ରଭୁ
ସେଥିର ଚରିତ ତୋତେ କହିବା ହୋ ଶ୍ରୀପତି ।୭୨।

ଅନ୍ନଦାନ ଯେବେ ଦେଇ ପାରଇ ଅବଚ୍ଛିନ୍ନେ
ତେଣୁ ସେ ମହାପାତକ ହୋଅଇ ଦହନେ ।୭୩।
ନଜ୍ଜରେତ ଯେବେ ସାଧି ପାରଇ ବ୍ରହ୍ମଜ୍ଞାନ
ତେବେ ସେ ସର୍ବ ପାତକ ଯେ ହୋଅଇ ଖଣ୍ଡନ ।୭୪।
ନୋହିଲେ ପାର ଯେବେ ଧାରାତୀର୍ଥ କର
ଓହୋବଳ ସଂଗ୍ରାମେ ଯେବେ ଝାସିବ କରେ ଶସ୍ତ୍ର ଧର ।୭୫।
ସେ ରଣଯାଗେ ପଡ଼ିଲେ ସର୍ବପାପ ହୋଏ ଧ୍ୱଂସ
ସଂଗ୍ରାମେ ଝାସିଲେ ସମସ୍ତ ପାତକ ହୋଏ ନାଶ ।୭୬।
ନୋହିଲେ ପ୍ରୟାଗେ ଯେବେ ଝାସିତେ ପାରଇ
ତେଣୁ ସେ ବ୍ରହ୍ମହତ୍ୟା ଦୋଷ କ୍ଷୟେ ଯାଇ ।୭୭।
ନାରଦେ ବୋଇଲେ ଦେବ ଶୁଣିମା ଶ୍ରୀପତି
ପାତକ ଦହନକୁ ଦେବ ଅଛଇ ଏ ଗୂଢ଼ପ୍ରତି ।୭୮।
ଯୁଧିଷ୍ଠିର ବୋଇଲେ ନାରଦେ ଯେ କହିଲେ ଗୂଢ଼କଥା
ମୋହୋର ବେଳେ କର ଏ ନୋହଇ ସର୍ବଥା ।୭୯।
କାହିଁ ଧାରାତୀର୍ଥ ମୁଁ କରିବ ଦେବହରି
ମୋହୋର ଭୂଲେ କେହ୍ନ ଅଛଇ ଶସ୍ତ୍ରଧାରୀ ।୮୦।
ବ୍ରହ୍ମଜ୍ଞାନ ସାଧିବାକୁ ଶକ୍ୟ କାହାର ଅଛି
ଦେବତାଆଦ ଯାହା ନୁଆରିଲେ ଇଚ୍ଛି ।୮୧।
ପ୍ରୟାଗେ ଝାସନ୍ତି ଅବା ପିତାର ନିମନ୍ତେ
ଆତ୍ମଘାତ ଦୋଷ ଲଗିବ ହରି ମୋତେ ।୮୨।
ଅନ୍ନଦାନ ଦେବାକୁ ତ ଶକ୍ୟ ମୋର ନାହିଁ
ଧୃତରାଷ୍ଟ୍ର ପୋଷୁଛନ୍ତି ଅନ୍ନ ବସ୍ତ୍ର ଦେଇ ।୮୩।
ଏମନ୍ତେ ଅନ୍ନଦାନ ମୁଁ ଦେବଇଁ କେମନ୍ତେ
ଏ ଗୂଢ଼କଥା ହରି ହେ ପ୍ରାପତ ନୋହୋଇ ମୋତେ ।୮୪।
ପଞ୍ଚୁତୀର୍ଥ ଆମ୍ଭେହେଁ କରିବୁ ପାଞ୍ଚଭାଇ
ଯେତେକାଳ ପିତାର ବ୍ରହ୍ମହତ୍ୟା ପାତକ କ୍ଷୟୁପାଇ ।୮୫।

---

୮୧। ମୋହୋର ଶକ୍ୟେ ଏ ଯେ ନୋହୋଇ ଶ୍ରୀବଚ୍ଛି । (ଙ,ଥ)
୮୨। ଆତ୍ମାଘାତକ ଦୋଷ ଅପାର ହେବ ମୋତେ । (ଙ,ଘ,ଛ)

ଧୃତରାଷ୍ଟ୍ର ପୁଅଂକୁ ମୁଂ ଦେବଇଂ ରାଜ୍ୟଭାର
ତାହାନ୍ତ ସୁଦୟା କରଅଛୁଟି ଦାମୋଦର ।୮୬।
ଗୋବିନ୍ଦେ ବୋଇଲେ ସ୍ୱାମୀ ବୁଦ୍ଧିଏ ମୋର ଅଛି
ଅନ୍ନଦାନ ଦେବା ହାଦେ ବଦନ୍ତ ଶ୍ରୀବତ୍ସି ।୮୭।
ନାରଦେ ବୋଇଲେ ଯେବେ ଅନ୍ନଦାନକୁ ବଶ୍ବର
ରାଜସୂୟ ଯଜ୍ଞ ଯେବେ କରନ୍ତେ ହର ପାର ।୮୮।
ନାରଦଂକ ବଚନେ ପୁଚ୍ଛନ୍ତି ଜନାର୍ଦ୍ଦନ
ରାଜସୂୟ ଯଜ୍ଞ ଦେବ କେଉଂଣହିଂ ବିଧାନ ।୮୯।
ନାରଦେ ବୋଇଲେ ତୁମ୍ଭେ ଶୁଣ ହୋ ଶିଖିଯତ
ଲକ୍ଷେ ରାଜାନ୍ତହିଂ ଯେବେ ଆଣିବ ନିମନ୍ତି ।୯୦।
ସମସ୍ତ ରାଜାଏ ଆସିବେ ଥାଠ ଯେ ପଲ୍ଣି
ବାଲଖିଲା ଆଦିକରି ଆସିବେ ସର୍ବମୁନି ।୯୧।
ଷୋଳହିନ ପରଯନ୍ତେ ହୋଇବ ଆହୂତି
ରାନ୍ଧଣା ହୋଇଥିବ ଗଉରୀ ସଉରୀ ନଳବଧି ଡାନପ୍ରିତ ।୯୨।
ଯେ ଯିସ ମାଗିବ ଅବଚ୍ଛନ୍ନେ ଦେବ ଦାନ
ଶତ୍ରୁ ମଇତ୍ର ହୋଇବ ସେ ଯେତେକଇ ସମାନ ।୯୩।
ଯୁଧିଷ୍ଠିରେ ବୋଇଲେ ଦେବ ଶୁଣିମା ମଧୁହାରୀ
ଯେତେକ ସମ୍ପଦକୁ ଶକ୍ୟ ଅଛଇ କାହାରି ।୯୪।
ଧନବନ୍ତ ଲୋକ ମୁହିଂତ ନୋହୋଇ ଅଚ୍ୟୁତ
ଅବଚ୍ଛନ୍ନେ ଦାନ ଦେବାକଇଂ କାହିଂ ହୋଇମି ସାମରଥ ।୯୫।
ମୋହୋରେ ନୋହି ଦେବ ରାଜସୂୟ ଯଜ୍ଞ ସଭା
ତୀର୍ଥହିଂ ସେ କରିବା ଯେ ଆଜ୍ଞାଂ ମୋତେ ଦେବା ।୯୬।
ଗୋବିନ୍ଦେ ବୋଇଲେ ସ୍ୱାମୀ ନୋହୋଇ ଯେମନ୍ତ
ଯେଥେ ଥାଇଂ ଯେବେ ସେ ପାତକ ହୋଇ ହତ ।୯୭।
କିଂପାଇଂ ଯିବା ସ୍ୱାମୀ ବହୁତ ଦୂର ପଥକୁ
ନାରଦେ ବୋଇଲେ ତୁ ଚିନ୍ତା ନ କର ଧନକୁ ।୯୮।
ଯାହାକଇଂ ସପକ୍ଷ ଯେ ଦେବାଧିଦେବ ରାଜା
ପରମଲକ୍ଷ୍ମୀ ଦେବୀ ଯେ ଜଗନ୍ନାଥଂକର ଭାରିଯା ।୯୯।

ସେ ଜଗନ୍ନାଥ ଯାହାକଇଂ ଭୃତ୍ୟପଣେ ଖଟନ୍ତି
ଧନ ଭୋଜନକୁ ଆଉ କସ ତୋର ଚିନ୍ତା ।୧୦୦।
ଯଗ୍ୟଂ ଆରୋପଣ ତୁ କରସି ଯୁଗତେ
ସ୍ୱର୍ଗରୁ ଆସିବେ ହାଦେ ଦେବଗଣ ଇନ୍ଦ୍ରଙ୍କ ସହିତେ ।୧୦୧।
ଅନେକ ପୁଣ୍ୟ ତୁହୋ ଅରଜବୁ ଯୁଧିଷ୍ଠି
ଖଣ୍ଡିବୁ ପାତେକ ଶାନ୍ତ ହୋଇବ ଅରିଷ୍ଟି ।୧୦୨।
ନାରାୟଣ ବୋଇଲେ ଦେବ ଧନକୁ ନ ଭାଳ କିଛି
କୁବେର ଆଣି ଦେଉଥିବ ଯେତେକ ଧନ ଇଚ୍ଛି ।୧୦୩।
ନାରଦଙ୍କୁ ବ୍ରହ୍ମାଂଣ ପୁଚ୍ଛିଲେ ଧର୍ମରାଏ ଯୁଧିଷ୍ଠି
ଲକ୍ଷେରାଜା ଗୋସାଇଂ ଅଛନ୍ତି କି ପୃଥୀ ।୧୦୪।
ବଦୟନ୍ତି ବାସୁଦେବେ ଶୁଣିମା ଧର୍ମସୁତ
ନାରଦେ କହିଲେ ଲକ୍ଷେ ରାଜାର ବାରତ ।୧୦୫।
ବଦନ୍ତି ବ୍ରହ୍ମାସୁତ ଶୁଣ ହେ ବାସୁଦେବ
ଚଉଗୁଣା ଲକ୍ଷେରାଜା ପୃଥୀରେ ହୋଇବ ।୧୦୬।
ଦୁଇଗୁଣା ପଚାଶସହସ୍ର ରାଜା ଅଛନ୍ତି ପଶ୍ଚିମ ଦିଗେ
ଏକଗୁଣା ଚାଳିଶସହସ୍ର ରାଜା ଉତ୍ତର ଦିଗଭାଗେ ।୧୦୭।
ଏକଗୁଣା ସାତସହସ୍ର ରାଜା ଦକ୍ଷିଣ କୋଣଟେ
ତିନିସହସ୍ର ରାଜା ବସନ୍ତି ପୂର୍ବ ଯେ ମଣ୍ଡଳେ ।୧୦୮।
ଏମନ୍ତେ ଚଉଗୁଣା ଲକ୍ଷେ ରାଜା ବଧ ତାର ଭିଆଣ
ମହା ମହା ଦୁଷ୍ଟ ଯେ ଅଛନ୍ତି ରାଜାଗଣ ।୧୦୯।
ଯୁଗତେ ଚଉଗୁଣା ଲକ୍ଷେ ରାଜା ହୋଇଲେ
ଯଗ୍ୟଂ ହୋଇବଟି କି ଯୁଧିଷ୍ଠି ଦେବ ବୋଇଲେ ।୧୧୦।
ନାରଦେ ବୋଇଲେ ଯେବେ ଏକଗୁଣା ହୋଇ
ରାଜସୂୟ ଯଗ୍ୟଂ ନୋହୋଇ ଧର୍ମ ପ୍ରାପତ ନୋହି ।୧୧୧।
ଗୋବିନ୍ଦେ ବୋଇଲେ ଦେବ କଥାଏ କରିବା
ସୁବର୍ଣ୍ଣରେ ଚଉରାଜା ନିର୍ବାଣ କରାଇବା ।୧୧୨।
ଯୁଧିଷ୍ଠି ବୋଇଲେ ଯାହା କହିଲେ ଶିରୀରଙ୍ଗ
ମୋହୋର ଦେଲେ ବାସୁଦେବ ନୋହୋଇ ଏହି ମହାଯଗ୍ୟଂ ।୧୧୩।

ଦ୍ୱାପରଯୁଗେ ମନୁଷ୍ୟ ସାଢ଼ହାଥ ଉଚ୍ଛର୍ଗ
ଗୃହରଗୋଟି ପିଚ୍ଛୁଲାକୁ ଧନ ହୋଇବ କ ମଧସ୍ୱର୍ଗ ।୧୧୪।
ନାରଦେ ବୋଇଲେ ବାବୁ ଶୁଣ ଧର୍ମସାଇଂ
ଯେକା ଜଣକେ ରାଜା ସୁବର୍ଣ୍ଣରେ ହେବ କାହିଂ ।୧୧୫।
ସୁବର୍ଣ୍ଣର ସହସ୍ରେକ ରଥ ବେନି ସହସ୍ର ହାଥୀ
ଗୃହ ସହସ୍ର ଅଶ୍ୱ ସାଗରେକ ପାଦାନ୍ତ ।୧୧୬।
ଛତ୍ର ବାଦ୍ୟ ଆଦିକରି ସୁବର୍ଣ୍ଣରେ ନିର୍ବାଣି
ଯେତେ ସରୂପେ ରାଜାଯେକ ବୋଲ ଗଣି ।୧୧୭।
ଯୁଧିଷ୍ଠି ବୋଇଲେ ମୋହୋରେ ନୋହୋଇ ଯେତେବଡ ଯଗ୍ୟଂ
ଯେ ମହାଭାର ଶୁଣି ମୋର ପ୍ରାଣ ହୋଉଅଛୁ ତ୍ୟାଗ । ୧୧୮।
ନାରଦେ ବୋଇଲେ କଛୁହିଂ ଚିନ୍ତା ତୁ ନ କର
ଲକ୍ଷେ ରାଜା ସୁବର୍ଣ୍ଣରେ କରି ପାରଇ ଯେହ୍ନ ଦାମୋଦର ।୧୧୯।
ଯୁଧିଷ୍ଠି ବିସ୍ମିତ ହୋଇଲେ ନାରଦଂକ ବଚନ ଶୁଣି
ଲକ୍ଷେ ରାଜାନ୍ତ କେ ସାଧ କରିପାରିବଟି ଚକ୍ରପାଣି ।୧୨୦।
ନାରଦେ ବୋଇଲେ ବାବୁ ଶୁଣ ଧର୍ମରାଯେ
ଶୁଣ ବାବୁ ଯୁଧିଷ୍ଠି ଆବର ଅପୂର୍ବ କଥାଯେ ।୧୨୧।
ଗୃହଉଣା ଲକ୍ଷେ ରାଜାନ୍ତ ଧରୁଛ ଗୋବିନ୍ଦ
ଛୟାଣୋଇ ସହସ୍ରେ ରାଜାଯେ ଜରାସନ୍ଧ ଘରେ ଛନ୍ତି ବନ୍ଦୀ ।୧୨୨।
ପଅରଦିନ ହୋଇବ ପୂର୍ଣ୍ଣ ଯେ ଆହୂତି
ରାଜାନ୍ତ ମାରି ଯଗ୍ୟଂକୁଣ୍ଡେ ପକାଇବ ସବୁନ୍ତ ।୧୨୩।
ଯୁଧିଷ୍ଠି ଦେବ ଆଶ୍ରିଜ ହୋଇଲେ ତାହା ଶୁଣି
ଯେଥକୁ କିସ ଉପାୟ କରିବୁ ହୋ ଚକ୍ରପାଣି ।୧୨୪।
ଗୋବିନ୍ଦେ ବୋଇଲେ ବାବୁ ଶୁଣିମା ଯୁଧିଷ୍ଠି
ଜରାସନ୍ଧ ରାଜା ରୁଣ୍ଡିକଲା ତୋତେ ଭଲ ସେଟି ।୧୨୫।
ଜରାସନ୍ଧକୁ ମାରି ଆମ୍ଭେ ରାଜାନ୍ତ ନିମନ୍ତ୍ରିବା
ଲେଉଟାନ୍ତୁ ଅବା ଯେବେ ସବୁନ୍ତ ଯେକଠାବରେ ପାଇବା ।୧୨୬।
ଯୁଧିଷ୍ଠି ବୋଇଲେ ହରି ତୋହୋର ବଚନ ଶୁଣି
ଆଶ୍ରିଜ ହୋଇଲି ମୁଂ ଦେବ ଚକ୍ରପାଣି ।୧୨୭।

ଜରାସନ୍ଧ ଜୁଆଇଂ ତୁମ୍ଭେ ନାଶକଲ କଂସ
ସେ ରାଗେ ଘେନିଲା ତୁମ୍ଭ ମଥୁରାପୁର ଦେଶ ।୧୨୮।
ମଧୁପୁର ଛାଡି ତୁମ୍ଭେ ପଳାଇଲ ଡରେ
ଦୁଇଭାଇ ଲୁଚିଲ ପରା ଗୋମତ ପର୍ବତରେ ।୧୨୯।
ଖଣା ଖୋଲାଇକରି ପର୍ବତ ବେଢାଇଲା
ତୁମ୍ଭର ପ୍ରମାଦେ ତହିଂ ଅନେକ ଜନ୍ତୁ ନାଶଗଲା ।୧୩୦।
ଧର୍ମେଣ ଉତ୍ତୁରି ତହୁଂ ଗଲ ବେନିଭାଇ
ମଧୁବନ କଟକେ ଯେ ରହିଲ ପୁଣ ଯାଇଂ ।୧୩୧।
କାଳଦମନ ରାଜା ତହିଂକ ଧାଡିଦେଲା
ସେ ମଧୁବନ ଭାଂଜଣ ଅନେକ ଦୂର କଲା ।୧୩୨।
ଭୟେ ପଶିଲ ଯାଇଂ କାଳେବର ବନେ
ତହିଂକ ଧାଡିଦେଲ ଜାରା ଅତ୍ୟନ୍ତ କୋପମନେ ।୧୩୩।
କାଳେବର ବନ ଭାଙ୍ଗି କଲା ଭଗନସ୍ତ
ପଳାଇ ପଶିଲ ଯାଇଂ ହିରଣ୍ୟଗର୍ଭ ପର୍ବତ ।୧୩୪।
ଅଷ୍ଟାଦଶ ବେଳ ସେ ତହିଂ ଦେଲା ଧାଡି
ଭାଂଜଣ ଚୂରକଲା କଣ୍ୟୁ କୋଶ ଗିରି ।୧୩୫।
ତହୁଂ ପଳାଇଲ ତୁମ୍ଭେ ଜରାସନ୍ଧର ଡରେ
କୁଟୁମ୍ବ ଘେନି ପଶିଲ୍ ପରା ସାହେର ଭିତରେ ।୧୩୬।
କୁଶସ୍ଥଳୀ ଦ୍ୱାରକା ବୋଲି ତହିଂର ନାମହେଲା
ସେ ସାହେର ବୋଲଣ ସିନା ତୁମ୍ଭନ୍ତ ଠାବ ହେଲା ।୧୩୭।
ବଳରାମଙ୍କ ମୁଷଳେ ନାଶ ନ ଗଲା ପୁଣ ଜାରା
ଦୂଭାର ବଳବନ୍ତା ସେ ଅଟଇ ମହାବୀର ।୧୩୮।
ଗତକଥା ମାନ ହରି ମନରେ ନ ବଗୁରୁ
କେମନ୍ତେ ଜରାସନ୍ଧ ପୁରକୁ ଯାଇଂ ଲେଉଟୁ ।୧୩୯।
ଗୋବିନ୍ଦେ ବୋଇଲେ ଦେବ ତବକାର୍ଯ୍ୟ ଇଛି
ତେଣୁ ସେ ଜାରାକୁ ନ ମାରି ପ୍ରାଣେ ରଖିଅଛୁ ।୧୪୦।
ଭୀମ ଅର୍ଜୁନଙ୍କୁ ସ୍ୱାମୀ ଯେବେ ମୋହୋର ସଙ୍ଗତେ ଦେବା
ମାରିବ ଜରାସନ୍ଧ ଦେବ କଛୁ ଭ୍ରାନ୍ତହିଂ ନ କରିବା ।୧୪୧।

ଯୁଧିଷ୍ଠିର ଦେବ ଶୁଣିଲେ ସହଦେବର ବଚନ
ବାବୁ ତାହାକୁ ବଧ କରି ପାରିବେ କି ଦେବ ଜନାର୍ଦ୍ଦନ ।୧୪୨।
ସହଦେବ ବୋଇଲେ ସ୍ୱାମୀ ଯାଆନ୍ତୁ ଜଗନ୍ନାଥେ
ତାହା ମୃତ୍ୟୁଭେଦ ଅଛି ଭୀମସେନ ଠାକୁରଙ୍କ ହାଥେ ।୧୪୩।
ସହଦେବ ବଚନେ ଯେ ଶୁଣିଲେ ମନଭ୍ରାନ୍ତ
ଜରାସନ୍ଧ ପୁରକୁ ସଜ ହୋଇଲେ ଶିରୀପତି ।୧୪୪।
ଭୀମ ଅର୍ଜ୍ଜୁନଙ୍କଇଂ ଘେନିଣ ଦେବ ଭୁଲେ
ଯୁଧିଷ୍ଠିରଙ୍କ ପଦ୍ମପାଦେ ପ୍ରଣମିତ ହୋଇଲେ ।୧୪୫।
କଲ୍ୟାଣ ବାଞ୍ଛା ତାହାଙ୍କ କରନ୍ତି ଦେବ ଧର୍ମସୁତ
ସର୍ବକାର୍ଯ୍ୟ ସିଦ୍ଧହୋଉ ଚିରଆୟୁ ହୋଇ ବ୍ରତ ।୧୪୬।
ତୁ ଦେବ କରୁଣାମୟ କଳ ପୀତବାସ
ରିପୁମରଦନ ନାଥ ତୋତେ ମୋର ଆଶ ।୧୪୭।
ତୁ ଦେବ ଯୋଗେଶ୍ୱର ପ୍ରସନ୍ନେ କରତା
ଦୁଃଖୀଜନ ଉଦ୍ଧାରନ୍ତା ଅଭୟ ବରଦାତା ।୧୪୮।
ଯେ ତୋତେ ଆରାଧନା କରଇ ମନ ବଚନ କର୍ତ୍ତବ୍ୟେ
ତୁ ସଫଳ ଚିନ୍ତାମଣି ନାଥ ଅଟୁ ହୋ ବାସୁଦେବ ।୧୪୯।
କ୍ଷତ୍ରୀର ଜନ୍ମ ଯେ ହୁଅଇ ବଡକଷ୍ଟ
ତୋହୋର ପ୍ରସାଦେ ଫିଟଇ ଦେବ ସକଳ ସଂକଟ ।୧୫୦।
ମୁହିଂ ଅନାଥ ତୁମ୍ଭ ଯେ ଅନାଥଜନ ବନ୍ଧୁ
ଭଗତଜନମଣ୍ଡଳ ନାଥ ତୁ କୃପାଜଳ ସିନ୍ଧୁ ।୧୫୧।
ଅପାର ମହିମା ଦେବ ନ ସରଇ କହନ୍ତେ
ମୁଂ ତୋରେ ଶରଣ ଦେବ ଉଦ୍ଧରି ଧର ମୋତେ ।୧୫୨।
ଦଧି ମୀନ ଆଗମେ ଯାତ୍ରା ଅନୁକୂଳେ
ସର୍ବଶୁଭ ହୋଉ ସ୍ୱାମୀ ଯାତ୍ରାର ମଙ୍ଗଳେ ।୧୫୩।--୩୯୬

---

୧୫୩ । ଦଧିବାହନ ଯେ ଶୁଭ ଅନୁକୂଳେ
ସର୍ବଶୁଭ ହୋଉ ସ୍ୱାମୀ ଯାତ୍ରାର ମଂଗଳେ । (କ)
୧୫୩ । ଦଧିବାମନ ସୁମଣି ଅନୁକୂଳ ଘେନମା ଆଗମନେ
ସର୍ବମଙ୍ଗଳ ଶୁଭେ ସର୍ବଶୁଭେ ଚଳ ହୋ ଜନାର୍ଦ୍ଦନେ । (ଘ)



## ଶ୍ରୀକୃଷ୍ଣଙ୍କ ସହିତ ଭୀମାର୍ଜୁନଙ୍କର
## ମଗଧ ଦେଶେ ଗମନ

ମକର ମାସ ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାର
ରେବତି ନକ୍ଷତ୍ର ଭୋଗ୍ୟ ଅଟେ ସେ ଦିନର ।୧।
ତଇତିଲ ନାମେ କରଣ ସିଦ୍ଧି ନାମେ ଯୋଗ
ପଶ୍ଚିମ ଦିଗରେ ବିଜୟେ କରିଲେ ଶ୍ରୀରଙ୍ଗ ।୨।
ଅଡାଇ ପ୍ରହର ଯେ ହୋଇଅଛି ବେଳ
ରୋହିଣୀ ଚନ୍ଦ୍ରକୁ ଭୋଗ୍ୟ ପଶ୍ଚିମହିଁ ଅନକୂଳ ।୩।
ଅମୃତାକ୍ଷ ନାମେ କାଳ ଉତ୍ତର ଦିଗେ ଥିତି
ବାମ ପାରୁଶରେ ଯୋଗ୍ନି ମହାମାୟା ମୂରତି ।୪।
ତାରବାର ନକ୍ଷତ୍ର ଯେ ଶୁଭଯୋଗ ଦେଖି
ଗମିଲେ ପଶ୍ଚିମେ କୃଷ୍ଣ ଭୀମ ଫାଲଗୁନି ।୫।
ପ୍ରଥମ ଦିବସେ ଯେ ଚଳିଲେ ଦେବ ଜଗନ୍ନାଥେ
ଦୁତିୟ ଦିବସେ ପ୍ରବେଶ ପଶ୍ଚିମ ସୋମନାଥେ ।୬।
କାଶୀ କୁଣ୍ଡ ମଧ୍ୟେ ସ୍ନାହାନ ଦେବ ସାରି
ସୋମେଶ୍ୱର ଦେବତାନ୍ତ ବିନୟ ଭାବ କରି ।୭।
ଜୟ ତୁ ବିଶ୍ୱନାଥ ଚନ୍ଦ୍ର ଯେ ମଉଳି
ପ୍ରସନ୍ନେ ବରଦାତା ଜୟ ତୁ ଦେବ ଶୂଳୀ ।୮।
ଅନ୍ଧକ ବିଦାରଣ ତୁ ତ୍ରଇଲୋକ୍ୟ ଜନହିତେ
କାଳକୂଟ ବିଷ ବହିଲୁ ଦେବ ସଂସାର ନିମନ୍ତେ ।୯।
ତ୍ରିପୁର ଧଂସନ ନାଥ ବ୍ରହ୍ମାଣିର ମୋକ୍ତୁ
ପତ୍ନୀର ନିମନ୍ତେ ଦକ୍ଷଯଜ୍ଞଂ ବିଧ୍ୱଂସନ କଲୁ ।୧୦।
ଆପଣେ ଦୁଃଖ ପଡି ପରଲୋକଇଂ ଉଦ୍ଧରି
ଭଗତମଚ୍ଛଲ ନାଥ ଶରଣ ରକ୍ଷାକରି ।୧୧।
ବହୁତ ସ୍ତୁତି ସେ କଲେ ଯେ ରୁଦ୍ର ଦେବତାଂକୁ
ଶତ ସହସ୍ରେ ପ୍ରଲମ୍ବିତ କଲେ ସଦାଶିବ ଦେବଂକୁ ।୧୨।
ନାରାୟଣଂକ ବିନୟ ଦେଖିଣ ଦେବ ବିଶ୍ୱବାସୀ
ବୃଷଭ ଆରୋହଣ ବିଜୟେ ଦେବ କାଶୀ ।୧୩।

ଧବଳ ଶରୀର ପଞ୍ଚ ବଦନ ଯେ ଦେବ
ପଞ୍ଚଦଶ ନେତ୍ର ବିକାଶିତ ସଦାଶିବ ।୧୪।
ଭୀମ ଅର୍ଜୁନଙ୍କୁ ଦେଖି ହସିଲେ କପାଳୀ
ଜାଗର ଭୁବନଙ୍କୁ ବିଜୟେ କଲୁ କି ବନମାଳୀ ।୧୫।
କରପତ୍ର ଯୋଡ଼ଣ ବୋଲନ୍ତି ନାରାୟଣ
ରାଜସୂୟ ଯାଗ କରିବେ ଯୁଧିଷ୍ଠିର ଦେବ ରାଣ ।୧୬।
ନାରଦେ କହିଲେ ଯାଇଁ ଯୁଧିଷ୍ଠିର ଦେବଙ୍କୁ
ଜରାସନ୍ଧ ବନ୍ଦୀ କରିଅଛି ରାଜାଗଣମାନଙ୍କୁ ।୧୭।
ଭୀମ ଅର୍ଜୁନଙ୍କଇଁ ଆଉର ଆରଯ୍ୟଂ ହେଲେ ମୋତେ
ମଗଧ ଦେଶକୁ ଯାଉଅଛୁଂ ଜାର ବଧର ନିମନ୍ତେ ।୧୮।
ସଦାଶିବ ବୋଇଲେ ତାର ଜାଣନ୍ତି କି ମୃତ୍ୟୁଭେଦ
ଭୀମସେନେ ଅପହାର ହୋଇବ ଜରାସନ୍ଧ ।୧୯।
ଜଗନ୍ନାଥ ଅର୍ଜୁନ ନ ପଶିବନ୍ତି ତୁମ୍ଭେ ଯୁଦ୍ଧେ
ଭୀମସେନଙ୍କୁଇ ପେଷିବ ଜରାସନ୍ଧର ସନ୍ନିଧେ ।୨୦।
ମହାବଳୀ ବିଭୂତି ଲେପିଲେ ଭୀମସେନ କାୟେ
ଯେ ବିଭୂତି ଲାଗିଥିଲେ ତୋତେ ନାହିଁଟି ଅପଚୟେ ।୨୧।
ଜାରର ମୃତ୍ୟୁଭେ ଦତୋତେ କହିବଇଂ ମହାବଳ
ଆଦ୍ୟ ସଞ୍ଜାଉଂ ଜରାସନ୍ଧ ଅଟଇ ବେନିଫାଳ ।୨୨।
ଖଡ଼ଗ ନ କାଟଇ ଶକତ ହୋଅଇ ଚୂର
ଜଳ ଅନଳେ ଜାର ଯେ ନୋହୋଇ ଅପହାର ।୨୩।
ଯେହ୍ନା ତଦନ୍ତ କରି ଭୀମସେନ ତୁ ଜାଣିଥିବୁ
ଦୁଇଫାଳ କରି ଜାରକୁ ଚିରି ପକାଇବୁ ।୨୪।
ତେବେଟି ବଧ ହାଦେ ହୋଇବ ଜରାସନ୍ଧ
ଭୀମକଇଂ କହିଲେ ପ୍ରଭୁ ସଦାନନ୍ଦ ।୨୫।
ଭଲି ଯଗ୍ୟଂ ଗୋଷ୍ଠାୟେ କରିବେ ଯୁଧିଷ୍ଠିର
ବାବୁ ଆମ୍ଭନ୍ତ ନିମନ୍ତ୍ରକରି ଆସିବୁଟି କଣ୍ଠୀ ।୨୬।
କହିଣ ସଦାଶିବେ ଗଲେ ଅନ୍ତର୍ଦ୍ଧାନେ
ତହୁଂ ଚଳିଗଲେ ସ୍ୱାମୀ ନିରାକୁଳ ବନେ ।୨୭।

ସେ ବନ ଲଙ୍ଘିଗଲେ ଯୋଜନ ଦ୍ୱାଦଶ
ପଦ୍ମଦଳ ଦେଶେ ଯାଇଂ ହୋଇଲେ ପରବେଶ ।୨୮।
ସେ ପଦ୍ମଦଳ କଟକେ ରାଜା ପଦ୍ମକେଶରୀ
ତାହାକଇଂ ଜରାସନ୍ଧ ନେଇଅଛି ବନ୍ଦୀ କରି ।୨୯।
ସେ ଦେଶର ଜନ ପ୍ରଜା ହୋଇଛନ୍ତି ମହାକ୍ରୋଧୀ
ରାଜାର ଗୁଣ ସୁମରି ସମସ୍ତ ଜନେ କାନ୍ଦି ।୩୦।
ଜଗନ୍ନାଥେ ପୁଚ୍ଛାକଲେ ଜନନ୍ତ ହକାରି
ଯେତେକେ ବଡ ରାଜା ରାଜ୍ୟେ କ୍ରୋଧ କର୍ମେ କରି ।୩୧।
ସେ ବୋଇଲେ ଆମ୍ଭ ରାଜାର ନାମ ଅଟେ ପଦ୍ମକେଶରୀ
ଜରାସନ୍ଧ ରାଜା ତାଙ୍କୁ ନେଇଅଛି ଧରି ।୩୨।
ଗୋବନ୍ଦେ ଶୁଣିଂଲେ ଖ୍ରିମସେନର ବଦନ
ତୋହୋରେ ରକ୍ଷା ହୋଇବ ଯେ ସଂସାର କ୍ରୋଧମାନ ।୩୩।
ଯେତେବୋଲି ଦେବ ସେ ରାଜ୍ୟ ଲଙ୍ଘିଗଲେ
ମାନଭଙ୍ଗ ରାଜ୍ୟେ ଯାଇଂ ପ୍ରବେଶ ହୋଇଲେ ।୩୪।
ମାନଅର୍ଜୁନ ବୋଲି ତହିଂର ଦଣ୍ଡଧାରୀ
ତାହାକଇଂ ଜରାସନ୍ଧ ନେଇଛି ବନ୍ଦୀକରି ।୩୫।
ଅନେକ ରୋଦନ୍ତି ଯେ ତହିଂର ପ୍ରଜାମାନେ
ରହିଣ ପୁଚ୍ଛାକଲେ ସେ କୃଷ୍ଣ ଫାଲଗୁନେ ।୩୬।
ଯେତେ ବଡ ରାଜ୍ୟେ ବଇକୁଳ କେବଣ ଅର୍ଥେ
ବୋଇଲେ ଆମ୍ଭ ରାଜାକଇଂ ବନ୍ଦୀ କରି ନେଇଛି ମଗଧ
ଦେଶ ନାଥେ ।୩୭।
ଯେମନ୍ତେ ଜଗବନ୍ଧୁ ସେ ରାଜ୍ୟ ଲଙ୍ଘିଗଲେ
ନରସ୍ତକ ଦେଶେ ଯାଇଂ ପ୍ରବେଶ ହୋଇଲେ ।୩୮।
ମାଧବସେନ ବୋଲି ତହିଂର ଚକ୍ରବର୍ତ୍ତୀ
ତାହାକଇଂ ଧରି ନେଇଅଛି ମଗଧ ଦେଶର ଅଧିପତି ।୩୯।
ଅନେକ ବିକଳ ତହିଂ ହୋଉଅଛନ୍ତି ରାଜ୍ୟ ଲୋକେ
କୃଷ୍ଣକଇଂ ସମାସ୍ୟା ଦେଇ ନୁଆରନ୍ତି ମହାଶୋକେ ।୪୦।
ତାହାଂକ ବିକଳ ଦେଖି ମଧୁରିପୁ ପଚ୍ଚରନ୍ତି
ଅତି କାକୁସ୍ଥ ବଚନେ ନାରାୟଣଂକୁ ବିନୋୟି ହୁଅନ୍ତି ।୪୧।

ସେ ଦେଶ ଜିଣି ଦେବ ଗଲେକ ବହନ
ପ୍ରବେଶ ହୋଇଲେ ଯାଇଂ ହର ଉଦ୍ୟାନ ନାମେ ବନ ।୪୨।
ତହିଂର ରାଜା ହୋଇଛି ଭୀମସେନ ଚନ୍ଦ୍ରବଂଶ
ତାହାକୁ ଧରି ନେଇଅଛି ମଗଧ ଆଧିପତି ।୪୩।
ଅନେକ ବିକଳ ତହିଂ ହୋଉଛନ୍ତି ନଗ୍ର ଲୋକେ
କେହି ସମାସ୍ୟା କରି ଯେ ନୁଆରନ୍ତି ଶୋକେ ।୪୪।
ଆମ୍ଭର ରାଜାକଇଂ ଜରାସନ୍ଧ ନେଇଅଛି ଧରି
କାଲି ରାତିରେ ଯେ ପକାଇବ ଆହୁତିରେ ମାରି ।୪୫।
ଗୋବିନ୍ଦେ ଶୁଣିଲେ ଯେ ତହିଂ ଭୀମସେନର ମୁଖ
ତୋହୋରେ ସେ ପାରଯିବ ସେହିମାଂକର ଦୁଃଖ ।୪୬।
ସାଧୁ ସାଧୁ ମାରୁତି ହୋ ଜୀବନ ତୋର ଧନ୍ୟ
କେଉଣ ପୁଣ୍ୟେଣ ଜାତ ତୋତେ କଲେକ ଜନମ ।୪୭।
ଭୀମସେନ ବୋଇଲା ଦେବ ସରିଲାକ ଦିନ
ପୂର୍ଣ୍ଣ ଆହୁତି କାଲି ରାତ୍ରେଣ ବିଦ୍ୟମାନ ।୪୮।
ଯେଉଁଠାରୁ ମଘଦେଶ ଅଛଇ କେତେ ଦୂର
ଲୋକେ ବୋଇଲେ ଅଛଇ ଯୋଜନ ପନ୍ଦର ।୪୯।
ଭୀମସେନ ବୋଇଲା ଦେବ ନୋହିବାକ କିଛି କାର୍ଯ୍ୟ
ହସ୍ତିନା ପୁରକୁ ଗୃଳ ଯିବା ବାହୁଡି ଦେବରାଜ ।୫୦।
ଶୁଣିଣ ସାନନ୍ଦ ଯେ ଦେବ ଦାମୋଦର
ବିନତା ନନ୍ଦନକୁ ସୁମରିଲେ ଦେବ ଚକ୍ରଧର ।୫୧।
ଖଗେଶ୍ୱର ରହିଥିଲା ରମ୍ୟେକ ନାମ ଦ୍ୱୀପେ
ତକ୍ଷଣେ ପ୍ରବେଶ ହୋଇଲା ଗୋବିନ୍ଦଂକ ସମୀପେ ।୫୨।
ଗୋବିନ୍ଦେ ବୋଇଲେ ବାବୁ ପିଠିରେ ଘେନିମା ଆମ୍ଭଂକୁ
ଯେଉଁକ୍ଷଣି ଚଳଯାଅ ମଗଧ ଦେଶକୁ ।୫୩।
ନାରାୟଣଂକ ବଚନେ ତିନିଂକ ଘେନିଣ ଆକାଶେ
ଗ୍ରହ ଅର୍ଦ୍ଧମାନେ ଯାଇଂ ମିଳଇ ମଗଧ ଦେଶେ ।୫୪।
ମେଲଛ ପର୍ବତ ତଳେ ସେ କାବେରୀ ନାମେ ନଦୀ
ସରସ୍ୱତୀ ତ୍ରିବେଣୀ ଈଶାନ୍ୟ ଭାଗେ ଭେଦି ।୫୫।

ସେ ନଗରର କୂଳେଣ ମଗଧ ପର୍ବତ
ରାତ୍ରକାଳେ ପ୍ରବେଶ ତହିଂ ହୋଇଲେ ବନତାର ସୁତ ।୫୬।
ଗରୁଡ଼ କହଇ ସ୍ୱାମୀ ଯେଣୁ ସେ ମଗଧ ଦେଶ
ସେ ରାଜାର ଯଜ୍ଞଂଶାଳ ଯେଠାକୁ ଯୋଜନ ଦଶ ।୫୭।
ଗୋବନ୍ଦେ ବୋଇଲେ ତୁ ହୋ ଥାଅସି ଅନ୍ତର୍ଦ୍ଧାନେ
ରଜୂଣୀର ପ୍ରଭାତେ ବୁଝିବା ଆହୁତ ବଧାନେ ।୫୮।
ଭୀମ ଅର୍ଜୁନ ବଜଯେ ଖଗେଶ୍ୱର ପିଠି
ନାରାୟଣେ ଧରଲେ ଖୂପ ବ୍ରାହ୍ମଣ ରୂପ ଗୋଟି ।୫୯।
ରଜୂଣୀ ପ୍ରଭାତ ଯହୁଂ ହୋଇଲା ସେହିଠାବେ
ପକ୍ଷୀରାଜ ପିଠିରୁ ଉତୁରଲେ ବାସୁଦେବେ ।୬୦।
କାବେରୀ ଗଙ୍ଗାରେ ସ୍ନାହାନ ସାରି ଦେବହରି
ପଥୁକା ବ୍ରାହ୍ମଣମାନନ୍ତ ଦେଖିଲେ ବାରତା ପଚ୍ଛରି ।୬୧।
ଆହୋ ମଗଧେଶ୍ୱର ରାଜ ବଜେ କରଅଛୁ କାହିଂ
ବ୍ରାହ୍ମଣେ ବୋଇଲେ ଯଜ୍ଞଂଶାଳେ ଅଛନ୍ତ ଆରୋହୀ ।୬୨।
ଆଜ ରାତ୍ର ହୋଇଲେ ହୋଇବ ପୂର୍ଣ୍ଣ ଯେ ଆହୁତ
ରାଜାମାନନ୍ତ ବଳଦେବ ମଗଧେଶ୍ୱର ନୃପତ ।୬୩।
ଗରୁଡ଼ ପିଠିରୁ ଉତୁରଲେ ଭୀମ ଯେ ଅର୍ଜୁନ
କାବେରୀ ନଦୀରେ ସାରି ନତ୍ୟକର୍ମ ବଧାନ ।୬୪।
ଜପମନ୍ତ୍ରେ ବସିଛନ୍ତ ସେ ନଗର ଭିତରେ
ଆଗ୍ୟାଂ ମାଗି ତୋଷକଲେ ଦେବ କରତାରେ ।୬୫।
ଦାନ ମାଗି ବ୍ରାହ୍ମଣେ ଆସୁଛନ୍ତ ଗହଳେ
ତାହାଂକୁ ଗୃହିଂ ପଚ୍ଛରଲେ ଦେବକୀର ବାଳେ ।୬୬।
ଆହୋ ବ୍ରାହ୍ମଣେ ଜରାସନ୍ଧ ରାଜା ଯେ ବସିଛନ୍ତ ଆହୁତ
ଆମ୍ଭେ ଯିବାକଇଂ ଅଛୁ କ ଭୟେ ଭ୍ରାନ୍ତ ।୬୭।
ବ୍ରାହ୍ମଣେ ବୋଇଲେ ତୁମ୍ଭେ ଶୁଣିମା ଦ୍ୱିଜବର
ପ୍ରଥମ ଦ୍ୱାରେ ରହିଛନ୍ତ ରାଜାଂକ କୁମର ।୬୮।
ଶୋଧା ଘେନଇ ସେ ଅନେକହିଂ ବଶ୍ୱାସେ
ଶହସ୍ର ଥିଲେ ବ୍ରାହ୍ମଣନ୍ତ କରଇ ପ୍ରାଣ ନାଶେ ।୬୯।

ଦ୍ୱିଜ ଦ୍ୱାରେଣ ହାଟେ ତାର ଭେରୀ ଯେକ ଥାଇ
ଶତ୍ରୁ ଉପଗତ ହୋଇଲେ ସେହୁ ରବେକ ଛୁଡ଼ଇ ।୭୦।
ଶବଦ ଶୁଣିଲେ ଶସ୍ତ୍ର ଧରଇ ଜରାସନ୍ଧ
ଯାଗଶାଳୁଂ ବାହାର ହୋଇଲେ ସେ ଅବଶ୍ୟ କରଇ ଦ୍ୱନ୍ଦ ।୭୧।
ତ୍ରିଜ ଦ୍ୱାରେଣ ତାର ଶିମୁଳୀ ବୃକ୍ଷେକ ଅଚ୍ଛି
ସେ ବୃକ୍ଷରେ ପତ୍ର ଫୁଲ ଫଳ ନ ଥାଇ ଯେ କଚ୍ଛି ।୭୨।
ଶତ୍ରୁ ଉପଗତ ଯେ ହୋଅଇ ଯେତେବେଳେ
ଅଦଭୁତେ ପତ୍ର ଫୁଲ ଫଳ ହୁଅଇ ତହିଂରେ ।୭୩।
ଜାଣଇଂ ଜରାସନ୍ଧ ଶତ୍ରୁର ଉପଗତ
ଶସ୍ତ୍ର ଧଇଲେ ତାକୁ ଜିଣନ୍ତା ନାହିଂଟି ତ୍ରିଜଗତ ।୭୪।
ଚତୁର୍ଥ ଦ୍ୱାରେ ତାର ଗଧ ଗୋଟାଯେକ ଥାଇଂ
ମହାଯାଗେ ବସିଲେ ମଗଧେଶ୍ୱର ଯାଇଂ ।୭୫।
ଶତ୍ରୁ ଉପଗତ ହୋଇଲେ ଗଧ ଦିଅଇ ରବ
ଜାଣିଣ ଶସ୍ତ୍ର ଧର ଆସଇ ମଗଧେଶ୍ୱର ଦେବ ।୭୬।
ଯଦ୍ୟପି ରୁଦ୍ର ବ୍ରହ୍ମା ଇନ୍ଦ୍ର ଆସିବେ ଚକ୍ରଧାରୀ
ହସ୍ତେ ଶସ୍ତ୍ର ଥିଲେ ଜାରକୁ କେହି ନୋହେ ସରି ।୭୭।
ପଥୁକଂକ ମୁଖୁ ଯେସନେକ ବାକ୍ୟ ଶୁଣି
ଖଗେଶ୍ୱରେ ହକାରଲେ ଦେବ ଚକ୍ରପାଣି ।୭୮।
ସମସ୍ତ ଶସ୍ତ୍ରମାନ ଥୋଇଲେ ଗରୁଡ଼ ଉପରେ
ଆମ୍ଭର ସଲଖରେ ତୁ ଉଡୁଥିବୁଟି ଉପରେ ।୭୯।
ଯେତେବେଳେ ଯେଉଂ ଶସ୍ତ୍ରେ ହୋଇବ ଆମ୍ଭ କାର୍ଯ୍ୟ
ତତକ୍ଷଣେ ଆମ୍ଭଂକୁ ଆଣିଦେବୁ ପକ୍ଷୀରାଜ ।୮୦।
ଛଦ୍ମରୂପ ଘୁଡଲେ ଭୀମ କୃଷ୍ଣ ଫାଲଗୁନ
ବ୍ରାହ୍ମଣ ସରୂପ ସେହୁ ଧଇଲେ ଜଣ ତିନ ।୮୧।
ନିତ୍ୟକର୍ମ ବିଧାନେ ଦ୍ୱାଦଶ ଟିକା ଶ୍ରୀବତ୍ସ
ଉତ୍ତର ପଇତା ଶୋଭବନ କଣ୍ଠରେ ରୁଦ୍ରାକ୍ଷ ।୮୨।
ଲମ୍ବିତ ଜୁଡ଼ା କଟିରେ ବିକଚ୍ଛ ବସନ
ବେଦମନ୍ତ୍ର ପୋଥି କାଖେ ଧାରଣ ଆଧାନ ।୮୩।

ଶ୍ରୀହସ୍ତେ କୁଶବନ୍ଧ କାଖେ ବେଦ କରଣ୍ଡି
ସୁସଞ୍ଚ ଚମ୍ବାପାଦୀ ଗଣ୍ଡୁ ଆସନ ଯୋଗ ପିଣ୍ଡି ।୮୪।
କଣ୍ଠେଣ ତୁଳସୀମାଳ ଗୋପ୍ୟାନ ଦୋହର
ଶ୍ରୀକରେ ଜପାମାଳୀ ପ୍ରୋକ୍ଷଣୀ ପାବକ ସୋର ।୮୫।
କଷା ବସନ ଯେ ପିଙ୍ଗଳ ବର୍ଣ୍ଣ ତାଂକ କାୟେ
ସରୂପ ବକାଶନ୍ତ ନିର୍ଧୂମ ଅଗ୍ନି ପ୍ରାୟେ ।୮୬।
ରୁଦ୍ର ମନ୍ତ ଜପ ଛନ୍ଦ୍ରମେ ବେଦ ଗୃର
ରଜାଂକୁ ଭେଟିବା ଯାଇଂ ବେଳ ସାତ ଘଡ଼ି ।୮୭।
ଯେମନ୍ତେ ପ୍ରଥମଦ୍ୱାରେ ଯାଇଂ ହୋଇଲେ ପ୍ରବେଶ
ଜାରପୁତ୍ର ସହଦେବଂକୁ ବାଞ୍ଛା କଲେକ ଆଶିଷ ।୮୮।
ପିତାମାତ୍ତ ବପ୍ରେ ଯାଇଂ ବସିଲେ ଆସନେ
ସହଦେବନ୍ତ କଲ୍ୟାଣ କଲେ ବେଦ ଆଧାନେ ।୮୯।
ମନ୍ତ୍ର ଆଧାନ ଦେବ ସେ ପ୍ରତକ୍ଷେ ବାସୁଦେବ
ବେଦମନ୍ତ ପଢନ୍ତେ ବ୍ରହ୍ମା ତାହାଂକୁ କି କ୍ଷମ ହୋଇବ ।୯୦।
ଜାରର ନନ୍ଦନ ସହଦେବ ତହିଂ ବେଦଧ୍ୱନି ଶୁଣି
ଆତ୍ମା ବଢ଼ଂସିଲ ତାର ସୁରଭ ପୁଣ୍ୟ ଜାଣି ।୯୧।
ସାଧୁ ସାଧୁ ବପ୍ରେ ହୋ ତୁମ୍ଭର ଜୀବନ୍ତ
ମାନବ ଜନ ପ୍ରାୟେ ନ ଦଶ ମୋତେ ତନ୍ନମୂର୍ତ୍ତି ।୯୨।
ପିତା ମୋର ସଙ୍କଳ୍ପ ଅଛି ଉତ୍ତମ କର୍ମ ଯାଗ
ନିପୁଣ ଭଜ ଧାତା ଅବା କଲ୍ପକ ଅନୁରାଗ ।୯୩।
ପଞ୍ଚ ଦଶ ଦିବସ ହେଲା ମୁଂ ଅଛଇ ଯେତ୍ହ ଦ୍ୱାରେ
ବେଦ ପରୀକ୍ଷ ହେନିଲ ମୁଂ ଲକ୍ଷ ଦ୍ୱିଜବରେ ।୯୪।
ଯେସନେକ ବେଦଗ୍ୟାଂ ବ୍ରାହ୍ମଣ ଦେଖିଲ୍ୟ ମୋର ନାହିଂ
ପ୍ରଶଂସି ଧାତିକାରେ କୁମରମଣି ଉଠିଲା ବେଗ ହୋଇଂ ।୯୫।
ରତ୍ନଝରା ଯେତ୍କ ହେନ ସେ ଜରାସନ୍ଧର ଆତ୍ମଜା
ବ୍ରାହ୍ମଣଂକ ପାଦ ପଖାଳ କଲ୍ପକ ଦିବ୍ୟ ପୂଜା ।୯୬।
ଧନ୍ୟ ଧନ୍ୟ ବ୍ରାହ୍ମଣେ ହୋ ତୁମ୍ଭେ ମନ୍ତ୍ରେଣ ମହାଭାଗ୍ୟଂ
ଦାନ ବେଳ ନ ଜାଣିଲ ଯେତ୍ତେକ ସବର୍ଗ୍ୟଂ ।୯୭।

ଦାନର ବେଳ ହାଦେ ସଉଲାନ ହୋ ଦ୍ୱିଜବରେ
ଆଜକ ବିଶ୍ରାମି ଥିବା ଯେ ମୋହୋର ସଙ୍ଗତରେ ।୯୮।
ଭୋଜନ ଯୋଗାଡ଼େ ଆଜ କରାଇବ ସନ୍ତୁଷ୍ଟ
କାଲି ପ୍ରଭାତରେ ଧର୍ମବେଳେ ମଗଧେଶ୍ୱରକଇ ଭେଟ ।୯୯।
ଦାନବେଳ ସଉଲାନ ଆହାର୍ତ୍ତିକ ବେଳ
ଯଦ୍ୟପି ଗ୍ରାମକୁ ଯିବ କାର୍ଯ୍ୟ ହୋଇବ ନିଷ୍ଫଳ ।୧୦୦।
ବ୍ରାହ୍ମଣଂକୁ ଅନେକ ପ୍ରଶଂସା ବୋଲ ବୋଲି
ଚରଣେ କୁମର ମଣି ଶୁଭଲା ଗଡ଼ଘାଲ ।୧୦୧।
କରତଳ ପ୍ରସାରି ଯେ ବୋଲନ୍ତ ନାରାୟଣ
ଯେ ମଗଧ ଦେଶେ ଠାକୁର ହୁଅ ତୁ ଆମ୍ଭର କଲ୍ୟାଣ ।୧୦୨।
ଆମ୍ଭେ ତ ଆସିଅଛୁ ଅପାର ଦୂରୁ ଗମି
ରାଜାକୁ ଭେଟିବୁ ବାବୁ ଦ୍ୱାର ଗ୍ରାଡ଼ ଭୂମି ।୧୦୩।
ଧାର୍ମିକ ବିବେକୀ ତୁ ଯେ ମହତ ପୁଣ୍ୟଜନ
ଜରାସନ୍ଧକୁ ନ ଭେଟିଲେ ଆମ୍ଭର ନାହିଂନା ଭୋଜନ ।୧୦୪।
ଯଦ୍ୟପି ଆମ୍ଭନ୍ତ ବାବୁ ଦ୍ୱାର ନ ଗ୍ରାଡ଼ିବୁ
ରାଜାକୁ ନ ଦେଖିଲେ ଆମ୍ଭେ ଭୋଜନ ନ କରିବୁ ।୧୦୫।
ଆମ୍ଭେ ବିଭୋଖିତ ବାବୁ ଅଛୁ ମହା କ୍ଷୁଧାଆର୍ତ୍ତି
ଧର୍ମନାଶ ଯିବଟି ଯେବେ ଆମ୍ଭନ୍ତ ନ ବର୍ତ୍ତି ।୧୦୬।
ଯେତେକ ସଂକଳ୍ପ ଆମ୍ଭେ କରିଅଛୁ ବ୍ରତ
ରାଜାର ମୁଖ ଦେଖିଲେ ଆମ୍ଭର ଭୋଜନ ଯୁଗତ ।୧୦୭।
ସହଦେବ ବୋଇଲା ଠାକୁରଂକର ଆଗ୍ୟାଂ ଯେନ୍‌ହେ ମୁକୁ
ମହାଭୟେ କରଇ ଗୋସାଇଂ ତୁମ୍ଭଂକୁ ବୋଲିବାକୁ ।୧୦୮।
ନାରାୟଣେ ବୋଇଲେ ତୋତେ ଯେସନେକ ଆଗ୍ୟାଂ
ମହାଗୁରୁ ବଚନ ତୁ କ କରିବୁ ଅବଗ୍ୟାଂ ।୧୦୯।
ଶ୍ରୀକୃଷ୍ଣ ବୋଇଲେ ତୋ ଯହିଂକ ମନବାଧା
ତୁ ଅବା ସଂକୋଚ କରୁ ବାବୁ ଦେବୁ ଆମ୍ଭେ ଶୋଧା ।୧୧୦।
ବାବୁ, ବ୍ରହ୍ମକର୍ମମାନ ନେଇ ପାରିବୁ କ ଉତରକୁ
ଶହସ୍ର ଥିଲେ ତୁ ବିରୋଧ କରନ୍ତୁ ଆମ୍ଭଂକୁ ।୧୧୧।
*

ବସ୍ତ୍ର ଫେଡ଼ଣ ଦେବ ହରିଲେକ ତହିଁ ଝାଡ଼
ଦେଖିଣ କୁମର ଯେ ମନରୁ ଭ୍ରାନ୍ତ ଗୁଡ଼ ।୧୧୨।
ଦଧିବାବନ ସୁମର ଯାଅ ଯା ପଣ୍ଡାସେ
ଅମୃତ ଦୃଷ୍ଟିରେ ଗୃହ୍ନ୍ତଂ ଭୁମ୍ବନ୍ତ ମଗଧେଶ୍ୱର ସାସେ ।୧୧୩।
ପ୍ରଥମ ଦ୍ୱାରକୁ ଦୁଜ ଦ୍ୱାର ଯୋଜନେକ ଅନ୍ତର
ଗୋବନ୍ଦେ ପୃଚ୍ଛାକଲେ ଭୀମ ଅର୍ଜୁନ ଆଗର ।୧୧୪।
ପ୍ରଥମେଣ ଭେରୀ ଦୁଷ୍ଟଯୈଣ ଶିମୂଳୀ ତକେଣ ଗର୍ଦ୍ଦଭ
କେ କେବଣ ଦ୍ୱାର ହୋ ନିବର୍ତ୍ତି କରିବ ।୧୧୫।
ଭୀମସେନ କହିଲା ଶ୍ରୀ ଜଗନ୍ନାଥଂକର ଆଗେ
ପ୍ରଥମ ଦ୍ୱାର ଭେରୀ ହୋଇଲା ମୋର ଭାଗେ ।୧୧୬।
ଅର୍ଜୁନ ବୋଇଲେ ଦେବ ଶୁଣିମା ବନମାଳୀ
ଦୁଜ ଦ୍ୱାର ମୋର ଭାଗ ବୋଇଲା ଶିମୂଳୀ ।୧୧୭।
ଦୁହେଂ ତୁଷ୍ଟ ହୋଇଲେ ଦୁଇ ଦ୍ୱାର ବାଛି
ଆମ୍ଭର ଭାଗେ ଗର୍ଦ୍ଦଭ ହୋଇଲା ବୋଇଲେ ଶ୍ରୀବଚ୍ଛି ।୧୧୮।
ଚଳନ୍ତି ତିନିବୀରେ ପବନୁଂ ବେଗ ହୋଇ
ଦୁଜ ଦ୍ୱାରେ ଭେରୀ ଭେଟିଲେକ ଯାଇଂ ।୧୧୯।
ଭୀମସେନର ବଦନ ଗୃହ୍ନେଂଲେକ ଅଚ୍ୟୁତ
ଭେରୀ ବାଦ୍ୟ କରିବଟି ସେହୁହା ନିବର୍ତ୍ତି କର ତୁରିତ ।୧୨୦।
ଶବ୍ଦୁ ଉପଗତ ଦେଖିଣ ମହାଭେରୀ
ଗହ ଗହ ଶବଦ ଯେ କରି ବିକାଶୁଚି ରଡ଼ ।୧୨୧।
ପବନହୁଂ ବେଗେଣ ଭୀମସେନ କ୍ଷେପି
ଧାଡ଼ିକାରେ ମୁଥେକ ମାଇଲା ଭୀଷ୍ମରୂପୀ ।୧୨୨।
ଭାଜଣ ଭେରୀ ତହିଂ ହୋଇଲା ମସୀଗୁଣ୍ଡ
ମୁକତ ଗତି ପାଇଲା ଭେରୀ ଭେଦିଲା ବ୍ରହ୍ମାଣ୍ଡ ।୧୨୩।—୪୨୯।



# ଭେରୀର ପୂର୍ବ ଚରିତ ବର୍ଣ୍ଣନ

ବଇବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଂକ
ଅମୃତ ମିଶ୍ରିତ ମୁନି ହେ କହିଲ ତୁମ୍ଭେ ବାକ ।୧।
ଯେଉଁ ଭେରୀର ଚରିତ ଯେ ବଡାଇ ଦୁର୍ଲ୍ଲଭ
ଅଜୀବ ହୋଇ କମ୍ପେ ଅଦଭୁତେ ଦିଅଇ ରବ ।୨।
ଯେଉଁ ଅସମ୍ଭବ ବାଦ୍ୟ ଯେଉଁ ଅପର ହାଥେ ବାଜ
ଭବିଷ୍ୟ ଗ୍ୟାଂତା ହୋଇ କମ୍ପେ ଅଦଭୁତେ ଗଳଗାଜ ।୩।
ଇତିଶ୍ରୀ ବିଷ୍ଣୁ ପୁରାଣ ଯେଉଁ ମହାଭାରଥ ବାଣୀ
ନିନ୍ଦାକର ନାଶଯାନ୍ତି ଅଗ୍ୟାନ ମୂଢ ପ୍ରାଣୀ ।୪।
ଅଗସ୍ତି ବୋଇଲେ ହୋ ଶୁଣିମା ଯୋଗେଶ୍ୱର
ତହ୍ନାଂର ଚରିତ ଶୁଣି ପାତେକ ଧ୍ୱଂସ କର ।୫।
ବଦୟନ୍ତି ଅଗସ୍ତି ଯେ ପଣ୍ଡିତ ମହାଗ୍ୟାଂତା
ଶୁଣ ହୋ ସାବଧାନେ ଭେରୀର ଆଦିଜନ୍ମ କଥା ।୬।
ଯେଉଁହି ତ୍ରେତୟା ଯୁଗେ ହିରଣ୍ୟଗର୍ଭ ପୁରେ
ମଦନିକା ଅପଛରୀ ଥାଇ ସେ ସ୍ୱର୍ଗରେ ।୭।
ଅତିଯୁ ସୁନ୍ଦରୀ ସେ ରମ୍ଭା ତୁଲ୍ୟ ଜାଣି
ଯୁବାକାଳେ ତାଙ୍କୁ ଯେ ଭଜିଲେ ବଜ୍ରପାଣି ।୮।
ବାସେବ ଦେବତା ତାହାଙ୍କୁ ବଡାଇ ବଡ ପ୍ରୀତି
ଭୟେଣ ବିଦ୍ୟାଧରେ ଯାଇ ନୁଆରନ୍ତି ତାର କତି ।୯।
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ସଉର ବାସର
ବିଶାଖା ନାମେ ନକ୍ଷତ୍ର ଅଛେ ସେ ଦିନର ।୧୦।
ବାଣିଜ୍ୟ ନାମେ କରଣ ସିଦ୍ଧି ନାମେ ଯୋଗ
ତ୍ରିଦଶ ଲୋକ ବସିଲେ ସ୍ୱର୍ଗ ମଧ୍ୟଭାଗ ।୧୧।
ଦିବ୍ୟ ଅଲଂକାର ହୋଇ ସେଦିନ ମଦନିକା
ଆକାଶ ଗଂଗାକୁ ସ୍ନାହାନ କରିଗଲା ଯେଉଁକା ।୧୨।
ସ୍ନାହାନ ସାରି ତହୁଁ ନଳ ଯେ କୁବେର
କଣ୍ଠେ ଗିରି ତଳେ ତାକୁ ଭେଟିଲେ ବାଟରେ ।୧୩।

ଦେଖିଲେ ଜନ ମନୁଷ୍ୟ ନାହିଁନ୍ତ କେହି ପାଶେ
ସେ କନ୍ୟାକୁ ଓଗାଳିଲେ ସୁରତ ପରିହାସେ ।୧୪।
ସେ କନ୍ୟା ନଳକୁବେରଙ୍କ ଅମାନ୍ତ ବଚନ ଶୁଣି
ଆଜ୍ଞେ ହୋଇ ସ୍ୱାହାନକୁ ଗଲାକ ତରୁଣୀ ।୧୫।
ନିର୍ଜନ ଦେଖିଣ ତହୁଁ ସେ ନଳକୁବେରେ
କୋଳ କରି ଧଇଲେ ତାକୁ ମଦନ ଆତୁରେ ।୧୬।
କୋପେଣ ସୁନ୍ଦରୀର ବର୍ତ୍ତିଲା ବଇରାଗ
ବୋଇବ ଯେକ ଛାଡ଼ିଲା କର୍ମିଲା ଅମର ସ୍ୱର୍ଗ ।୧୭।
ଭଟ୍ୟେଣ ଛାଡ଼ିଲେ ସେ ଯେ କୁବେରର ପୁତ୍ର
ରାଗେଣ ଶାପ୍ୟ ଦିଲେ କୋପ କରିଣ ବହୁତ ।୧୮।
ତୁମ୍ଭେ ଯେ ବେଶ୍ୟା ଲୋ ଅଟ ନୀଚ ସ୍ତିରୀ
ଯାଚକୀ ଚଂଚଳା ତୁମ୍ଭେ ସମସ୍ତଂକୁ ଆଶ୍ରେ କରି ।୧୯।
ନ ବିଚାରି ରାବେକ ତୁ ଦେଲୁ ଅପ୍ରମିତେ
ଭେରୀ ବାଦ୍ୟ ପ୍ରାପ୍ୟେକ କର୍ମିଲା ପ୍ରେ ତିନି ଜଗତେ ।୨୦।
ମର୍ତ୍ତ୍ୟେ ଜାତହୋଅ ତୁ ଲୋ ଭେରୀ ରୂପ ହୋଇ
ମଗଧଦେଶ ରାଜା ଜରାସନ୍ଧ ଦ୍ୱାରେ ଥିବୁ ରହି ।୨୧।
ଶତ୍ରୁ ପ୍ରାପ୍ୟେ ଦୁହିଁ ଅଦଭୁତେ ଦେଲୁ ରାବ
ଶତ୍ରୁ ଦୃଶ୍ୟ ହୋଇଲେ ତୋତେ ହୋଉ ଏମନ୍ତ ସ୍ୱଭାବ ।୨୨।
ଶୁଣିଣ ବିଷାଦ ଯେ ହୋଇଲା ଅପସରୀ
ନଳକୁବେରଙ୍କୁ ବୋଇଲା ବିନୟେ ଭାବ କରି ।୨୩।
ଅଦୋଷ ଶାପ୍ୟ ମୋତେ ଦିହିଲ ଅନମିତେ
ମୋକ୍ଷକଇଂ କାରଣ ଯେ କହିବାକ ମୋତେ ।୨୪।
ବିକଳ ଦେଖି ଦୟା କଲେକ ନଳକୁବେରେ
ଦ୍ୱାପର ଯୁଗରେ ଥିବୁ ତୁ ଜରାସନ୍ଧର ଦ୍ୱାରେ ।୨୫।
ପାଣ୍ଡବେନ୍ତ ଯେବେ ବିଜେ କରିବେ ଦେବ ଚକ୍ରଧାରୀ
ଗୋପ୍ୟେଣ ଯାଉଥିବେ ଜରାସନ୍ଧକଇଂ ଅପହରି ।୨୬।
ସେ ତୋତେ ଦୃଶ୍ୟ ହୋଇବେ ବଇରିତା ପଣେ
ଶତ୍ରୁ ଦେଖି ତୁହି ରାବ କରିବୁଟି ଅକାରଣେ ।୨୭।

ବୃକୋଦର ପ୍ରହାର କରିବାକ ତୋତେ ବଜ୍ରମୁଥେ
ହୋଇବୁ ଶତଚୂର୍ଣ୍ଣ ତାହାର ମୁଥଘାତେ ।୨୮।
ଶାପ୍ୟକୁ କାରଣ ତୋତେ କରିବେ ଜଗତ ପତି
ପ୍ରତକ୍ଷେ ଦୃଶ୍ୟ ତୋତେ ହୋଇବେ ନାରାୟଣ ମୂରତି ।୨୯।
ଶାପ୍ୟରୁ ମୁକତ ତୁ ହୋଇବୁ ତେତେବେଳେ
ସ୍ୱେହ୍ଭ ରୂପ ଧରି ଆସିବୁ ଅମର ମଣ୍ଡଳେ ।୩୦।
ନଳକୁବେର ଶାପେ ଅସୁର ପୁରେ ଥିଲା
ନାରାୟଣଂକ ଦ୍ରଶନେ ସେ ମୁକତି ଲଭିଲା ।୩୧।
ଅମର ସ୍ୱର୍ଗେ ପ୍ରବେଶ ହୋଇଲା ଅପକ୍ଷରୀ
ପୁଣିହ୍ଭଂ ସେ ହୋଇଲା ବାସବ ମନୋହାରୀ ।୩୨।—୪୭୧।



## ଶିମୂଳୀ ବୃକ୍ଷର ବୃତ୍ତାନ୍ତ

ସ୍ୱେଥୁ ଅନନ୍ତର ବ୍ୟଗ୍ରେ ଚଳନ୍ତି ବିପ୍ର ତିନି
ଦ୍ୱିଜଦ୍ୱାରୁ ଜଣିଗଲେ କୃଷ୍ଣ ଭୀମ ଫାଲଗୁନି ।୧।
ଯୋଜନେକ ଅନ୍ତରେ ଆଉର ଯେଉଂ ଦ୍ୱାର
ଶିମୂଳୀକୁ ଦେଖିଲେ ଅତ୍ୟନ୍ତ ବିସ୍ତାର ।୨।
ମୂଳ ଶାଖା ପ୍ରାପ୍ୟେକ ସେ ବୃକ୍ଷ ହୋଇଥିଲା
ଶତ୍ରୁ ଉପଗତ ଦେଖି ଫଳ ପୁଷ୍ପ୍ୟ ବରଷିଲା ।୩।
ଗୋବିନ୍ଦେ ସେ ବୃହ୍ଭଂ ଆଗ୍ୟାଂ ଦ୍ଦଲେ ଅର୍ଜୁନଙ୍କୁ
ଦେଖ ହୋ ଧନୁର୍ଜଯେ ଶିମୂଳୀ ବୃକ୍ଷକୁ ।୪।
ଧ୍ୟାନେଣ ଆକାଶକୁ ଯେ ବୃହ୍ଭଂଲା ଫାଲଗୁନି
ଗରୁଡ ପ୍ରବେଶ ହୋଇଲା ସର୍ବଶସ୍ତ୍ର ଘେନି ।୫।
ଗାଣ୍ଡିବ ଧନୁ ଧରି ବୀର ଯେ ଅର୍ଜୁନ
ବାବଲ ଶରେକ ପାଥ ବାନ୍ଧିଲେ ବହନ ।୬।
ନାରାଜ ପଡିଲା ଯାଇଂ ଯେ ଶିମୂଳୀ ବୃକ୍ଷ ମୂଳେ
ବୃକ୍ଷକଇ ଉପାଡି ନେଇ ପକାଇଲା ମହାବଳେ ।୭।

ପବନ ଅସ୍ତ୍ର ପେଷିଲେ ନେଲ୍କ ଉଡାଇ
ସମୋଦ୍ର ଭିତରେ ତାହା ପକାଇଲ୍ ନେଇ ।୮।
ଏହା ଶୁଣି ପୁଚ୍ଛାକଲେ ମନୁ ମହାରଜା
ଅଗସ୍ତିଂକ ପାଦପଦ୍ମେ କଲ୍କ ଦ୍ରବ୍ୟ ପୂଜା ।୯।
ସେ ଶିମ୍ଳୀର ବାରତା କେମନ୍ତେ ଅଛଇ ମୁନି ହେ
ଏ କଥା ଲଗିଲ ମୋତେ ବଡାଇ ସନ୍ଦେହେ ।୧୦।
ଶିମ୍ଳୀ ବୃକ୍ଷ ତ ମୃତ୍ତୁପିଣ୍ଡ ହୋଇଥିଲ୍
ଶମ୍ଭୁ ଦେଖିଣ କେନ୍ହେ ସେ ଜୀବନ ପାଇଲ୍ ।୧୧।
ଏହ୍ୱିତ ମୁନି ହେ ବଡାଇ ଆଶ୍ଚିଜର କଥା
ବିସ୍ତାରେ କହ୍ୱିବା ମୋତେ ଏଥିର ବ୍ୟବସ୍ତା ।୧୨।
ଶୁଣ ହୋ ମନୁ ପୁରୁଷ ବଦନ୍ତି ଅଗସ୍ତି
ସେ ଶିମ୍ଳୀ ବୃକ୍ଷର ଯେ ଏସନେକ ଖ୍ୟାତି ।୧୩।
ଆହୋ ସତ୍ୟଯୁଗେ ଅବନ୍ତୀ ଭୁବନେ ବଇଧୃତ ନାମେଣ ଗନ୍ଧର୍ବ
ତାହାର ପୁତ୍ରର ନାମ ଅଛଇ ସଦାଶିବ ।୧୪।
ଅନ୍ଧେକ ନାମେଣ ଯେ ଏକଇ ଋଷିଏ
ତାହାରତହ୍ୱିଂ ଥିଲ୍ କାମଧେନୁ ଯେ ଗୋଟିଏ ।୧୫।
ସେ ସଦାଶିବ ଗନ୍ଧର୍ବ ଯେ ଦେଖିଲ୍ ସେହୁ ଗାଈ
ବନସ୍ଥିଂ ଚୋରଇ ନେଲ୍କ ସ୍ନେହ ବନ୍ଧି ।୧୬।
ଗାଈ ନେଇ ଚୋରଇ ରଖିଲ୍ ନିଜ ପୁରେ
ଲେଉଡ ନ ପାଇଲେ ମୁନି ସାତ ବରଷରେ ।୧୭।
ଗାଈ ନ ପାଇଣ ମୁନି କୋପେଣ ଶାପ୍ୟଦଲ୍
ଯେ ଗାଈକ ମୋହୋର ଚଉର୍ଯ୍ୟ କରନେଲ୍ ।୧୮।
ମୋହୋର ଶାପ୍ୟହ୍ୱିଂ ହାଦେ ପ୍ରତକ୍ଷେ ତାକୁ ହୋଉ
ଯମ ଦେବତାହ୍ୱିଂ ତାକୁ ଅନେକ ଶାସ୍ତି ଦେଉ ।୧୯।
ଋଷିର ଶାପ୍ୟେ ସେହୁ ହୋଇଲ୍ ଅବସାନ
ଯମଦେବତା ଦେଖି ତାକୁ କଲ୍କ କୋପମନ ।୨୦।
କାଳ ବିକାଳନ୍ତ ଗଇ ବୋଇଲ୍ ଯମବୀର
ମୋହୋର ଛାମୁକୁ ନ ଆଣରେ ମୋତା ଗୋରୁଚୋର ।୨୧।

ଗାଣ୍ଡିକ ବାହ୍ମଣ ଯେ ଯେ ଆଣିଲା ଗୁଞ୍ଜ ମାର
ଯେହ୍ନାକୁ ଗୁଞ୍ଜ ମାର ଶିମ୍ବୂଳୀ ବୃକ୍ଷ କୋଳକର ।୨୨।
ନାଶକର ଆଗ୍ୟାଂଯେ ସେ ଚଣ୍ଡ ଯେ ପ୍ରଚଣ୍ଡେ
ଶିମ୍ବୂଳୀ ବୃକ୍ଷ କୋଳ କରାଇଲେ ତାର ପିଣ୍ଡେ ।୨୩।
ଗୁଞ୍ଜ ମାରନ୍ତେଣ ବିଦାର ହୋଇଲା ତାର ପିଠି
ସେଧିର ବାହାର ହୋଇଲା ସେ କଣ୍ଟାମାନ ଫୁଟି ।୨୪।
ବିକଳରେ ରାବେକ ସେ ହଲାକ ବିଦ୍ୟାଧର
ଶିମ୍ବୂଳୀ ବୃକ୍ଷକୁ ଶାପ ଦିଲାକ କୋପଭର ।୨୫।
ଆରେ ଆକାଶର ବୃକ୍ଷ ହୋଇ ତୋର ଯେତେକ ଅହନ୍ତା
ମୋହୋର ଶାନ୍ତ୍ୟରେ ତୁହ୍ମ ଆକାଶ ପୁରେ ନ ଥା ।୨୬।
ଦେବପୁର କଥା କି ହୋଇବ ଯେମନ୍ତ
ଅସୁର ପୁରେ ଥାଅସି ହୋଇଣ ମୃତୁଗତ ।୨୭।
ଯେତେଦୂର ପରଯନ୍ତେ ଦିଶଇ ତୋର ଶିଖ
ଯେହ୍ନ ଦୋଷ ବାନ୍ଧୁ ତୋତେ କାଟନ୍ତୁରେ ବୃକ୍ଷ ।୨୮।
ଯେ ଅବା ତୋତେ ଦେଖି ରେ ନ କାଟନ୍ତି ଜନେ
ମୋହୋର ଅବସ୍ଥା ତାକୁ ହୋଉ ସଂଖାବନ୍ତ ଭୁବନେ ।୨୯।
ଯାଅ ଯା ବୃକ୍ଷ ରେ ଆକାଶେ ନ ଥାଅସି
ମଘଦେଶେ ଜରାସନ୍ଧ ଦ୍ୱାରେ ଦ୍ୱାରପାଳ ହୋଅସି ।୩୦।
ଶୁଣି ଶିମ୍ବୂଳୀ ବୃକ୍ଷ ଯେ କମ୍ପଇ ଥରହର
ଶାପ୍ୟକୁ ଅନୁଗ୍ରହ କରସି ପ୍ରତିକାର ।୩୧।
ତୁହ୍ମ ଯେ ଅକାରଣେ ଶାପ୍ୟ ଦିଲୁ ମୋତେ
ମୋକ୍ଷକଇଂ ପ୍ରତିକାର କହସି ନାଥ ମୋତେ ।୩୨।
ଶୁଣିଣ ଗନ୍ଧର୍ବର ବସିଲାକ ଦୟା
ମୃତୁ ପରେ ଜାତ ହୋଉ ଯେ ତୋହୋର କାୟା ।୩୩।
ସତ୍ୟ ତ୍ରେତୟା ଯୁଗେ ତୁ ସେହ୍ନ ରୂପେ ଥିବୁ
ଦ୍ୱାପର ଯୁଗେ ତୁ ମୁକତ ହୋଇବୁ ।୩୪।
ରାଜସୂ ଯାଗ ଯୁଧେଷ୍ଟି ଦେବ କରିବା ନିମନ୍ତେ
ଭୀମ ଅର୍ଜୁନକଇଂ ଘେନି ଆସିବେ ଜଗନ୍ନାଥେ ।୩୫।

ଦୁହିଁଙ୍କ ଦେଖି ହରି ବେଗେ ଚଳିପିବେ
ଜରାସନ୍ଧ କଟକେ ପ୍ରବେଶ ହୋଇବେ ।୩୬।
ପ୍ରଥମ ଦ୍ୱାରେ ଖାମ ଭେଟିବ କିବାରି
ଭେଟି ମୁକତ ହୋଇବ କୃଷ୍ଣଙ୍କୁ ଦର୍ଶନ କରି ।୩୭।
ଦୁଜ ଦ୍ୱାରେଣ ଯେ ଭେଟିବେ ଢୋଡେ ଯାଇଂ
ମୂର୍ତ୍ତିବନ୍ତ ହୋଇବୁ ତୁ ସେହିଦ୍ୱାରେ ଥାଇଂ ।୩୮।
ଶୁଷ୍କତରୁ ପ୍ରାପ୍ତେ ହୋଇ ତୁହି ରହିଥିବୁ
ଶତ୍ରୁ ଉପଗତ ଦେଖି ତୁ ପୁଷ୍ପ ବର୍ଷିବୁ ।୩୯।
ହରି ବଳେ କରିବେ ଜରାସନ୍ଧ ବଧ ନିମନ୍ତେ
ତହିଂ ତୁ ପୁଷ୍ପ ବର୍ଷିବୁ ତୋଷ ଚିତ୍ତେ ।୪୦।
ତୋହୋର ପୁଷ୍ପ ଦେଖି ଅର୍ଜୁନ ବନ୍ଧିବ ନାରାଚ
ମୁକତ ହୋଇବୁ ତୁ ଦେଖିଣ ଦେବରାଜ ।୪୧।
ଶ୍ରୀହରିଙ୍କ ଦର୍ଶନେ ମୁକତ ପାଇବୁ
ଦେବପୁରକଇଂ ବହନ ଆସିବୁ ।୪୨।
ଏମନେକ ଶାପ୍ୟ ସେ ପାଇଥିଲା ପୂର୍ବେ
ମୁକତ ହୋଇଲା ଆସି ଦ୍ୱାପର ଯୁଗେ ଏବେ ।୪୩।
ବିଦ୍ୟାଧର ଶାପେ ସେ ଅସୁର ପୁରେ ଥିଲା
ମୁକତିର ନିମନ୍ତେ ସେ ଫଳ ପୁଷ୍ପ ବର୍ଷିଲା ।୪୪।
ଅର୍ଜୁନର ନାରାଚେ ସେ ହୋଇଲା ମୋକ୍ଷଗତି
ବଇବସୁତ ମନୁଙ୍କୁ ଯେ କହିଲେ ଅଗସ୍ତି ।୪୫।
ଶୁଣିଣ ସାନନ୍ଦ ଯେ ମନୁ ମହାରାଜା
ଅଗସ୍ତିଙ୍କ ଚରଣେ କଲା ପାଦ୍ୟ ଅର୍ଘ୍ୟ ପୂଜା ।୪୬।—୫୦୬।

———

## ଗଧର ଚରିତ, ଜରାସନ୍ଧ ସହ କୃଷ୍ଣଙ୍କର କଥୋପକଥନ ଓ ଜରାସନ୍ଧର ମୃତ୍ୟୁ

ତିଜଦ୍ୱାର ଜପୁ କରିଣ ଚକ୍ରପାଣି
ତହୁଂ କେଶବ କେଉଂଣ କୃତ୍ୟ କଲେ ଯେ ପୁଣି ।୧।

ଶୁଣ ହୋ ମନୁରାଜା ବଦଯ୍ୟନ୍ତି ଅଗସ୍ତି
ଚଳିଲେ ଜଗନ୍ନାଥେ ବ୍ରାହ୍ମଣ ରୂପେ ଭୀମ ଫାଲଗୁନେ୍ୟ ଘେନି ।୨।
ଯୋଜନେକ ଥାଉଂ ସେ ଦେଖିଲା ଗର୍ଦ୍ଧଭ
ଶବ୍ଦ ଉପଗତ ବୋଲି ଗାଡେଣ ଦିଲା ରାବ ।୩।
ଅର୍ଜୁନ ବୋଇଲେ ସ୍ୱାମୀ ସମ୍ଭାଳ ଚକ୍ରପାଣି
ଦକ୍ଷିଣ ଭୁଜ ବଢାଇ ଦିଲେ ଶାରଙ୍ଗପାଣି ।୪।
ଯୋଜନେକ ପରଯନ୍ତେ ଭୁଜ ଗଲା ବଢି
ଦେବଦତ୍ତ ଶଙ୍ଖ ଦିଲେ ଗଧ ମୁଖେ ଭରି ।୫।
ଅତଯ୍ୟ ଗାତକରି ଗଧ ରାବ ଦିଲା
ଶଙ୍ଖଧ୍ୱନି ପ୍ରାପ୍ୟେକ ସେ ଶବଦ ଶୁଭିଲା ।୬।
ପୁଣି ବସ୍ତାରିଲେ ଦେବ ବାମଭୁଜ ଗୋଟି
ଆନ୍ବେଷି ଧଇଲେ ଦେବ ଗଧର ନିଜ ତୋଟି ।୭।
ଗଧ ବସ୍ତରଇ ପ୍ରଲମ୍ବ ଭୁଜ ଦେଖି
ନିଚଯ୍ୟେ ଜାଣିଲି ଯ୍ୟେ ପ୍ରତକ୍ଷେ ପଦ୍ମ ଆଖି ।୮।
ବସ୍ତରଣ ବୋଇଲା ସେ ସରୂପ ଉପଲେଖି
କୃଷ୍ଣର ସରୂପ ଯ୍ୟେ ମୋହୋର ଭାଗ୍ୟେ ଦେଖି ।୯।
ବିନୟ ଭାବ ହୋଇ ବୋଲଇ ଗର୍ଦ୍ଧଭ
ପ୍ରତକ୍ଷେ ବିଜଯ୍ୟେ କି କହ ବାସୁଦେବ ।୧୦।
ଅଷ୍ଟାଦଶ ବେଳ ତୋତେ ଜରାସନ୍ଧ ଦିଲା ଧାଡ
କି କାଯ୍ୟେଂ ସହିଲୁ ଦେବ ପ୍ରାଣେ ତାକୁ ନ ମାରି ।୧୧।
ଗୋବନ୍ଦେ ବୋଇଲେ ମୁହିଂ ବଧ କରିବି ଜାରି
ତୁ ହୋ ରାଗ ସମ୍ବରଣ କରସି ଗଧ ବାପୁଡା ।୧୨।
ନାରାୟ୍ୟଣଂକ ବଚନେ ବିନୟ ଭାବ ହୋଇ ବୋଲଇ ଗର୍ଦ୍ଧଭ
ତୋହୋର ଆଗ୍ୟାଂ ପ୍ରମାଣେ ନ ଦେବି ମୁହିଂ ରାବ ।୧୩।
ଇସ୍ଥଯ୍ୟେ ବଧ ତୁ ଯେ କରସି ଜରାସନ୍ଧ
ଯ୍ୟେକା ତୋହୋର ଶ୍ରୀକରେ ଛୁଅଂ ମୋହୋର ପାଦ ।୧୪।

୪ ।୨ ଦକ୍ଷିଣ ଭୁଜ ବଢାଇ ଦିଲେ କାଳସର୍ପ ଜାଣି—(ଚ,ଝ)
୧୨।୨ ତୁ ହୋ ରାଗ ସମ୍ବରଣ କରସି ମହାବାଇ—(ଚ,ଝ)

*

ଗୋବନ୍ଦେ ତୁଷ୍ଟି ହୋଇଲେ ଗନ୍ଧର୍ବ ବଚନେ
କରପଦ୍ମ ଯୋଡ଼ି ସେ ବୋଲଇ ଶ୍ରମଚସନେ ।୧୫।
ତୁ ତ ଜଗମୋହନ ବ୍ରହ୍ମାଣ୍ଡ ଶିରୋମଣି
ଯେ ସ୍ଥିର ପାଦ କଂକେ ଛୁଇଂବୁ ଚକ୍ରପାଣି ।୧୬।
ଗୋବନ୍ଦେ ବୋଇଲେ ହୋ ପୂର୍ବେ ଯେମନ୍ତ ବେଭାର ଅଛି
ଯହିଂ କାର୍ଯ୍ୟ ସାଧହୋଇ ତହିଂ ଦୋଷ ନାହିଂ କଛି ।୧୭।
ଯେସନକ ବଚ୍ଚରଲେ ଦେବ ଦାମୋଦର
ଗନ୍ଧର୍ଭ ଚରଣ ଦେବ ଛୁଇଂଲେ ବାମକର ।୧୮।
ଶ୍ରୀକର ବଡ଼ାଇ ଦେଇ ଲଗାଇଲେ ଅଙ୍ଗୁଷ୍ଠି
ପଡ଼ଲ ଗନ୍ଧର୍ଭ ସେ ମୂର୍ଦ୍ଧନା ଗଲ ଫାଟି ।୧୯।
ଅନ୍ତରୀକ୍ଷୁ ଲଗେ ଆସି ପୁଷ୍ପେକ ବମାନ
ଚଳଲକ ଗନ୍ଧର୍ଭ ସେ ଅମର ସ୍ୱର୍ଗସ୍ଥାନ ।୨୦।
ଯେହା ଶୁଣି ପୁଚ୍ଛାକଲେ ବଇବସୁତ ମନୁ
ଗନ୍ଧର୍ଭ ଚରତ ମୋତେ ବସ୍ତାର କହବା କୁମ୍ଭଋଷି ତନୁ ।୨୧।
ଗଧର ପାଦ କଂପେ ଛୁଇଂଲେ ନାରାୟଣ
କେବଣ ସେ ମହାତମା ପୂର୍ବେଣ କେଉଁ ବଡ଼ ଜଣ ।୨୨।
କାହାର ଶାପେ ସେ ଯେ ହୋଇଲ ଯେମନ୍ତ
ଯେହା ମୋତେ ସଞ୍ଚପି କହବା ଭଗବନ୍ତ ।୨୩।
ଅଗସ୍ତି ବୋଇଲେ ସେ ହୋ ସତ୍ୟ ଯୁଗର କଥା
ଅପାର କାଳର ଯେ ଗନ୍ଧର୍ଭର ବାରତା ।୨୪।
ଜ୍ୟେଷ୍ଠମାହ ଶୁକ୍ଳପକ୍ଷ ତ୍ରୟୋଦଶୀ ମଙ୍ଗଳବାର
ବଶାଖା ନାମ ନକ୍ଷତ୍ର ଯେ ଭୋଗ୍ୟ ସେ ଦନର ।୨୫।
ବାଣିଜ୍ୟ ନାମେ କରଣ ସିଦ୍ଧି ନାମେ ଯୋଗ
ତ୍ରିଦଶ ଦେବତାଯେ ଯାଇ ବସିଲେ ମେରୁସ୍ୱର୍ଗ ।୨୬।
ବୃଦ୍ଧଶ୍ରବା ବୋଲଣ ଯେ ଯେକଇ ଗନ୍ଧର୍ବ
ଭରହରଷେ ଖଟଇ ନୃତ୍ୟ ଗୀତ ତାଣ୍ଡବ ।୨୭।

---

୨୩।୨ ଯେହା ମୋତେ ସଞ୍ଚପି କହବା ତଟପାବନ୍ତ—(ଙ,ଘ,ଠ,ଥ)

ଦେଖିଣ ସାନନ୍ଦ ସେ ହୋଇଲେ ସୁରପତି
ବହୁତ ଅଳଂକାର ଦେଇ କଲେକ ବିପୁତି ।୨୮।
କାମସେଣୀ ବୋଲି କରି ଯେତେକଇ ଅପସରୀ
ବୃଦ୍ଧଶ୍ରବା ଛାମୁଲେ ସେ ନୃତ୍ୟ ଗୀତ କରି ।୨୯।
ଦେଖିଣ ଅନେକ ହରଷ ହୋଇଲେ ପୁରନ୍ଦର
ଜୟମାଳା ଯେତେକ ନେଇ ଦେଲେ ଅପସରୀ ଗଳାର ।୩୦।
ବିଶ୍ୱାବସୁ ଆଗ୍ୟାଂ ଦେଲେ ବୃଦ୍ଧଶ୍ରବାନ୍ତ ରାଇ
ଯେ କାମସେଣୀ ଅପସରୀଙ୍କ ନେମୁଂ ତୁ ମୋହୋର ତହିଂ ।୩୧।
ବିଧାଇ ଦେଇଣ ତାଙ୍କୁ ଚଳିଲେ ବିଶ୍ୱାବସୁ
ବୃଦ୍ଧଶ୍ରବା ଗୋଚରେ ଦେଲେ ଖାଖ ପ୍ରଶୁ ।୩୨।
ଦେଇଣ ଗନ୍ଧର୍ବ ଯେ ଚଳିଲେ ନିଜ ସ୍ଥାନ
ରାତ୍ରକାଳେ ଅପସରୀଙ୍କୁ କରାଇଲେ ବେଶ ଯେ ବେଶନ ।୩୩।
ରାତ୍ର ପହରକେ ଗଲେ ବିବାନ ଆରୋହି
କାମସେଣୀଙ୍କୁ ଦେଖି ଗନ୍ଧର୍ବ ଅନ୍ତରୀକ୍ଷେ ଚଳଇ ।୩୪।
କାମେ ଅସାଷ୍ଟମ ସେ ହୋଇଣ ବୃଦ୍ଧଶ୍ରବା
କାମସେଣୀଙ୍କୁ ବୋଇଲା ସଖୀ ଶୃଙ୍ଗାର ମୋତେ ଦେବା ।୩୫।
ଭରହରଷ ନାୟକ ସେ ଅଟଇ ଗନ୍ଧର୍ବ
ଅପସରୀ ମାନେକେ କେ ତାର ବଚନ ମେଣ୍ଟିବ ।୩୬।
ବିଦ୍ୟାଧରେ ବିଦ୍ୟାଧରୀ ବଢିଲା ପୀରତି
ହାସ୍ୟ ଲସ୍ୟ ଶୃଙ୍ଗାର ଯେ ଅନେକ ରସେ ପ୍ରୀତି ।୩୭।
ଶୃଙ୍ଗାର ସାରିଣ ଯେ ଚଳିଗଲେ ତହୁଂ ବେଗି
ବିଶ୍ୱାବସୁ ପୁରେ ପ୍ରବେଶ ହୋଇଲେ ପାଞ୍ଚଘଡି ରଯେଣୀ ।୩୮।
ବୃଦ୍ଧଶ୍ରବା ସମର୍ପିଲା ନେଇ କାମସେଣୀ ଅପସରୀ
ବିଶ୍ୱାବସୁ ଛାମୁଲେ ସେ ହୋଇଲା ମନୋହାରୀ ।୩୯।
ଶୃଙ୍ଗାରକାଳେ ତହୁଂ ଉପୁଜିଲା ଅଭାବ
ରତିଶାସ୍ତ୍ରେ ନ ଚଳିଲା ଅଚଳ କାମଦେବ ।୪୦।
ବିଶ୍ୱାବସୁ ପୁଚ୍ଛିକଲେ କାମସେଣୀ ଅପସରୀଙ୍କ
କାମେ ଅଚଳ କିମ୍ପେ ହୋଇଲୁ ରେ ସଖୀ ।୪୧।

କାହାରେ ପୀରତି ବତାଇଲୁ ରେ ସୁନ୍ଦରୀ
ତାହା ସଦ୍ଭାବୁଣୀ ମୋତେ କହିବା ତଥ୍ୟ କରି ।୪୨।
ତୁ ଯେବେ ସତ୍ୟ କରି ନ କହିବୁ ମୋହୋର ଅଗ୍ରତେ
ଯେହ୍ନେକ୍ଷଣି ସୁନ୍ଦରୀ ରେ ଶାପ୍ୟ ଦେବି ତୋତେ ।୪୩।
ବୋଲଇ ବିଦ୍ୟାଧରୀ ତୁମ୍ଭେ ଶୁଣ ବିଶ୍ୱାବସୁ
ବୃଦ୍ଧଶ୍ରବା ଶୃଙ୍ଗାର କଲା ମୋତେ ବାଟେ ଆସୁ ଆସୁ ।୪୪।
କୋପେଣ ଶାପ୍ୟ ଦିଲାକ ହୋଇଣ କୋପମୂର୍ତ୍ତି
ମୋହୋର ରମଣୀକୁ ତୁ କଲୁ ରେ ଅମାନ୍ତି ।୪୫।
ଶିଷ୍ୟପୁତ୍ର ହୋଇଣ କଲୁ ମୋତେ ଯେ ଅଭାବ
ଯାଅ ରେ ବିଦ୍ୟାଧର ତୁ ହୁଅସି ଗର୍ଦ୍ଦଭ ।୪୬।
ରାଗେଣ ଶାପ୍ୟ ସେ ଯେ ଦିଲେକ ଦକ୍ଷେଶ୍ୱର
ବିଶ୍ୱାବସୁଂକ ଶ୍ରୀମୁଖରେ ଉଭା ହୋଇଲା ବିଦ୍ୟାଧର ।୪୭।
ସ୍ୱାମୀ ଅକାରଣେ କିଂପେ କଲୁ ମୋତେ କୋପ
ଗୁରୁଶାଳା ହୋଇ ଦେଲୁ ମୋତେ ଦୁରପଦ ଶାପ ।୪୮।
ଶାପ୍ୟକୁ ଅନୁଗ୍ରହ ମୋତେ କରିବା ଦେବରାଯ୍ୟେ
କେମନ୍ତେ ମୁକତି ହୋଇବ ମୋତେ କହିବା ଉପାୟେ ।୪୯।
ବିଶ୍ୱାବସୁ ବୋଇଲେ ଅବଶ୍ୟ ତୁ ଗଧ ହୋଇଥିବୁ
ଯେହ୍ନେ ମୋହୋର ଶାପ୍ୟେ ତୁ ଅପାର ଦୁଖ ପାଇବୁ ।୫୦।
ତ୍ରେତୟାଯୁଗେ ଥିବୁ ରାବଣ ଦକ୍ଷିଣ ଦ୍ୱାରେ
ଜରାସନ୍ଧ ଦ୍ୱାରପାଳ ହୋଇବୁ ଦ୍ୱାପରେ ।୫୧।
ପ୍ରତକ୍ଷେ ଦେଖିବୁ ତୁ ଶଙ୍ଖ ଚକ୍ରଧାରୀ
ଜଗନ୍ନାଥେ ତୋର ପାଦ ଧରିବେ କାର୍ଯ୍ୟ ହେତୁ କରି ।୫୨।
ସତ୍ୟଯୁଗ ସତର ଲକ୍ଷ ଅଠାଇଶ ସହସ୍ର ବରଷ
ତ୍ରେତୟାଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ।୫୩।
ଦ୍ୱାପର ଯୁଗ ଆଠଲକ୍ଷ ବରଷ ଉତ୍ତାରେ
ମୁକତି ପାଇବୁ ତୁ ଜରାସନ୍ଧର ଚତୁର୍ଥ ଦ୍ୱାରେ ।୫୪।

---

୪୫।୧ କୋପେଣ ଶାପ୍ୟ ମୋତେ ଦିଲାକ ଦିଲପତି ଯକ୍ଷ ପତି) ।

ବିଶ୍ୱାବସୁ ଶାପେ ସେ ଗନ୍ଧର୍ବ ଗଧ ହୋଇଥିଲ
ଏବେ ଜଗନ୍ନାଥ ଦର୍ଶନେ ସେ ମୁକତ ହୋଇଲ ।୫୫।
ଅଗସ୍ତି ବୋଇଲେ ଶୁଣ ହେ ଯୋଗେଶ୍ୱର
ବୃଦ୍ଧଶ୍ରବା ଗନ୍ଧର୍ବ ସେ ଅଟଇ ପୂର୍ବର ।୫୬।
ବଇବସୁତ ମନୁ ଅଗସ୍ତିଂକ କଲେ ପୂଜା
ଜରାସନ୍ଧ ବଧ ମୋତେ କହିବା ବ୍ରହ୍ମଦ୍ୱିଜା ।୫୭।
ଚତୁର୍ଥଦ୍ୱାର ଜୟେ କରି ଗଲେ ଦେବହରି
ଯାଗଶାଳେ ବିଜେ ଦେବ ବିପ୍ରରୂପ ଧରି ।୫୮।
ଆହେ। ଯାଗଶାଳେ ବସିଛନ୍ତି ଉଦ୍ଧାଳେକ ବାମଦେବ
ଭରଦ୍ୱାଦଶ ବିଶ୍ୱାମିତ୍ର ସୁମନ୍ତେକ ଯେ ସୁଦେବ ।୫୯।
ବାଲମିକ ଭୃଗୁ ପରାଶର ଲୋମଶେକ
ଜନକ ସନକ ଗର୍ଗତମ ବିଭାଣ୍ଡେକ ।୬୦।
ଦେଖିଲେ ଯେ ନାରାୟଣ ମୁନି ଶଉନକ
ଆଉରି ରହିଛନ୍ତି ମୁନି ଯେ ଅନେକ ।୬୧।
ନିର୍ଧୂମ ଅଗ୍ନି ଜାଣି ବିରାଜଇ ତିନେଂକର ତେଜ
ଗୋପ୍ୟାନ ରୂପ ଧରିଅଛନ୍ତି ଦେବରାଜ ।୬୨।
କର ପସାରଣ ଦେବ କରନ୍ତି ବେଦଧ୍ୱନି
ମହାମନ୍ତ୍ର ଶବଦେ କମ୍ପିଲା ମେଦିନୀ ।୬୩।
ଦେଖି ବିସ୍ମରନ୍ତି ସେ ଋଷିଗଣମାନେ
ଅପୂର୍ବ ବ୍ରାହ୍ମଣ କେବଣ ଦେଶୁଂ ଆଗମନେ ।୬୪।
ଏକମୁଖରେ ବେଦ କରନ୍ତି ତିନିଧ୍ୱନି
ଗହ ଗହ ଶବଦେ ଯେ କମ୍ପିଲା ମେଦିନୀ ।୬୫।
ଦେଖିଣ ଆଶ୍ରିଜ ବଡ ଜାରାସନ୍ଧ ହୋଇଲା
ଏ ବ୍ରାହ୍ମଣଂକର ସରୂପ ମୋତେ ଗୋଚର ନୋହିଲା ।୬୬।
ପଞ୍ଚଦଶ ଦିବସ ମୁହିଂ କଲଇ ଆହୁତି
କେହୁଣସି ଦିନେ ଦେଖିଲାତ ନାହିଂ ଏ ତିନେଂକ ପ୍ରାୟେ ମୂରତି ।୬୭।

୬୬।୨ ଏ ବ୍ରାହ୍ମଣଂକର ବେଦ ଶବଦେ (ଆଘାତେ) ମୋ ଶରୀର
କମ୍ପିଲା । (ଚ,ଝ)

କ ସ୍ୱେ ପିତାମହ ସ୍ୱେ ଅବା ଅନନ୍ତ ଦିଗପାଳ
କ ସ୍ୱେ ରୁଦ୍ର ଦେବତା କ ଅବା ଆଖଣ୍ଡଳ ।୬୮।
ବେଦ ଆଧାନ ଶବଦେ କମ୍ପଇ ଭିନ୍ନପୁର
ଆସ୍ଥାନ ତେଜି ଉଠିଲ୍ଲ ରାଜା ମଗଧେଶ୍ୱର ।୬୯।
ଶ୍ରୀହସ୍ତେ ରତ୍ନଝାରୀ ଘେନି ନୃପମଣି
ବ୍ରାହ୍ମଣ ତିନିଂକ ପାଦ ପଖାଳିଲ୍ଲ ଗଙ୍ଗାଜଳ ଘେନି ।୭୦।
ଲକ୍ଷେ ସୁବର୍ଣ୍ଣ ଦେଇ କଲାକ ପାଦପୂଜା
ପାଦ ଉଦକ ଶିରେ ଘେନିଲା ବୃହଦ୍ଧ୍ୱଜର ଆତ୍ମଜା ।୭୧।
କରପତ ଯୋଡ଼କରି ଜରାସନ୍ଧ ପଚ୍ଛରି
କେଉଂଣ ଦେଶୁଂ ଆଗମନ କଲ ସ୍ୱେ ଆମ୍ଭର ପୁରୀ ।୭୨।
କେଉଣ କୁଳେ ଜାତ କିସ ତୁମ୍ଭର ନାମ
ସରୂପ କହନ୍ତେ ସେ ଉଚିତ ହୋଇବ ଧର୍ମ ।୭୩।
ଗୋବିନ୍ଦେ ବୋଇଲେ ହୋ ଶୁଣ ମଗଧେଶ୍ୱର ଅଧିପତି
ପଶ୍ଚିମ ସୋମରାଷ୍ଟ୍ରେ ହସ୍ତିନାପୁରେ ଆମ୍ଭ ଥିତି ।୭୪।
ଯଦୁ ଦେବର ନନ୍ଦନ ମନ୍ତ୍ରେଣ ଯଜୁର୍ବେଦୀ
ବିଷ୍ଣୁଦାସ ଆମ୍ଭ ନାମ ସ୍ୱେ ପଣ୍ଡା ଜାମୁଭେଦୀ ।୭୫।
ଭୀମସେନକୁ ଦେଖାଇ ବୋଇଲେ ସେହାଂକ ନାମ କୋନ୍ତେ
ଆଦତ୍ତୁଂ ଉତପତ୍ତି ଆମ୍ଭେ ପାଠତ୍ରିଷିଂକର ଗୋତ୍ରେ ।୭୬।
ଋକ ସାମ ଯଜୁ ଅଥର୍ବ ବେଦ ଚାରି
ଧର୍ମେଣ ପଢ଼ିଲୁ ଆମ୍ଭେ ସୁରାର୍ଥେ ଅବତରି ।୭୭।
ଜରାସନ୍ଧ ବୋଇଲ ସ୍ୱେ ବ୍ରାହ୍ମଣ ମହାଭାଗ୍ୟଂ
ବେଦ ଶାସ୍ତ୍ରେ ନିର୍ଜିତ ଯେ ଅନନ୍ତ ସବର୍ଗ୍ୟଂ ।୭୮।
ଦାନର ବେଳ ସ୍ୱେତ ନୋହୋଇ ବିପ୍ରବର
ମୋତେ ଯେବେ ଭେଟିଲ କାର୍ଯ୍ୟ ସିଦ୍ଧି ହୋଇଲା ତୁମ୍ଭର ।୭୯।
ଆଜକ ଅନ୍ନଭୁଂଜ ମୋହୋର ପୁରେ ଥିବା
କାଲି ପ୍ରଭାତେଣ ମୋତେ ଦାନ ଯେ ପ୍ରାର୍ଥିବା ।୮୦।

---

୭୨।୨ କେଉଂଣ ଦେଶୁଂ ଆଗମନ ସ୍ୱେ ଦ୍ୱିଜ ଅଧିକାରୀ । (ଥ,ଢ)
୭୭।୨ ଧର୍ମେଣ ବ୍ରତଲୁ ଆମ୍ଭେ ସୁରାର୍ଥେ ଅବତରି । (ଥ,ଠ)

ଚଉଷଠି ଭଣ୍ଡାର ଦାନଦେଲି ସର୍ବ ଭୁଞ୍ଜି
ସମସ୍ତ ଦାନଦେବି ଯେ କାଲି ପୂରିବ ମନବାଞ୍ଛା ।୮୧।
ମୋହୋର ପରାୟେ ରାଜା ଯେ ଦାନଦେବ ତୋତେ
ତୋହୋର ପରି ବ୍ରାହ୍ମଣ ଯେଣି ମୁଂ ଚଳି ହାଥେ ।୮୨।
ଆଉର ବେଳେ ଦାନ ନ ମାଗିବୁ ଆନଙ୍କୁ
ଦରିଦ୍ର ଅପହାରି ଯେ କରିବି ତୁମ୍ଭଂକୁ ।୮୩।
ଅନେକ ଦୂରୁ ଆଶ କରି ଆସିଲ ଦ୍ୱିଜବର
କଂଶେ କି ଦରିଦ୍ର ହୋ ଥୋଇବି ତୋହୋର ।୮୪।
ଗୋବିନ୍ଦେ ବୋଇଲେ ହୋ ବଚନ ତୋର ଧନ୍ୟ
ଯେ ମୃତ୍ୟୁ ମଣ୍ଡଳେ ଜାତ ତୁ ଅଛୁ ମହାଭାଗ୍ୟମାନ୍ୟ ।୮୫।
ଯେବଣ ଯାଗ ଆରୋପଣ କରୁଛୁ ମହୀସ୍ଥଳେ
ଶୁଣିଲୁ ନାହିଂ ଯାହା ଦେଖିଲୁ ବେନି ଡୋଳେ ।୮୬।
ଯେ ତିନି ଭୁବନ ମଧ୍ୟେ ସାଧୁ ତୋହୋର ମହିମାଂ
ମାହେଶ୍ୱରୀ କଳା ତୁ ପ୍ରତକ୍ଷେ ମହାତମା ।୮୭।
ଆମ୍ଭେ ଅପାର ଦୂରୁଂ ଆଗମ ଦୁଃଖବାସୀ
କାଞ୍ଚିତ ଦାନେ ତୁ ଆମ୍ଭନ୍ତ ପାରିବୁ କି ତୋଷି ।୮୮।
ତୁ ଯେ ଧନ ଦେବାକୁ ବୋଇଲୁ ମଗଧେଶ୍ୱର ରାୟେ
ବହୁତ ଦାନ ଘେନିଲେ ଆୟୁ ହୋଇବ କ୍ଷୟେ ।୮୯।
କଣିକଲୁ ମାତ୍ର ଆମ୍ଭର ଅଛଇ ବ୍ରତହେତୁ
ନାହିଂ ପିରୋଜନ ଧନ ଧାନ୍ୟ ତୋଷା ବାସ୍ତୁ ।୯୦।
ଜରାସନ୍ଧ ବୋଇଲା ତୁମ୍ଭର ଧନେ ନାହିଂ କାର୍ଯ୍ୟ
କଷଣ ପ୍ରାୟେ ତ ମୋତେ ଦିଶୁଛ ତିନି ଦ୍ୱିଜ ।୯୧।
ଶ୍ରୀଧର ବୋଇଲେ ଆମ୍ଭେ ଖୃପ ଯେ ବ୍ରାହ୍ମଣ
ତୁ ମହାରାଜା ତୋତେ କାସ କରିବୁଂ କଷଣ ।୯୨।

---

୮୯। "ବହୁତ ଦାନ ଘେନିଲେ ଆୟୁ ହୋଇବ କ୍ଷୟେ" ପରେ 'ଢ' ପୋଥିରେ ଅଧିକା ପାଠ—
ଦାରା ତନୟ ବନ୍ଧୁ ସୁହୃଦ ଅଗ୍ନି ତସ୍କର ରାଜଭୟେ ହୋଅଇ
ସ୍ନେହେ ଦୋଷ ରାଜନ ଧନର ପାଶେ ଥାଇ । (କ)

ସେତେ ବୋଲି ଦେବ କଲେକ ବେଦଧ୍ୱନି
ଲୋକପାଳେ କମ୍ପିଲେ ଯେ ମହାମନ୍ତ୍ର ଶୁଣି ।୯୩।
ଜରାସନ୍ଧ ବୋଇଲା ହୋ ରହ, ରହ ପଣ୍ଡାସେ
ତୁମ୍ଭର ବେଦ ଆଧ୍ୟାନ ଶୁଣି କମ୍ପଇ ମୋର କାୟେ ।୯୪।
ଯେଣେ ତୁମ୍ଭର କାର୍ଯ୍ୟ ମାଗ ହୋ ଦ୍ୱିଜବର
ତୋହୋ ଭଳ ଧନ କ ନାହିଂ ମୋ ଭଣ୍ଡାର ।୯୫।
ଭଣ୍ଡାର ତୁଚ୍ଛା ବୋଲି କ ମୋତେ କରୁ କଷଣ
ଯେତେ ଧନ ମାଗିବ ହୋ ଦେବ ସେହିକ୍ଷଣି ।୯୬।
ସେକ କଥାସେକ ଛାଡ଼ ଯାହା ପାର ମାଗ
ସେକା ମାନ ମୋହୋର ଆହୁନ୍ତ ପରିତ୍ୟାଗ ।୯୭।
ଧନ ଧାନ୍ୟ ଗୋଧନ ଯେ ପୃଥ୍ୱୀ ଆଦି କରି
ଦେବଇଂ ମୋହୋର ସତ୍ୟ, ସତ୍ୟ ମାଗସି ବ୍ରହ୍ମଚାରୀ ।୯୮।
ଗୋବିନ୍ଦେ ବୋଇଲେ ତୋହୋର ଦୁଖେ ଅରଜିଲୁ ତପ
ଆହୁନ୍ତ କେତେନେକ ମାଗିବୁ ସେ ନୋହଇ ସରୂପ ।୯୯।
ଭ୍ରାହ୍ମଣବ୍ରତେକ ଶଙ୍ଖେ ଜଳ ତିଳ ପୂରେଇ
ଜରାସନ୍ଧ ହାଥରେ ଢାଳେକ ଯଦୁସାଇଂ ।୧୦୦।
ମହାମନ୍ତ୍ର ବାକ୍ୟ ଯେ କରଇ ଅଚ୍ୟୁତ
ଆପଣେ ଶ୍ରୀହରି ଯେ ପାତିଲେ ତଳହାଥ ।୧୦୧।
ଉପର ହାଥକରି ଜରାସନ୍ଧ ଯେ ଦେଉଅଛି ଦାନ
ସତ୍ୟ ସତ୍ୟ ବାକ୍ୟ ଯେ କରଇ ମଗଧେଶ୍ୱର ରାଜନ ।୧୦୨।
ହାଥେ ପାଣି ଢାଳନ୍ତେ ବଦସ୍ୱନ୍ତ ଶ୍ରୀ ଜଗନ୍ନାଥେ
ସାକ୍ଷୀ ହୋଇଥାଅ ସେଥେ ସକଳ ଦଇବତେ ।୧୦୩।
ବିଶ୍ୱଦେବା ସନକ ଲୋକପାଳ ଗ୍ରହମେଦେ
ଚାରିଯୁଗ ସାକ୍ଷୀ ହୁଅ ଆବର ଚାରିବେଦେ ।୧୦୪।
ଯାଗକାରି ବିପ୍ରମାନେ ତୁମ୍ଭେ ସାକ୍ଷୀ ହୋଇଥିବା
ଆହୋ ରାଜାଗଣମାନେ ତୁମ୍ଭେ ସେ କଥାକୁ ସାବଧାନ ହେବା ।୧୦୫।

---

୯୪।୨ ତୁମ୍ଭର ବେଦ ଧ୍ୱନି ଶୁଣି ନ ରହଇ ମୋର କାୟା ।
(ଝ,ଥ,ଞ୍ଜ,କ,ଘ)

ମୁହିଂ ତଳ ହାଥ କରି ଧେନୁଅଛୁ ଦାନ
ଦେଉଛୁ ସତ୍ୟ କଲୁ ଉଚ୍ଚାରି, ମଗଧେଶ୍ୱର ରାଜନ ।୧୦୬।
ହାଥେ ଜଳ ପଡନ୍ତେ ବୋଇଲେ ପୁରୁଷଂକ ଉତ୍ତମ
ଆନେ ପ୍ରୟୋଜନ ନାହିଂ ଦିଅ ହୋ ସଂଗ୍ରାମ ।୧୦୭।
ଜରାସନ୍ଧ ଆଶ୍ଚର୍ଯ୍ୟ ହୋଇଲା ତାହା ଶୁଣି
ବିରସ ହୋଇ ରାଜା ଗୁଡଲା ଶଙ୍ଖ ପାଣି ।୧୦୮।
କିସ ବୋଇଲ ତୁମ୍ଭେ ହୋ ଅଗ୍ୟାନ ଦ୍ୱିଜବର
ମତିଭ୍ରମ ପଣ୍ଡାଏ କି ହୋଇଲା ତୁମ୍ଭର ।୧୦୯।
ବ୍ରାହ୍ମଣ ଜନ୍ମ ତୁମ୍ଭର ମନ୍ତ୍ର କୁଶ କାଶ
ଭିକ୍ଷାଶୀ ବ୍ରାହ୍ମଣ ହୋଇ କିଂପା ସଂଗ୍ରାମକୁ ଆଶ ।୧୧୦।
ଗୋବିନ୍ଦେ ବୋଇଲେ ଯିସ ଯାହାର ପ୍ରକୃତି
ତୋହୋର ବୋଇଲେ କି ସେ କଥା ହୋଇବାକ ନିବୃତ୍ତି ।୧୧୧।
ପାରୁ ଯେବେ ରାଜା ତୁ ସଂଗ୍ରାମ ହାଦେ ଦେବୁ
ନୋହିଲେ ଯେଣ୍ହିକ୍ଷଣି ତୋହୋର ଆହୁତି ବିଧଂସିବୁ ।୧୧୨।
ଆହୋ ଜୀବନଯାକ ଆମ୍ଭର ଯେସନେକ ପ୍ରକୃତି
ସଂଗ୍ରାମ ନ ପାଇଲେ ଆମ୍ଭେ ନୋହୁନା ନିବୃତ୍ତି ।୧୧୩।
ଯେବଣ ଦିନ ଆମ୍ଭେ ସଂଗ୍ରାମ ନ ପାଉଂ
ମହାକଷ୍ଟି ହୋଇ ସେ ଦିନ ନେଉଥାଉଂ ।୧୧୪।
ଶୁଣିଣ କୋପାନଳ ମଗଧ ଆଧିପତି
ତୁମ୍ଭେ ନାଶିଯିବ ମୋତେ ସଂସାରେ ଅପଗ୍ରାତି ।୧୧୫।
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା ଦୋଷ କଲା
ପରମ ଯୋଗେଶ୍ୱର ସେ ପାତେକ ଯେ ଖଣ୍ଡଣ ନ ଗଲା ।୧୧୬।
ମୋହୋର ମହିମାଂ ତୋହୋର ଶୁଣିଲା ନାହିଂ ଦ୍ୱିଜ
ଆୟୁ ଥାଉଂ ମରଣ ହୋ ଲୋଡୁଛ ଆଶ୍ଚର୍ଯ୍ୟ ।୧୧୭।

---

୧୦୮।୧ ବିସ୍ମୟ ହୋଇ ରାଜା ପକାଇଲା କୁଶପାଣି । (କ,ଟ)
୧୧୧।୨ ତୋହୋର ବେଲେ କି ସେ କଥା ହୋଇବାକ ନିବୃତ୍ତ ।
(ଙ,ଥ,ଡ)

✽

ମୋହୋର ଦୋହିତା ହାଦେ ହେତି ଯେ ପ୍ରହେତି
ତାହାଂକର ବଲ୍ଲଭ ଯେ କଂସାସୁର ନୃପତି ।୧୧୮।
କାହ୍ନୁ ସଂକର୍ଷଣ ନନ୍ଦ ଗଉଡ଼ର ସୁତ
ତାହାକଇଂ ନାଶକଲେ ଅଗ୍ୟାନ ବେନିଭ୍ରାଥ ।୧୧୯।
ଦୋହିତାସ୍ତ୍ରୀ କାନ୍ଦ ଯେ ଆସି କହିଲେ ମୋର ଆଗେ
ମଥୁରାକୁ ଧାଡ଼ଦିଲ ଜୁଆଇଂର ରାଗେ ।୧୨୦।
ସେ ମଥୁରାଭୂବନ ଛାଡ଼ି ପଳାଇଲେ ଭାଇ ବେନି
ଉନ୍ନତଦେଶେ ଲୁଚିଲେ ବନ୍ଧୁବର୍ଗନ୍ତ ଘେନି ।୧୨୧।
ଧନଭଣ୍ଡାର ଆଦି ସମସ୍ତ କଲି ଜୁରି
ଅନେକ ଗୋଧନପଲ ଆଣିଲି ତାହାଂକର ।୧୨୨।
ଉନ୍ନତଦେଶକୁ ପୁଣିହିଂ ଦିଲି ଧାଡ଼ି
ବିକଳେ ପଶିଲେ ଯାଇଂ ଗୋମତ ନାମେ ଗିରି ।୧୨୩।
ଶତେକ ଯୋଜନ ଯେ ଗୋମତ ପର୍ବତର ସ୍ଥଳୀ
ସାତତାଳ ଗମ୍ଭୀର କରି ବେଢ଼ାଇ ଖଣା ଖୋଳି ।୧୨୪।
ପର୍ବତ ନବଦ୍ଦନ ଯେ ବେଢ଼ିଲି ଶତେପୁର କରି
ତାଂକର ରାଗେ ମୁଂ ଯେ ପର୍ବତ ଦିଲି ପୋଡ଼ି ।୧୨୫।
ଆହୋ ତହୁଂ ପଳାଇଣ ଗଲେ ବେନିଭାଇ
ମଧୁବନ କଣ୍ଟକେ ଲୁଚିଲେ କୁଟୁମ୍ବ ଘେନି ଯାଇଂ ।୧୨୬।
କାଳଦମନ ରାଜାକଇଂ ରାଇଣ ଆଗ୍ୟାଂ ଦିଲି
ଭାଂଜଣ ମଧୁବନ ଧ୍ୱଂସ କରାଇଲି ।୧୨୭।
ତହୁଂ ପଳାଇଣ ଗଲେ ସେଠୁ ଅନେକ ଦୂର
ଅଷ୍ଟାଦଶବାର ଧାଡ଼ି ଦିଲଇଂ ସମର ।୧୨୮।
ରହି ନୁଆରିଲେ ମୋହୋର ଡୁରେ ଜମ୍ବୁଦ୍ୱୀପେ
ସମୋଦ୍ର ଭିତରେ ରହିଲେ ଯାଇଂ ଗୋପ୍ୟେ ।୧୨୯।

---

୧୨୧। ଉଲ୍ଲାଟ, ଉନ୍ନଟ, ଅନୁଷ୍ଟ, ଗୋମନ୍ତ—ପ୍ରଭୃତ ଦେଶମାନଙ୍କର ନାମ ବିଭିନ୍ନ ପୋଥିମାନଙ୍କରେ ଦେଖାଯାଏ ।

୧୨୮। ଅଷ୍ଟାଦଶବାର ଧାଡ଼ି ଦିଲଇ ନକର । (ଙ, ଘ)

ମୋ ତହୁଂ ବଳବନ୍ତା ଯେ ବୋଲାଇବ ରଣେ
ନିଚୟେ ପାଂଜ ତାର ପୋଛିବ ଜନ୍ତୁଗଣେ ।୧୩୦।
ଏବେ ପ୍ରତକ୍ଷେ ଦେଖ ହାଦେ ମୋହୋର ମହିମା
ଏ ମହାରାଜାମାନଂକର ଲଂଘନ୍ତା ନାହିଂ ମୋର ସୀମା ।୧୩୧।
ଛୟାଣୋଇ ସହସ୍ର ରାଜା ଦେବ ଦାନବେ ନୃପତି
ଏକା ଧାଡକେ ଗୋଡାଇ ମୁଂ ବାନ୍ଧିଲି ସବୁନ୍ତି ।୧୩୨।
ଯତନେ ଥୋଇଅଛି ନିଅଳ ପିନ୍ଧାଇ
ପୂର୍ଣ୍ଣ ଆହୁତି ମୋହୋର ଦେଖ ଆଜ ରହି ।୧୩୩।
ମାର୍ଜଣା କରାଇଅଛି ସମସ୍ତ ନରପତି
ସବୁନ୍ତି ପକାଇବ ଆଜ ପୂର୍ଣ୍ଣ ଯେ ଆହୁତି ।୧୩୪।
ତୋଷେ ପ୍ରସନ୍ନ ମୋତେ ହୋଇବେ ବଇଶ୍ୟାନର
ଇନ୍ଦ୍ରପଦ ଘେନି ମୁଂ ବସିବି ଅମର ସ୍ୱର୍ଗପୁର ।୧୩୫।
ବ୍ରାହ୍ମଣଜନ ହୋଇ ତୁମ୍ଭର ପ୍ରକୃତି ବଡ ନଘୁ
ଶିରି ସମ୍ପଦ ବୁଡାଇ ଆସି ସଂଗ୍ରାମ ମୋତେ ମାଗୁ ।୧୩୬।
ନୁହ ନୁହ ଦ୍ୱିଜ ତୁମ୍ଭେ ମହାବେଦୀ ବ୍ରାହ୍ମଣ
କପଟରୂପ ଧରି ସଂଗ୍ରାମ ମାଗ ପୁଣ ।୧୩୭।
ଦେବ କି ଦାନବ ତୁମ୍ଭେ କପଟ ରୂପ ଧରି
ନିଚୟେ ଅଇଲ ତୁମ୍ଭେ ମରଣ ଇଚ୍ଛା କରି ।୧୩୮।
ଧର୍ମକୁ କଷଣ ତୁମ୍ଭେ କରୁଅଛ ଦ୍ୱିଜ
ଋଷିମାନନ୍ତ ସାକ୍ଷୀ କରଇ ମହାରାଜ ।୧୩୯।
ମୋର ହୋ ଦୋଷନାହିଂ ତୁମ୍ଭେ ଆପଣେ ମରିବ
ବ୍ରହ୍ମହତ୍ୟା ଦୋଷ ଯେ କାହାତହିଂ ଲାଗିବ ।୧୪୦।
ଭୀମସେନ ବୋଇଲା ହୋ ଶୁଣ ଜରାସନ୍ଧ
ସଂଗ୍ରାମ କଲେ ଗୋରୁ ବ୍ରାହ୍ମଣ ଶିରଚ୍ଛେଦ ।୧୪୧।
ଓହୋବଳ ସଂଗ୍ରାମରେ ହତ୍ୟା ଦୋଷ ନାହିଂ
ଏହା ନ ବୁଝିଣ କଂପେ କହୁ ତୁ ସାହି, ସାହି ।୧୪୨।

---

୧୩୨।୨ ଏକା ଘାନ୍ତକେ ଗୋଡାଇ ବାନ୍ଧିଲି ସବୁନ୍ତି । (ଝ,ଘ,ଙ)

ଗୋବନ୍ଦେ ବୋଇଲେ ତୁ ଯେତେ ପ୍ରତଗ୍ୟାଂ କର
ଆପଣା ବଡ଼ିମା କହିଲେ ଆପଣା ଘାତକ ଦୋଷ ସର ।୧୪୩।

ପାରୁ ଯେବେ ଜାଗ ହୋ ସାଗ୍ରାମ ଆମ୍ଭନ୍ତ ଦିଅ
ଆହେ ଯାଗନାକମାନେ ତୁମ୍ଭେ ଆହୁତ ରୁହାଅ ।୧୪୪।

ଗୋବନ୍ଦେ ଆଗ୍ୟାଂ ଦିଲେ କଟାକ୍ଷ ନୟନେ
ସାସେ ଆହୁତ ନ ଦିଲେ ଯାଗନାକଗଣେ ।୧୪୫।

ରାଜା ବୋଇଲା କଂପେ ଗ୍ରୁଡଲ ହର୍ବଭାଗ
ଅଗ୍ନିକ ଆହୁତି ଦେଉଥାଅ ବେଗ ବେଗ ।୧୪୬।

ପ୍ରୋହିତେ ବୋଇଲେ ହୋ ଅଛଥି ବସିଥିଲେ
ଧର୍ମପ୍ରାପତ ନୋହି ଅଛଥି ନି ପୁତ୍ର ନ କଲେ ।୧୪୭।

ଜରାସନ୍ଧ କୋପକଲା ପ୍ରୋହିତଂକ ବଚନ ଶୁଣି
ରାଗେ ମହାବୀର ଯେ ଉଠିଲା ଶିରଝୁଣି ।୧୪୮।

ନିକଛ ବସନ ଚୋଳ ପିନ୍ଧିଲା ମାଲ କାଛ
ଲମ୍ବିତ ଜୁଡ଼ା ଫେଡି ବେଣୀ ପାଡିଲା ପ୍ରତକ୍ଷ ।୧୪୯।

କନ୍ଧରୁ ପଇତା କାଢି ବାନ୍ଧିଲା ବାମକରେ
ଭୂମିଠାଣ କର ରାଜା ପହ୍ନଜ କୋପଭରେ ।୧୫୦।

ଆହୋ ଯେସନେକେ ବାହୁ ବସ୍ତାର କରଇ ତୁଣ୍ଡ
ଜରାସନ୍ଧ ଗରଜନ୍ତେ କର୍ମିଲା ବ୍ରହ୍ମାଣ୍ଡ ।୧୫୧।

ସାଧୁ ସାଧୁ ଜରାସନ୍ଧ ବୋଲି ବୋଲନ୍ତି ଆକାଶେ
ପ୍ରତଗ୍ୟାଂ ଦୁଗୁଣ ରାଜା ପଞ୍ଚଦଶ ଦିବସ ଉପବାସେ ।୧୫୨।

ବାହାନାଦ କରଣ ସେହୁ ରଉଦ୍ରେକ ଦିଲା
ଆକାଶ ମଞ୍ଚ ପାତାଳ ଯେ କର୍ମିଣ ଉଠିଲା ।୧୫୩।

କୋପାନଳ ହୋଇଣ ଅଧରେ ଦନ୍ତଚାପି
ବାହାନାଦ କର ଯେ ହାକଇ କାମରୂପୀ ।୧୫୪।

ମନେ ମନେ ବଗ୍ଚର କରଇ ଉରାଇବ ଯୋହାଂକୁ
ଭୟେଣ ବ୍ରାହ୍ମଣେ ନ ଆସନ୍ତୁ ସାଗ୍ରାମକୁ ।୧୫୫।

ଅଧର ପୃଷ୍ଟ କରି କୋପେଣ ରକ୍ତଚକ୍ଷୁ ହେଲା
ଆରେ ତିନିହେଁ ସଜ ହୋଇଆସ ବୋଲି ମଗଧେଶ୍ବର
ବୋଇଲା ।୧୫୬।
ଜଗନ୍ନାଥେ ବୋଇଲେ ହୋ ହୋଇବନା ଅଧର୍ମ
ଯେବେ ଜଣକୁ କାହିଁ ତିନିଜଣେ ସଂଗ୍ରାମ ।୧୫୭।
ଜରାସନ୍ଧ ବୋଇଲା ଯେବେ କରିବା ସଂଗ୍ରାମ
ଦ୍ବନ୍ଦ ଯେବେ କରିବା ତହିଁ କସ ବା ଅଧର୍ମ ।୧୫୮।
ଯେ ପାର ତିନିଜଣୁଂ ଜଣେ ଆସ ସଜ ହୋଇ
ନାରାୟଣ ବୋଇଲେ ଆମ୍ଭର ଇଚ୍ଛା ନାହିଁ ।୧୫୯।
ତୋହୋର ଯାହାକଇଂ ସଂଗ୍ରାମେ ହୋଇବ ଇଚ୍ଛା
ତିନିଜଣରୁ ଜଣେ ରାଅ ପୂରୁ ତୋର ମନବାଞ୍ଛା ।୧୬୦।
ସରସ୍ବତୀକ ଧ୍ୟାଏ କଲେ ଚକ୍ରଧାରୀ
ଆସନ କମ୍ପିଲା ଦେବୀ ଥିଲେ ବ୍ରହ୍ମପୁରୀ ।୧୬୧।
ମନ ବଚନେ ଦେବୀ ଜାଣିଲେ ଯୋଗଧ୍ୟାନେ
ବିଜେ ମହାସ୍ବସ୍ତି ଯେ ବିଚିତ୍ରେକ ବାହାନେ ।୧୬୨।
ଦ୍ବାରକାକୁଂ ଗମିଲେ ଦେବୀ ଛତିଶସହସ୍ର ଯୋଜନ
ପ୍ରବେଶ ହୋଇଲେ ଆସି ବାସୁଦେବଙ୍କ ସନ୍ନିଧାନ ।୧୬୩।
ସ୍ବାମୀର ପଦ୍ମପାଦେ ପ୍ରଣମ୍ୟ କରନ୍ତି
କରପଦ୍ମ ଯୋଡି ଦେବୀ ବଚନ ବୋଲନ୍ତି ।୧୬୪।
ସରସ୍ବତୀ ବୋଇଲେ ଦେବ ଶୁଣ ମଧୁରିପୁ
କେବଣ କାର୍ଯ୍ୟେ ସୁମରିଲ ଜଗତ ଆଧିପୁ ।୧୬୫।
ସରସ୍ବତୀ ବଚନେ ବୋଲନ୍ତି ନାରାୟଣ
ଯୁଧିଷ୍ଠିର ଦେବ ରାଜସୂୟଯାଗ କରିବେ ଆରୋପଣ ।୧୬୬।
ନାରଦେ କହିଲେ ଯାଇଂ ଯୁଧିଷ୍ଠିରଙ୍କର ଆଗେ
ଜରାସନ୍ଧ ରାଜାନ୍ତ ବନ୍ଦୀ କରିଛି ମହାରାଗେ ।୧୬୭।
ମୋତେ ରାଇ ଆଜ୍ଞାଂ ହେଲେକ ଯୁଧିଷ୍ଠିର
ସାଙ୍ଗେଣ ବେନି ଭାଇ ଭୀମ ଯେ କେରଡି ।୧୬୮।
ବଳଦେବ ହାଥେ ବଧ ନୋହଇ ବ୍ରହ୍ମା କହିଲେ
ସହଦେବ କରସ୍ଥଳୀ ବୃତ୍ତିଂ ମୋତେ ଯେ ବୋଇଲେ ।୧୬୯।

ଭୀମସେନ ହାଥେ ଜାଗ ମରିବ ବୋଲି ମୋତେ କହିଲେ
ଜରାସନ୍ଧ ମୃତ୍ୟୁ ଗୋ ଦଇବ ବହିଲେ ।୧୭୦।
ବଜେକରି ଦେଖା ଜରାସନ୍ଧର କଣ୍ଠେ
ଭୀମସେନକୁ ରାଜ ବୋଇଲେ ଦେବକୀର ଗୃଷ୍ଟେ ।୧୭୧।
ଅଷ୍ଟାଦଶ ବେଳ ଆମ୍ଭନ୍ତ ଦଲ୍ଲ ଧାଡ଼ି
ସମୋଦ୍ରେ ସେ ରହି ପାରିଲୁ ବଦପୁନ୍ତ ବନମାଳୀ ।୧୭୨।
ଯେତେ ଦୁଖ ମୋତେ ଦଲ୍ଲ ଜରାସନ୍ଧ
ତୁମ୍ଭେ କ ନ ଜାଣ ଗୋ ବଦପୂନ୍ତ ଗୋବିନ୍ଦ ।୧୭୩।
ମୋତେ ଅର୍ଜୁନକୁ ଦୁହିନ୍ତ କରୁ ନାସ୍ତି
ଭୀମସେନକୁ ରାଜ ସେ ବୋଲନ୍ତ ଶ୍ରୀପତି ।୧୭୪।
ହରି ପାଟବଂଶୀ ସେ ଅଟନ୍ତି ମହାସ୍ୱସ୍ତି
ଜରାସନ୍ଧର କଣ୍ଠେ ବିଜୟ କଲେକ ସରସ୍ୱତି ।୧୭୫।
ଯହୁଂ ବଜେକଲେ ଦେଖା ଜରାସନ୍ଧର କଣ୍ଠେ
ଶରୀର ମୋହିତ ସେ ହୋଇଲ୍ଲ ମହାହୃଷ୍ଟେ ।୧୭୬।
ଜରାସନ୍ଧ ବୋଇଲ୍ଲ ଜଗନ୍ନାଥଂକର ମୁଖ ଗୃହିଂ
ଣ୍ଟପ ବ୍ରାହ୍ମଣ ଗୋଟି ତୋହୋରେ କରୁ କାର୍ଯ୍ୟ ନାହିଂ ।୧୭୭।
ଅର୍ଜୁନକୁ ବୋଇଲ୍ଲ ତୁ ଅଟୁ କ୍ଷୀଣ ବପୁ
ତୋହୋର ସଂଗ୍ରାମେ କସ ହୋଇବ ପୁଣ ମୁଲୁ ।୧୭୮।
ମଧରେ ଅଛଇ ଯେହୁ ଧୂମ୍ରୂଷା ବ୍ରାହ୍ମଣ
କୋଳକରି ଧଇଲେ ଲ୍ଲଗିବ କାଖେଣ ।୧୭୯।
ପାରୁ ନ ପାରୁ ଯେହ୍ନାର ଶରୀର ଦୁର୍ମୋଟା
ବାହାର ହୋଇ ଆସ ହୋ ସଂଗ୍ରାମେ ବପ୍ର ଗୋଟା ।୧୮୦।
ଗୋବିନ୍ଦେ ଗୃହିଂଲେ ତହିଂ ଭୀମସେନର ବଦନ
ଯାଅ ହୋ ପଣ୍ଡାପୁତ୍ରେ ରଜାର ତୁମ୍ଭଂକୁ ହୋଇଲ୍ଲ ମନ ।୧୮୧।
ନାରାୟଣଂକ ମୁଖରୁ ଯେସନକ ଅମୃତ ବଚନ ଶୁଣି
ବାହାର ପାବେକ ସେ କୋପେଣ ଶିର ଝୁଣି ।୧୮୨।
ହିକଛ ବସନ ଫେଡ଼ି ମାଲକଛ ପିନ୍ଧି
ଲମ୍ବିତ ଜୁଡ଼ା ଯେ ନାଗବନ୍ଧ କରି ବାନ୍ଧି ।୧୮୩।

ପବନ ଉତ୍ତୁରି ଯେ ବାନ୍ଧିଲ୍ ବାମକରେ
ପ୍ରତଗ୍ୟାଂ କରି ଉଭା ହୋଇଲ୍ ବୃକୋଦରେ ।୧୮୪।
ଭୂମି ଠାଣ କରି ଘେନିଲକ ୱାର ଧୂଳି
ବାହାସ୍ଫୋଟ ଦେଇ ଉଭା ହୋଇଲ୍ ମହାବଳୀ ।୧୮୫।
ଆନ୍ଵେଷଣ କରି ଯତ୍ନୁଂ ହୋଇଲ୍ ଠିଆଠାଣ
ଜରାସନ୍ଧ ବୋଇଲ୍ ତ୍ୟେ ତ ନୋହୋଇ ବ୍ରାହ୍ମଣ ।୧୮୬।
ଦେବ କି ଦାନେବ ତୂମ୍ଭେ କପଟ ରୂପ ଧରି
ନିଚଯ୍ୟେ ଅଇଲ ହୋ ମରଣ ଇଚ୍ଛା କରି ।୧୮୭।
ଧର୍ମିକୁ କଷଣ ମୋତେ କରୁଅଛଟି କି ଦ୍ଵିଜ
ଋଷିମାନନ୍ତ ତହିଂ ସାକ୍ଷ କରଇ ମହାରାଜ ।୧୮୮।
ମୋହୋର ଦୋଷ ନାହିଂଟି ତୂମ୍ଭେ ଆପଣେ ମରିବ
ବ୍ରହ୍ମହତ୍ୟା ଦୋଷ ପୁଣ କାହାତହିଂ ପଡ଼ିବ ।୧୮୯।
ଭୀମସେନ ବୋଇଲ୍ ହୋ ଶୁଣ ଜରାସନ୍ଧ
ସଂଗ୍ରାମେ ଗୋ ବ୍ରାହ୍ମଣ ହୋଇଲେ ଶିରଚ୍ଛେଦ ।୧୯୦।
ଓହୋବଲ ସଂଗ୍ରାମରେ ହତ୍ୟାଦୋଷ ନାହିଂ
ଜରାସନ୍ଧ ଧାଇଂଲ୍ ମାରୁତି ବଚନ ପାଇଂ ।୧୯୧।
ରେ ରେ କାର କରଣ ସେ ଶବଦେକ କଲ
ମହାଭଇରେବ ମୂର୍ତ୍ତି ଧରି ଭୀମସେନେ ଆକ୍ଷେପିଲ୍ ।୧୯୨।
ବୋଇଲ୍ ଖଡଗ ଫଳା ଧନୁ ଯେ ବନ୍ଧାଣ
ପଟ୍ଟା ଶକତି ଗୁରୁଜ ଗଦା କିସ ଯୁଦ୍ଧ ଜାଣ ।୧୯୩।
ଭୀମସେନ ବୋଇଲ୍ ହୋ ଆମ୍ଭେ ଦ୍ଵିଜ ଜାତି
ଆମ୍ଭେ କେହ୍ନେ ଜାଣିବୁ ହୋ ତୋର ଧନୁ ଫଳାର ଗତି ।୧୯୪।
ଭୀମସେନ ବୋଇଲ୍ ମୁଂ କିଛି ନ ଜାଣଇଂ
ଗଡୁ, ଗଡୁ, ପଡୁ, ପଡୁ ପଛେ ହେବ ଯେଉଣ ମାନଇଂ ।୧୯୫।
ଜରାସନ୍ଧ ବୋଇଲ୍ ତ୍ୟେ ମାଲ ବନ୍ଧାଣର କଥା
ଶୁଣ ଆହେ ଦ୍ଵିଜବର ଯୁଦ୍ଧର ବାରତା ।୧୯୬।
ଭୁଜେ ଭୁଜ ପଡିତାଳ ପାଦେ ପାଦ ଛନ୍ଦ
ଶିରେ ଶିର ପଡିତାଳ ହୃଦେ ହୃଦ ବାନ୍ଧ ।୧୯୭।

ତାଡଣ ମାଡଣ ଭିଡଣ ଆବର ବିକଟ
ଘୋର ପ୍ରହାର ସେ ଯେ ହୋ ବଡାଇ ସଂକଟ ।୧୯୮।
ଧରଣ ଧାରଣ ହରଣ ଘୋରରୂପା
ରକ୍ଷଣ ଦେଖଣ ଆକର୍ଷଣ ବିକଟ ସରୂପା ।୧୯୯।
ମାରଣ ତାରଣ ମେଷ୍ଟଣ ଉଦ୍ଧାରଣ
ବିଡମ୍ବଣ ମାଲବିଦ୍ୟା ଚଉରାଶି ବନ୍ଧାଣ ।୨୦୦।
ଘାରି କଉତୁକ ଛଡଣ ପାଶିବନ୍ଧ ଗାଡ ଛନ୍ଦ
ସ୍ୱେମନ୍ତ ବିଧାନରେ ହୋଇଲା ମାଲବନ୍ଧ ।୨୦୧।
ଆକ୍ଷେପିଣ ମାଲଯୁଦ୍ଧ କରନ୍ତେଣ ବଡି
କରଟି କରଟି ବୋଇଲେଣ ସଂଗ୍ରାମ ପୁଣ ଗୁଡ ।୨୦୨।
ରାଜାର ବଚନେ ବୋଲଇ ମରୁତର ସୁତ
ତୁ ଯାହା ବୋଇଲୁ ସେ ମୋହୋର ସନମତ ।୨୦୩।
ଦନ୍ତେଣ ଅଧର ଚିପି ବୋଲଇ ମହାବୀର
ଭୀମକୁ ଆକର୍ଷିଣ ଯେ ଧଇଲା ବୀର ଜାରି ।୨୦୪।
ଭୁଜେଣ ଭୁଜ ଭିଡ ମୁଥେଣ ମୁଥ ମାରି
ହୁଂକାର ଶବଦେଣ ହୁଅନ୍ତ କୋଡା କୋଡ ।୨୦୫।
ବାହା ଛନ୍ଦା ଛନ୍ଦ ହୋଇଲେ ଧରା ଧରି
କେହି କାହାକୁ ଯେ ନୁଆରନ୍ତ ବଳେ ପାଡ ।୨୦୬।
ପାଦେଣ ଭୀମସେନକୁ ଛନ୍ଦିଲା ଜରାସନ୍ଧ
ଆକ୍ଷେପି ଭୀମସେନକୁ ସେ ଯେ ପାଡିଲା ମାଲବନ୍ଧ ।୨୦୭।
ମାଡଣ ଜରାସନ୍ଧ ଯେ ବସିଲା ଉପରେ
ପ୍ରତିଜ୍ଞ୍ୟାଂ କରଇ ସେ ଅତ୍ୟନ୍ତ କୋପଭରେ ।୨୦୮।
ଆରେ ଛାଉଂ ଛାଉଂ ନାଶକର ରେ ପୋଚ୍ଛିଲା ତୋର ପାଂଜ
ବ୍ରାହ୍ମଣ ହୋଇ ତୁ ରେ ହୋଇଲୁ ବଡ ଗଂଜ ।୨୦୯।

---

୨୦୫।୨ ହୁଂକାର ଶବଦେଣ କରନ୍ତ ଘୋରରଡ । (ଝ,ଠ,ଢ)

୨୦୬।୨ ଭୁଜକୁ ଭୁଜ ଭିଡ ମୁଣ୍ଡେ, ମୁଣ୍ଡ କୋଡାକୋଡ । (ଝ,ଘ,ଠ)

ସୁମର ବ୍ରାହ୍ମଣ ରେ ତୋ ଇଷ୍ଟଦେବତା
ସୁମର ଦ୍ୱିଜବର ରେ ତୋହୋର ମାତା ପିତା ।୨୧୦।
ହୁଂକାର ଶବଦେକ ଯେ କଲ୍କ ମାରୁତି
ତାରକୁ ଲେଉଟାଇ ପକାଇଲ୍ ତତକ୍ଷଣାନ୍ତି ।୨୧୧।
ମାଡଣ ବସିଲ୍ ଯେ ଜରାସନ୍ଧର ବକ୍ଷସ୍ଥଳେ
ପ୍ରତଗ୍ୟାଂ କରଇ ବୀର ଅଡ଼ୟୁ ମଉଭରେ ।୨୧୨।
ପୁଣିହିଂ ଲେଉଟାଇ ପାଡିଲ୍ ଜରାସନ୍ଧ
ଭୀମର ବକ୍ଷସ୍ଥଳେ ମାଡ ବସିଲ୍କ ମାଲବନ୍ଧ ।୨୧୩।
ପୁଣି ଲେଉଟାଇ ମାଡ ବସିଲ୍ ମାରୁତି
ତାର୍ ବକ୍ଷସ୍ଥଳେ ମାଡ ବସିଲ୍ ତତକ୍ଷଣାନ୍ତି ।୨୧୪।
ଧରାଧର ଗଡାଗଡ ହୁଅନ୍ତି ମରାମର
ପାଦଭରେ ହେଲ ଯେ ଧେନଇ ବସୁନ୍ଧରା ।୨୧୫।
ମୁଥେ ମୁଥ ପଡିତାଲ ହୁଅନ୍ତେଣ ବେନି
ଗଗନେ କର୍ମିଲେ ଯେ ନାଥ ଫଣୀବନୀ ।୨୧୬।
ତର୍ଜନ୍ତି ଗର୍ଜନ୍ତି ସେ ଉଠନ୍ତି ଲୋଟନ୍ତି
ମୁଖରାବ ଶବଦେ ଯେ ଦିଗପାଳେ ତ୍ରାସନ୍ତି ।୨୧୭।
ମହାଯୁଦ୍ଧ ଦେଖି ଯେ ଯାଗନିକେ ବିସ୍ମରନ୍ତି
ପାଉଂଶ ଲୁତ ପକାଇ ଯେ ପୋତିଲେ ଆହୁତି ।୨୧୮।
ଭାରଦ୍ୱାଦଶେ ବୋଇଲେ ଶୁଣ ହୋ ସୁଦେବ
ସଂଗ୍ରାମ କରନ୍ତା ଯେ୍ୱ ବୀର କେ କେତି କହିବା ପ୍ରସ୍ତାବ ।୨୧୯।
ସୁଦେବ ବୋଇଲେ ଜରାସନ୍ଧ ଉତକର୍ମ ତପେ
ଭୀମ ଅର୍ଜୁନକଇ ଧେନି ହରି ବଜେକଲେ ଗୋପ୍ୟେ ।୨୨୦।
ବଡିଲ୍ ରଣରଙ୍ଗ ଯେ ବୃକୋଦର ମହାବୀର
ଯେ୍ୱହିକ୍ଷଣି ମାରବ ଭୀମସେନ, ବଧ ହୋଇବତି ତାର୍ ।୨୨୧।
ଆହୋ ଭୀମ ଜରାସନ୍ଧର ଯେ ସମର ଗୁରୁତର
ଯାଗଶାଳ ଆଦକର ଭଂଜ ହୋଇଲ୍ ସବଚୂର ।୨୨୨।



ମେଡ ମଣ୍ଡୋପ ଯେ ଦେଉଳ ଜଗଣ୍ଡି
ସମସ୍ତ ଭଂଜଣ ଯେ ପଡଲ୍କ କ୍ଷିତ ।୨୨୩।
ଦୁସହ ସଂଗ୍ରାମ ହୋ କହ୍ବତେ କ ପାର
ରୋଧିର ବୃଷ୍ଟି ହୋଇଲ ବେନ ଶରୀର ଜର ଜର ।୨୨୪।
ବେନ୍ନଷଣ୍ଡ ଯେସନେକେ ହୋଅନ୍ତ୍ୟ ପଡତାଳ
ସତ୍ୟଯୁଗେ ଯୁଦ୍ଧ ଯେସନେକେ କେତ୍ରୁ ଯେ ମଙ୍ଗଳ ।୨୨୫।
ସଂଗ୍ରାମେ ଅନବାରଣ ସେ ବୃହଧ୍ୱଜର ବଳ।
ବଳେଣ ବଳବନ୍ତା ସେ ତେଜେଣ ଅନର୍ଗଳା ।୨୨୬।
ଭୀମସେନକୁ ମାଡ ବସିଲ ହୃଦଗତେ
ବକ୍ଷସ୍ଥଳ ଗୃପିଣ ସେ ମାଇଲ ବଜ୍ରମୁଥେ ।୨୨୭।
ରାଜାମାନେ ଅଛନ୍ତ ଯେ ନିଆଳ ହାଦେ ପିଛ
ଧାସ୍ୟେ କର ସୁମରନ୍ତ ସେ ଅନାଦ୍ଧ ସର୍ବସିଦ୍ଧି ।୨୨୮।
ନମସ୍ତେ ଅନାଦ୍ଧ ଗୋ ଶକତ ମାହେଶ୍ୱରୀ
ଆଦ୍ଧସମ୍ଭୂତ ହୋଇଲୁ ମହା ଅନଳ ବଦାର ।୨୨୯।
ଅଗ୍ନି ହୁଂ ଅଧିକ ଗୋ ବରାଜତ ତୋର ତେଜ
ସ୍ୟେକଇ ବଦନକୁ ତୋ ଶୋହଇ ସହସ୍ରେକ ଭୁଜ ।୨୩୦।
ସମସ୍ତ ଦେବତାସ୍ୟେ ତୋତେ ଦେଖି କଲେ ସ୍ତୁତ
ଶ୍ରୀଭୁଜେ ଆଣି ଦ୍ଦଲେ ଧନୁ ବୋଣ ଶକତ ।୨୩୧।
ପରଘ କୋନ୍ତ ନାରାଜ ପଟ୍ଟିସ ଯେ କୁଣ୍ଡଳୀ
ଗୁରୁଜ କମାସ୍ୟେଣ ବଜେକଣ୍ଟକଟାରୀ ମୂଷଳୀ ।୨୩୨।

---

୨୨୩।୨ ସମସ୍ତ ଚୂର ହୋଇଲ ତହୁଂ ତତକ୍ଷଣାନ୍ତ । (ଥ,ଙ)
୨୨୪।୨ "ରୋଧିର ବୃଷ୍ଟି ହୋଇଲ ବେନ ଶରୀର ଜର ଜର" ପାଠ
ପରେ ଅଧିକା ପାଠ—(ଘ,ଙ୍ଗ)ରେ

ପାଦଭରେ ଦଲ ଦଲ ହେଲ ବସୁନ୍ଧରା
ଦେହ ଲଗି ପାଷାଣେ କାଷ୍ଠହୁଂ ହୋସ୍ୟେ ଚୂର ।
ମୁଥେ ମୁଥ ପଡତାଳ ହୁଅନ୍ତେଣ ବେନ
ଆକାଶରେ ଗୋପ୍ୟାନ ଯେ ହୋଇଲେ ଦନମଣି ।
ପାଦଘାତରେ ଭୂମିରୁ ଉଡଲକ ଧୂଳି
ଆକାଶେ ଅଦୃଶ୍ୟ ହେଲେ ଦେବ ଅଂଶୁମାଳୀ ।

ସକଳ ଦେବତାଏ୍ କଲେ ଅନେକ ସ୍ତୁତି
ସମସ୍ତ ଶସ୍ତ୍ରମାନ ଦିଲେକ ବେଦପନ୍ତି ।୨୩୩।
କାଳପାଶୀ ଜଳପାଶୀ ନାଗପାଶୀ ଶର
ବ୍ରହ୍ମଶକ୍ତି ଶୂଳଶକ୍ତି ବଜ୍ରଶକ୍ତି ମୁଦୁଗର ।୨୩୪।
ସ୍ତମ୍ଭନ ମୋହନ ବଶ ଉଚାଟନ ବିଦ୍ୟା
ଗୁଟିକା ଅଂଜନ ଧରଣ ଧାରଣ ସର୍ବସିଦ୍ଧା ।୨୩୫।
ତାରଣ ମାରଣ ଆରଣ ସିଦ୍ଧ ସାଧକ ମନ୍ତ୍ର
ସାଧନ ଶୋଧନ ବୋଧନ ସିଦ୍ଧ ସର୍ବ ଯନ୍ତ୍ର ।୨୩୬।
ଉଲ୍ଲୁକପଦ ମନ୍ତ୍ର ସାଧନେ ତୁ ପରମ ଯୋଗେଶ୍ୱରୀ
ବାହାନେ ବିଜେକଲୁ ଗୋ ପିଠି ଯେ କେଶରୀ ।୨୩୭।
ଦେବତାଂକର କଷ୍ଟ ମାଗୋ ଉଦ୍ଧାରିବା ନିମନ୍ତେ
ବିଜୟେ୍ ମହାମାୟା ଗୋ କଣୟୁଗିରି ପର୍ବତେ ।୨୩୮।
ଅସୁରବଳ ଦେଖି ଗୋ ଶରୀର କଲୁ ଗୋପ୍ୟ
ବାରିତ ନ ଗଲା ମାଗୋ ଯେ୍ ତୋହୋର ସରୂପ ।୨୩୯।
ଦିତ୍ୟନ୍ତ ମୋହିଲୁ ମାଗୋ ମୋହିନୀ କାମସେଣା
ମଦନେ ବଶକଲୁ ଅସୁରନ୍ତ କଲୁ ବଣା ।୨୪୦।
ଚଣ୍ଡ ମୁଣ୍ଡ ବଧିଲୁ ଗୋ ଶୁମ୍ଭ ଯେ ନିଶମ୍ଭୁ
ମାୟା ମୋହିନୀ ରୂପେ ଯେ ବଶ କଲୁ ସବୁ ।୨୪୧।
ଶୁମ୍ଭ ନିଶୁମ୍ଭ ନାଶ କଲୁ ଗୋ ଭଇରହରଷ ନାଟେ
ବିଡାଳାକ୍ଷ କାନ୍ତିମାଳା ଗୋ ବଧିଲୁ ଦେବୀ କୂଟେ ।୨୪୨।

---

୨୪୧।୨ "ମାୟା ମୋହିନୀ ରୂପେ ଯେ ବଶକଲୁ ସବୁ" ପରେ (ଘ,ଙ,ଠ, "ଞ") ରେ ଅଧିକ ପାଠ—

ଚଣ୍ଡପୁଟ, ଗୃଣ୍ଡପୁଟ ଭଇରହରଷ ନାଟରସେ
ବିଡଲାକ୍ଷ କାନ୍ତିମାଳା ଗୋ ମୋହିଲୁ କୂଟହାସେ ।

୨୪୨।୨ "ବିଡାଳାକ୍ଷ କାନ୍ତିମାଳା ଗୋ ବଧିଲୁ ଦେବୀ କୂଟେ" ପରେ କେତେକ ପୋଥିରେ ଭିନ୍ନ ପାଠ :—

ରକ୍ତବୀର୍ଯ୍ୟ ବଧକଲୁ ଗୋ କାତ୍ୟାୟିନୀରୂପ ଦେଖି
ଖାଂକର ରୂପ ଭଇରବୀ ସରୂପ ପ୍ରକାଶି ।

ରକ୍ତବୀର୍ଯ୍ୟ ବଧିଲୁ ମାଗୋ ଡାଂକେଣୀବୃନ୍ଦ ପେଷି
ଭଇରୋବୀ ବାସେଳୀ ଖେଚରୀ ରୂପ ଯେ ପ୍ରକାଶି ।୨୪୩।
ଚାମୁଣ୍ଡା ଚର୍ଚ୍ଚିକା ଯେ ଅଭୟେ ବାସେଳୀ
କାମାକ୍ଷୀ ତ୍ରିପୁରା କଂକାଳୀ ବେତାଳୀ ।୨୪୪।
ଅଭୟେ ଅପର୍ଣ୍ଣା ଗୋ ମୋହିନୀ କାମସେଣା
ବ୍ରହ୍ମାୟେଣୀ, ରୁଦ୍ରାୟେଣୀ, ଇନ୍ଦ୍ରାୟେଣୀ,ମହାମାୟା ସର୍ବକ୍ଷଣା ।୨୪୫।
ଚଣ୍ଡିକା ଚନ୍ଦ୍ରଚୂଡ଼ା ବେତାଳୀ ଡାକେଶ୍ୱରୀ
ମହାବିଶ୍ୱରୂପିଣୀ ଗୋ ଯୋଟିଲୁ ସର୍ବପୁରୀ ।୨୪୬।
ଧାଆଂ ରେ ମାର ରେ କଉତୁକେ ଦ୍ୟନ୍ତ ବୋଲ
ଶ୍ରୋଣେହା ପିଙ୍ଗୃଶୁଣୀ ଡାକେଣୀ ଭଇରୋବୀ ।୨୪୭।
ଅନନ୍ତା ବିଜୟା ଗୋ କାଳିକା କାଳରାତ୍ରି
ଅନେକ ମୂରତି ଯେକ ଶରୀରୁଂ ଉତପତ୍ତି ।୨୪୮।
ରକତବୀର୍ଯ୍ୟ ମାରି ମଧୁ ମାୟେଂସେ ଖେଡି
ଅନ୍ତରୀକ୍ଷେ ବୁଲାଇ ଅସୁରନ୍ତ ପର୍ବତେ କରୁଡି ।୨୪୯।
ଚାମର ବେମାଳ ଦୈତ୍ୟ ମରାଇଲୁ ଭଇରୋବୀର ହାତେ
ବୀରଘଣ୍ଟ ବଧ କରାଇଲୁ ତ୍ରିପୁରାନ୍ତେ ଯେକାନ୍ତେ ।୨୫୦।
ରକତବୀର୍ଯ୍ୟ ନାଶଗଲା ନାରାୟଣୀଂକର ହାତେ
କାମରୂପେ ଯୁଧକଲେ କାଳିକା ସହିତେ ।୨୫୧।

---

କାତ୍ୟାନୀ ମହାଗଉରୀ ଚଣ୍ଡ ମହାସ୍ୱନୀ
ସାବିତ୍ରୀ ଶାଚ ଗାୟିତ୍ରୀ ବ୍ରହ୍ମାଣୀ ବ୍ରହ୍ମବାଦିନୀ ।
ନାରାୟଣୀ ଭଦ୍ରକାଳୀ କୃଷ୍ଣ ପିଙ୍ଗଳା ଅଗ୍ନିଜ୍ୱାଳା ରୁଦ୍ରମୁଖୀ
କାଳରାତ୍ରି ତପସ୍ୱିନୀ ଘୋରଭଦ୍ରା ଭୟଂକରୀ ମୁଖୀ ।
ହେମାସନା ସହସ୍ରାକ୍ଷୀ ବିକଟ କାୟା ଜଳୋଦରୀ
ମହୋଦରୀ ବିକଟକେଶୀ ଭୟଂକରୀ ।
ଘୋରରୂପା ମହାବଳା ମହାମାୟା
ଅଚ୍ୟୁତା, ଭଦ୍ରକାଳିକା, ଜଗଦ୍ଧାତ୍ରୀ, ଶିବପ୍ରିୟା ।

୨୪୩।୨ ଶ୍ରୁତି, ସୁସ୍ମୃତି, ବିଦ୍ୟା, ଲକ୍ଷ୍ମୀ, ସରସ୍ୱତୀ, କାଳୀ, କରାଳୀ ଓ
କେତେକ ପୋଥିରେ ସାବିତ୍ରୀ ପ୍ରଭୃତି ପାଠ ମଧ୍ୟ ଦେଖାଯାଏ।

ବେତାଳୀ ନାଶକଲୁ ରାକ୍ଷସ ଘମଣ୍ଡ

ମାୟାମୋହେ ମୋହିଲୁ ବଧିଲୁ ସର୍ବଦୁଷ୍ଟ ।୨୫୨।

ମହିଂଷାସୁର ବଧକଲୁ ଗୋ ହୋଇଲୁ ଉଲଗ୍ନଶାୟୀ

ମୋହନ କାମଗତେ ମୂର୍ଚ୍ଛାଗଲା ଗୃହ୍ୱଂ ଗୃହ୍ୱଂ ।୨୫୩।

ଶୂଲେକ ମାର ମାଡିବସିଲୁ ବକ୍ଷସ୍ଥଲେ

ତୁହି ସେ ଅସୁର ବଲ ଧ୍ୱଂସୁ ସର୍ବକାଲେ ।୨୫୪।

ଜୟ ତୁ ନାରାୟଣୀ ଗୋ ଅନାଦି ଶକତି

ତୁହି ସେ ସଂସାର ଜନଂକର ଫେଡୁ ଗୋ ଦୁର୍ଗତି ।୨୫୫।

ଲୋଭ ମୋହ ଅହଂକାର ହିଂସା ଅପବାଦୁଂ

ଯେଥୁ ମୁକତି ହୋଇବୁ ମାଗୋ ତୋହୋର ପରସାଦୁଂ ।୨୫୬।

ଯୋଗେ ଯୋଗେଶ୍ୱରୀ ଗୋ ଅପାର ଦୁଖ ଖଣ୍ଡି

ହୁଅସି ପ୍ରସନ୍ନ ଗୋ ଅଭୟେ ମଙ୍ଗଲଚଣ୍ଡୀ ।୨୫୭।

ସୁର ସିଦ୍ଧମୁନି ଗୋ ଯାହା ଚରଣେ ବନ୍ଦେ

ଅତୟ ଗୁଣବନ୍ତୀ ଗୋ ସଦାଶିବର ବିନୋଦେ ।୨୫୮।

ଆନନ୍ଦନନ୍ଦମୀ ଗୋ ସମସ୍ତ ଦୁଖ ନାଶି

ଯେ ଭବସାଗରୁ ମୋତେ ଉଦ୍ଧର ଧର ଝଙ୍କେରପୁର ବାସୀ ।୨୫୯।

ଭଗତି ମୁକତି ମାଗୋ ତୋହୋର ପ୍ରସନ୍ନେ

ପାଇଲ ପରମଗତି ସିଦ୍ଧସାରଳା ଦର୍ଶନେ ।୨୬୦।

ମୁହିଂ ଜନ୍ମେ, ଜନ୍ମେ ମୂର୍ଖ ଗୋ ଗ୍ୟାନ ମୋର କାସ

ତବ ଆଗ୍ୟାଂ ପ୍ରମାଣେ ମୋତେ ଭବିଷ୍ୟ ହୋଇଲା ଦୃଶ ।୨୬୧।

ନର୍ମଦା ସରସ୍ୱତୀର ମୁଂ ଭଣ୍ଡାର ବିଧ୍ୱଂସି

ଶୂଦ୍ରମୁନି ସାରଳ ଦାସଙ୍କୁ ମୁକତି ଗତି ଦେସି ।୨୬୨।

ଆହା ଦୁର୍ଗାଂକୁ ତୁଷ୍ଟି ଯେ କଲେ ବନ୍ଦୀରାଜାମାନେ

ଯେ ଦୁର୍ଗତିରୁ ତରିବୁଂ ଗୋ ତୋହୋର ପରସନ୍ନେ ।୨୬୩।

ମାଗୋ କନ୍ୟାମାସ ଶୁକଲ ପକ୍ଷ ଅଷ୍ଟମୀର ତିଥି

ଶରଦ ଉଚ୍ଛବ କର ତୋତେ ହୋଇଥିବୁ ଭଗତି ।୨୬୪।

---

୨୫୬।୧ ଲୋଭ ମୋହ କାମ କ୍ରୋଧ ହିଂସା ଅପବାଦୁଂ । (ଝ,ଠ,ଝ,ଘ,ଙ)

ଅନେକ ସମ୍ଭର ଭର ମାଗୋ ମହାନଶାସ୍ୱେ ତୋତେ ପୂଜ
ଗୃଜ, ଗୃହ ଜଣ ନରବଳ ତୋତେ ଦେଉଥିବୁ ଭୋଜ ।୨୬୫।
ମଇଂଷି ମେଷ ଛାଗଳ ରୋଧିର ମାଂସେ ପୂଜା
ଦୁର୍ଗାଂକୁ ତଳଯ୍ୱେ କର ସୁମରଣା କରନ୍ତ ସବଗଜା ।୨୬୬।
ଜରାସନ୍ଧ ବଧ ଯାଉ ଯେ ବ୍ରାହ୍ମଣଂକ ହାଥେ
ଯଦ୍ୟପି ଭଗତମସ୍ତଳୀ ମାଗୋ ତୁ ଅଚ୍ଛୁ ଜଗତମାତେ ।୨୬୭।
ସୁମରନ୍ତେ ଗୋସାମଣୀ ଅଭଯ୍ୱେ ହିଙ୍ଗୁଳା
ରାଜାନ୍ତ ପ୍ରସନ୍ନ ହୋଇଲେ ଦେବୀ ଯେ ସର୍ବ ମଙ୍ଗଳା ।୨୬୮।
ଛାଡ ହୋ ମନଭ୍ରାନ୍ତ ତୁମ୍ଭେ ସକଳ ରାଜାମାନ
ଯେତୁହିକ୍ଷଣି ଜରାସନ୍ଧ ହୋଇବ ନିଧନ ।୨୬୯।
ରାଜାଂକୁ ବର ଦେଇ ଭୀମକୁ କଲେ ଦୟା
ମାରୁତି ଅଙ୍ଗେ ବଜେ କଲେ ମହାମାୟା ।୨୭୦।
ସାଂଗ୍ରାମେ ଅପରଯ୍ୱେ ପାଉଥିଲା ଭୀମ
ମହାବଳବନ୍ତ ହୋଇଣ ପାଇଲା ସାଷ୍ଟାମ ।୨୭୧।
ଜରାସନ୍ଧକୁ ସେ ଯେ ପାଡ଼ିଲା ଲେଉଟାଇ
ମାଡଣ ହୃଦଗତେ ବସିଲା ବୀର ଯାଇ ।୨୭୨।

---

୨୭୨।୯ "ମାଡଣ ହୃଦଗତେ ବସିଲା ବୀର ଯାଇ" ପରେ—'କ' ପୋଥିରେ ଅଧିକା ପାଠ—

ପୁଣି ଜରାସନ୍ଧ ଲେଉଟାଇ ମାଡିଲା
ହୃଦରେ ମାଡ ବସି ମୁଥେକ ମାଇଲା ।
ରେ ରେ ବ୍ରାହ୍ମଣ ତୋର ପୂରିଲା ଆଜ କାଳ
ନଚଯ୍ୱେ ବସିବୁ ଆଜ ସଂଜୀବନୀ ମଣ୍ଡଳ ।
ଗୋବିନ୍ଦେ ପୃଚ୍ଛାକଲେ ଅର୍ଜୁନ ମୁଖ ଗୃହ୍ନଂ
ଯେତେବେଳ ଯାଯ୍ୱେ ଭୀମସେନ ଗ୍ୟାନ ନାହ୍ନଂ ।
ଅର୍ଜୁନ ବୋଇଲା ଶୁଣ ମଧୂରପୁ
ସାବଧାନେ ଶୁଣ ଦେବ ଜଗତ ଆଧିପୁ ।
ଶତଶିଙ୍ଗ ଶାପ ଯେ ଦେଇଅଚ୍ଛୁ ପୂର୍ବେ
ତବ ଦୋଷେ ଭୀମସେନ ହାରିଲାକ ଯେବେ ।
ପ୍ରଥମ ଯୁଦ୍ଧେ ହାରବୁ ବୋଲି ଶତଶିଙ୍ଗ ଶାପ ହେଲା
ଦୂଜ ସମରେ ମୋତେ ସୁମରିବୁ ବୋଇଲା ।

ମନ୍ଦର ମାଡ଼ ଯେହ୍ନେ ବସଇ ମହାମେରୁ
ସେହ୍ନ ସାଡ୍ରିଶେ ଭୀମସେନେ ଜରାସନ୍ଧକୁ ହେଲା ମହାଗରୁ ।୨୭୩।
ଆନ୍ଦେଷି ମାଡ଼ବସିଲା ଯେ ଜାରାର ବକ୍ଷସ୍ଥଳେ
ନେଇ ବାମକରେ ଗୃପେ ହୃଦୟୁ ମଣ୍ଡଳେ ।୨୭୪।
ବେନି ପାଦେ ମାଡ଼ ବସିଲା କଟି ମେଖଳା ଜାନୁ
ଅପାର ପ୍ରତଗ୍ୟାଂ କରଇ ପବନର ତନୁ ।୨୭୫।
ରେ ରେ ଜାରା ସୁମର ତୋର ଇଷ୍ଟ ଯେ ଦେବତା
ରେ ରେ ଜାରା ସୁମର ତୋର ପିତା ମାତା ।୨୭୬।
ରେ ରେ ଜାରା ତୋର ବୁଡ଼ିଲା ଆଜ ଜୀବ
ରେ ରେ ଜାରା ତୋର ଯାଞ୍ଜି ପୋଛିଲା ଯମଦେବ ।୨୭୭।
ରେ ରେ ଜାରା ଭୁଜ୍ଞି ତ ପ୍ରତଗ୍ୟାଂ ଉପଲେଖୁ
ରେ ରେ ଜାରା ସଇଲୋକ୍ୟେ କେ ପାରୁ ତୋତେ ରଖୁ ।୨୭୮।

---

ସ୍ୱେତସନେକ ଶାପ ଅଛଇ ପୂର୍ବ ଖଣ୍ଡ
ତେଣୁ କରି ସମରେ ହାରୁଛି ମାରୁତ ।
ଗୋବିନ୍ଦେ ବୋଇଲେ କଂପେ ନ କଲ ସୁମରଣ
ଅର୍ଜୁନ ବୋଇଲ ଦେବ ସମରେ ଅଜ୍ଞାନ ।
ମହାସମର ଦେବ ଲାଗିଅଛି ବେଳ
ସମରେ ମାରୁତ ଯେ ହୋଇଲା ଦେବ ଭୋଳ ।
ତୁ ଦେବ ସଚେତ କରାଅ ଭୀମସେନକୁ
ସମରେ ମାରୁ ଦେବ ଜରାସନ୍ଧ ରାଜାକୁ ।
ଅର୍ଜୁନର ବଚନେ ଦେବ ନାରାୟଣ
ପାଞ୍ଚଜନ୍ୟ ଶଙ୍ଖ ସୁମରିଲେ ଭଗବାନ ।
ସୁମରନ୍ତେ ଶଙ୍ଖ ଯେ ପ୍ରାପତ ହେଲା କର
ଶ୍ରୀକରେ ଘେନିଲେ ଯେ ଦେବ ଦାମୋଦର ।
ଶ୍ରୀକରେ ଧରି ଦେବ ଚୁମ୍ବନ ଦେଲେ ହରି
ଶତଶୃଙ୍ଗ, ଶତଶୃଙ୍ଗ ବୋଲି ବୋଇଲେ ଗାଢ଼କରି ।
ଗାଢ଼େ ଶବଦ ଯହୁଂ କଲେ ନାରାୟଣ
ଶଙ୍ଖ ଶବଦ ଶୁଭିଲା ଭୀମସେନର ଶ୍ରବଣ
ସମରେ ମାରୁତ ଯେ ଭୋଳ ହୋଇଥିଲା
ଶଙ୍ଖ ଶବଦ ଶୁଣି ଚେତନା ବହିଲା ।

ଯଦ୍ୟପି ବ୍ରହ୍ମା ରୁଦ୍ର କୁବେର ବଜ୍ରଧାରୀ
ରେ ରେ ଜାରୁ ତୋତେ କେ ପାରେ ରକ୍ଷାକରି ।୨୭୯।
ଅନେକ ପ୍ରତଗ୍ୟାଂ କରି ପବନର ସୁତେ
ଗର୍ଜନ ନାଦ କରି ମାଇଲା ବଜ୍ରମୁଥେ ।୨୮୦।
ସାଧୁ ମହିମା ତୋର ରେ ମଗଧେଶ୍ୱର ନୃପତି
ଭୀମସେନ ମୁଥଘାତେ ନୋହିଲା ନିବୃତ୍ତି ।୨୮୧।
ପୃଣିହିଂ ପ୍ରହାର ସେ କଲା ବଜ୍ରଦଣ୍ଡ
ବେନିମୁଥ ମାଇଲା ନେଇ ଜରାସନ୍ଧର ମୁଣ୍ଡ ।୨୮୨।
ତଦ୍ୟାପି ଅଚେତ ନୋହିଲା ମଗଧେଶ୍ୱର ବୀର
ଭୀମସେନ ମୁଥ ଘାତେ ବାହାର ହୋଇଲା ରୌଦ୍ର ।୨୮୩।
ଗଡ଼ଇ ପଡ଼ଇ ହିପଣ୍ଡ ଶରୀରୁ ମହାଦ୍ରୁମ
ଦଶନହେ ଜାରୁ ବକ୍ଷସ୍ଥଳ ବଦାରଇ ଭୀମ ।୨୮୪।
ରେ ରେ କାର କରଣ ଜାରୁ ବୋଲି ଅଧରେ ଦନ୍ତ ଚୁପି
ଚନ୍ଦ୍ର ଦେଖିଣ ଯେହ୍ନେ ରାହୁର ତେଜ ବ୍ୟାପି ।୨୮୫।
କାଳାନ୍ତକ ରୁଦ୍ର ରୂପ ବକାଶିଲା ମାରୁତି
ରଡ଼ ଘାତ୍ୟେ କମ୍ପିଲେ ଦିଗପାଳେ ସୁରପତି ।୨୮୬।
ସମରେ ଜରାସନ୍ଧ ଯହୁଂ ନୋହିଲା ନିଚେତ
ଭୀମ ପ୍ରଶଂସା କଲା ସାଧୁରେ ମଗଧେଶ୍ୱର ନାଥ ।୨୮୭।
ମହାଶ୍ରମ ପାଇ ସେ ପବନର ବଳା
ଶତଶିଂଗ ପର୍ବତକଇଂ ବୀର ସୁମରଣା କଲା ।୨୮୮।
ଯେଣୁକଉତ୍ତର ଶତଶିଂଗର ହୋଇଲା ପ୍ରାକମ୍ପ
ବୃକୋଦର ମୂରତି ତହୁଂ ପ୍ରକାଶିଲା ଭୀମ ।୨୮୯।
ଦେଖିଣ ହାସିଲେ ସକଳ ପୁରଜନେ
ନବତାଳ ଉଚ୍ଚର୍ଗ ସେ ହୋଇଲା ବୀର ଭୀମସେନ ।୨୯୦।
ମଂଚକୁ ଅଶକ୍ୟ ଭୀମସେନ ଭିଷ୍ଟରୂପୀ
ଜରାସନ୍ଧ ପ୍ରାଣତ୍ୟାଜ ନୋହିଲା ତଥାପି ।୨୯୧।

---

୨୮୬।୨ ରଡ଼ ଘାତ୍ୟେ କମ୍ପିଲା ଆକାଶେ ସୁରପତି । (କ,ଡ)
୨୮୭।୧ ନିଚେତ—ଚେତାଶୂନ୍ୟ ।

ସାଂଗ୍ରାମେ ବିମୁଖ ଯହୁଁ ହୋଇଲା ବୃକୋଦର
ବିଚାରଇ ଗୁଡ଼ିବ ଯେ ହୋଇଥାଉ ଅଜରାମର ।୨୯୨।
ସଂଗ୍ରାମ ନିସତେ ଆଜେ ଗୁହ୍ୟଂଙ୍କ ପାବେନି
ଯେହ୍ନାକୁ ନ ମାର ପାଣ୍ଡବ ଠାରଇ ଚକ୍ଷୁ ଘେନି ।୨୯୩।
ଯ୍ହା ଦେଖି ଅର୍ଜୁନ ବୋଇଲା ଦେବ ଶୁଣିମା ନାରାୟଣ
ଜନ୍ମେ ଜନ୍ମେ ହରି ଆମ୍ଭେ ତୋହୋରେ ଶରଣ ।୨୯୪।
ଯେସନେକ ସୁଲଭ ଦେବ ଶୁଭଇ ଜଗତେ
ପାଣ୍ଡବେ କୃତନ୍ତ ସିନା ବିଷ୍ଣୁଂକ ଆଶ୍ରିତେ ।୨୯୫।
ସଂଗ୍ରାମେ ମାରୁତ ଯେ ପାଇଲାନି ଅନେକ ଦୁଃଖ
ବଧକଇ କାରଣ କହୁକନା ଶିରବସ୍ତ ।୨୯୬।
ନ ପୁଣ ଭୀମସେନ ଗୁଡ଼ଇ ଜାରିକୁ
କେତେ ଅଷ୍ଟାଙ୍ଗେ ଦେବ ପାଡ଼ଲା ଅଛଇ ତାହାକୁ ।୨୯୭।
ଗୋବିନ୍ଦେ ବୋଇଲେ ଯାହା କହିଲେ ବିଶ୍ୱନାଥେ
ମାରୁତ ଯେବେ ତାହା ପାସୋରିଲେ କେମନ୍ତେ ।୨୯୮।
ଅର୍ଜୁନ ବୋଇଲା ସେ ସମରେ ମହାରାଗୀ
ମୂର୍ଖ ଅପଣ୍ଡିତ ସେ ସମସ୍ତ ପରତ୍ୟାଗୀ ।୨୯୯।
ମତ୍ତହୋଲେ ପାସୋରିଲା ପବନର ନାନ
ତୁ ତାକୁ ଚେତାଇ ଦେବା ପୁରୁଷ ଉତ୍ତମ ।୩୦୦।
ଅର୍ଜୁନର ବଚନ ଶୁଣିଣ ଦେବ ଶିରପତି
କରତାଳ ମାରଣ ହସିଲେ ତୋଷମତି ।୩୦୧।
କରତାଳ ଶୁଣି ବୃକୋଦର ହେଲା ଦୃଷ୍ଟି
ଶ୍ରୀ ଜଗନ୍ନାଥଂକ ବଦନକୁ ଗୁହ୍ୟଂଙ୍କ ଲେଉଟି ।୩୦୨।
ଧୋତ ଗୋଟିଯେକ ଦେବ ଧଇଲେ ଶ୍ରୀଭୁଜେ
ଲେଉଠାଇ ବେନିଫାଳେ ଚିରିଲେ ଦେବରାଜେ ।୩୦୩।
ବିଶ୍ୱନାଥଂକ ବଚନ ପାସୋରିଣ ଥିଲା
ନାରାୟଣଂକ ଠାରନ୍ତେ ଗ୍ୟାନ ସେ ପାଇଲା ।୩୦୪।
ବାହାନାଦ କରି ଭୀମ ଜାରିର ଧଇଲା ବେନିପାଦ
ଦେଖିଣ ବିସ୍ମୟ ଯେ ହୋଇଲା ଜରାସନ୍ଧ ।୩୦୫।



ମଗଧେଶ୍ୱର ବସ୍ତ୍ରରଇ ବଇକୁଲ ଚିତ୍ତେ
ଗୁପତ ରୂପେ ବଜଯ୍ଜେ କଲୁକ ଦେବ ଜଗନ୍ନାଥେ ।୩୦୬।
ଅଷ୍ଟାଦଶବେଳ ପରସନ୍ତେ ସହିଲୁ ମୋର ଧାଡ଼
ତୋ ଚନ୍ଦ୍ରଧାତକୁ ଆଶେ କରଥିଲ ଦେବଦର ।୩୦୭।
ଆପଣେ ନ ମାର ମରାଉଅଛୁ ପରହାଥେ
ଚନ୍ଦେ ବଧ ମୋତେ କର ହୋ ଜଗନ୍ନାଥେ ।୩୦୮।

ମୋକ୍ଷକଇଂ ଗଡ଼ ମୋତେ ଦେବା ହେ ଶିରପତ
ନାଶକର ଦଣ୍ଡେ ମୋତେ ନ ଦିଆଅ ଶାସ୍ତି ।୩୦୯।
ବକଳେ ଜରାସନ୍ଧ ଯେ ଅନେକ ବନୋଯ୍ତି
ଅନେକ ନ୍ତସତେ କହଇ କାର୍ ପୁଣ୍ୟ ଭାବ ହୋଇ ।୩୧୦।

ଗୋବନ୍ଦେ ବୋଇଲେ ଭୀମ ଆବର କସ ଉପଲେଖୁ
ମାର ପକାଅ ବେ୍ଳ ଦୁଷ୍ଟକୁ ଆବର କଂପେ ରଖୁ ।୩୧୧।
ହର ଆଗ୍ୟାଂ ପ୍ରମାଣେ ବେନି ଚରଣ ଭୀମ ଧର
ଚରଣେ ମାଡ଼ ଚରଣେ ଧରଣ ଉଚ୍ଛୁଡ଼ ।୩୧୨।

କୋପେଣ ଗର୍ଜଇ ଭୀମସେନ ନରସିଂହ ମୂର୍ତ୍ତି ପ୍ରାୟେ
ବ୍ରହ୍ମାଣ୍ଡ କମ୍ପଇ ଘୋର ଶବଦ ରଢ଼ଧାୟେ ।୩୧୩।
ଆକ୍ଷେଷିଣ ଧଇଲା ପବନର ବାଳ
ବଶ୍ଯ ରୂପେ ଉଚ୍ଛୁଡ଼ଣ କଲା ବେନିଫାଳ ।୩୧୪।
ପବନ ଆଘାତେଣ ତହିଂ ଖଣ୍ଡେକ ବୁଲାଇ
ଦକ୍ଷିଣ ସମୁଦ୍ରକୁ ବୋଲି ଦିଲକ ଫୋପଡ଼ାଇ ।୩୧୫।
ଅଗାଧ ଜଳେ ପଡ଼ଲା ଜରାସନ୍ଧର ଅର୍ଦ୍ଧଖଣ୍ଡ
ଜଳଭୁବନ କମ୍ପିଲା ଉଚ୍ଛୁଳଲା ବ୍ରହ୍ମାଣ୍ଡ ।୩୧୬।

---

୩୧୬। ୨ "ଜଳଭୁବନ କମ୍ପିଲ ଉଚ୍ଛୁଳଲ ବ୍ରହ୍ମାଣ୍ଡ" ପରେ 'ଘ'
ପୋଥିରେ ଅଧିକା ପାଠ—
ତମି ନାମେ ମୀନ ଯେ ଥିଲା ସିନ୍ଧୁର ଜଳେ
ଆହାର ପ୍ରାୟେ ମଣି ଗିଳିଲା ତତକାଳେ ।

ଆରେକ ଖଣ୍ଡ ଯେ ଭୀମ ବୁଲାଇ ଫିଙ୍ଗିଲା ମହାକୋପେ
ଆକାଶ ମଣ୍ଡଳେ ଖେପିଲା ସେ ଗରୁତାପେ ।୩୧୭।

ଶୂନ୍ୟେ ଅଦୃଶ୍ୟ ହୋଇଲା ସେ ଭୀମସେନ ଡରେ
ଭୂଅଚର ହୋଇଣ ରହିଲା ଶୂନ୍ୟ ପୁରେ ।୩୧୮।୮୨୫।

——*——

## ଜରାସନ୍ଧର ବଧ ଶୁଣି ସହଦେବର କୋପ
## ଓ
## ଶ୍ରୀକୃଷ୍ଣଙ୍କୁ ସ୍ତବ କରିବା ଏବଂ ମଗଧରେ ରାଜା ହେବା

ଚରଗଣେ କହିଲେ ଯେ ସହଦେବର ଆଗେ
ସ୍ୱାମୀ ଜରାସନ୍ଧ ବଧ କଲେ ତିନିବ୍ରାହ୍ମଣେ ବଇରାଗେ ।୧।

ଶୁଣିଣ କୋପକଲା ସେ ସହଦେବ କୁମର
ଦଣ୍ଡସାଜ ପଶିଲା ସେ ନବର ଭିତର ।୨।

ପାଦ ଅମାତ୍ୟ ମୁକୁଟ ବନ୍ଧା ଯୋଦ୍ଧାନ୍ତ ଘେନି
ବ୍ରାହ୍ମଣନ୍ତ ମାର ବୋଲି ଶୁଭିଲା ଉଚ୍ଚେ ଧ୍ୱନି ।୩।

ତର୍ଜନ ଗର୍ଜନ କରି ଉଠିଲେ ସଇନ
ଧାମନ୍ତ ଯେ ଯୋଦ୍ଧାମାନେ କରେ ଶସ୍ତ୍ର ଘେନି ।୪।

ଅନେକ ବୀରଙ୍କର କଳତ ନୁଆରି
ସମସ୍ତ ଯୋଦ୍ଧାମାନେ କରେ ଶସ୍ତ୍ର ଧରି ।୫।

---

୩୧୭। ଆକାଶ ମଣ୍ଡଳେ ଖେପିଲା ସେ ପରିତାପେ । (ଅ,ଊ,କ,ଝ)
୩୧୮। "ବାୟୁଚର ହୋଇଣ ସେ ରହିଲା ଶୂନ୍ୟପୁରେ" ପରେ 'ଘ' ପୋଥିରେ ଅଧିକା ପାଠ—
ପବନ ପ୍ରାପ୍ତେକ ସେ ବୁଲଇ ପୃଥୀଗତ
ତେଣୁ ନାମ ବୋଲାଇଲା ଖଣ୍ଡିଆ ଯେ ଭୂତ ।

ଚେଇଣି ଷଡ଼ଣୀ ଜରାସନ୍ଧର ଅଙ୍ଗବଳ
ବାଦ୍ୟନାଦ ଶବଦେ ଯେ ସମୁଦ୍ର ଉଲ୍ଲୋଳ ।୬।
ତାହା ଦେଖି କୋପ ତତ୍ତ୍ୱଂ କଲ୍ଲକ ପାବେନ
ଧାମଇଂ ମାରୁତ ଯେ କରେଣ ଶାଳ ଶିଳ ଘେନ ।୭।
ଗର୍ଜନ ନାଦେଣ ଯେ ପ୍ରତତ୍ୟାଂ ସାମରଥା
ଆକାଶ ମଣ୍ଡଳେ ଲଗିଲା ଭୀମସେନର ମଥା ।୮।
କୋପେଣ ପାଣ୍ଡବ ଯେ ଧାଇଂଲା ଗଳଗାଜ
ମଗଧ ଦେଶ ସଇନ ଚଳାଇଲେ ଭାଜି ।୯।
ରଥେଣ ରଥ ଧରି ପ୍ରହାର କରଇ ଭୀମ
ଗଜେ ଗଜ ତୋଳି କଚୁଡ଼ଇ ହୋଇଣ ମହାତମ ।୧୦।
ଦୁଇ ଦୁଇ ତିନି ତିନି ଅଶ୍ୱମାନନ୍ତ ଧରି ପିଟି
ଘାସେଣ ମଗଧବଳ ପଡ଼ିଲେ ମହୀଲେଟି ।୧୧।
ରକତେ କର୍ଦ୍ଦନ ଯେ ହୋଇଲା ମହୀଆଳୀ
ଶୋଣିତେ ବୃକୋଦର ଯେ କରଇ ରଙ୍ଗକେଳି ।୧୨।
ସଇନ ପଳାବନ୍ତେ ସେ ଧାମଇଂ କୋପଭରେ
ମୁଥେକ ମାଇଲା ନେଇ ସହଦେବ ରଥରେ ।୧୩।
ଭାଜିଣ ରଥଗୋଟି ଶତେଚୂର ହୋଇଲା
ସହଦେବର କେଶ ଭୀମ ଆନ୍ତେଷି ଧଇଲା ।୧୪।
ଆରେକ ହାଥେ ନେଇ ମାରନ୍ତେ ବଜ୍ରମୁଥେ
ପଛେଣ କୋଳକରି ଧଇଲେ ଜଗନ୍ନାଥେ ।୧୫।
ରହ ରହ ଭୀମସେନ ତୋତେ ଆମ୍ଭର ଶପଥ
ସହଦେବକୁ ନାଶିଲେ ଆମ୍ଭର କାର୍ଯ୍ୟନାଶ ହେବଟି ବହୁତ ।୧୬।

---

୬।୨ ମହାପ୍ରଳୟ ଜାଣି ସମୋଦ୍ର ଉଲ୍ଲୋଳ । (ଘ,ଝ,ଞ)
୭।୨ ଧାମଇଂ ମାରୁତ କରେଣ ଶସ୍ତ୍ର ଘେନ । (ଘ,ଖ,ଛ,ଞ)
୭।୨ "ଧାମଇଂ ମାରୁତ ଯେ କରେଣ ଶାଳ ଶିଳ ଘେନ" ପାଠ ପରେ
"ଟ" ପୋଥିରେ ଅଧିକା ପାଠ—
ଗମନେ ମତ୍ତଗଜ ଘୋର ଗର୍ଜନ ଘେନ
ବେଢ଼ୁଂ ବେଲ କୋପ ଯେ ବଢ଼ିଲ ପାବେନ ।
୧୨।୨ ଶୋଣିତେ ବୃକୋଦର କରଇ ରଣକେଳି । (କ,ଟ)

ଜାହାକୁ ବଧ କଲାଇଂ ଆମ୍ଭେ ତାହାର ଦୁଷ୍ଟପଣେ
ଲକ୍ଷେକୁ ଋଷି ଊଣା ନ ଅଣ୍ଣାଇ ନିମନ୍ତଣେ ।୧୭।
ଜାହାର ପାଲକୁ ସେହାକୁ କରିବା ଆଧିପତ୍ତି
କାର୍ଯ୍ୟ କାରଣକଇଂ ସେହାକୁ ରଖ ହୋ ମାରୁତି ।୧୮।
ଯଦ୍ୟପି ସେଥି ସେହାକୁ ଠାକୁର ନ କରିବା
ସୁବର୍ଣ୍ଣର ସେତେ ରାଜା ସେତେକ ସନ୍ୟ କାହୁଂ ଭିଆଇବା ।୧୯।
ନାରାୟଣଂକ ବଚନେ କୋପ ଗ୍ରୁଡିଲା ବୃକୋଦର
ସହଦେବକୁ ଅର୍ଜୁନ ଆଣି ବସାଇଲେ କୋଳର ।୨୦।
ଦେଖଇ ସହଦେବ ଶଙ୍ଖଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ
ଦେଖଇ ନାରାୟଣ ଦେବାଧି ଦେବରାଜ ।୨୧।
ଉଠିଣ ସହଦେବ ଶତ ସହସ୍ର ଦଣ୍ଡ ପରଣାମି
ଶରଣପଞ୍ଜର ନାଥ ମୋତେ ରକ୍ଷାକର ଦେବ ସ୍ୱାମୀ ।୨୨।
ଶରଣପଞ୍ଜର କଇଛା ଜଗଜେଠୀ
ପୁଣ ପୁଣ ସହଦେବ ଯେ ହରି ଚରଣ ତଳେ ଲୋଟି ।୨୩।
ତୁ ଦେବ ଜଗତଜନ ସୋଦର ଜଗବନ୍ଧୁ
ତମିର ନିବାରଣ ନାଥ ପବନ ପୂର୍ଣ୍ଣ ଇନ୍ଦୁ ।୨୪।
ଅନେକ ଦ୍ରୋହ ତୋତେ କଲାକ ଜରାସନ୍ଧ
କାଳେ ନାଶକଲୁ ତାହାକଇଂ ତୁ ପାଣ୍ଡବ କୂଟଛନ୍ଦ ।୨୫।
ଜୟତୁ ପରମେଶ୍ୱର ଯେ କରୁଣାମହାଳ
ଜୟତୁ ପରମେଶ୍ୱର ତାରନ୍ତା ସଂସାର ।୨୬।
ଜୟତୁ ପରମେଶ୍ୱର ଦୁଷ୍ଟର ବଳଗଞ୍ଜା
ଜୟତୁ ପରମେଶ୍ୱର ଦେବାଧି ଦେବରାଜା ।୨୭।
ଜୟତୁ ପରମେଶ୍ୱର ଯାମଳା ବୃକ୍ଷଭଞ୍ଜା
ଜୟତୁ ପରମେଶ୍ୱର କାଳୀୟ ଦର୍ପଗଞ୍ଜା ।୨୮।
ଜୟତୁ ପରମେଶ୍ୱର ଭାରଥ ବଲ୍ଲଭ
ଜୟତୁ ପରମେଶ୍ୱର ସଂସାର ପଦ୍ମନାଭ ।୨୯।
ଜୟତୁ ପରମେଶ୍ୱର ଜଗତମୋହନ
ଜୟତୁ ପରମେଶ୍ୱର ଦେବ ଜନାର୍ଦ୍ଦନ ।୩୦।

ଜୟତୁ ପରମେଶ୍ୱର ଭଗତ ମୁକତ ଦ୍ୟନ୍ତା
ଜୟତୁ ପରମେଶ୍ୱର କରନ୍ତା ସର୍ବଚନ୍ତା ।୩୧।
ଜୟତୁ ପରମେଶ୍ୱର କେଶୀ ଦର୍ପଗଞ୍ଜା
ଜୟତୁ ପରମେଶ୍ୱର ଧେନୁକା ଗର୍ବଭଞ୍ଜା ।୩୨।
ଜୟତୁ ପରମେଶ୍ୱର ଚୂଣୁର ମୁଷ୍ଟିକ ଦର୍ପ ନାଶ
ଜୟତୁ ପରମେଶ୍ୱର ଦ୍ରୁଶନେ ନାଶ କଂସ ।୩୩।
ଜୟତୁ ପରମେଶ୍ୱର ସୁଦାମା ପ୍ରାଣଗୁରୁ
ଜୟତୁ ପରମେଶ୍ୱର ଶକଟ ଚୂରକରୁ ।୩୪।

ଜୟତୁ ପରମେଶ୍ୱର ନିର୍ଜିତ ଯୁଗଗଣ୍ଡା
ଜୟତୁ ପରମେଶ୍ୱର ବିଦାରଣ କଲୁ ଷଣ୍ଢା ।୩୫।
ଜୟତୁ ପରମେଶ୍ୱର ପ୍ରଲମ୍ବା କଦମ୍ବା ଅଇର
ଜୟତୁ ପରମେଶ୍ୱର ପ୍ରୋହ୍ୱଣୀ ପ୍ରାଣହାରୀ ।୩୬।
ଜୟତୁ ପରମେଶ୍ୱର ଅଗତି ଗତି ଦ୍ୟନ୍ତା
ଜୟତୁ ପରମେଶ୍ୱର ଭଗତ ଜନ ଉଦ୍ଧରନ୍ତା ।୩୭।

ଜୟତୁ ପରମେଶ୍ୱର ମଧୁପୁର ବାସୀ
ଜୟତୁ ପରମେଶ୍ୱର ଗୋପୀବୃନ୍ଦ ବିଳାସୀ ।୩୮।
ଜୟତୁ ପରମେଶ୍ୱର ଅକାରଣକଇଂ କାରଣ
ଜୟତୁ ପରମେଶ୍ୱର ନରଂକୁ ଉଦ୍ଧାରଣ ।୩୯।

ଜୟତୁ ପରମେଶ୍ୱର କମଳାବିଳାସ
ଜୟତୁ ପରମେଶ୍ୱର ମୋହନ ପୀତବାସ ।୪୦।
ଜୟତୁ ପରମେଶ୍ୱର ନିଳେନ୍ଦୀ ପୁଷ୍ୟ ଓଳ
ଜୟତୁ ପରମେଶ୍ୱର ନାମ ତୋ ବନମାଳୀ ।୪୧।
ଜୟତୁ ପରମେଶ୍ୱର ଅନନ୍ତ ଯେ ଚକ୍ରପାଣି
ଜୟତୁ ପରମେଶ୍ୱର ପ୍ରଳୟ ଅନ୍ତ ନ ଗଣି ।୪୨।
ଜୟତୁ ପରମେଶ୍ୱର ସଦାପ୍ୟେ ଆନନ୍ଦ
ଜୟତୁ ପରମେଶ୍ୱର ଗୋପାଳ ଗୋବିନ୍ଦ ।୪୩।

---

୪୦।୨ ଜୟ ତୁ ପରମେଶ୍ୱର ଶୁକ୍ଳାମ୍ବର ପ୍ରବୃତ । (ଝ,ଥ)

ଜୟତୁ ପରମେଶ୍ୱର ଦନ୍ତବକ୍ର ନିବାରଣ
ଜୟତୁ ପରମେଶ୍ୱର ଦୁଖୀ ଜନ କାରଣ ।୪୪।
ଜୟତୁ ପରମେଶ୍ୱର ଭଗତଜନ ବନ୍ଧୁ
ଜୟତୁ ପରମେଶ୍ୱର ପୂର୍ଣ୍ଣିମାର ଇନ୍ଦୁ ।୪୫।
ଜୟତୁ ପରମେଶ୍ୱର କୃଷ୍ଣ ନାମ ଗୋଟି
ଜୟତୁ ପରମେଶ୍ୱର ରାଜୀବଲୋଚନ ଦୃଷ୍ଟି ।୪୬।
ଜୟତୁ ପରମେଶ୍ୱର ଦଧିବାବନ ରୂପ ହୋଇଲୁ
ଜୟତୁ ପରମେଶ୍ୱର ବାରିନିଧି ଚଳୁକଲୁ ।୪୭।
ଜୟତୁ ପରମେଶ୍ୱର ମତ୍ସ୍ୟରୂପ ଧରି
ଜୟତୁ ପରମେଶ୍ୱର ବେଦ ଯେ ଉଦ୍ଧରି ।୪୮।
ଜୟତୁ ପରମେଶ୍ୱର ପିତାମହଙ୍କଇଂ କାରଣ
ଜୟତୁ ପରମେଶ୍ୱର ଶଙ୍ଖାସୁର ନିବାରଣ ।୪୯।
ଜୟତୁ ପରମେଶ୍ୱର କୂର୍ମରୂପ ଗୋଟି
ଜୟତୁ ପରମେଶ୍ୱର ସପତ ବ୍ରହ୍ମାଣ୍ଡ ତୋ ପିଠି ।୫୦।
ଜୟତୁ ପରମେଶ୍ୱର ବରେହା ରୂପ ଧରି
ଜୟତୁ ପରମେଶ୍ୱର ଦାଢେ ପୃଥୀ ଧରି ।୫୧।
ଜୟତୁ ପରମେଶ୍ୱର ବାମନ ରୂପେ ନାରାୟଣ
ଜୟତୁ ପରମେଶ୍ୱର ବଳିକ ନିବାରଣ ।୫୨।
ଜୟତୁ ପରମେଶ୍ୱର ନରସିଂହ ରୂପ
ଜୟତୁ ପରମେଶ୍ୱର ନାଶିଲୁ ହିରଣ୍ୟକଶିପ ।୫୩।
ଜୟତୁ ପରମେଶ୍ୱର ମାଳଛା ରୂପ କାୟେ
ଜୟତୁ ପରମେଶ୍ୱର ନାଶିଲୁ ବଇଲୋଚନ ରାୟେ ।୫୪।
ଜୟତୁ ପରମେଶ୍ୱର ଜମଦଅଗ୍ନି ବଳା
ଜୟତୁ ପରମେଶ୍ୱର ପ୍ରଶୁଧର ମହାଖଳା ।୫୫।
ଜୟତୁ ପରମେଶ୍ୱର ରଜାନ୍ତ ନିସୋଧି
ଜୟତୁ ପରମେଶ୍ୱର ଯେତେକୋଇଶ ବାର କ୍ଷତ୍ରୀମାନନ୍ତ ସାଧି ।୫୬।
ଜୟତୁ ପରମେଶ୍ୱର ଅମଳାନ ସୂର୍ଯ୍ୟବଂଶୀ
ଜୟତୁ ପରମେଶ୍ୱର ରଜାମାନନ୍ତ ତୋଷି ।୫୭।

ଜୟ ତୁ ପରମେଶ୍ୱର ଶ୍ରୀରାମ ଅବତାର
ଜୟ ତୁ ପରମେଶ୍ୱର ଛେଦିଲୁ ଦଶଶିର ।୫୮।
ଜୟ ତୁ ପରମେଶ୍ୱର ମାଳେନ୍ଦ୍ର ଦଳ ରୁଚ
ଜୟ ତୁ ପରମେଶ୍ୱର ସର୍ବଗମ୍ୟ ସର୍ବସଞ୍ଚ ।୫୯।
ଜୟ ତୁ ପରମେଶ୍ୱର ଜପେଣ ସହସ୍ର ନାମ
ଜୟ ତୁ ପରମେଶ୍ୱର ଧର୍ମ ଅର୍ଥ ମୋକ୍ଷ କାମ ।୬୦।
ଜୟ ତୁ ପରମେଶ୍ୱର ପ୍ରାଗଜ୍ୟୋତିଷେ ବାସ
ଜୟ ତୁ ପରମେଶ୍ୱର କଳପବନ୍ତ ଯାହାର ଆଦେଶ ।୬୧।
ଜୟ ତୁ ପରମେଶ୍ୱର ପୁରୁଷଙ୍କର ଉତ୍ତମ
ଜୟ ତୁ ପରମେଶ୍ୱର ସାରଳା ଦାସ ତୋର ପାଦତଳେ ଶତ
ସହସ୍ର ଦଣ୍ଡ ପରଣାମ ।୬୨।

ଶୁଣ ହୋ ଯୋଗେଶ୍ୱର ବଦଯନ୍ତ୍ର ଅଗସ୍ତି
ଜାରପୁତ୍ର ସହଦେବ କଲାକ ଅନେକ ସ୍ତୁତି ।୬୩।
ଅନନ୍ତେଣ ବୋଇଲା ସ୍ୱାମୀ ଜୟ ତୁ କେଶବ
ଜାରା ନିବାରଣ ସ୍ୱାମୀ କଲୁ ତୁ ବାସୁଦେବ ।୬୪।
ସହଦେବର ତହୁଁ ଯେସନେକ ବାକ୍ୟ ଶୁଣି
ଭୁଜେ ଧରି କୋଳେ ବସାଇଲେ ଚକ୍ରପାଣି ।୬୫।
ଆପଣେ ଗ୍ୟାନବନ୍ତ ତୁ ଅଟୁ ହୋ ସହଦେବ
ପ୍ରତକ୍ଷେ ଜାଣୁ ତ ବାବୁ ଜରାସନ୍ଧର ମତ୍ତଗର୍ବ ।୬୬।
ଯେତେକ କଣ୍ଟାଳକଲା ମୋତେ କଂସର ପ୍ରସ୍ତାବେ
ଗୋମନ୍ତ ଯୁଦ୍ଧେ ତାକୁ ନାଶ କରୁଥିଲେ ବଳଦେବେ ।୬୭।

---

୬୬।୨ "ପ୍ରତକ୍ଷେ ଜାଣୁତ ବାବୁ ଜରାସନ୍ଧର ମତ୍ତଗର୍ବ" ପରେ 'ଚ'
ପୋଥିରେ ଅଧିକା ପାଠ—

ସେ ମୋତେ ଯେତେ କଣ୍ଟାଳ କଲାକ ପ୍ରସ୍ତାବେ
ହାଥେ ନ ମାଇଲା ତାକୁ ଶୁଣସି ସହଦେବେ ।
ଧାତା ବୋଇଲେ ସ୍ନେହାକୁ ନ ମାର ଶ୍ରୀବତ୍ସ
ଯୁଦ୍ଧେଷ୍ଟି ଦେବଙ୍କର ସ୍ନେହାରେ ଅନେକ କାର୍ଯ୍ୟ ଅଛୁ ।

ବ୍ରହ୍ମାସ୍ତ୍ରେ ବୋଇଲେ ଯେହାକୁ ନାଶ ନ କର ବଳଦେବ
ଯେହାରେ ଯୁଦ୍ଧେଷ୍ଠି ଦେବ ରାଜସୂୟ ଯାଗ ଯେ କରିବ ।୬୮।
ରାଜସୂୟ ଯଜ୍ଞ ପୁଣ କରିବେ ଧର୍ମସୁତ
ଯେତେକ ଋଣ କରିଥିବ ସେ ରାଜାନ୍ତ ସମସ୍ତ ।୬୯।
ପିତାମହର ବଚନେ ଛାଡିଲେ ବଳରାମେ
ଯୁଦ୍ଧେଷ୍ଠି ଦେବଙ୍କର କାର୍ଯ୍ୟେ ଯେବେ ନାଶକଲ୍ ଭୀମସେନେ ।୭୦।
ଯେସନେକ ବଚନ ଯହୁଁ କହିଲେ ଦେବ ଚକ୍ରଧାରୀ
ସେ କଥାକୁ ଶୋଚନା ନ କର ତୁ ମଗଧ ଅଧିକାରୀ ।୭୧।
ପିତାକଇଁ ତୋହୋର ଆମ୍ଭେ ନାଶକଲୁ ରେ ବାବୁ
ତାହାକଇଁ ମାନ ତୋତେ ଯେତା ଦେଇ ନୁଆରିବୁ ।୭୨।
କରପଦ ଯୋଡଣ ତହିଁ କହଇ ସହଦେବ
ତୁ ସେ ମୋହୋର ପିତା ଅଟୁ ହୋ ଶ୍ରୀ ବାସୁଦେବ ।୭୩।
ଜରାସନ୍ଧ ସିନା ତୋହୋର ବଇରି
ବିଷ୍ଣୁରେ ଦୋରେହା ସେ ସଂସାରକୁ ଅଇରି ।୭୪।
ସ୍ୱାମୀ ତୋହୋର ତୁଲେ ବିବାଦି ହୋଇଲ୍ ଯେତେବେଳେ
ନାଶକର ପାଞ୍ଚି ତାର ପୋଚିଲ୍ ଅଳ୍ପକାଳେ ।୭୫।
ତହିଁକି ଶୋଚନା ମୋର ନାହିଁନା ଦେବରାଜ
ଯେ ତୋହୋର ଦ୍ରଶନେ ମୋହୋର ସର୍ବକାର୍ଯ୍ୟ ।୭୬।
ସହଦେବକୁ ବୋଇଲେ ପ୍ରେତକ୍ରିୟା ସାର ହୋ କୁମର
ତେବେ ସେ ମଗଧଦେଶେ ତୋତେ କରିବୁଁ ଦଣ୍ଡଧର ।୭୭।
ସହଦେବ ପ୍ରୋହିତେ ହକରାଇ କୁଶ ପ୍ରତିମା ଭିଆଇ
ଶମଶାନ ଭୂମିରେ ଜାରିକୁ ନେଇ ଦହନ କରାଇ ।୭୮।
କରେ କୁଶ ଘୃତ ଯବ ତିଳ ଗୃଉଳ ଧେନୁ
ସହଦେବ ଦିଲ୍ ନେଇ କୁଶ ପିତୁଳାକୁ ମୁଖା ଅଗ୍ନି ।୭୯।
ଯେକାଦଶ ଦିବସେ ପ୍ରେତକାର୍ଯ୍ୟ ସାରି
ପ୍ରୋହିତଙ୍କ ମନ୍ତ୍ରେ ଅଗ୍ନି ଘୃତ ପାରଣା କରି ।୮୦।
ଅନେକ ଧନ ବସ୍ତ୍ର ଗୋଧନ ଦିଲ୍ ଦାନ
ପ୍ରେତକାର୍ଯ୍ୟ ସାରି ଶୁଦ୍ଧ ହୋଇଲ୍ ଜରାସନ୍ଧର ନନ୍ଦନ ।୮୧।



ଅବିଷେକ ବିଧାନ କରନ୍ତି ଦେବହରି
ମଗଧ ଦେଶ ରାଜ୍ୟେ ଶୁଭ ଅବଧାରି ।୮୨।

ରାଜ୍ୟେ ଉତ୍ସବ ଯେ କଲେକ ସହଦେବ
ସୁବର୍ଣ୍ଣର କଳସ ବସାନ୍ତି ଭୁବନେଣ ସର୍ବ ।୮୩।

ନେତର ପାଟାଙ୍ଗ ଯେ ଉଡଇ ଫରହର
କଦଳୀ ତୋଣାମାନ ଉଭାରଲେ ଦ୍ୱାର ଦ୍ୱାର ।୮୪।

ସହଦେବର ଅଭିଷେକ ଶୁଣିଣ ବିଧାନ
ସ୍ୱର୍ଗରୁ ଓହ୍ଲାଇ ଅଇଲେ ଦେବ ଋଷିମାନ ।୮୫।

ପ୍ରବେଶ ହୋଇଲେ ଯାଇଂ ମଗଧେଶ୍ୱର ରାଜ୍ୟେ
ଦେଖିଣ ପୂଜାକଲେ ସ୍ୱାମୀ ଦେବରାଜେ ।୮୬।

ଜଗନ୍ନାଥେ ତିଆରଲେ ସହଦେବକୁ ରାଇ
ଉଚ୍ଛବକାଳେ ବାବୁ ବନ୍ଦୀ ମୁକୁଳାଇ ।୮୭।

ଅମଙ୍ଗଳ ଜନେ ବାବୁ ନ ଥାନ୍ତୁ ତୋର ପୁରେ
ବନ୍ଦୀ ମୁକଳ କର ହୋ ମଗଧେଶ୍ୱର ବୀରେ ।୮୮।

ନାରାୟଣଂକ ବଚନେ ଚଳିଲା ସହଦେବ
ବନ୍ଦୀ ରାଜାନ୍ତ ମୁକଳ କଲା କରି ସଦ୍‌ଭାବ ।୮୯।

ନିଅଳମାନନ୍ତ ସବୁ ପକାଇଲା ଫେଡ଼ି
ରାଜାନ୍ତ ଆଣିଲା ସେ ସବୁନ୍ତ ମୁକଳ କରି ତଡ଼ବଡ଼ି ।୯୦।

କାବେରୀ ଗଙ୍ଗାରେ ଯାଇଂ କଲେକ ସ୍ନାହାନ
ଜଗନ୍ନାଥଂକ ଶ୍ରୀଚରଣେ ପ୍ରଲମ୍ବ ସମସ୍ତ ରାଜାମାନ ।୯୧।

ଗୋବନ୍ଦେ ବୋଇଲେ ଆମ୍ଭନ୍ତ କଂପେ ପୂଜାକର
ଭୀମସେନ ଅଟନ୍ତି ଆମ୍ଭ ସବୁନ୍ତ ଠାକୁର ।୯୨।

ଆହୋ ଶୁଣିଲ ନାହ୍ମଂକ ଜରାସନ୍ଧ ଯେତେ ପ୍ରତାପ୍ୟଂ କଲା
ଅଷ୍ଟାଦଶ ବେଳ ପରଯନ୍ତେ ଆମ୍ଭନ୍ତ ଧାଡ଼ହେଲା ।୯୩।

ଯାହାର ଭୟେ ଆମ୍ଭେ ଜମ୍ବୁଦ୍ୱୀପ କଲୁ ତେଜ୍ୟା
ସୋମୋଦ୍ର ଭିତରେ ରହିଲୁ ବୋଇଲେ ଦେବରାଜା ।୯୪।

---

୯୦।୧ ନିଅଳ—ବେଡ଼ି

ତୁମ୍ଭନ୍ତ ବନ୍ଦୀ ମୁକଳ କଲା ପବନ ତନୟେ
ଜରାସନ୍ଧକୁ ମାଇଲା ଭୀମ ଆମ୍ଭେ ହୋଇଲୁ ନିର୍ଭୟେ ।୯୫।

କଲା ଉପକାରମାନ ପାସୋରିତେ କି ପାରି
ତେନ୍ୟାୟେଁ ବୃକୋଦର ଆମ୍ଭ ସବୁନ୍ତ ଅଧିକାରୀ ।୯୬।

ଶ୍ରୀ ଜଗନ୍ନାଥଂକ ବଚନେ ସକଳ ନୃପତି
ଭୀମସେନ ପାଦତଳେ ପାଦାର୍ଘ୍ୟ ଦିଅନ୍ତି ।୯୭।
ଶତସହସ୍ର ଦଣ୍ଡ ଯେ ହୋଇଲେ ପ୍ରଣପତ୍ୟ
ଭୀମସେନକୁ ତୁଷ୍ଟି କରି ବନୋସ୍ତି ବହୁତ ।୯୮।
ଜୟତୁ ବୃକୋଦର ସୋମବଂଶ ଆଧିପତି
ଜୟତୁ ବୃକୋଦର ଘଟୋତ୍କଚ ଯାହାର ମୂରତି ।୯୯।
ଜୟତୁ ବୃକୋଦର ଶତଶିଂଗ ଭଞ୍ଜା
ଜୟତୁ ବୃକୋଦର ନାଗେଣୀ ଦର୍ପଗଞ୍ଜା ।୧୦୦।
ଜୟତୁ ବୃକୋଦର ଯମ ଦର୍ପହରା
ଜୟତୁ ବୃକୋଦର ବିଷଲଡ଼ୁ ପାରକରା ।୧୦୧।

ଜୟତୁ ବୃକୋଦର ଜତୁର ଘରୁ ଉତ୍ତୁରନ୍ତା

ଜୟତୁ ବୃକୋଦର ଦଇତ ନିବାରନ୍ତା ।୧୦୨।
ଜୟତୁ ବୃକୋଦର କନ୍ୟାଗ୍ରୀ ବଦାରନ୍ତା
ଜୟତୁ ବୃକୋଦର ହିଡମ୍ବେକ ନିବାରନ୍ତା ।୧୦୩।
ଜୟତୁ ବୃକୋଦର ହିଡମ୍ବିକାର ବଲ୍ଲଭ
ଜୟତୁ ବୃକୋଦର କୁମ୍ଭୀରୀ ହରିଲୁ ଜଳଠାବ ।୧୦୪।
ଜୟତୁ ବୃକୋଦର ଶିବପୁର ଉଦ୍ଧାରୀ
ଜୟତୁ ବୃକୋଦର ଜାରାର ଦର୍ପହାରୀ ।୧୦୫।
ଜୟତୁ ବୃକୋଦର ଦେବପୁର ଧ୍ୱଂସୀ
ଜୟତୁ ବୃକୋଦର ଫେଡିଲୁ ମୃତ୍ୟୁଫାଶି ।୧୦୬।
ଜୟତୁ ବୃକୋଦର କଉରେବବଳ ଶଂକା
ଜୟତୁ ବୃକୋଦର ଅଭୟେ ରଣରଂକା ।୧୦୭।

---

୯୫।୨ କେହି ଯେ ସାଂଗ୍ରାମେ ସ୍ୱେହାଙ୍କୁ ସରସମ ନୋହେ । —(ଘ,ଙ୍)

ଜୟନ୍ତୁ ବୃକୋଦର ଦୁର୍ଗତିରୁ ଉଦ୍ଧରୁ
ଜୟନ୍ତୁ ବୃକୋଦର ପ୍ରତାପେ ସାତା ଗୁରୁ ।୧୦୮।
ଜୟନ୍ତୁ ବୃକୋଦର ଦେବ କାଳଞ୍ଜନ ତୋଷି
ଜୟନ୍ତୁ ବୃକୋଦର ସର୍ବଗ୍ୟେ ଗୁଣରାଶି ।୧୦୯।
ଜୟନ୍ତୁ ବୃକୋଦର ରାଜାମାନଂକ ଦର୍ପ ଧ୍ୱଂସି
ପାଞ୍ଚାଳଦେଶ ମଣ୍ଡନ ଅଭୟେ ବିଶ୍ୱବାସୀ ।୧୧୦।
ଜୟନ୍ତୁ ବୃକୋଦର ବକ ରାକ୍ଷସକୁ ଧ୍ୱଂସି ।୧୧୧।
ଜୟନ୍ତୁ ବୃକୋଦର କାଳଦଣ୍ଡ ହସ୍ତା
ଜୟନ୍ତୁ ବୃକୋଦର ଶରଣ ଉଦ୍ଧରନ୍ତା ।୧୧୨।
ଜୟନ୍ତୁ ବୃକୋଦର ପ୍ରତାପେ ସାର ଭୀମ
ଜୟନ୍ତୁ ବୃକୋଦର ଯମ ପରେ ଦୁଷ୍ଟ ଯମ ।୧୧୩।
ଜୟନ୍ତୁ ବୃକୋଦର କୁମ୍ଭେକ ଦର୍ପ ଧ୍ୱଂସା
ଜୟନ୍ତୁ ବୃକୋଦର ପୂରଅ ମନୋବାଞ୍ଛା ।୧୧୪।
ଜୟନ୍ତୁ ବୃକୋଦର ଜାର ନିଶୋଧନ
ଜୟନ୍ତୁ ବୃକୋଦର ଆକାଶେ ପୂଣ୍ୟମାନ ।୧୧୫।
ଜୟନ୍ତୁ ବୃକୋଦର ବନ୍ଦୀ ଉଦ୍ଧାରଣ
ଜୟନ୍ତୁ ବୃକୋଦର ଶରଣ ରକ୍ଷଣ ।୧୧୬।
ଜୟନ୍ତୁ ବୃକୋଦର ସହଦେବ ପ୍ରାଣଗୁରୁ
ଜୟନ୍ତୁ ବୃକୋଦର ଶରଣ ଉଦ୍ଧରୁ ।୧୧୭।
ଜୟନ୍ତୁ ବୃକୋଦର ପାଣ୍ଡବାସୁର ନାଶୀ
ଜୟନ୍ତୁ ବୃକୋଦର କାଳବଳ ଧ୍ୱଂସି ।୧୧୮।
ଜୟନ୍ତୁ ବୃକୋଦର କୁନ୍ତୀଦେବୀର ସୂନୁ
ଜୟନ୍ତୁ ବୃକୋଦର ରାଜାନ୍ତ ଉଦ୍ଧରିଲୁ ବନ୍ଧନୁ ।୧୧୯।
ଆହୋ ରାଜାଗଣମାନେ ଯେମନ୍ତେ ତୁଷ୍ଟି ବୋଲି
ଭୀମସେନର ଚରଣତଳେ ଶୁତିଲେ ଗଡ଼ଧାଳି ।୧୨୦।
ତୁ ଦେବ ଶରଣପଞ୍ଜର ନାଥ ଅଟୁ ହୋ ଜଗତଉତ୍ତମା
ଦଶଦୋଷ ଅପ୍ରାଧ ଆମ୍ଭର କରିବାକ କ୍ଷମା ।୧୨୧।

ରାଜାଙ୍କର ବଚନେ ଯେ ବୃକୋଦର ଶାନ୍ତ ଭଜ
ମଧୁର ବଚନେ ରାଜାମାନନ୍ତ ସମାର୍ଜି ।୧୨୨।
ତୁମ୍ଭର ଧର୍ମ ପୂର୍ବେ ଅନେକ ଅଛୁ କଲ
ଧର୍ମଦେବତା ତୁମ୍ଭନ୍ତ ସପକ୍ଷ ହୋଇଲ ।୧୨୩।
ରାଜାଏ ବୋଇଲେ ସ୍ୱାମୀ ତୁ ଜାଗ ନିବାରନ୍ତା
ତୁମ୍ଭ ସେ ଆମ୍ଭନ୍ତ ଅଟୁ ଧର୍ମ ଯେ ଦେବତା ।୧୨୪।
ଅନେକ ପୁରୁଷାର୍ଥ କରାଇଲେ ରାଜାଗଣମାନନ୍ତ
ଅଭିଷେକ ବିଧାନ କରନ୍ତ ସହଦେବ କୁମାରନ୍ତ ।୧୨୫।
ଅନେକ ସମ୍ଭବ କର ଦେବ ଯେ ମୁରାର
ଜାରର ପୁନ ସହଦେବନ୍ତ ଶୁଭ ଅବଧାର ।୧୨୬।
ପୁଷ୍କରକୁ ଧାଏଁକଲେ ଦେବ ଯେ ଅଚ୍ୟୁତ
ବଜାଏ କୋଟିଏ ତୀର୍ଥ ଘେନିଣ ପୁଷ୍କର ଦଇବତ ।୧୨୭।
ସକଳ ତୀର୍ଥ ଜଳମାନ ରତ୍ନଭାଣ୍ଡେଣ ପୂରୋଇ
ସହଦେବର ଶିରେ ଅଭିଷେକ କର ନାଉଡଲେ ନେଇ ।୧୨୮।
ଶିରେଣ ପାଟ ତାହାର ନେଇ ବାନ୍ଧିଲେ ଦେବ ହର
ମଙ୍ଗଳ ଧ୍ୱନି ଫୁରଇ ଯେ ମଗଧ ଦେଶ ପୁରୀ ।୧୨୯।
ଅନେକ ଦାନ ଦିଲେ ବହୁତ ବିଧାଇ
ଦେବଗଣମାନନ୍ତ ବହୁତ ଶୀତଳ ମୁଣୋହି ।୧୩୦।
ଶିରେ ମଣିମୁକୁଟ ହୃଦରେ ବନମାଳ
ତାଡ ତୋଡର ବାହୁଟି ସରଳ କୁଣ୍ଡଳ ।୧୩୧।
ବଜାଏ ସହଦେବ ଯେ ମହାନାଗର ପିଠି
କରେ କମାସୂଣ ନାରାଜ, କୋନ୍ତ, ଖଡଗ ଯେ ଯାଠି ।୧୩୨।

---

୧୨୯।୨ "ମଙ୍ଗଳ ଧ୍ୱନି ଫୁରଇ ଯେ ମଗଧ ଦେଶ ପୁରୀ"—ପଦ ପରେ 'ଅ' ପୋଥିରେ ଅଧିକା ପାଠ—

ସ୍ୱର୍ଗୁଂ ପୁଷ୍ପବୃଷ୍ଟି କଲେ ଦେବଗଣେ
ଯଦ୍ଧଂ ବଜେ କରଅଛନ୍ତ ଆପଣେ ନାରାୟଣେ ।
ଆନ ଉପମା ଦେବାକୁ ତହ୍ନଂକ
ଜଗତ ବାନ୍ଧବ ଯଦ୍ଧଂ ବଜେ କରଛନ୍ତ ।

ବଜପ୍ଟେ କୁମର ଯାଇଂ ଜଗତ୍ତ ଉପରେ
ପାଦ ଅମନାତ୍ୟମାନନ୍ତ ଶାଢୀ ଦିଲ ଯଥା ଅଧିକାରେ ।୧୩୩।

ସାହାଣି, ସାମନ୍ତ ମୂଳେ ଅନେକ ନିଯୋଗି
ସମସ୍ତ ଅମନାତ୍ୟେ ଅଇଲେ ବେଗି, ବେଗି ।୧୩୪।

ସୁବର୍ଣ୍ଣଥାଳରେ ଅର୍ଘ୍ୟ ଘେନିଣ ସୁଲଭ କାମେମା
ସୁବର୍ଣ୍ଣଉତ୍ତରୀ ପବନା ଦିଲେକ ସବଂମୁନି ।୧୩୫।

ବଳସଇ କୁମର ଯେ ଭଣ୍ଡାର ଅନେକ
ଯାଗେଣ ହବର୍ଗ୍ବ ଦିଅନ୍ତ ଯାଗନିକ ।୧୩୬।

ବୃକୋଦର ଆଗ୍ୟାଂ ଦିଲ ରାଜାମାନନ୍ତ ରାଇ
ସହଦେବର ଆସ୍ଥାନେ ଖଟ ସର୍ବେ ଯାଇ ।୧୩୭।

ଆଗେ ଯେ ଯେବଣ ଭାବେ ଖଟିଥିଲ ଜରାସନ୍ଧକୁ
ତହୁଂ ଅଧିକେ ଖଟ ହୋ ସହଦେବ ରାଜାକୁ ।୧୩୮।

ଯେ ଅବା ବାନ୍ଧୁତ ବୋଲ ହୋଇବ ଅସାଧି
ସେ ମୋହୋର ସତ୍ୟ ତାର ଶିର ପକାଇବ ଛେଦି ।୧୩୯।

ଅନେକ ପ୍ରତଗ୍ୟାଂ କରି ବୋଲଇ ଭୀମସେନ
ସମସ୍ତ ରାଜ୍ୟେ ଖଟିଲେ ଯାଇଂ ସହଦେବର ଆସ୍ଥାନ ।୧୪୦।

ଶ୍ରୀହସ୍ତେ ଅକ୍ଷତ ଗୁଆ ଘେନିଣ ଫାଲଗୁନି
ରାଜାମାନନ୍ତ ନିମନ୍ତ୍ରଣ କଲେକ ଅର୍ଘ୍ୟ ଘେନି ।୧୪୧।

ଆହୋ ରାଜାମାନେ ମହା ରାଜସୂୟ ଯାଗ କରିବେ ଠାକୁର ଯୁଧିଷ୍ଠି
ରାଜାଗଣମାନେ ତୁମ୍ଭେ ସମସ୍ତେ ଯିବଟି ।୧୪୨।

ଶୁଣି ସମସ୍ତ ରାଜ୍ୟେ ହୋଇଲେ ପ୍ରଣପତ୍ୟ
ସେକାଳଣେ ଦେବ ପଠିଆଇବା ଦୂତ ।୧୪୩।

ସେ ଜୀବନଗୋଟି ଦେବ ଯାହାରେ ସଞ୍ଚିଲା
ଜଗନ୍ନାଥେ ବୋଇଲେ ତୁମ୍ଭଂକୁ ଭୀମସେନ ରକ୍ଷା କଲା ।୧୪୪।

---

୧୩୪।୧ ମହାସାହାଣ ମହାସାମନ୍ତ ଅନେକ ନିଯୋଗି । —(କ, ଙ୍କ)

ରାଜାମାନେ ବୋଇଲେ ଯେ ଭୀମ ଆମ୍ଭର ଗୁରୁ
ତାହାଙ୍କ ବଚନ ଦେବ କେହୁ ମେଣ୍ଟିପାରୁ ।୧୪୫।—।୧୭୦।



## ଦୁର୍ଯ୍ୟୋଧନର କପଟ ମନ୍ତ୍ରଣା ଓ ଯୁଧିଷ୍ଠିରଙ୍କର ଶୋକ, କୃଷ୍ଣଙ୍କ ସହ ଭୀମାର୍ଜ୍ଜୁନ ହସ୍ତିନାରେ ପ୍ରବେଶ

ଶୁଣ ବଇବସୁତ ମନୁ ବଦନ୍ତି ଅଗସ୍ତି
ଯେବଣ ଦନୁଂ ନାରାୟଣେ ହୋଇଲେ ପଶ୍ଚିମ ମୂରତି ।୧।
ଦୁଯୋଧନ ଭାଳଇ ଯେତେକାଳେ ରାଇଣ ଶକୁନି
ଶ୍ରୀହରି ଯାଇଛନ୍ତି ଜରାସନ୍ଧ ତାହାଂକ ସଙ୍ଗେ ଭୀମ ଅର୍ଜ୍ଜୁନନ୍ତି
ଘେନି ।୨।
କେବଣ ଚରିତ ତହିଂ କରନ୍ତି ଦେବ ହରି
ଜାରାଭୟେ ପଳାଇ ସେ ପଶିଲେ ସିନ୍ଧୁପୁରୀ ।୩।
ଶକୁନି ବୋଇଲା ଯେବେ ଯେ ବୁଦ୍ଧି ଯେ କରିବା
ଗୁପତ କରିଣ ଆମ୍ଭେ ଦୂତ ବରଗିବା ।୪।
ଯେସନେକ ପହୁଂ ବୋଇଲା ଶକୁନି ମହାମନ୍ତ୍ରୀ
ଗୁପତ କରିଣ ରାଜା ଚର ଚରଜଣ ପେଷନ୍ତି ।୫।
ଚରହେଂ ତୁମ୍ଭେ ମଗଧ ଦେଶକୁ ହାଦେ ଯିବ
ଜରାସନ୍ଧ ତୁଲେ କିସ କରଇ ବାସୁଦେବ ।୬।
ସେ କଥାମାନନ୍ତି ଜାଣି ଆସିବ ଧାଡକାରେ
ସନ୍ଦେଶ କହିବ ଆସି ମୋହୋର ଛାମୁରେ ।୭।

---

୧୪୫।୨ "ତାହାଂକ ବଚନ ଦେବ କେହୁ ମେଣ୍ଟିପାରୁ" ପରେ—'ଙ୍କ'
ପୋଥିରେ ଅଧିକା ପାଠ—

ସୁଗ୍ୟାନୀ ପୁରୁଷମାନେ ଯେତେଥି ଅନ୍ତେ ଶୁଣ
ଅତି ବିଚିତ୍ର ଅଟଇ ଭାରତ ପୁରାଣ ।
ଅଗସ୍ତିଂକ ପଚ୍ଚରନ୍ତି ମନୁ ବଇବସୁତ
କୁରୁଂକ ଚରିତ ମୋତେ କହ ତପୋବନ୍ତ ।

ଆହୋ ରାଜାର ଆଜ୍ଞାଂରେ ଯେ ଗଲେକ ଗୁରଦୂତେ
ମଗଧ ଦେଶେ ଯାଇଂ ଥିଲେକ ଗୁପତେ ।୮।
ଭୀମ ଜରାସନ୍ଧର ଯେତେବେଳେ ହୋଇଲା ସମର
ମାଲବନ୍ଧେ ଜରାସନ୍ଧ ମାଡ଼ି ବସିଲା ଭୀମସେନ ହିଆର ।୯।
ବ୍ରାହ୍ମଣ ମଲ୍ଲ ବୋଲି ରାଜ୍ୟେ ଶୁଭିଲକ ଧୁନି
ଚଳିଲେ ଦୁର୍ଯୋଧନର ନଗର ସେ ବାରତମାନନ୍ତ ଘେନି ।୧୦।
ଆସ୍ଥାନେ ବିଜୟେ କରି ଅଛଇ କୁରୁସାଇଂ
ଯୁଧିଷ୍ଠିର ନକୁଳ ସହଦେବ ଅଛନ୍ତି ତିନିଭାଇ ।୧୧।

---

୧୧। ''ଯୁଧିଷ୍ଠିର ନକୁଳ ସହଦେବ ଅଛନ୍ତି ତିନଭାଇ'' ପରେ 'ଛ' ପୋଥିରେ ଭିନ୍ନ ପାଠ ଦେଖାଯାଏ । ଏହି ପାଠ ସମୀଚୀନ ପରି ବୋଧହୁଏ ।

ସମସ୍ତ ସ୍ଥାରେ ବସିଅଛନ୍ତି ସଭାରେଣ
କର୍ଣ୍ଣ ଅଶ୍ୱତ୍‌ଥମା ଶଲ୍ୟ ଭୀଷ୍ମ ଦ୍ରୋଣ ।
ସେମନ୍ତେଣ ସମସ୍ତେ ସଭାରେଣ ଥିଲେ
ନିମ୍ୟକର୍ମ ସାରିବାରେ ଯେ ଯାହାର ଗଲେ ।
ସେଥୁ ଅନନ୍ତରେ ମଗଧଦେଶ ଚ୍ଚର
ପ୍ରବେଶ ହୋଇଲେ ଆସି ଦୁର୍ଯୋଧନର ଛାମୁର ।
ସେକାନ୍ତେଣ ବସିଅଛନ୍ତି ସମସ୍ତ
ସାବଧାନ ହୋଇଣ ଶୁଣ କୁରୁନାଥ ।
ହେ ଦେବ ଆମ୍ଭେ ଯେ ମଗଧ ଦେଶେ ଗଲୁ
ଭୀମସେନ ଜରାସନ୍ଧର ସମର ଦେଖିଲୁ ।
ଅନେକ ସମର ହୋଇଲା ଅପ୍ରମିତ
ଜରାସନ୍ଧ ରାଜା ଭୀମକୁ କଲା ହତ ।
ଦୁର୍ଯୋଧନ ବୋଇଲା କହିଲେ ସେମନ୍ତ
ତାହାଂକ ନାମ ଶୁଣି ଯୁଧିଷ୍ଠିର ହୋଇବେ ହତ ।
କୁରୁପତି ବୋଲନ୍ତି ଶୁଣ ଆରେ ଦୂତ
କାଲି ପ୍ରଭାତେ ସଭାରେ କହିବୁ ସମସ୍ତ ।
ପ୍ରଥମ ଯୁଦ୍ଧେ ଯେ ପଡ଼ିଲା ଭୀମସେନ
ଦୁତୀୟ ଦିନ ବଧ ହୋଇଲା ଅରଜୁନ ।
ତୃତୀୟ ଦିନ ଯୁଦ୍ଧରେ ପଡ଼ିଲେ ଶ୍ରୀପତି
ସେମନ୍ତ କହିବୁ ବୋଲି ବୋଇଲେ କୁରୁପତି ।

ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ଯେ ବାଲ୍ହିକ
ଭୂରିଶ୍ରବା ଅଶ୍ୱତ୍ଥମା ତୁଲ୍ୟ ଅଛନ୍ତି ସଇନ୍ୟ ଅନେକ ।୧୨।
ଅନେକ ପାରିଦଣ୍ଡ ରାଜାସ୍ତେ ଅଛନ୍ତି ପଞ୍ଚୋଆଶ୍ରି
ପଶ୍ଚିମ ଦେଶ ଦେଶାନ୍ତର ଦର୍ଶନ ଯାଇଂ କରି ।୧୩।

---

୧୩।୧ "ଅନେକ ପାରିଦଣ୍ଡ ରାଜାସ୍ତେ ଅଛନ୍ତି ପଞ୍ଚୋଆଶ୍ରି" ପାଠ ପରେ
'ଠ' ପୋଥିରେ ଭିନ୍ନ ପାଠ ଦେଖାଯାଏ—

ନାନା କଥା ହୋଉଛନ୍ତି ତହିଂ ବସିକରି ।
ସ୍ତେ ସମସ୍ତେ ସ୍ତେକ ଦୂତ ଆସି ପାଶେ ବୋଲେ
ହେ ଦେବ ପଶ୍ଚିମ ଦୂତ ସ୍ତେକ୍ଷଣି ଅଇଲେ ।
ସେମାନଂକ ମୁଖ କଂପା ବିରସ ଦିଶଇ
ସ୍ତେ ସମସ୍ତେ ମଉଳଲା ସଭା କୁରୁସାଇଂ ।
ସଭା ମଉଳନ୍ତେ ସର୍ବେ ଯେଝା ବାସେ ଗଲେ
ଦ୍ରୁଯୋଧନ ସେ ଦୂତଂକୁ ପାଶକୁ ଡାକଲେ ।
ସ୍ତେକାନ୍ତ ପୁରରେ ରାଜା ତାହାଂନ୍ତ ବସାଇ
ପୁଛେ କି ବାର୍ତ୍ତା ଆଣିଛ ଯାଇଥିଲ ଯହିଂ ।
ଦୂତେ ବୋଇଲେ ସେଠାରେ ଲଗିଛି ସମର
ଦ୍ୱିଜେ ମାଡ଼ି ବସିଥିଲା ଜରାସନ୍ଧ ବୀର ।
ମରିଚ୍ଛକ ନ ମରିଛି ମୁଖ ଧୂନ୍ନ ହେଲା
ଜରାସନ୍ଧ ସ୍ତେକ ଦ୍ୱିଜବରକୁ ମାଇଲା ।
ସ୍ତେହାଶୁଣି ସେମାନଂକୁ ବୋଲେ କୁରୁନାଥ
ଆରେ କାଲି ସଭା ମଧ୍ୟେ କହିବ ସ୍ତେମନ୍ତ ।
ପ୍ରଥମେ ନିହତ ହେଲେ ଯୁଦ୍ଧେ ବାସୁଦେବ
ତାପରେ ଯୁଦ୍ଧେ ବଧିଲା ସେ ଦୁଇପାଣ୍ଡବ ।
କାଲି ନିଶ୍ଚେ ସଭା ମଧ୍ୟେ କହିଲେ ସ୍ତେମନ୍ତ
ତାଂକ ନାଶ ଶୁଣି ହେବ ଯୁଦ୍ଧେଷ୍ଟିର ହତ ।
ଯେ ଆଜ୍ଞାଂ କହିଣ ଦୂତେ ତହିଂ ଗୃହଗଲେ
ପରଦିନ ସର୍ବେ ଯାଇଂ ସଭାରେ ବସିଲେ ।
ବିଜେସ୍ତେ କରିଅଛନ୍ତି ସକଳ ଆସ୍ଥାନେ
ପାଣ୍ଡବ ଆଦିକରି ଅଛନ୍ତି ସେନାମାନେ ।
ସ୍ତେ ସମେସ୍ତ ଦୂତେ ଅସି ଦ୍ୱାରେ ପହଞ୍ଚିଲେ
ପଶ୍ଚିମ ଦିଗର ବାରତା ଆଣିଛୁ ବୋଇଲେ ।



ସେ୍ୟ କାଳେ ଶକୁନି ସେ ଗୃହଗଣନ୍ତ ରାଇ
ବୋଲବନ୍ତି ମଲେ ବାସୁଦେବ ପାଣ୍ଡବ ବେନିଭାଇ ।୧୪।
ଦୁର୍ଯୋଧନ ବୋଇଲା ରେ କହିବ ସେ୍ୟମନ୍ତ
ସେ୍ୟହାଂକର ହତହେବା ଶୁଣି ଯୁଝେଷ୍ଟି ହୋଉ ପ୍ରାଣେ ହତ ।୧୫।
ସେ ଦେଶାନ୍ତରେ ଯେବେ ରାଜା ସେ୍ୟକାଳେ କୁରୁପତି
କହନ୍ତେଣ ଶେଷ ଯେ ହୋଇଲାକ ରାତି ।୧୬।
ଆରେକ ଦିନେ ରାସେ୍ୟ ବସିଅଛନ୍ତି ଆସ୍ଥାନେ
ପାଣ୍ଡବ ଆଦିକରି ଅଛନ୍ତି ସକଳ ସୈନ୍ୟମାନେ ।୧୭।
ଦ୍ୱାରେ ଉଭା ହୋଇଥାଇଂ ଅଛନ୍ତି ମୁନେଶ୍ୱରଂ
ପଶ୍ଚିମଦିଗର ବାରତା ଦେଶାନ୍ତର କହି ।୧୮।
ଆମ୍ଭେମାନେ ଗଲୁଂ ଯେ ପଶ୍ଚିମ ପରଦେଶେ
ବେନିଦିନ ରହିଲୁଂ ମଗଧ ରାଜ୍ୟ ଦେଶେ ।୧୯।
ଶକୁନି ବୋଇଲେ ହୋ ଆମ୍ଭେ ପାଇବା ବାରତା
ଜାରା ଜଗନ୍ନାଥେ ହୋଇଲା କେଉଂଣ ହାଦେ କଥା ।୨୦।
ମୁନେଶ୍ୱରଂ ବୋଇଲେ ଦେବ ପ୍ରଥମ ଦିନ ଗଲେ
ବ୍ରାହ୍ମଣ ରୂପ ଧରି ରାଜାକୁ ଦର୍ଶନ ଯାଇଂ କଲେ ।୨୧।
ବେଦ ଆଧ୍ୟାନ କଲେ ଦେବ ଜରାସନ୍ଧର ଆଗର
ଦାନ ଯେନୁଂ ବୋଇଲେ ଆମ୍ଭନ୍ତ ଦେବୁ ଯେ ସମର ।୨୨।

---

୧୫।୨ 'ସେ୍ୟହାଂକର ହତହେବା ଶୁଣି ଯୁଝେଷ୍ଟି ହୋଉ ପ୍ରାଣେ ହତ'
ପରେ 'ଥ' ପୋଥିରେ ଅଧିକା ପାଠ—

ସେ୍ୟହିଭାବେ କହିବ ରେ ଆସ୍ଥାନ ସଭାସେ୍ୟ
କୂଟକପଟ ମନ୍ତ୍ରୀ ଯହୁଂ କଲକ ଉପାସେ୍ୟ ।
ରାଜାର ବଚନ ସେ ଶୁଣିଣ ଦୂତପ୍ରତି
ଆସ୍ଥାନର ତଳେ ସେ ଯାଇଂଣ ଉଭାରନ୍ତି ।
ସମସ୍ତ ରାଜାମାନେ ଅଛନ୍ତି ପଟୋଆସି
କାଖେ ହସ୍ତ ଲଇ ଅଛନ୍ତି ଅପସରି ।
ଅବଧାନ ଅବଧାନ ଦେବ ମାନ ଚକ୍ରବର୍ତ୍ତୀ
ପଚ୍ଛିମଦିଗ ଦୂତେ ଦେବ ଦର୍ଶନ ବୋଲିଣ କହନ୍ତି ।
୧୭।୧ ଅହାନନ ସାରି ରାଜା ବସଇ ଆସ୍ଥାନେ । (ଚ,ଝ)

ଭୀମସେନ ଜରାସନ୍ଧର ହୋଇଲା ମାଲଯୁଦ୍ଧ
ପ୍ରଥମଦ୍ଦିନର ଯୁଦ୍ଧେ ଭୀମସେନ ହୋଇଲା ପ୍ରାଣବଧ ।୨୩।
ଦ୍ୱିତୀୟଦ୍ଦିନ ଯୁଦ୍ଧରେ ଦେବ ଅର୍ଜୁନ ପଡ଼ିଲା
ତୃତୀୟଦ୍ଦିନ ଯୁଦ୍ଧରେ ବାସୁଦେବ ନାଶଗଲା ।୨୪।
ଏସନେକ ବାରତା ଯେ ଶୁଣିଣ କୁରୁପତି
ଆସ୍ଥାନରୁ ଟଳିପଡ଼ିଲା ମାନ ଚନ୍ଦ୍ରବଂଶ ।୨୫।
ମୂର୍ଚ୍ଛାଗତ ହୋଇଣ ରାଜା ଧୃତରାଷ୍ଟ୍ରି
ମନରେ ସଂଶୟ କଲେ ଧର୍ମ ଯେ ଯୁଧିଷ୍ଠି ।୨୬।
ନକୁଳ ଅସାଷ୍ଟମେ କରଇ ରୋଦନ
ଆହା ଭ୍ରାଥ ବୋଲ ମୋହେ ପଡ଼ଲେ କର୍ଣ୍ଣ ଦୁଶାସନ ।୨୭।
ଭୀଷ୍ମ ଦ୍ରୋଣ ଶଇଲ ଆବର ବାଲ୍ହିକେ
ଅଶ୍ୱତ୍ଥମା କୃପ ଆଶ୍ଚର୍ଯ୍ୟେ କ୍ରୋଧ ଯେ ଅନେକେ ।୨୮।
କପଟେଣ ବହୁ କ୍ରୋଧ ସେ କରଇ କୁରୁପତି
ଅତି କପଟେ କ୍ରୋଧ କରଇ ଶକୁନି ମହାମନ୍ତ୍ରୀ ।୨୯।
ଆଉରମାନେ ସରୂପେଣ ମୂର୍ଚ୍ଛାଗତେ ପଡ଼ି
ଯୁଧିଷ୍ଠି ଦେବଙ୍କୁ ସହଦେବ ଧଇଲେ କୋଳକରି ।୩୦।
କର୍ଣ୍ଣ ଦୁଶାସନ ହୋଇଲେ ଯେ ଧରାଧରି
ଆସ୍ଥାନର ତଳେ ଯାଇଂ ହୋଉଛନ୍ତି ଗଡ଼ାଗଡ଼ି ।୩୧।
ହା ହା ବୃକୋଦର ବୋଲ ରୋବନ୍ତି ଦୁର୍ଯୋଧନ
ବାବୁ ପାଣ୍ଡବାସୁର ମାର ଆମ୍ଭନ୍ତ ହଲୁ ଜୀବଦାନ ।୩୨।
ତୋହୋର ପରି ବଳବନ୍ତା ସୋଦର ହରାଇ
ଆବର କାହା ମୁଖ ଚାହିଂ ଜୀଇଥାଇ ମୁହିଂ ।୩୩।
ଆହେ ଯୁଧିଷ୍ଠିଙ୍କ ରୋଦନ ଯେ କହିତେ କି ପାରି
ରୋବଇ ଧୃତରାଷ୍ଟ୍ରି ଯେ ଅର୍ଜୁନ ନାମ ଧରି ।୩୪।
ଆରେ ଆରେ ମୋହୋର ସୋଦର ଫାଲଗୁନି
ଏକା ଜଣକେ ବାହୁ ସାଧି କଲୁ ଏ ସପତଦୀପା ମେଦିନୀ ।୩୫।
ବାବୁ ତ୍ରଇଲୋକ୍ୟେ ସୁନ୍ଦର ତୋହୋର ନାମ ଗୋଟି
ନିର୍ଲଜ ଆତ୍ମା ମୋହୋର ନ ଯାଇଂ କିଂକେ ଫାଟି ।୩୬।

ଆରେ ଜଗତ ସୁନ୍ଦର ବାବୁ ରେ କେଉଂଣ କତି ଗଲୁ
ଗମ୍ଭୀର ସମୋଦ୍ରେ ମୋର ଭେଳା ବୁଡାଇଲୁ ।୩୭।
ଅଦଭୁତ ଯୁଦ୍ଧରେ ହୋଇଲୁ କଂପେ ନାଶ
ଯେହ୍ନା ସେ କଲା ମୋତେ ଦେବ ହୃଷୀକେଶ ।୩୮।
ଦୁଯୋଧନ ବୋଇଲା ଶୁଣସି ଯୁଦ୍ଧେଷ୍ଟି
ତୋହୋର ବୁଦ୍ଧି ବଳେ ହୋଇଲା ଯେସନେକ ଅରିଷ୍ଟି ।୩୯।
କାନ୍ହୁଆ ଗଉଡର ବୋଲେ ଚଳିଲୁ ଅନୁବ୍ରତେ
କାଳେଣ ନାଶଗଲୁ ଆବର ବ୍ରତ୍ତବୁ କେମନ୍ତେ ।୪୦।
କୁଟବୁଦ୍ଧି ଯେବେ ତୋତେ କଲାକ ନାରାୟଣ
ବୁଝିତ ନୁଆରିଲୁ ତାହାର ମାୟାର ଚରିତମାନ ।୪୧।
ଅର୍ଜୁନ ଯେଉଂଣ ଦିନ ଗଲା ଦ୍ୱାରକାକୁ
ବଳାତ୍କାରେ ହରିଲା ଯେ ତାର ବହେଣୀ ସୁଭଦ୍ରାକୁ ।୪୨।

ସେ ରାଗଖଣ୍ଡି ହରି ହୃଦେ ଧରଥିଲା
ଆପଣେ ନ ମାରି ପର ହାଥେ ମରାଇଲା ।୪୩।
ଜାଣିତ ନୁଆରିଲୁ କାନ୍ହୁଆ ଗଉଡର କୁଟକୁଟି
ସମ୍ବନ୍ଧ ହରାଇ ନାଶ ଗଲୁ ହୋ ଯୁଦ୍ଧେଷ୍ଟି ।୪୪।
ନଶନ୍ତକାଳକୁ କଲୁ ବିପରୀତ ବୁଦ୍ଧି
ଅଦଭୁତେ ହରାଇଲୁ ଅରଜିଲା ସମ୍ବନ୍ଧ ।୪୫।
ଭୀମସେନ ପ୍ରାୟେକ ସୋଦର ନାଶଗଲା
ଅର୍ଜୁନ ପ୍ରାୟେକ ଭାଇ ଅଦଭୁତେ ପ୍ରାଣ ଦିଲା ।୪୬।
ଯେହାନ୍ତ ମରାଇ ହେ ପଳାଇଲା ଆପଣେ
କାନହୁଆ ଗଉଡ ସଂଗତେ କାଳକ କଲୁ ବନ୍ଧୁପଣେ ।୪୭।
ଥାଅ ଯେବେ ବସି ତୁହ୍ନ ବୃଦ୍ଧକାକ ପ୍ରାୟେ
ହୀନଜୀବନ ତୋର ଆଉର କିସ ଉପାୟେ ।୪୮।
ସଇଲୋକ୍ୟ ଜିଣନ୍ତା ଯେ ଅଟଇ ଜରାସନ୍ଧ
ଇହଲୋକେ ନୃପତି କେ କରୁ ତାର ତୁଲେ ଦ୍ୱନ୍ଦ ।୪୯।
ଅଷ୍ଟାଦଶ ବାର ପରିଯନ୍ତେ ସମରେ ହିଲା ଧାଡି
ସମୋଦ୍ର ଭିତରେ ଲୁଚିଲେ ସେ ତାହାକଇଂ ଭୟେ କରି ।୫୦।

କୋଟି କୋଟି ସିଂହର ପରାକ୍ରମ ଯେବଣ ବଳରାମ
ସେ ପୁଣି ଜାରାକୁ ସର ନୋହିଲେ ସାଂଗ୍ରାମ ।୫୧।

ଶକୁନି ବୋଇଲା ତୁମ୍ଭେ ନ ଜାଣ ହୋ କହୁ କଥା
ମୁହିଂ ସେ ଜାଣଇ ତହିଂର ଛଦନ୍ତ ବାରତା ।୫୨।

ଶତଧନୁର ଯୁଦ୍ଧେ ଅର୍ଜୁନ ହରିଂକ ହିଂସାସି
ତେଣୁ ଯେହିାନ୍ତ କୂଟେ ମରାଇଲେ ହୃଷିକେଶି ।୫୩।

ତାହା ଶୁଣି ବୋଇଲା ରାଜା ମାନଗୋବିନ୍ଦ
ତାହାର କସ ଦୋଷ ଆମ୍ଭର କର୍ମ ମନ୍ଦ ।୫୪।

ଭୀମ ଅର୍ଜୁନ ପରାୟେ ଭାଇନ୍ତ ମରାଇ
ଥାଅସି ବସି ଯେବେ ବଧବା ରୂପ ହୋଇ ।୫୫।

ଅନେକ ମତେ ହିଂସାସି ବୋଲଇ କୁରୁପତି
ସଭାରୁ ଉଠିଗଲା ସେ ମାନଚନ୍ଦ୍ରବ୍ରତୀ ।୫୬।

ଆସ୍ଥାନ ମଣ୍ଡଳନ୍ତେ ସେ ଚଳିଲେ ସର୍ବଭାରେ
ମହାକ୍ରୋଧେ ଯୁଧିଷ୍ଠି ଚଳିଲେ ନିଜପୁରେ ।୫୭।

ଧୃଶାସନ ବୋଇଲା ହୋ ପ୍ରେତ କାର୍ଯ୍ୟ କରିବା
ଭୀଷ୍ମେ ବୋଇଲେ ଆଉ ବାରତାଯେ ଜାଣିବା ।୫୮।

ଦୁର୍ଯୋଧନ ବୋଇଲା ତୁମ୍ଭେ ହୋଇଲକ ବାଇ
ଯେ ସେ ନାଶଗଲା ସେ କ ଜୀବନ୍ତେ ଆସଇ ।୫୯।

ଆସ୍ଥାନେଣ ବସି ଭାଳନ୍ତି ଯୁଧିଷ୍ଠି ରାଜଦେବ
ଦଣ୍ଡଦେଣ ଅନ୍ଧାର ମୁଂ ଯିବ କେଉଣ ଠାବ ।୬୦।

ଆରେ ସହଦେବ ମୋତେ ଯେମନ୍ତ କୃତ୍ୟ କଲୁ
ଭୀମ ହାଥେଣ ଜାରା ମରିବ ବୋଲଣ ବୋଇଲୁ ।୬୧।

ତୋହୋର ବଚନେ ମୁଂ ଗଲି ପ୍ରତିଆଶେ
ସୋଦରେ ବଧ ଗଲେ ବାବୁ ତୋହୋର ବିଶ୍ୱାସେ ।୬୨।

ତୁ ଯେବେ ବୋଲନ୍ତୁ ଜାରା ନୋହିବ ନିଧନ
କିଂପେ ପଠିଆନ୍ତ ମୁହିଂ ଭୀମ ଅରଜୁନ ।୬୩।

ତୋହୋର ଚନ୍ଦ୍ର ମୋତେ ଅଭିନ୍ନ ଆତ୍ମା ବୋଲି
ଚନ୍ଦ୍ରେ ତୋର ମାୟାବୋଲି ଯେବେ ସେ ଜାଣିଲି ।୬୪।
ଯାବତମାତାର ପୁତ୍ର ଅଟୁସି ସହଦେବ
ତହିଂର ମାନକଲୁ ମୋତେ ଯେହ୍ନେକ ସମ୍ଭବ ।୬୫।
କର୍ମକଲିଂ ଆଦେଶ ଧର୍ମରାଜା ଯୁଧିଷ୍ଠିରି
ଅସାଧ୍ୟାମ ହୋଇଂଣ ଦେବ ପଣ୍ଡଲେ ମହୀକ୍ଷେତି ।୬୬।
ଯୁଧିଷ୍ଠିରଂକ ବଚନ ଶୁଣି ମାଦ୍ରୀଦେବୀର ନନ୍ଦନ
ହସିଣ ଉଠିଲା ସେ ସାନନ୍ଦ ପଞ୍ଚୁମନ ।୬୭।
ନକୁଳ ବୋଇଲା ଆରେ ହସିଲୁ କସ ଅର୍ଥେ
ଆମ୍ଭେ କ ବ୍ରତବାରେ ଭୀମ ଅର୍ଜୁନେ ନ ଦେଖନ୍ତେ ।୬୮।
ସହଦେବ ବୋଇଲା ସ୍ୱାମୀ ଶୁଣିମା ସାବଧାନେ
ଶକୁନିର କୂଟ କପଟ କଂପା ତୁମ୍ଭେ ନ ବୁଝିଲ ମନେ ।୬୯।
ଜରାସନ୍ଧର ପୁରକୁ ଯେ ଗଲେ ଦେବହରି
ମଗଧ ଦେଶେ ପଶିଲେ ବ୍ରାହ୍ମଣ ରୂପ ଧରି ।୭୦।
ଜାରାର ନନ୍ଦନ ସହଦେବକୁ ପରୀକ୍ଷା ଦଲେ
ଧ୍ୱଜଦ୍ୱାରେ ଭୀମ ଠାକୁରେ ଭେଶ୍ୱକ ନାଶକଲେ ।୭୧।
ଛଜଦ୍ୱାରେ ଅର୍ଜୁନ ଠାକୁରେ ଛେଦିଲେ ଶିମୁଳ
ଚତୁର୍ଥ ଦ୍ୱାରେ ଗଧକୁ କଗୃଡଲେ ବନମାଳୀ ।୭୨।
ତଦନ୍ତରେ ପ୍ରବେଶ ହୋଇଲେ ଜରାସନ୍ଧର ଯାଗଶାଳେ
ଦାନ ମାଗିଲେ ଦେବ ସଂଗ୍ରାମ କୂତୋହୋଳେ ।୭୩।
ମହାଯୁଦ୍ଧ କଲେ ଦେବ ଜରାସନ୍ଧର ତୁଳେ
ଭୀମସେନ ଠାକୁରେ ଜାରାକୁ ନାଶକଲେ ।୭୪।
ନାରାୟଣଂକ ବଚନେ ଭୀମସେନ କୋପାନଳ
ଧରିଣ ଜରାସନ୍ଧକୁ ଚିରି କଲେ ବେନିଫାଳ ।୭୫।
ଜରାସନ୍ଧର ପୁତ୍ର ଯେ ସହଦେବ କୁମର
ମଗଧ ଦେଶରେ ତାକୁ କଲେକ ଠାକୁର ।୭୬।

---

୬୪। ତୋହୋର ଚନ୍ଦ୍ର ଯେ ଭିନ୍ନ ଆତ୍ମା ବୋଲି
ହୁଆ ତୋର ସ୍ନେହନେକ ବୋଲିଣ ଜାଣିଲି । — (ଥ,ଙ,ଛ)

ଛାୟାଶୋଇଂସହସ୍ର ରାଜା ବନ୍ଦୀ ହୋଇଥିଲେ
ସମସ୍ତ ରାଜାମାନନ୍ତ ବନ୍ଦୀରୁ ମୁକଳ କଲେ ।୭୭।
ସମସ୍ତ ନୃପଙ୍କଂକୁ କଲେ ନିମନ୍ତ୍ରଣ
ମଗଧ ଦେଶୁଂ ବାହାର ହୋଇଲେ ନାରାୟଣ ।୭୮।
ରାଜା ସହଦେବକୁ ବାହୁଡାଇ ଦେଲେ ଯୋଜନ ପଞ୍ଚଦଶେ
ଯେବେ ରାଜେ କରଛନ୍ତି ଦେବ କାଶୀଶ୍ୱର ଦେଶେ ।୭୯।
କୂଟ କପଟ ମନ୍ତ୍ରୀ ଭିଆଇଲା ଯେମନ୍ତ
ତାହାର ବଚନେ କପଟେ ପଶିଲ୍ଲ କୁରୁନାଥ ।୮୦।
ସହଦେବକଇଂ କୋଳକରି ଧଇଲେ ଯୁଧିଷ୍ଠି
ସତସରୂପ ହୋଇବକ ବାବୁ ତୋହୋର ବାକ୍ୟଗୋଟି ।୮୧।
.ସହଦେବ ବୋଇଲା ସ୍ୱାମୀ ଗୃରଦିନର ମଧ୍ୟେ
ହସ୍ତିନାପୁେ ପ୍ରବେଶ ହୋଇବେ ଦେବ କହିଲଇଂ ମୁହିଂ ସାଧେ ।୮୨।
ସହଦେବର ବଚନେ ସ୍ୱାମୀ ଗୁଣ୍ଡଲେ ମନୁଂ ଭ୍ରାନ୍ତି
ଲୋକତ କର୍ମେ·ପୁଣ ସମ୍ପ୍ରତେ ନ ଯାନ୍ତି ।୮୩।
ପ୍ରବେଶ ହୋଇଲେ ଯାଇଂ ନିଜ ଯେ ଭୁବନେ
ବ୍ୟଥା ନ ଫିଟଇ ଯଦି ନ ଦେଖଇ ନୟନେ ।୮୪।
ପୁତ୍ରେଣ ରେବନ୍ତି ଯେ କୋଇନ୍ତା ଦ୍ରୋପଦି
ଆଉର ସ୍ତ୍ରୀମାନେ ବେଢି ଯେ ରୋଦନ କରନ୍ତି ।୮୫।
ସନ୍ନିଧେ ପ୍ରବେଶ ଯାଇଂ ହୋଇଲେ ଧର୍ମସୁତ
ଯୁଧିଷ୍ଠି ଦେବ ବୋଇଲେ କ୍ରୋଧ ଗୁଣ୍ଡସି ଗୋ ମାତ ।୮୬।
ସହଦେବ କହିଲା ଗୋ ଅସମ୍ଭବ କଥା
ଜରାସନ୍ଧକୁ ବଧକଲା ଗୋ ଭୀମ ବଳବନ୍ତା ।୮୭।
ସହଦେବ ବଚନେ ହୋଇଲେ ପରମ ଶାନ୍ତ
ଗୁଣ୍ଡଲେ ବକଳ ଦେହୀ ଫିଟିଲା ମହାଭ୍ରାନ୍ତ ।୮୮।
ଆରହିନ ମାନଗୋବିନ୍ଦ ବିଜୟେ ଆସ୍ଥାନେ
ପରରାଷ୍ଟ୍ର ବାରତା ଯେ କହନ୍ତି ଗୃରଗଣେ ।୮୯।
ଶୁଣିମା ସାବଧାନେ ଦେବ ମଗଧଦେଶର ବାରତା
ଜାରାକୁ ବଧକଲା ଦେବ ଭୀମସେନ ବଳବନ୍ତା ।୯୦।

ବନ୍ଦୀ ମୁକଳ କଲେ ରାଜାଗଣମାନଂକୁ
ଅବଧାନେ ପାଣ୍ଡବଲେ ସହଦେବ କୁମରକୁ ।୯୧।
କାଶୀଦେଶେ ପ୍ରବେଶ ହୋଇଲେ ସେହୁ ଆସି
ପୁରେ ପୁରେ ଉତ୍ସବ କରନ୍ତି ହୃଷିକେଶି ।୯୨।
ଶୁଣିଣ ସାନନ୍ଦ ଯେ ହୋଇଲେ ଭୀଷ୍ମ ଦ୍ରୋଣେ
ପୁରେ ପୁରେ ଉଚ୍ଛବ ଯେ କରଅ ସ୍ନେହକ୍ଷଣେ ।୯୩।
ଶୁଣିଣ ଦୁ୍ର୍ଯୋଧନ ଯେ ଲୋକଙ୍କେ ସାନନ୍ଦ
ହୃଦଗତେ ବରୁରଇ ରାଜା ମାନଗୋବନ୍ଦ ।୯୪।
ପୁଣିହିଂ ବାରତାଯେ଼ ଆସି ହୋଇଲା ଆରମ୍ଭନ
ସୁଲଭ ବାରତା ଯେ କହନ୍ତି ଘନ ଘନ ।୯୫।
ସହଦେବକୁ ରାଜ୍ୟ ଦେଇ ରାଜାନ୍ତ ନିମନ୍ତ
ମଗଧ ରାଜ୍ୟ କଲେ ସହଦେବ ନୃପତି ।୯୬।
ଗୋବନ୍ଦେ ବୋଇଲେ ଥାଅସି ନିଚନ୍ତେ
ପଶ୍ଚିମଦ୍ୱାର ରାଜାନ୍ତ ଘେନି ଯିବୁଁଟି ଦୂତ ଆସନ୍ତେ ।୯୭।
କୁମ୍ଭମାସ କୃଷ୍ଣପକ୍ଷ ଚଉଠିର ଦିନ
ଚନ୍ଦ୍ରବାର ନକ୍ଷତ୍ର ଅଟଇ ଉତ୍ତର ଭୋଦ୍ରୁ ମୀନ ।୯୮।
ତଇତିଲ ନାମେ କରଣ ସାଧ୍ୟ ନାମେ ଯୋଗ
ରୋହିଣୀ ବୃଷକୁ ଚନ୍ଦ୍ର ଦଶମରେ ଭୋଗ ।୯୯।
ତିଥିବାର ନକ୍ଷତ୍ର ଯୋଗ ଲଗ୍ନ ବରୁର
ମଘଦେଶୁଂ ବାହାର ମଙ୍ଗଳ ସୀଉକାର ।୧୦୦।
ଅମୃତ ବେଳେ ଯେ ଯୋଗଲଗ୍ନ ଘେନି
ମଗଧ ଦେଶୁଂ ବାହାର ହୋଇଲେ କୃଷ୍ଣ ଭୀମ ଫାଲଗୁନି ।୧୦୧।
ସମଦଣ୍ଡ ଘେନିଣ ନୃପତି ସହଦେବ
ସୁବର୍ଣ୍ଣ ରଥେ ବିଜୟେ଼ କଲେ ବାସୁଦେବ ।୧୦୨।
ଭୀମ ଅର୍ଜୁନ ଯେ କନେକ ରଥ ଆରୋହି
ତିନିସହସ୍ର ପାଞ୍ଚଛତ୍ର ସନ୍ନିଧେ ଉଭାଇ ।୧୦୩।

୯୨।୧ କାମେଶ୍ୱର ଦେଶେ ପ୍ରବେଶ ହୋଇଲେ ସେହୁ ଆସି । (କ,ଥ)

ତିନିସହସ୍ର ରଥ ପାଞ୍ଚସହସ୍ର ହାଥୀ
ପାଞ୍ଚଲକ୍ଷ ତୁରଙ୍ଗମ ଯେ ତିନିକ୍ଷୋହଣୀ ପାଦାନ୍ତି ।୧୦୪।
ଯେତେକ ସୈନ୍ୟ ଦଳେ ଯେ ସହଦେବ ନୃପତି
ପଞ୍ଚଦଶ ଯୋଜନ୍କୁ ବାହୁଡାଇ ଦଳେକ ଶ୍ରୀପତି ।୧୦୫।
ରାଜାମାନେ ଗୋଡାଇ ଅଛନ୍ତି ସମସ୍ତେ
ଲେଉଟି ଗୃହଂକୁ ଲେ ପ୍ରଭୁ ଦେବ ଜଗନ୍ନାଥେ ।୧୦୬।
ଯେ ଯାହା ରାଜ୍ୟେ ରୁହାଇଲେ ରାଜାମାନଂକୁ
ଅନେକ ଦେଖା ଦରଶନି ଦଲେ ଭୀମସେନ ଠାକୁରଂକୁ ।୧୦୭।
ଦେଖା ଦରଶନି ଯେ ବହୁ ପାଣିଦ୍ରବ୍ୟମାନ
ତିନିଲକ୍ଷ ରଥେ ଧନ ପୂରାଇଲେ ହୋଇଲା ସମ୍ପୂର୍ଣ୍ଣ ।୧୦୮।
ମୁଣୋହି ଯୋଗାଡମାନନ୍ତ କରନ୍ତି ରାଜାମାନେ
ଆସନ୍ତି ଶ୍ରୀଜଗମୋହନ ଉତ୍ସବ ବିଧାନେ ।୧୦୯।
ଅନେକ ସମ୍ଭବ ତହିଂ କହିତେ କି ପାରି
ପଶ୍ଚିମ ସୋମନାଥେ ବିଜୟେ ଦେବହରି ।୧୧୦।
ନିତ୍ୟକର୍ମ ସାରଣ ବିଜୟେ ଶିବଆଳେ
କରନ୍ତି ସ୍ତୁତି ଦେବ ପ୍ରଭାତର କାଳେ ।୧୧୧।
ବୃଷଭ ପିଠିରେ ଯେ ବିଜୟେ ସଦାନନ୍ଦ
ପ୍ରଣପତ୍ୟ ହୋଇଣ ଯେ ଶୁତିଲେ ଗୋବିନ୍ଦ ।୧୧୨।
ଭୀମ ଅର୍ଜୁନ ଦୁହେଂ ଯେ ବିନୟି ଭଗତ
ଦେଖିଣ ସାନନ୍ଦ ସ୍ୱାମୀ ହୋଇଲେ ବିଶ୍ୱନାଥ ।୧୧୩।
ବୃକୋଦର ଶରୀର ସଦାଶିବ ଆଉଂସି
ଅନେକ ରତ୍ନ ଆଭରଣ କଲେକ ଦେବ କାଶୀ ।୧୧୪।

---

୧୦୫।୨ ଦ୍ୱାଦଶ ଯୋଜନ୍କୁ ବାହୁଡାଇ ଦଳେକ ଶ୍ରୀପତି । (ଚ,ଞ,ଛ,ଙ)
୧୦୬।୨ "ଲେଉଟି ଗୃହଂକୁଲେ ଦେବ ପ୍ରଭୁ ଜଗନ୍ନାଥେ" ପାଠ ପରେ ଙ,ଝ
ପୋଥିରେ ଅଧିକା ପାଠ—
ଆହୋ ରାଜାମାନେ ଯାଅ ଯେ ଯାହାର ରାଜ୍ୟେ
ଆଜ୍ଞାଂ ହୋଇଲା ଯେ ସ୍ୱାମୀ ଦେବ ଚତୁର୍ଭୁଜେ ।
ସନମାନ ବଚନ କହିଲେ ରାଜାଗଣମାନଂକୁ
ଅନେକ ଦେଖାଦରଶନି ଦଲେ ଭୀମସେନ ଠାକୁରଂକୁ ।



ଭୀମସେନଙ୍କୁ ପୁରୁଷାର୍ଥ ଦେବ କରନ୍ତି ଅନେକ
ସାଧୁ ସାଧୁ ମାରୁତି ତୁମ୍ଭ ସେ କ୍ଷତ୍ରୀ ଏକ ।୧୧୫।

ଅନେକ ଭୁବନ ଧ୍ୱଂସିଲ ପୋଡିଲ ଅନେକ ତୀର୍ଥ
ତପୀଜନମାନଙ୍କ ନାଶକଲ ସମସ୍ତ ।୧୧୬।

ତୁ ସେ ଉଶ୍ୱାସିଲୁ ମେଦମାର ଭାର
ଧନ୍ୟ ଧନ୍ୟ ମାରୁତି ରେ କ୍ଷତ୍ରୀ ମହାବୀର ।୧୧୭।

ରାଜସୂୟଯାଗ ଯେ ଏବେ କରାଅ ଦେବବର
ଉତ୍ତର ଆକାଶ ବେଗେ ଅର୍ଜୁନ ନିମନ୍ତ୍ରଣ କର ।୧୧୮।

ଅର୍ଜୁନ ନିମନ୍ତ୍ରଣ କରବଟି ଆକାଶ ପୁଷ୍ପ ।୧୧୯।

ଆମ୍ଭେହେଁ ଯିବୁଟି ରାଜସୂୟ ଯାଗକୁ
ବ୍ରହ୍ମାଇନ୍ଦ୍ର, ଆଦିକର ଆସିବେ ହସ୍ତିନାକୁ ।୧୨୦।

ଯେତେ ଧନ ଲାଗଇଟି ରାଜସୂୟ ଯାଗକୁ
ଦେବ ଭଣ୍ଡାର ଫେଡିବାକୁ ଆମ୍ଭେ କହିବୁଂ କୁବେରଙ୍କୁ ।୧୨୧।

ଅନେକ ପ୍ରଶଂସା କଲେଟି ବିଶ୍ୱେଶ୍ୱର
ଅର୍ଜୁନ ବୋଇଲା ସ୍ୱାମୀ ତୋହୋର ପ୍ରସାଦେ ନାଶିଲୁ ମଗଧେଶ୍ୱର
।୧୨୨।

ଅନେକ ସୁଲଭ ଯେ କରନ୍ତି ପରମଯୋଗୀ
ଶୁଣିଣ ସାନନ୍ଦ ଦେବ ଯେ ଶାରଙ୍ଗୀ ।୧୨୩।

ତହୁଂ ଚଳଗଲେ ହରଷେ ଦେବ ଯେ ମୁରାର
ପାରଦଣ୍ଡ ରାଜାମାନେ ସେଠାରୁ ସମସ୍ତେ ବାହୁଡ ।୧୨୪।

ତେଣେ ସହଦେବ ଯୁଦ୍ଧେଷ୍ଠିଙ୍କ ବୋଇଲା ଦେବ ଶୁଣିମା ସାବଧାନେ
ପଶ୍ଚିମ ସୋମନାଥେ ବିଜୟେ ଦେବ ଜନାର୍ଦ୍ଦନେ ।୧୨୫।

ଅନେକ ସମ୍ଭବେ ଦେବ ଆସନ୍ତି ତିନିଜଣ
ରାଜସୂୟଯାଗ ସରକ ଦେବ ଆଣୁଛନ୍ତି ଧନ ।୧୨୬।

ଶୁଣିଣ ସାନନ୍ଦ ହେଲେ ଧର୍ମରାଜ ଯୁଧିଷ୍ଠି
ନକୁଳ ସହଦେବ ରେ ତୁମ୍ଭେ ଯାଅସି ପାଗ୍ରେତି ।୧୨୭।
ସମଦଣ୍ଡ ଘେନିଣ ବଳଯେ କୁରୁପତି
ପୁରେ ପୁରେ ଉଛବ କରନ୍ତି ସେ ମାନଚନ୍ଦ୍ରବନ୍ତୀ ।୧୨୮।

---

୧୨୭।୨ "ନକୁଳ ସହଦେବ ରେ ତୁମ୍ଭେ ଯାଅସି ପାଗ୍ରେତି" ପରେ 'ଛ' ପୋଥିରେ ଅଧିକା ପାଠ—

ସମସ୍ତ ସନ୍ୟ ଘେନିଣ ତୁମ୍ଭେ ଯିବ
କୃଷ୍ଣ ଭୀମ ଅର୍ଜୁନଙ୍କୁ ପାଗ୍ରେତି ଆଣିବ ।
ଆଗ୍ୟାଂ ପ୍ରମାଣେ ସେ ଗଲେ ଭାଇ ବେନି
ଯାଆନ୍ତେଣ ଭେଟିଲେ କୃଷ୍ଣ ଭୀମ ଫାଲଗୁନି ।
ଶ୍ରୀକୃଷ୍ଣ ଚରଣେ ବେନି ଭାଇ କଲେ ପ୍ରଣମିତ
କୋଳକରି ପ୍ରଭୁ ଧଇଲେ ତାହାନ୍ତ ।
ସେଥୁ ଅନନ୍ତରେ ଜଗତର ସାଇଂ
ହସ୍ତିନା ସନ୍ନିଧେ ପ୍ରବେଶ ହେଲେ ଯାଇଂ ।
ଅନେକ ସମ୍ଭବେ ସନ୍ୟ ଘେନିଣ ଧୃତରାଷ୍ଟ୍ରି
ସମଦଣ୍ଡ ଚଳାଇ ଗଲ୍ଲକ ପାଗ୍ରେତି ।
ଶଲ୍ୟ ଶକୁନି ସମସ୍ତେ ହେଂଗଲେ
ଯେ ଯାହାର ମାନ୍ୟ ଧର୍ମମାନ କଲେ ।

୧୨୮।୨ "ପୁରେ ପୁରେ ଉଛବ କରନ୍ତି ସେ ମାନଚନ୍ଦ୍ରବନ୍ତୀ" ପରେ 'ଙ୍ଗ' ପୋଥିରେ ଅଧିକା ପାଠ—

ଭୀମ ଅର୍ଜୁନ ଘେନି ଦେବ ନାରାୟଣ
ସୁରନଦୀ କୂଳେ ଆସି ମିଳଲେ ବହନ ।
ନଦୀଜଳେ ତିନିଜଣ କରନ୍ତି ସ୍ନାହାନ
ବୃଦ୍ଧ ଭୀମସେନ ଗଦା ଆଣିଲ୍ଲ ବହନ ।
ଜରାସନ୍ଧଂ ଯାକେ ଭୀମ ପକାଇଣ ଥିଲ୍ଲ
ସେ ଗଦାକୁ ବୃକୋଦର ହାଥରେ ଧଇଲ୍ଲ ।
ମଗଧ ଦେଶରୁ ଯେତେ ଲୋକ ଆସିଥିଲେ
ସୁରନଦୀ ଜଳେ ପଶି ସବେ ସ୍ନାହାନ କଲେ ।
ନିତ୍ୟକର୍ମ ସାରି ତହୁଂ ସବେ ଚଳଗଲେ
ବାରୁଣାବନ୍ତରେ ଯାଇଂ ପ୍ରବେଶ ହୋଇଲେ ।
ସେସନ ସମସ୍ତେ ବଳସ୍ତେ କଲେ କୁରୁପତି
ପାତ୍ର ଅମାତ୍ୟ ଯୋଦ୍ଧା ସମସ୍ତେ ଅଛନ୍ତି ।

ଆହୋ ମନୁରାୟେ ଭୀମ ଅରଜୁନଂକୁ ସଙ୍ଗେ ଘେନିଣ ଦେବ ଜଗଭୂତ
ହସ୍ତିନା ସନ୍ନିଧେ ଆସି ବିଜେ ବାରୁଣାବନ୍ତ ଯେ ପର୍ବତ ।୧୨୯।

ଅନେକ ସମ୍ଭର ହୋଇ ରାଜା ଧୃତରାଷ୍ଟ୍ରି
ସମଦଣ୍ଡ ଘେନି ରାୟେ ଆସଇ ପାଗ୍ଲେଟି ।୧୩୦।

ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତିଂକ
କହସି ମହାତମା ମୋତେ ଅମୃତ ରସ ବାକ ।୧୩୧।

ଯୁଦ୍ଧରେ ଅପ୍ରମିତ ହୋଇଲା ଭୀମସେନ ମହାବୀର
ପଚ୍ଛରନ୍ତ କୁରୁବୀରେ କାହାର ହାଥେ ବଧ ହେଲା ଜାରା ।୧୩୨।

ଓହୋବଳ ଥାଠ ଯହୁଂ ହୋଇଲେ ଯେକ ଭେଟ
ଭୀଷ୍ମଦ୍ରୋଣ ପ୍ରବେଶିଲେ ବାସୁଦେବଂକ ନିକଟ ।୧୩୩।

ରଥରୁ ଓହ୍ଲାଇ ଦ୍ରୋଣ କୃପ ଗାଙ୍ଗେବେ
ନାରାୟଣଂକ ପଦ୍ମପାଦେ ବିନୟ ଭଗତିଭାବେ ।୧୩୪।

ଭୀମ ଅର୍ଜୁନ ଭୀଷ୍ମଦ୍ରୋଣଂକୁ ନମସ୍କାର କରି
କୁଶଳ ବାରତା ଯେ ପୁଚ୍ଛନ୍ତି ଅନୁସରି ।୧୩୫।

ସଂଜୟେ କହିଲେ ହୋ ଶୁଣିମା ଧୃତରାଷ୍ଟ୍ରେ
ଭୀମ ଅର୍ଜୁନକୁ ଘେନି ହରି ବିଜୟ କଲେନି ନିକଟେ ।୧୩୬।

ଯେ ମର୍ତ୍ତ୍ୟ ଭୁବନକୁ ଅଗୋଚର ଭୀମସେନର ମହିମା
ପ୍ରତକ୍ଷେ ବିଜେକଲେ କି ରୁଦ୍ର ଇନ୍ଦ୍ର ବ୍ରହ୍ମା ।୧୩୭।

କ୍ଷୀରୋଦ୍ର ମନ୍ଥନେ ଯେହ୍ନେ ଦିଗପାଳ ତିନି
ତେହ୍ନେକ ସରୂପ ଦିଶନ୍ତି କୃଷ୍ଣଭୀମ ଫାଲଗୁନି ।୧୩୮।

ଜାରାକୁ ବଧ କରି ଆଣିଲେ ଅନେକ ଧନ
ରାଜସୂୟାଗ ସରିକି ହୋଇବାକ ସମ୍ପୂର୍ଣ୍ଣ ।୧୩୯।

ଧୃତରାଷ୍ଟ୍ର ବୋଇଲେ ଯେ ବଡ ଅସଂକ୍ଷେପ କଥା
ଜରାସନ୍ଧ ବୋଲି ଦେବ ବଡାଇ ବଳବନ୍ତା ।୧୪୦।

---

୧୩୨।୧ ଯୁଦ୍ଧରେ ସନ୍ତୋଷ ହୋଇଲା ଭୀମସେନ ମହାବୀର । (ଝ,ଚ)
୧୩୮।୧ ସମୁଦ୍ର ମନ୍ଥନେ ଯେନ୍ତହେ ବିଜୟେ ଦେବତନ । (ଙ,ଝ,ଢ)

ଭୀମ ଅର୍ଜ୍ଜୁନ ପ୍ରବେଶ ଧୃତରାଷ୍ଟ୍ରଂକର ଅଗ୍ରତେ
ସନ୍ନିଧେ ପ୍ରଣିପତ୍ୟ ହୋଇଲେ ବେନିଭ୍ରାଥେ ।୧୪୧।
ଧୃତରାଷ୍ଟ୍ର କୋଳକଲେ ବେନି ଯେ ପୁତ୍ରଂକୁ
ଜାନୁ ଉପରେ ଆଣି ବସାଇଲେ ଭୀମ ଅର୍ଜ୍ଜୁନକୁ ।୧୪୨।
ବାବୁ ଅହ୍ନବ୍ରତେ ଏହିଘର ଯାହାର ପରାକ୍ରମ
ତୁ ତାହାକୁ କେସନତକେ ନାଶକଲୁ ଭୀମ ।୧୪୩।
ଭୀମସେନ ବୋଇଲା ଦେବ ଆରୋପିଥିଲା ଯଜ୍ଞଂ
ପଞ୍ଚଦଶ ଦିବସ ଉପବାସ ଅନ୍ନ ପରିତ୍ୟାଗ ।୧୪୪।
ଶରୀର କ୍ଷୀଣ ତାର ସେ କଲା ଯୁଦ୍ଧକରି
ବେନିଫାଳ କରି ଦେବ ପକାଇଲି ଚିରି ।୧୪୫।
ବ୍ୟାସନ୍ତ ପଚ୍ଛରିଲେ ନୃପତି ଧୃତରାଷ୍ଟ୍ରେ
ଜରାସନ୍ଧକୁ ସାଂଗ୍ରାମେ କିଂପେ ଘୁଞ୍ଚିଲେ ରାମକୃଷ୍ଣେ ।୧୪୬।
ଭୀମ ତ ଚିରିଲା ତାକୁ ବେନିଫାଳ କରି
ଶୁଣିଣ ବଡ ଆଶ୍ଚର୍ଜ ମୁଂ ହୋଇଲି ବ୍ରହ୍ମଗୃହୀ ।୧୪୭।—୧୧୦୭।



## ଜରାସନ୍ଧର ଜନ୍ମଚରିତ

ବ୍ୟାସେ ବୋଇଲେ ବାବୁ ଶୁଣ ହୋ କୁରୁପତି
ପୂର୍ବେ ଦ୍ୱାପର ଯୁଗେ ବୃହଦ୍ଧ୍ୱଜ ନାମେଣ ନୃପତି ।୧।
ପୂର୍ବହାର ନନ୍ଦନ ଯେ ଭୋପାଳସେନ ରାଯେ
ପୁତ୍ର ବିହୁନେ ସେହି ଅନେକ କଷ୍ଟ ପାଯେ ।୨।
ବହୁ ତୀର୍ଥରେ ସେ ଅନେକ ତପ କଲା
ତଥାପି ସେ ରାଜାକୁ ପୁତ୍ର ପ୍ରାପତ ନୋହିଲା ।୩।
ଅଷ୍ଟଉତ୍ତର ଶତ କନ୍ୟା ହୋଇଲା ପ୍ରଦାନ
ତଥାପି ରାଜାର ନୋହିଲା ସନ୍ତାନ ।୪।
ପୁତ୍ରହୀନେ ବୃତିଲା ସେ ନବସହସ୍ର ବର୍ଷ ପରିଯନ୍ତେ
ଅନେକ ବସ୍ତୁଯେ ରାଜା ପଶିଲା ପ୍ରାଗତୀର୍ଥେ ।୫।

---

୧୪୭।୨ କେସନେକ ଚରିତ ପୂର୍ବହା ମୋତେ କହିବା ବିସ୍ତାର । (ଘ,ଙ)

ପ୍ରାଗବେଣୀ ଜ୍ୟୋତିପୁରେ ଯାଇଂ ରହିଲା ନୃପମଣି
ସେ ପ୍ରାଗଙ୍ଗାର୍ଥରେ ସେ ବଞ୍ଚିଲା ରଯ୍ନେଣୀ ।୬।

ରଯ୍ନଣୀ ପ୍ରଭାତେ ତହୁଂ କରଇ ପଯ୍ୟାଣ
ପ୍ରବେଶ ହୋଇଲା ଯାଇଂ ପ୍ରାଗଙ୍ଗାର୍ଥରେଣ ।୭।

ଆହୋ ନନ୍ଦଭୂପାଳର ସେ ଯେକଇ ହଡପକାଷ୍ଟ
ପ୍ରାଗବେଣୀକୁ ଯାଇଥିଲା ହଡପ ସେ ଲୋଡ ।୮।
ସେ ଜ୍ୟୋତିପୁରେ ଯାଇଂ ହୋଇଲା ପରବେଶ
ସେ ନଗ୍ରଲୋକେ ରୁଣ୍ଡ ହୋଇ ବଚ୍ଚରନ୍ତି ଦୋଷ ।୯।
ଯେବଣ ଠାବରେ ରାଜା ବସିଥିଲା ଆସ୍ଥାନେ
ଖୁଣ୍ଡାଳର ହାଥେ ଖୋଳାଇ ନିଅନ୍ତି ମାଟିମାନେ ।୧୦।
ସେ ହଡପକାଷ୍ଟ ନଗ୍ର ଜନନ୍ତ ପୁଚ୍ଛଇ
ଯେହାର ବସିବା ଥାନଗୋଟି ଖୋଳଲେ କାହିଂପାଇଂ ।୧୧।

ନଗ୍ରଲୋକ ବୋଇଲେ ଭୁକ ନ ଜାଣୁ ଯେହା
ଯେ ଥାନେ ବସିଥିଲା ନନ୍ଦ ଭୋପାଳ ନରନାହା ।୧୨।
ଅପୁର୍ବିକ ରାଜା ସେ ପୁବ ତାର ନାହିଂ
ରାଜା ଅପୁର୍ବିକ ହୋଇଲେ ମୁକତ ଗତି କାହିଂ ।୧୩।
ରାଜା ହୋଇକର ଅପୁର୍ବିକ ହୋଇଲେ
ଇନ୍ଦ୍ର ଦେବତା ତାର ରାଜ୍ୟ ନ ପାଳଇ ଭଲେ ।୧୪।

ଭଲେ ଫଳଦାୟକ ଯେ ନୋହୋଇ ପୃଥୀ
ଜନ ପ୍ରଜାମାନେ ସୁଖେଣ ନ ବ୍ରତନ୍ତି ।୧୫।
ରାଜା ହୋଇକର ଯେ ଅପୁର୍ବିକ ହୋଇଲେ
ଅଗ୍ନିଦେବତାଯେ ହବର୍ଭାଗ ନ ପାବନ୍ତି ଭଲେ ।୧୬।
ଅପୁର୍ବିକ ହୋଇଥାଇ ଯେବଣ ଦେଶରାଜା
ତପଧନ ନ ରହଇ ଦୁଖିତ ହୁଅନ୍ତି ପ୍ରଜା ।୧୭।
ସେ ରାଜା ସଭାରେ ବସିଲେ ତିଳେକ ନ ସହଇ ପୃଥୀ
ଅପୁର୍ବିକ ବସିଲେଟି ଅପ୍ରତିଷ୍ଠା ହୁଅଇ ବସୁମତୀ ।୧୮।
ଅପୁର୍ବିକ ଜନ୍ମ ହୋଇ ଯେବଣ ଗ୍ରାମେ ଥାଇ
ପ୍ରଭାତକାଳେ ତାର ମୁଖଇଂ ନ ଗୃହିଂ ।୧୯।

ଙ୍ଗେରୁ ସମାନେହେଂ କଣସ୍ୟ ହେଲେ ଦାନ
ତେଣେ ସେ ଗୃହ୍ଣାଂକ ପାତେକ ହୋଇବ ଦହନ ।୨୦।
ତାଳେକ ଗମ୍ଭୀର କର ଖୋଳବ ଗୃଣ୍ଡାଳେ
ଆନ ମୃତ୍ତିକା ଭର ଯେଣେ ତୋଳାଇବ ଯାଗଶାଳେ ।୨୧।
ଶତେଦିନ ପରଯନ୍ତେ ଯେଥେ ଦେବାକ ଆହୁତି
ତେବେ ସେ ଶୁଦ୍ଧ ସିନା ହୋଅଇ ବସୁମତୀ ।୨୨।
ଶୁଣି ହଡପକାଣ୍ଡି ବିସ୍ମୟେ ହୋଇଲା
ଅପୂର୍ବିକ ଲୋକଂକ ପାତକ କହଣା ନ ଗଲା ।୨୩।
ଆମ୍ଭେ ନନ୍ଦଗୋପାଳକୁ ସେବାକରୁ ନିତିଦିନ
କେମନ୍ତେ ପାର ହେବ ରାଜାର ଯେତେ ପାପ କର୍ମ ।୨୪।
ଯେତେ ବିଚାର ତହୁଂ ଚଳିଲା ହଡପକାଣ୍ଡି
ପ୍ରୟାଗତୀର୍ଥେ ଯାଇଂ ଭେଟିଲା ଦଣ୍ଡଧାରୀ ।୨୫।
ତାମ୍ବୋଳ ଭୁଞ୍ଜାଇ ରାଜାଂକୁ ନ ଗୃହ୍ଣାଂକ ନୟନେ
ନନ୍ଦ ଗୋପାଳ ବୋଇଲେ ଆଜ ବିକୃତ କଂପେ ତୋର ମନେ ।୨୬।
ଦେବ କଥାଯେ ଅଛଇ ଯେ କହିବାକୁ କରଇ ଭୟେ
ନନ୍ଦ ଗୋପାଳ ବୋଇଲା କିଛି ଶଂକା ନ କର କହସି ନିର୍ଭୟେ ।୨୭।
ଜ୍ୟୋତିପୁରେ ତୁମ୍ଭେ ଯେ ବସିଲ ଯେଉଂଣ ଆସ୍ଥାନେ
ତାଳେକ ଗମ୍ଭୀର ମାଟି ଖୋଳୁଛନ୍ତି ତହିଂର ହାଦେ ଜନେ ।୨୮।
ବୋଇଲେ ଅପୂର୍ବିକ ରାଜା ନନ୍ଦ ଗୋପାଳ ଯେଥି ବସିଥିଲା
ତେଣୁକର ଭୂମିଖଣ୍ଡି ମହାପାତକୀ ହୋଇଲା ।୨୯।
ଆନମୃତ୍ତିକା ପୂରାଇ ଯେଥି କରିବୁଂ ଆହୁତି
ତେବେ ସେ ପ୍ରତିଷ୍ଠା ହୋଇବ ଯେହ୍ନ ପୃଥୀ ।୩୦।
ଶୁଣିଣ ବିରସ ସେ ମଗଧେଶ୍ୱର ରାୟେ
ଧିକ ଧିକ ଜୀବନ ମୋର ନାହିଂ ଯେ ତନୟେ ।୩୧।
ପୁତ୍ରର ଅଭାବେଣ ବ୍ରତଶ୍ରୁ ଯେଉଂଣ ପ୍ରାଣୀ
ଜୀବନ ଅକାରଣ ତାହାର ପୁରୁଷ ମଧ୍ୟେ ନ ଗଣି ।୩୨।
ମନ୍ତ୍ରୀକି ହକରାଇ ତହିଂ ବୋଇଲା ନୃପତି
ଇହଲୋକେ ଅକାରଣ ପରଲୋକେ ଅଗତି ।୩୩।

ଭୋ ମନ୍ତ୍ରୀ ତୁ ମୋହୋର ରାଜ୍ୟଭାର ସମ୍ଭାଳ
ମୁହିଂ ତପ କରିବ ପୁତ୍ର ହୋଇବ ଯେତେ କାଳ ।୩୪।

ମନ୍ତ୍ରୀକଇଂ ରାଜ୍ୟ ସମର୍ପିଲ୍ଲ ନରପତି
ବଦରିକା ଆଶ୍ରମେ ସେ ରହିଲ୍ଲ ଆହୁତି ।୩୫।

ଦୁତୀ ଈଶ୍ୱର ସେ ଦୁର୍ବାସା ମହରଷି
ତାହାନ୍ତ ଧ୍ୟାଏ କରି ରାଜା ଯୋଗଲଏ ବସି ।୩୬।

ଛୁଡ଼ିଲ୍ଲ ମାୟାମୋହ କୁଟୁମ୍ବ ମୁହାଂସ
ସନ୍ତାନ ନିମନ୍ତେ ଦୁର୍ବାସାଂକୁ ବଡାଇଲ୍ଲ ମନାସ ।୩୭।

କାଳ କାମ ନିଦ୍ରା କ୍ଷୁଧା ରାଜା ସମସ୍ତ ଉପେକ୍ଷି
ସନ୍ତତି ନିମନ୍ତେ ରାଜା ଅଜପା ଲଏ ବାଟ ।୩୮।

ମହାତପେ ନିର୍ଜିତ ରାଜା ହୋଇଲ୍ଲ ଦିବାରାବେ
ବସିଲ୍ଲ ନନ୍ଦ ଭୋପାଳ ନିରାଶ ଉପବାସ ପଞ୍ଚଭୂତେ ।୩୯।

ଏମନ୍ତେ ତପକଲ୍ଲ ରାଜା ଦ୍ୱାଦଶ ବରଷ
ନିରଶ ଦେଖିଣ ଦୁର୍ବାସା ମିଳିଲେ ତାର ପାଶ ।୪୦।

ନିରାଶେ ନରେଶ୍ରେଷ୍ଠ ପଡ଼ିଅଛି ନୃପମଣି
ଉପରେ ସିଞ୍ଚିଲେ ମୁନି ଜୀବନ୍ୟାସ ମନ୍ତ୍ରପାଣି ।୪୧।

ନଖ ମୁଖ ନାସିକା ଗୃରୁ ଚରଣ ବିକାଶି
ସାଷ୍ଟମ ହୋଇଣ ରାଜା ବିନୟ ପରକାଶି ।୪୨।
ସ୍ୱାମୀ କେଉଂଣ ଦେଶର ତୁମ୍ଭେ ଅଟ ତପୋଧନ
ଦୁଖେ ଅରଜିଲ୍ଲ ତପ କମ୍ପାଇଂ କଲୁ ଯେ ନାଶନ ।୪୩।
ଆହେ ରାଜା ତୋର ଯେଉଂଣ ମନୀଷା
ମୁହିଂ ସେହି ମହାତ୍ମା ହୋ ଅଟଇ ଦୁର୍ବାସା ।୪୪।
ନନ୍ଦଭୋପାଳ ବୋଇଲ୍ଲ ମୁଂ ନିସ୍ତରିଲି ନିସ୍ତରିଲି
ଦୁର୍ଗତି ବଞ୍ଚିଲି ନାଥ କାର୍ଯ୍ୟକୁ କାରଣ ଲଭିଲି ।୪୫।
ମୁକୁଇଂ ଅନଗ୍ରହ କରିବା ମୁନି ଯେବେ
ମୁହିଂ ତପ କଲି ହାଦେ ସନ୍ତାନ ଅଭାବେ ।୪୬।

---

୩୮ ।୨ ଅମ୍ଭର ମନ୍ତ୍ରେ ରାଜା ଅଜପା ଲଏ ବାଟ । (ଘ,ଥ,କ,ଟ)

ପୁତ୍ର ଗୋଟିଏ ମୋତେ ଦେବାକ ତପୋନିଷ୍ଠି
ସଂସାର ରଂଚନାକୁ ମୁଂ ହୋଇଲି ବଡ଼ କଷ୍ଟି ।୪୭।
ପଶ୍ଚିମ କୋଶଳେ ମୁଂ ଅଟଇ ଅଧିକାରୀ
ମହାସଂପଦ ରାଜ୍ୟ ମୋର ମଗଧ ନାମେ ପୁରୀ ।୪୮।
ମୋହୋର ଅଭାବେ ଯେବେ ରାଜ୍ୟ ଗଲା ନଷ୍ଟ
ବୁଡ଼ିଲା ବଂଶ ମୋହୋର ରଖ ହୋ ତପୋନିଷ୍ଠ ।୪୯।
ଦୁର୍ଭାସାଯେ ବୋଇଲେ ତୁ ଉଠ ହୋ ମହାରାଯେ
ଯେ ହର ଉଦ୍ୟାନେ ପଶି ଆଣ ଫଳ ଗୋଟିଏ ।୫୦।
ଯେଉଂଣ ଫଳ ପାଅ ଯେ ଘେନିଆସ ନୃପତି
ପାଇବୁ କାରଣ ତୋର ହୋଇବ ସନ୍ତତି ।୫୧।
ଚଳଇ ନନ୍ଦ ଭୋପାଳ ଋଷିଂକ ବଚନେ
ପ୍ରବେଶ ହୋଇଲା ଯାଇଂ ହର ଉଦ୍ୟାନ ନାମେ ବନେ ।୫୨।
ବୁଲଇ ନିରନ୍ତରେ ଘୋର ବନେ ଗହନ ଅଟବୀ
ଚୂତଫଳ ଗୋଟାଏ ପାଇଲା ରାଜଦେବା ।୫୩।
ଘେନିଣ ଦୁର୍ଭାସାଂକ ସନ୍ନିଧେ ମିଳିଲାକ ଆସି
ଦୁର୍ଭାସାଯେ ବୋଇଲେ ତୋର ପ୍ରିୟବନ୍ତୀ ଭାରଯାକୁ ଦଅସି ।୫୪।
ଦୁର୍ଭାସାଂକ ବଚନେ ଯେ ଚଳଇ ଭାନୁବଂଶର ନାଥ
ବେନି ପାଟରାଣୀ ଯେ ତାହାର ସୁମତି ଗୁରୁମତି ।୫୫।
ଯେକାଳେ ହକରାଇଲା ରାଜା ସୁମତି ପାଟରାଣୀ
ଚୂତଫଳ ଗୋଟି ତାର କରେ ଦେଲା ନୃପମଣି ।୫୬।
ଯେ ଚୂତଫଳ ଗୋଟି ସୁନ୍ଦରୀ ରେ ଶଉଚବନ୍ତ ହୋଇ ଭକ୍ଷ
ଦୁର୍ଭାସାଂକ ବଚନେ ପୁତ୍ର ହୋଇବ ପ୍ରତ୍ୟକ୍ଷ ।୫୭।
ଦେଇଣ ନୃପତି ଯେ ଗଲାକ ଆସ୍ଥାନେ
ଗୁରୁମତି ମିଳିଲା ଆସି ସୁମତିର ସନ୍ନିଧାନେ ।୫୮।
ଦେଖିଣ ବଚ୍ଚରଇ ସୁମତି ପାଟରାଣୀ
କେମନ୍ତେ ଭକ୍ଷିବ ନ ଦେଇ ପ୍ରିୟବନ୍ତୀ ସଂଘାତୁଣୀ ।୫୯।

---

୪୭।୨ ସଂସାରକା ଧର୍ମକୁ ମୁଂ ଯେ ହୋଇଲି ବଡ଼କଷ୍ଟି । (କ,ଛ)

ଚୂତଫଳ ଗୋଟିକ ବେନିଫାଳ କରି କାଟି
ଦୁଇ ସପତ୍ନୀ ଯେ ଭୁଞ୍ଜିଲେ ତାହା ବାଣ୍ଟି ।୬୦।
ଋଷିଙ୍କ ମହାମନ୍ତ୍ର ତ ନୋହୋଇ ବିନାଶ
ବେନି ସପତ୍ନୀ ଯେ ହୋଇଲେ ଗର୍ଭବାସ ।୬୧।
ବେନି ଭାରିଯା ରାଜାର ହୋଇଲେ ଗର୍ଭବନ୍ତୀ
ଦେଖିଣ ସାନନ୍ଦ ନନ୍ଦ ଭୋପାଳ ନରପତି ।୬୨।
ଉତ୍ସବ ବିଧାନ ସେ କରାଇଲେ ନରସାଇଂ
ଏମନ୍ତେ ନବମାସ ଯାଆନ୍ତେ ଦଶମାସ ପ୍ରବେଶ ହୋଅଇ ।୬୩।

ଆହୋ ତୁଳମାସ କୃଷ୍ଣପକ୍ଷ ଚଉଠି ଶଉରିବାର
ଆର୍ଦ୍ରା ନକ୍ଷତ୍ରକୁ ଭୋଗ୍ୟ ସେ ଦିନର ।୬୪।
ବ୍ୟତିପାତ ନାମେ ଯୋଗ କୌଳବ କରଣ
ତୁଳ ସଂକ୍ରାନ୍ତିକ ଯେ ଭୋଗ ପାଞ୍ଚଦିନ ।୬୫।
ରାତ୍ର ପାଞ୍ଚ ଘଡିରେ ସେ ବେନି ଯେ ଯୁବତୀ
ଏକାବେଳେ ପ୍ରସବିଲେ ସୁମତି ଗୁରୁମତି ।୬୬।
ବେନି ଯୁବତୀ ଯେ ପ୍ରସବ କଲେକ
ବେନିପୁତ୍ର ଉପୁଜିଲେ ହୋଇ ଅର୍ଦ୍ଧେକ ଅର୍ଦ୍ଧେକ ।୬୭।

ଶିର ଅର୍ଦ୍ଧେକ ଚକ୍ଷୁ ନାସିକା ପୁଣ୍ଡାଏକ
ଭୁଜଏକ ବକ୍ଷସ୍ଥଳ ଅର୍ଦ୍ଧ ଅର୍ଦ୍ଧ ଯେ ପାଦେକ ।୬୮।
ଏକଇ ଶରୀର ଯେ ଉତପତି ବେନିଖଣ୍ଡ
ପଡିଲେ କୁମାରେ ଯେ ଅର୍ଦ୍ଧେ ଅର୍ଦ୍ଧେ ପିଣ୍ଡ ।୬୯।
ନୃପତିର ଅଗ୍ରତେ ଜଣାଇଲେ ପରିହାରୀ
ବେନିପୁତ୍ରେ ଉତପତି ହୋଇଲେ ଅନ୍ତପୁରୀ ।୭୦।
ଶୁଣିଣ ଭଣ୍ଡାର ଦାନ ଦିଲା ମହାରାଜେ
ହାଟ ପେଣ୍ଠ ଲୁଠ କରି ମଗଧଦେଶ ରାଜ୍ୟେ ।୭୧।

---

୭୦।୧ ନୃପତିର ଅଗ୍ରତେ ଜଣାଇଲେ ପରିବାରୀ । (ଙ,ଝ,ଜ)
୭୧ ବେନି ଭଣ୍ଡାର ଦାନ ଦିଲା ମହୀପତ୍ୟେ
ହାଟ ବାଟ ଲୁଠ କରାଇଲେ ଅମାତ୍ୟେ । (ଚ,ଟ)

ବାବୁ ସେ ମହାତ୍ମା ଅଟେ ଧାର୍ମିକ ତପୀଷ୍ଟ
ଦୁର୍ଭାସାଂକ ପ୍ରସାଦେ ଗଲା ମୋର ପୁତ୍ର କଷ୍ଟ ।୭୨।
ଯେମନ୍ତ ସମସ୍ତେ ଯେ ଗଲେକ ମୃଦୁସୁଲା
ରାଜାର ଅଗ୍ରତେ ଜଣାଇ କହିଲେ ଯୋଇଲା ।୭୩।
ଦେବ ସୁନ୍ଦର ସୁକୁମାର ହୋଇଲା ପୁତ୍ର ସୁସଞ୍ଚ
ଅର୍ଦ୍ଧ ଅର୍ଦ୍ଧ କାୟେ ଉପୁଜଲେ ପରପଞ୍ଚ ।୭୪।
ମୃଦୁସୁଲା ବଚନ ଶୁଣିଣ ନୃପମଣି
ବିଷାଦ ନନ୍ଦ ଭୋପାଳ ଶୁଣିଣ ଅମଙ୍ଗଳ ବାଣୀ ।୭୫।
ପଟୋଆର ହକରାଇ ବୋଇଲେ ନରପତି
ଆରେ ଶମଶାନ ଭୂମିରେ ନେଇ ପକାଅ ଦୁହିନ୍ତ ।୭୬।
ଜାରକା ରାକ୍ଷସୀ ଧରଣ ତାହାନ୍ତ ଭକ୍ଷୁ
ଦୁର୍ଭାସାଂକ ବଚନ ଯେ ଯେସନେକ ସାରକ୍ଷୁ ।୭୭।
ରାଜାର ବଚନେ ତହୁଂ ଚଳିଲେ ଦୋସାଧୂ
ବେନି ପୁତ୍ର ଧରି ଆଣିଲେକ ଅନ୍ତପୁର ମଧ୍ୟୁଂ ।୭୮।
ଶମଶାନ ଭୂଇଂରେ ନେଇ ପକାଇଲେ ବେନିଖଣ୍ଡ
ରେବନ୍ତ ନନ୍ଦନେ ସେ ଗର୍ଜଇ ଯେନ୍‌ହେ ଷଣ୍ଢ ।୭୯।
ରାତ୍ର ଅର୍ଦ୍ଧମାନେ ଶମଶାନେ ଅଇଲା ଜାରକା
ଆନ୍ଵେଷି ଧଇଲା ସେ ମନୁମାଂସ ଦେଖି ।୮୦।
ମହାଘୋଷ୍ଟରୂପ ସେ ଶମଶାନ କ୍ଷେପୁଣୀ
ଦୁହିନ୍ତ ଗିଳିଲା ଯେନ୍‌ହେ ଜଳପ୍ରଭା ଜାଣି ।୮୧।
ବଇବସ୍ତୁତମନୁ ପୁଚ୍ଛିକଲେ ଅଗସ୍ତି ତପୋବନ୍ତେ
ବେନିଫାଳ ହୋଇ ସେ ଉତପତ୍ତି ହୋଇଲେ କେମନ୍ତେ ।୮୨।
ଅଗସ୍ତି ବୋଇଲେ ହୋ ଯେକଇ ଆମ୍ବଗୋଟି
ନଜାଣି ସୁମନ୍ତ ତାହା ବେନିଫାଳ କର କାଟି ।୮୩।
ଯେକଫଳଗୋଟି ଯହୁଂ କଲା ବେନିଫାଳ
ଦୁଇଖଣ୍ଡ ହୋଇ ଉପୁଜିଲା ଯେକଇ ଦୁଲଲ ।୮୪।

---

୭୭।୧ ଜାର ରାକ୍ଷସୀ ଧରଣ ତାହାନ୍ତ ଭକ୍ଷୁ । (ଙ,ଚ)
୭୮।୧ ଦୋସାଧୂ—କଟୁଆଳ ।

ଫଳଗୋଟିକ ଯାକ ଯେବେ ସୁମନ୍ତ ଭକ୍ଷନ୍ତା
ମହାବଳବନ୍ତା ହୋଇ ପୁତ୍ରେକ ଉପୁଜନ୍ତ ।୮୫।
ଆଦ୍ୟହୁଂ ବେଣିଫାଳ କଲେକ ବେଣିରାଣୀ
ତେଣୁ ସେ ଉପୁଜଲା ଅର୍ଦ୍ଧ ଅର୍ଦ୍ଧ ଅଙ୍ଗ ଘେନି ।୮୬।
ବଇବସୁତମନୁ ପଚାରିଲେ ପରସ୍ତାବେ
ସେ ବେଣିଖଣ୍ଡ ରହିଲା ରାକ୍ଷସୀ ଜାରଙ୍କାର ଗର୍ଭେ ।୮୭।
ସେ ପୁଣି କେମନ୍ତେ ହୋଇଲେ କହିବା ମୁନି ହେ
ଯେହୁ ସଞ୍ଚପିଣ ମୋତେ କହିବା ସନ୍ଦେହେ ।୮୮।
ଅଗସ୍ତି ବୋଇଲେ ତୁ ହେ। ଶୁଣ ଯୋଗେଶ୍ୱର
ସେ ବେଣିଖଣ୍ଡ ରହିଲା ଜାରଙ୍କା ଗର୍ଭର ।୮୯
ଗର୍ଭର ଭିତରେ ସେହୁ ହୋଇଲେକ ଜଡ଼
ଯେକକାଯୀ ହୋଇଲେ ସେ ଗର୍ଭଗତେ ପଡ଼ ।୯୦।
ଜାରଙ୍କାର ଗର୍ଭେ ସେ ପଶିଲେ ମହାବଳବନ୍ତା
ଫଢରଣ ନ ଗଲା ସେ ରାକ୍ଷସୀ ଗର୍ଭଗତା ।୯୧।
ଗର୍ଭର ଭିତରେ ସେହୁ ମୁଥେକ ପ୍ରହାର
ବାହାର ହୋଇଲା କୁମର ପାଞ୍ଚରା ବିଦାରି ୯୨।
ପୁତ୍ର ଉତପତ୍ତି ହୋଅନ୍ତେ ଜାରଙ୍କା ନାଶଗଲା
ରୋଦନ କରନ୍ତେ ପୁତ୍ର ପୃଥିବୀ କଂପିଲା ।୯୩।
ତମିର ବିନାଶ ଯହୁଂ ହୋଇଲା ଶେଷରାତି
ବିଜଯେ ନନ୍ଦ ଭୋପାଳ ବାହାର ଜଗତି ।୯୪।
ଶୁଭଇ କୁମାରର ମହାରୋଦନ ବାଣୀ
କହୁଆଳ ହକାରି ଆଜ୍ଞ୍ୟାଂ ଦେଲକ ନୃପମଣି ।୯୫।
ଆହେ। ଯାଅସି ରେ ଦୋସାଧୁ ଶମଶାନ ଭୂମିକ
କାହିଂର ରୋଦନ ସେ ଆସନି ଯାଇଂ ଦେଖି ।୯୬।
ଦୋସାଧୁ ପ୍ରବେଶ ହୋଇଲା ଶମଶାନ ଭୂମି
ରାଜାକୁ ଜଣାଇଲା ବଡ଼ାଇ ଦୁର୍ଲଭ ସ୍ୱାମୀ ।୯୭।

୯୪।୧ ତମିର ବିହାର କ ଉଦୟେ ରୁସ୍ତାପଥ । (ଙ,ଚ,ଛ)

ବେନିଖଣ୍ଡ ଶରୀର ଯେ ହୋଇଲାକ ଦେବ ଜଡ କରି
କୁମାର ସମ୍ଭୂତ ହୋଇଲା ଜାରଙ୍କୀ ବଦାରି ।୯୮।
ଶୁଣିଣ ନନ୍ଦ-ଭୋପାଳ ବିଜୟେ କଲେ ଆପଣେ
କୁମାର ରୋଦନ କରନ୍ତେ ଯେ ଶୁଭଇ ଗଗନେ ।୯୯।

କୋଳେଣ ଧଇଲା ତାହା ନନ୍ଦ ଭୋପାଳ ରାୟେ
ଜାରଙ୍କୀ ମାରି କୁମର ମହାଘୋର ରୋଦନ କଏ୍ୟ ।୧୦୦।
ଅନେକ ସାନନ୍ଦ ହେଲା ରାଜା ନନ୍ଦ ଭୋପାଳ
ଜରାସନ୍ଧ ନାମ ଥିଲା ଯେ କୁମାର ମହାବଳ ।୧୦୧।

ଘେନିଣ କୁମରଙ୍କୁ ନୃପତି ବେଗେ ଚଳ
ଅତି ଯତ୍ନ କରି ସେ କୁମାରେ ପ୍ରତିପାଳ ।୧୦୨।
ମହାବଳବନ୍ତା ସେ ହୋଇଲା କୁମରମଣି
ଏ୍ୟସନେକ ଭେଦ ତାର କେହି ଯେ ନ ଜାଣି ।୧୦୩।

ଈଶ୍ୱରେ ଜାଣନ୍ତି ତାର ଜନ୍ମକାଳର କଥା
ଶ୍ମଶାନ ବାସୀ ରୁଦ୍ର ଅଟନ୍ତି ସର୍ବଥା ।୧୦୪।
ଶମଶାନ ବାରତା ଜାଣନ୍ତି ବିଶ୍ୱବାସୀ
ତେଣୁକରି ଭୀମସେନଙ୍କୁ କହିଲେ ବିଶେଷି ।୧୦୫।
ଆନରି ବେଳେ ବଧ ନୋହୋଇ ସେ ଜାରି
ବେନିଫାଳ କରି ଚିରିଲା ଭୀମସେନ ମହାବୀରି ।୧୦୬।

ଅଗସ୍ତି ଏ୍ୟ କହିଲେ ଯେ ବଇବସୁତ ମନୁକୁ
ଜରାସନ୍ଧ ପ୍ରସ୍ତାବ ଏ୍ୟ କହିଲ ଜାଣ ତୁକୁ ।୧୦୭।
ଏ୍ୟସନେକ ଭେଦ ଜାଣିଣ ଦଇତାରି
କୃଷ୍ଣେଣ ନାଶ ତାକୁ କଲେକ ମଧୁହାରୀ ।୧୦୮।
ବଦଯୃନ୍ତି ମହାତମା ଯେ ଘଟରୃଷିର ତନୁ
ତୁ ଯାହା ପୁଚ୍ଛା କଲୁ ହୋ ବଇବସୁତ ମନୁ ।୧୦୯।

---

୧୦୦।୨ ଜାରଙ୍କୀ ମାରି ଷଷ୍ଠୀରୂପେ କୁମର ମହାଘୋର ରୋଦନ କଏ୍ୟ । (ଚ,ଙ,ଥ)

୧୦୮।୧ ଏ୍ୟସନେକ ଭେଦ ନ ଜାଣନ୍ତି ଦଇତାରି ।

ପାଣ୍ଡବ ସୋହୋଡ଼ ଯେ ବୃକୋଦର ପରଚଣ୍ଡ
ଜାର ବଦାରଣ ସେ କଲେକ ବେନିଖଣ୍ଡ ।୧୧୦।

ଏସନେକ ସମାର୍ଜନ ଜରାସନ୍ଧର କଥା
ପ୍ରସ୍ତାପ ବାକ୍ୟେ ମହାତ୍ମା ଯେ କହିଲେ ବ୍ରହ୍ମବେତ୍ତା ।୧୧୧।
ଆହୋ ଦୁର୍ଯୋଧନ ସହିତେ ଆସନ୍ତି ଥାଠ ଘେନି
ଯେ ଯାହା ଅନରୂପେ ଭଗତଭାବ ମାନି ।୧୧୨।
ଭୀମ ଅର୍ଜୁନ ଘେନି ଦେବ ଯେ ଅନନ୍ତ
ଧୃତରାଷ୍ଟ୍ର ଗାନ୍ଧାରୀର ଚରଣେ ପ୍ରଣପତ୍ୟ ।୧୧୩।
ସକଳ ଚରିତ ଯେ କହନ୍ତି ମଧୁଭାଷୀ
ବଡଦୁଷ୍ଟ ଜରାସନ୍ଧକୁ ଦେବ ଅଇଲୁ ନିବାରି ।୧୧୪।

ଶୁଣିଣ ସାନନ୍ଦ ଯେ ରାଜା ଧୃତରାଷ୍ଟ୍ର
ଆହ୍ମୁଂ ନିବର୍ତ୍ତି ହୋଇଲା ରାଜାମାନଂକର କଷ୍ଟ ।୧୧୫।
ହରି ହେ ଅଦଭୁତ ବାରତା ଶୁଣି ହୋଇଲୁଂ ବିଷାଦ
ବୋଇଲେ ଭୀମ ଅର୍ଜୁନ ହରିଂକୁ ନାଶିଲା ଜରାସନ୍ଧ ।୧୧୬।

ବିଷାଦ ହୋଇଲୁଂ ଶୁଣି ଦେବ ଦୁର୍ଭର ବଚନେ
ବହୁତ ଅପଗ୍ରତ ହେଲୁ ତୁମ୍ଭନ୍ତ ଅଗ୍ୟାନେ ।୧୧୭।
ତୁ ଦେବ କରୁଣାମହାଳ ପୀତବାସ
ସକଳ ଭୁବନେ ହରି ତୋହୋର ତେଜ ଯେ ପ୍ରକାଶ ।୧୧୮।

ଶ୍ରୀହରି ବୋଇଲେ ତାତ ମୁଂ ଜାଣଇନି ସମସ୍ତ
ଶକୁନିର ଭିଆଣ ଯେ ଏମନ୍ତ ଚରିତ ।୧୧୯।
ତୁମ୍ଭେ ଗାନ୍ଧାରୀ ଜାଣ ହାଦେ ଶକୁନି କୁଳକ୍ଷୟେ ମନ୍ତ୍ରୀ
ସେହି ସିନା ନାଶ କରାଇବ ତୋହୋର ସନ୍ତତି ।୧୨୦।

ପୋଷ୍ୟେ ତୋର ଅବା ବାଳ୍କତ କାଳହୁଂ ଅତିଦୁଷ୍ଟ
ତୁ ତାହାନ୍ତ ସମାର୍ଜନା କର ହୋ ଧୃତରାଷ୍ଟ୍ର ।୧୨୧।

---

୧୨୦।୨ ସେହି ସେ ନାଶ କରିବ ତୋହୋର ସକଳ ସମ୍ପତ୍ତି ।
(ଚ,ଟ,ଞ,ଢ,ଘ)

ଅନେକ ବାଟେ ଯେ କୁରୁପତିଂକ ବିଆଣ
ଭୋ ତାତ ସଇଲୋକ୍ୟେ ଜଣନ୍ତା ହୋଇଲେ ପାଣ୍ଡବ
ଭ୍ରାଥ ଗୁଣ ।୧୨୨।
ଧୃତରାଷ୍ଟ୍ର ବୋଇଲେ ତୁ ଜଗୁ ଜୀବନ ପୁରୁଷଉତ୍ତମା
ଦୁଷ୍ଟଂକର ଦୋଷ ସ୍ୱାମୀ ତୁ କରବୁ ନା କ୍ଷମା ।୧୨୩।
ଅନେକ ଦ୍ରୋହ ନାଥ କଲ୍ଲକ ତୋତେ ଜାଣ୍
ସାଷ୍ଟାଙ୍ଗେ ନାଶିଲୁ ତୁ ଦୁର୍ଭାର ମହାବାଣ୍ ।୧୨୪।
ଅନେକ ବିନୋଦ୍ଧି ଯେ କହିଲ କୁରୁବଇ
ସାନନ୍ଦେ ଚଳିଲେ ସ୍ୱାମୀ ଜଗତ ଗୋସାଇଂ ।୧୨୫।
ପ୍ରବେଶ ହୋଇଲେ ଯାଇଂ ଧର୍ମରାଜ୍ୟେଂକର ପାଶ
ବିନୟ ଭାବେ ସ୍ୱାମୀ କହନ୍ତ ପୀତବାସ ।୧୨୬।
ମୁହିଂ ଯାଉଅଛୁ ସ୍ୱାମୀ ଦ୍ୱାରକାଭୁବନକୁ
ଶୁଭବାରତା କହିବ ବଳରାମ ଠାକୁରଂକୁ ।୧୨୭।
ଜାବର ଉପେ ଦେବ ବହୁତ ମୋତେ କଥା
ତାହାରେ ପାଇଲୁ ଆମ୍ଭେ ଅନେକ ଅବସ୍ଥା ।୧୨୮।
ଭୋ ଦେବ ଧନୁ ଉତ୍ସବ ବୋଲି ଯାତ୍ରାସେକ କଲ କଂସ
ନନ୍ଦକୁ ଶ୍ରୀମୁଖ ନିଆଇଲା ଗଉଡବଂଶ ।୧୨୯।
ଗୋପାଳଂକର ତୁଲେ ଆମ୍ଭେ ଗଲୁ ବେନିଭ୍ରାଥେ
ଧନୁଉତ୍ସବ ଯାତ୍ରା ଯେ ଦେଖିବା ନିମନ୍ତେ ।୧୩୦।
ଅନେକ ରଙ୍ଗ ଯେ ଯାତ୍ରାର ବିଧାନ
ବିହରନ୍ତ ରଙ୍ଗେ ସମସ୍ତ ଗୋପାଳ ପୁଅମାନ ।୧୩୧।
ଆମ୍ଭନ୍ତ ଦେଖି ଦେବ କଂସ ଯେ ନାଶଗଲା
କାଳିଜ ମାତକେ ତାର ଯେ ଅଷ୍ଟମଲ୍ଲପାକ ମଲା ।୧୩୨।
ତତ୍କ୍ଷଣ ଗୋପାଳେ ଯେ ନିଭ୍ରାନ୍ତ ମନ ହୋଇ
ଅନେକ ଧନରତ୍ନ ଆଣିଲେ ସୁଖେ ବହି ।୧୩୩।
କଂସର ଭାରଯା ଯେ ହେଣ୍ଟି ପରହେଣ୍ଟି
ତାହାଂକର ପିଅର ଯେ ମଗଧେଶ୍ୱର ନୃପତି ।୧୩୪।

---

୧୩୦।୧ ଗୋପାଳଂକ ବଚନେ ଆମ୍ଭେ ଗଲୁ ବେନ ଭ୍ରାଥେ । (ଢ,ଥ)

ବିଧବା ଅବସ୍ଥା ହୋଇ ଜରାସନ୍ଧକୁ କଲେକ ଗୁହାରି
ଗୋପପୁରକୁ ଦେବ ଜରାସନ୍ଧ ଦେଲା ଧାଡ ।୧୩୫।
ପାଠ ପଢୁଥିଲୁଁ ଆମ୍ଭେ ଶାନ୍ତପନ ପଣ୍ଡା ଘରେ
ଗୋପପୁର ଲୋକେ ବିକଳେ ପଳାଉଛନ୍ତି ଜରାସନ୍ଧର ଡରେ ।୧୩୬।
ଜାରାର ଭୟେ ତହୁଁ ଅଇଲୁ ଆମ୍ଭେ ଅପସରି
ଅନେକ ଧନରତ୍ନ ଗୋଧନ ନେଲା ଜୁରୁ କରି ।୧୩୭।
ପ୍ରଥମ ଧାଡରେ ଦେବ ଯେ ଛାଡିଲୁ ଗୋପଦେଶ
ଯମୁନା ପାରିହୋଇ ମଥୁରାୟେ କଲୁଁ ବାସ ।୧୩୮।
ପୁଣି ସମୟେକେ ମଥୁରାକୁ ଦେଲା ଧାଡ
କୁଟୁମ୍ବନ୍ତ ଘେନି ବେନିଭାଇ ଅଇଲୁ ଅପସରି ।୧୩୯।
ମଥୁରାକୁ ବେଢିଲା ଦେବ ଘେନି ସନ୍ୟବଳ
ରାଜ୍ୟ ତେଜି ପଳାଇଲୁ ସକଳ ଗୋପାଳ ।୧୪୦।

ସ୍ୱାମୀ ମଥୁରା ପୁର ରାଜ୍ୟ ସବୁ ଭାଂଜଣି କଲା ଜୁରି
ଧନଭଣ୍ଡାର ଆଦିକରି ଯୋଡିଲା ନବର ।୧୪୧।
ପଳାଇ ପଶିଲୁ ଦେବ ଅନୁସର ବନେ
ତହିଁ ସମୟେକେ ଯେ ବ୍ରତିଲୁ ସର୍ବଜନେ ।୧୪୨।
ପୁଣିହିଁ ତହିଁକ ଯେ ବାହ୍ନିଲା ଜରାସନ୍ଧ
ଅନୁବ୍ରତେ ଲୋଡୁଥାଇ ଶ୍ରୀରାମ ଗୋବିନ୍ଦ ।୧୪୩।
ବନ୍ଧୁବର୍ଗ ଘେନି ତହୁଁ ଗଲୁଁ ଅପସରି
ଅନୁସର ବଣକୁ ସେ ପୁଣିହିଁ ଦେଲା ଯୋଡି ।୧୪୪।
ଗୋମନ୍ତ ପର୍ବତେ ଯେ ବଞ୍ଚିଲୁ ସମୟେ
ତହିଁକ ଧାଡିଦିଲା ଚଉଦବରଷ ଯାୟେ ।୧୪୫।
ତହୁଁ ଅପସରିଣ ଯେ ଆଇଲୁଁ ସର୍ବଜନେ
ସମୟେକେ ବିଶ୍ରାମିଲୁ ଦେବ କଣ୍ଟକ ମଧୁବନେ ।୧୪୬।
ଯଦୁ ଋଷିକଂର ସେହୁ ଅଟଇ ଅରଜିଲା ଭୂମି
ତହିଁରେ ସମୟେକେ ବଞ୍ଚିଲୁ ଦେବ ସ୍ୱାମୀ ।୧୪୭।
ତହିଁକ ଦଣ୍ଡ ସାଜିଲା ଯେ କାଳଦମନକୁ ଘେନି
ସମଦଣ୍ଡ ଘେନି ତହୁଁ ଘୁଞ୍ଚିଗଲୁ ପୁଣି ।୧୪୮।

ସମୋଦ୍ର ଭିତରେ ଦେବ ରଞ୍ଚିଲୁ ଦ୍ୱାରିକା
ଛନ୍ଦଂରେ ରହିଲୁ ଦେବ ହୋଇଣ ନିଶଂକା ।୧୪୯।

ଜାରାର ଭୟେ ଦେବ ଯଦୁବୀରମାନେ
କେହ୍ନି ବାହାର ନୋହନ୍ତି ମଧ ଯେ ଭୁବନେ ।୧୫୦।

ଢୋହୋର ପ୍ରସନ୍ନେ ଦେବ ନାଶଗଲା ଚେଜେ ରିପୁ
ସ୍ନେବେ ସେ ଯାଦବଂକର ବିକାଶିଲା ବପୁ ।୧୫୧।

ଅନେକ ସାନନ୍ଦ ଦେବ ହୋଇବେ ବଳଦେବ
ଦ୍ୱାରିକାରେ ହୋଇବ ଦେବ ଅନେକ ଉତ୍ସବ ।୧୫୨।

ଅନେକ ସାନନ୍ଦ ଯେ ହୋଇବେ ଭୋଜ ସାତବଂଶ
ଭୀମସେନଂକୁ ଅନେକ ହୋଇବ ଦେବ ଯଶ ।୧୫୩।

ଭୀମସେନର ପ୍ରସାଦେ ଅନେକ ସୁସ୍ତ ପାଇଲୁ ସର୍ବସ୍ଥାପି
ସାଧୁ ସାଧୁ ବଚନ ଗୋଟି ଉପୁଜବ ଅଦ୍ୟାପି ।୧୫୪।

ଯୁଧିଷ୍ଠି ଦେବଂକୁ ବୁଝାଇଣ ଦେବରାଜା
ଆଗ୍ୟାଂ ହେଲା ହରି ଦ୍ୱାରିକାପୁରକଇ ବେଗେ ଯା ଯା ।୧୫୫।

ଭୀମ ଅର୍ଜୁନକଇଂ ସଙ୍ଗେ ଘେନିଣ ଜଗନ୍ନାଥେ
ବାରୁଣାବନ୍ତେ ଥାଇଣ ସୁମରିଲେ ବଇନେତେ ।୧୫୬।

ଚଇତ୍ର କୃଷ୍ଣ ପ୍ରତିପଦା ଦିନ ଜରାସନ୍ଧ ନାଶଗଲା
ଚଇତ୍ର ଶୁକ୍ଳ ଷଷ୍ଠୀଦିନ ହସ୍ତିନାପୁରେ ଉତ୍ସବ ହୋଇଲା ।୧୫୭।

ଚଇତ୍ର ଶୁକ୍ଳ ସପ୍ତମୀ ଆଉର ଗୁରୁବାରେ
ମୃଗଶିରା ରୁଷବେଳ ଅଢ଼ାଇ ପ୍ରହରେ ।୧୫୮।

ଭୀମ ଅର୍ଜୁନେ ସମାର୍ଜି ଚଳନ୍ତି ବନମାଳୀ
ଦ୍ୱାରିକାପୁରକୁ ଦେବ ଗରୁଡ଼ ପିଠିରେ ଗବନ କରି ।
।୧୫୯—୧୬୫।



## ଶ୍ରୀକୃଷ୍ଣ ଦ୍ୱାରକା ଗମନ, ପଥମଧ୍ୟେ ଯଜ୍ଞୋପକରଣମାନ ସଂଗ୍ରହ, ବଳଦେବଙ୍କ ସହିତ ସାକ୍ଷାତ ଓ ଦ୍ୱାରକାରେ ମହୋତ୍ସବ

ଆହେ। କିରାତ ରଜା ନାମ ଅଟଇ ଅଜପତି
ଶ୍ରୀହସ୍ତେ ଆପଣେ ତାକୁ ଶାଢୀ ଦେଲେକ ଶ୍ରୀପତି ।୧।
ଆହେ। ଅଜପତି ତୋର ଯେତେକ ବନଚରମାନ
ସମସ୍ତେହେଂ ଶୁଣ ହୋଇଣ ସାବଧାନ ।୨।
ତେରଲକ୍ଷ ତେଷଠୀ ସହସ୍ର ତୋର ବୀରେ
ଶୁଖିଲା ତରୁନ୍ତ ଯେ ରୁଣ୍ଡ କରିବେ ବନସ୍ତରେ ।୩।
ଜୀବଥିବା ବୃକ୍ଷକଇଂ ନ କାଟିବ ଯତନେ
ଜୀବନାଶ ବୃକ୍ଷନ୍ତ ରୁଣ୍ଡକରିବ ପଶି ବନେ ।୪।
ଆହେ। ଯୁଧିଷ୍ଠିର ଦେବ କରିବେ ରାଜସୂୟ ଯଜ୍ଞଂ ସଭା
ଗଜ ଅଶ୍ୱ, ରନ୍ଧନଶାଳମାନନ୍ତ ତୋଳାଇବା ।୫।
ତେରଲକ୍ଷ ତେତିଶି ସହସ୍ର ଶବର
ସବୁନ୍ତ ହରି ଦେଲେ ଅଷ୍ଟରତ୍ନେ ତଉସର ।୬।
ଦେବାଙ୍ଗ ବସ୍ତ୍ରମାନ ଯେ ଦେଲେକ ବହୁତ
ପାଇଣ ଶବରସ୍ତେ ହୋଇଲେ ତୋଷଚିତ୍ତ ।୭।
ଆହେ। ଝିମାଣୀଶାଳ ମହାରଣାମାନେ ଅଛନ୍ତି ବାରୁଣାବନ୍ତେ
ତାହାନ୍ତ ଶାଢୀ ଦିଆଇଲେ ଭୀମସେନର ହାଥେ ।୮।
କୋଦାଳ କୋଠାର କଟାଇ ଶାବେଳ ମୂଷଳ
ଲୋହକର୍ମମାନନ୍ତ ନିର୍ବାଣ କର ବଦନ୍ତି ବନମାଳୀ ।୯।
କମିଲା ବନ୍ଧାଣୀମାନେ କୁନ୍ଦନ୍ତି କାମ କାଠ
ତାହାନ୍ତ ଶାଢୀ ଦିଆଇଲେ ନାବ ତୁମ୍ଭେ ଘଟ ।୧୦।
ଆଠଲକ୍ଷ ନାବ ବାବୁ ତୁମ୍ଭେ ଦେବ ସାଜ
ଉଡନ୍ତା ନାବ ହେବ ପବନହୁଂ ବେଗ ତେଜ ।୧୧।

---

୬।୨ ସବୁଂକର କଣ୍ଠେ ହରି ଦେଲେ ରତ୍ନହାର । (ଖ,କ)

ଧାନ ଗୃଣ୍ଡଳ ବିରି ମୁଗ ପରିବା ଶାକମାନ
ନାବେ ପୂରେଇ ଆସୁଥିବ ହିର ଉଦ୍ୟାନ ବନ ।୧୨।
ମେଡ ମଣ୍ଡୋପ ପୁରି ଜଗଣ୍ଡି ଅଟାଳୀ
ଯେତେମାନ ସର୍ଜନା କରିବ ଆଗ୍ୟାଂ ପ୍ରତିପାଳ ।୧୩।
ବିଶ୍ୱକର୍ମା ମୂଳେ ଥିବେ ଯେତେକ ବିନ୍ଧାଣୀ
ଦଶଲକ୍ଷ ବରତନ୍ୟା ଖଟାଇଥିବୁ ଆଣି ।୧୪।
ଯେତେମାନଙ୍କୁ ଆଗ୍ୟାଂ ଦେଇ ଗଲେ ଜଗନ୍ନାଥେ
କୋଲହାଣ ନୃପତିକି ଭେଟିଲେ ଯମପ୍ରଶସ୍ତେ ।୧୫।
ଭାସୁକ ନାମେଣ ସେ ଅଟଇ ନରପତି
ତାହାକଇଂ ଶାତୀହିଲେ ଆପଣେ ଶିଶୁପତି ।୧୬।
ତାଡଟ୍ଟୁମ୍ଭା ବାହୁଟି ସରଳ ଜଗଦଳା
ହୃଦେଣ ଭୂଷଣ କର୍ଣ୍ଣାଞ୍ଚଳ ସିମନ୍ତିନୀ ରତ୍ନମାଳା ।୧୭।
ଆହେ ଯୁଧିଷ୍ଠିର ଦେବ କରିବେ ରାଜସୂଯ଼ ଯାଗ ସଭା
ଋଷିଗଣମାନ ସମସ୍ତ ଆସିବେ ସର୍ବଦେବା ।୧୮।
ବେଦନଲକ୍ଷ ଦେବୁ ତୁ କୃଷ୍ଣାଜୀନ ଛଉରା
ଗଣ୍ଡା ହରିଣମାନଙ୍କ ଜୀବନ୍ତା ଆଣି ଥୋଇବୁ ଧରି ।୧୯।
ମୃଗମାଂସ ଭୋଜନ କରିବେ ସର୍ବଋଷି
ବନ ବରେହା ମାଯ଼େଂସ ମାନବ ମନ ତୋଷି ।୨୦।
ଯେତେମାନ ଯେତେ ଲାଗଇ ଷୋଳ ଦିବସ ପରିଯନ୍ତେ
ତନ୍ନୀକ୍ଷଣୀ ପାଦାନ୍ତ ବଳ ଯେନ ଦେଉଥିବୁ ବାରୁଣାବନ୍ତେ ।୨୧।
କୋଲହାଣ ନୃପତିକି ଆଗ୍ୟାଂ ଦିଲେକ ଗୋବିନ୍ଦେ
ହରଷେ ସନମତ କଲା ମନର ଆନନ୍ଦେ ।୨୨।
ଯେତେସନେକ ଆଗ୍ୟାଂ ତାକୁ ଦେଇଣ ଦେବରାଜେ
ଚଳନ୍ତ ଜଗନ୍ନାଥେ ବଇନେଷ ପିଠିରେ କରି ବିଜେ ।୨୩।
ମଲ୍‌ହାର ଦେଶର ରାଜା ନାମ ରତ୍ନପତି
ମଲ୍‌ହାର ଦେଶରେ ସେ ଅଟଇ ଆଧିପତି ।୨୪।

---

୧୪।୨ ଦଶଲକ୍ଷ ସୁବର୍ଣ୍ଣ ବୋଇତ ଖଟାଇଥିବୁ ଆଣି । (ଅ,ଟ)
୧୪।୨ ଦଶଲକ୍ଷ କରିତସ୍ମା ଖଟାଇବୁ ଆଣି । (ଝ,ଠ)

ଜାନ୍ହବୀ ନଦୀ ତୀରେ ଅଛଇ ତାର ବାସ
ତାହାର ପଲ୍ଲୀରେ ଦେବ ହୋଇଲେ ପରବେଶ ।୨୫।
କେଶବଙ୍କୁ ଦେଖିଣ ସେ ମଲ୍ହାର ଦେଶ ରାଜା
ଶ୍ରୀକୃଷ୍ଣ ପଦ୍ମପାଦେ କଲ୍ଲକ ଦ୍ରବ୍ୟପୂଜା ।୨୬।
ଶ୍ରୀହସ୍ତେ ନାରାୟଣ ଦେଲେକ ତାକୁ ଶାଢ଼ୀ
ଆହେ ବନଚର ତୁ ହୋ ଅରଣ୍ୟେ ଅଧିକାରୀ ।୨୭।
ଅନେକ ରତ୍ନ ଅଳଂକାରମାନ ତାକୁ ଦେଇ
ଆଜ୍ଞାଂ ଦେଲେ ତାକୁ ପୁଣ ଜଗତଭୂଷଣ ସାଇଂ ।୨୮।
ଆହେ ଯୁଧିଷ୍ଠିରଦେବେ କରିବେ ରାଜସୂୟ ଯାଗ ସଭା
ଲକ୍ଷେକ ନୃପତି ତହିଂ ବସିବେ ରାଜଦେବା ।୨୯।
ଅଗର ଚନ୍ଦନ ସେ ବୃକ୍ଷମାନ କାଟି
ଗଙ୍ଗାକୂଳେ ଆଣିଣ ତୁ କରିଥିବୁ ପଇଠି ।୩୦।
ଲକ୍ଷେକ ରାଜାଂକୁ ଯେ ଲକ୍ଷେକ ନବର
ଖମ୍ବ ଶ୍ରେଣୀ ରୁଅ ଯେ ବଡ଼ା ହୋଇବ ଅଗର ଚନ୍ଦନର ।୩୧।
ଛତ୍ରଶାଳକଇଂ ଦେବୁ ଜାଲ ଆଦି କରି
ଚନ୍ଦନ ଅଗରେ ପାକ ପଂକୁ ଯେନ୍ହେ କରି ।୩୨।
ଷୋଳ ଦିବସକଇଂ ଯେତେକ କାଠ ଲାଗି
ନାବେ ପୂରେଇଂ ଗଙ୍ଗାରେ ମେଲି ଦେଉଂଥିବୁଟି ବେଗି ବେଗି ।୩୩।
ଆହେ ମନୋହର ଦେଶେ ରାଜା ବିଘୃବଳେଶ୍ୱର
ସେ ରାଜାଇ ଅଛଇ ସେ ବନର ବେଣ୍ଟିକାର ।୩୪।
କାଶୀନଦୀ ତୀରେ ସେ ରାଜାର ନିଜ ବାସ
ସେ ବନେ ଗଉରୀ ରୁଦ୍ରଂକୁ ତପ ଦାହିଲେ ଦଶ ସହସ୍ର ବରଷ ।୩୫।
ନାନା ଗନ୍ଧ ଚନ୍ଦନ ଯେ ମିଶ୍ରିତ ଦେବୀ କରି
ବାଲୁଂକା ଲିଙ୍ଗ ଉପରେ ଯେ ନିଉତନ୍ତି ଶାକାମ୍ଭେରୀ ।୩୬।

---

୨୯।୨ ଲକ୍ଷେକ ନୃପତି ଯେ ମିଳିବେ ସବୁ ଦେବା । (ଖ,ଙ,ଠ)
୩୨ ଛତ୍ରୀମାନଂକୁ ଯାନ ଶାଳମାନ ଆଦିକରି
ଚନ୍ଦନ ଅଗରେ ପାକ ସିଦ୍ଧିବ ସବୁରି ଦ୍ରବ୍ୟପୁରୀ । (ଅ,ଝ)
୩୫।୨ ସେ ବନେ ଗଉରୀ ରୁଦ୍ରଂକୁ ତପ ଦାହିଲେ ଷଡ ବରଷ । (ଚ,ଝ)

ସେ ଉଦେକ ପିଇଲେ ଯେତେକ ଜୀବମାନେ
ସେହୁ ବୋଲାଇଲେଟି କସ୍ତୁରୀ ଜୀବ ବନେ ।୩୭।
ତାହାଂକର ଉବୁରୁ ଯେ ଜୀବମାନେ ପାଇଲେ
ସେହୁ ଜୀବମାନେ ପୁଣି ଜୁଆଦ ହୋଇଲେ ।୩୮।
ତାହାଂକର ଉବୁରୁ ଯେ ପିଇଲେ ଜଳ ଚନ୍ଦ୍ର
ସେ ଜୀବ ବୋଲାଇଲେ ଶାଳେହା ପତନ୍ନ ।୩୯।
ଆହୋ କୁଣ୍ଡଳୀ ତୁ ଆରେ ଯେତୁ ଜୀବ ଧର
ରାଜସୂୟ ଯାଗକୁ ନେମୁଂ ପଂଜରାରେ ଭର ।୪୦।
ଯେତେକ ପଦାର୍ଥମାନ ତୁ ଅପୂର୍ବ ପାଇବୁ
ଷୋଳଦନ ପରଯନ୍ତେ ରାଜସୂୟ ସଭାକୁ ଦେଉଥିବୁ ।୪୧।
ଯେବୁ ଅବା ଅନ୍ୟଥା କରବ ମୋହୋର ବାଣୀ
ଅବଶ୍ୟ ଚକ୍ରରେ ତାକୁ ପକାଇବ ହାଣି ।୪୨।
ଅନେକ ସାନନ୍ଦ ସେ ମନୋହର ଚକ୍ରବୃକ୍ଷ
ଶ୍ରୀକୃଷ୍ଣ ଦର୍ଶନେ ତାର ଅନେକ ତୋଷ ମନ୍ତ ।୪୩।
ଯେସନେକ ଆଗ୍ୟାଂ ଦେଇଣ ସର୍ବ ପାଇଟି
ବଜଯେ ନାରାୟେଣ ବଇନେବ ପିଠି ।୪୪।
ଆହୋ ନିଷାଦ ପୁରେ କଇବ୍ରନ୍ତ ନିଷାଦ
ଗୋମତୀ ନଦୀ ତୀରେ ତାହାର ରାଜ୍ୟ ସମ୍ପଦ ।୪୫।
ଅଶି ସହସ୍ର ନାବ ଯେ ତୁ ଚଳାଇବୁ ନୃପମଣି
ବାଞ୍ଛାବଟ ତଳେ ତାର କଟକ ନିରମାଣି ।୪୬।
ସେ ବଟର ତଳେ ଯାଇଂ ବଜଯେ ଦେବରାଜା
ଦେଖିଣ ନିଷାଦ ସ୍ୱାମୀଂକ କଲା ପାଦପୂଜା ।୪୭।
ଶିରରେ ରତ୍ନ ମୁକୁଟ ଲଲାଟେ ସୀମନ୍ତିନୀ
ନିଷାଦ ହୃଦେ ରତ୍ନମାଳା ଲମ୍ବାଇଲେ ନେଇ ଦେବ ଚକ୍ରପାଣି ।୪୮।
ରାଜସୂୟ ପର୍ଯ୍ୟଂ କରବେ ଯୁଧିଷ୍ଠି ରାଜଦେବ
ଲକ୍ଷେକ ନୃପତି ଆସି ମିଳବେ ସମ୍ଭବ ।୪୯।

---

୩୮।୨ ଜୁଆଦ—ମୃଗ ବଶେଷ ।
୪୬।୨ ବାଞ୍ଛାବଟ ତଳେ ତାର କଟକ ସମ୍ଭାରଣୀ । (କ ଅ,ଙ,ଞ)

ସେହି ମଧୁବନ ରାଜ୍ୟେ ଆମ୍ଭେ ରହିଥିଲୁଂ ପୂର୍ବେ
ସେହି ରାଜ୍ୟ ଚେତିଲୁ ଆମ୍ଭେ କାଳଦମନ ପ୍ରସ୍ତାବେ ।୫୦।
ଆହୋ ମଧୁମତିର ବଲ୍ଲଭ ସେଥି ସମସ୍ତ ଥିଲ ସଞ୍ଚି
ତ୍ରେତୟା ଯୁଗରୁ ସେଥି ତଣ୍ଡୁଳମାନ ଅଛି ।୫୧।
ସୁବର୍ଣ୍ଣ ନିର୍ବାଣ ଯେ ସେଠେ ଅଛଇ ଶତ ଶତ କୋଠି
ତଣ୍ଡୁଳ ପୂରିଣ ଅଛି ଭରିଣ ତିନିକୋଟି ।୫୨।
ଶ୍ରୀହସ୍ତେ ଶାଟୀ ତାକୁ ହେଲେକ ଶ୍ରୀପତି
ଅଶି ଖର୍ବ ନାବ ଯେନି ବାହୁଥିବୁ ଦିବାରାତି ।୫୩।
କାଠ କେରୁଆଳ ଆଦି ନାବମାନ ସବୁ
ଯତନ କରିଣ ସେମାନ ସଞ୍ଚି ରଖିଥିବୁ ।୫୪।
ସେ ଯେ ମଧୁବନ ଚଉରାଶି ଯୋଜନ ତୋଟା
ସମସ୍ତ ବୃକ୍ଷ ଫଳମାନ ଅମୃତ ରସ ମିଠା ।୫୫।
କଦଳୀ ନଡ଼ୀକାଳ ଆମ୍ବ ପଣସ ବଦରୀ
ଟଭା ଲେମ୍ବୁଆଉ ଜମ୍ବିଳ ଦାରାକ୍ଷ ଖଜୁରୀ ।୫୬।
ସେମାନ ସମସ୍ତ ଯେ ପୂରେଇ କରି ନାବେ
ବାରୁଣାବନ୍ତେ ପ୍ରବେଶ କରାଇବୁ ସମ୍ଭବେ ।୫୭।
ଆରେ ମଧୁବନ ତୋଟା ରକ୍ଷକ ପାଞ୍ଚଖର୍ବ
ଅନୁବ୍ରତେ ତୁମ୍ଭେ ନାବ ପାରି କରୁଥିବ ।୫୮।

---

୫୫।୨ "ସମସ୍ତ ବୃକ୍ଷଫଳମାନ ଅମୃତ ରସ ମିଠା"—ପରେ 'ଥ' ରେ ଅଧିକା ପାଠ—

କଦଳୀ ନଡ଼ୀକାଳ ଗଙ୍ଗବାଣ ପଇଡ
ଅମୃତ ପାନ ପଣସ ଆବର କଣ୍ଟାହୁଲ ।
ଟଭା ନାରଙ୍ଗ ଯେ ଆମ୍ବ ଆଳୁ ମୁଗ
ବିରହି ବଡଚଣା ସହିତେ ବହିବ ତୁମ୍ଭେ ସମ୍ଭବ ।
ସୋରିଷ ମସୁର ବରଗୁଡି କଳାମୁଗ
ଗହମ ଆଦିକରି ବହି ଦେଉଥିବୁ ସର୍ବ ।
ମରିଚ ଲବଙ୍ଗ ଜାଇଫଳ ଆଦି କରି
ହେଙ୍ଗୁ ମେଥି ବଡଜିରା ଅଦା ନଡ଼ୀକାଳ ସମେତ କରି ।
ବାଣପଇଡ ପଣସ ନାନା ଦ୍ରବ୍ୟମାନନ୍ତ
ସୁହାମଧେ କରିଦେବୁ ରାଜୁସି ଯଗ୍ୟେଂ ବାରୁଣାବନ୍ତ ।

ପ୍ରେସନେକ ଆଜ୍ଞାଂ ହେଲେକ ପରମଯୋଗୀ
ଖଗେବର ପିଠିରେ ବିଜୟେ କଲେ ବେଗି ।୫୯।
ମଧୁବନେ ଆଜ୍ଞାଂ ହେଲେ ସ୍ୱାମୀ ବଇନେଯକୁ
ବହନ ହୋଇ ଯିବା ଚାଲ କୋବେର ଅଳକା ଭୁବନକୁ ।୬୦।
ନାରାୟେଣଂକ ଆଜ୍ଞାଂ ଯେ ନବେଶିତ ଶିରେ
ବାରସ୍ଵଣ ଭୁବନେ ଯଇଂ ବିଜୟେ ଖଗେଶ୍ୱରେ ।୬୧।
ଅଳକା ନାଥ ଦେଖିଲା ନାରାୟେଣଂକ ବିଜେ
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କରଇ ଦେବରାଜେ ।୬୨।
ବଇନେଯ ବାହାନୁଂ ଉତ୍ତରି ଅନ୍ତର୍ଯାମୀ
ଦେଖିଣ ସାନନ୍ଦ ଅଳକାନାଥ ସ୍ୱାମୀ ।୬୩।
ଗୋବିନ୍ଦେ କହନ୍ତି ଯେ ଅଳକାନାଥର ଆଗ
ଯୁଧେଷ୍ଟିଦେବ ଠାକୁରେ କରିବେ ରାଜସୂଯି ମହାଯାଗ ।୬୪।
ଆହୋ ସପତ ନିଧି ଭଣ୍ଡାର ଫେଇଥିବୁ ଅନୁବ୍ରତେ
ଯେତେକ ରତ୍ନ ଲାଗିବ ଦେବୁ ଷୋଳବହନ ପରିଯନ୍ତେ ।୬୫।

---

୬୨।୨ "ପାଦ୍ୟ ଅର୍ଘ୍ୟ ଦେଇ ପୂଜା କରଇ ଦେବରାଜେ" ପରେ—'ଙ' ପୋଥିରେ ଅଧିକା ପାଠ—

ଅନେକ ବିନୋସ୍ତୀ ହୋଇ ବୋଲଇ କମର୍ଥେ ବିଜୟେ ଦେବସ୍ୱାମୀ
ଆଜ ମୋର ପୁର ପ୍ରତିଷ୍ଠା ହୋଇଲା ହେ ପୁରୁଷଂକ ଉତ୍ତମି ।
ବଇନେତ୍ର ବାହାନେ କମର୍ଥେ ବାସୁଦେବ
ସ୍ୱେହା ଫେଡଣ ଦେବ ହେ ମୋ ଆଗେ କହିବ ।

୬୫।୨ "ଯେତେକ ରତ୍ନ ଲାଗିବ ଦେବୁ ଷୋଳବହନ ପରିଯନ୍ତେ" —ପରେ 'ଠ' ପୋଥିରେ ଅଧିକା ଓ ଭିନ୍ନ ପାଠ—

ଯେ ଆଜ୍ଞାଂ କହି କୁବେର ଗଲାକ ବହନ
ଭଣ୍ଡାରେ ଫଚସ୍ତ ହୋଇଥିଲା ଯେତେ ଧନ ।
ଦଶ ମେବଚ୍ଛ ଯେ କୁବେର ସଇନ
ଭଣ୍ଡାରୁ ଧନ ସକଳ ଆଣିଲେ ସେକ୍ଷଣି ।
ସ୍ୱେସନେକ କହି ତାକୁ ଦେବ ହୃଷୀକେଶ
ବିଶ୍ୱକର୍ମାକୁ ରାଇଲେ ଆପଣାର ପାଶ ।

(ଅବଶିଷ୍ଟାଂଶ ପର ପୃଷ୍ଠାରେ)

କମିଲ ଘଟଣ ହକାରଲେ ବିଶ୍ୱକର୍ମା
ଅମରପୁରେ ଯେସନେକେ ଶୋଭପ୍ୟେ ସୁଧର୍ମା ।୬୬।
ତହୁଂ ଅଭଅନ୍ତ ଯେ ହୋଇବ ସୁସଞ୍ଚ
ଆକାଶୁଂ ଓହ୍ଲାଇ କର ମୋହିବୁ ଭୁବନ ମଞ୍ଚ ।୬୭।
ଆହୋ ଦ୍ୱାଦଶ ଯୋଜନ ହୋଇବ ସଭାର ଆୟତନ
ଲକ୍ଷେକ ଖମ୍ବ ହୋଇବ ସବୁ ସୁବର୍ଣ୍ଣେ ନିର୍ବାଣ ।୬୮।
ଅଷ୍ଟାଦଶ ଦଣ୍ଡ ଯେ ହୋଇବ ନଳକାଠି
ହାଥକେ ମାଡବସିବ ଖମ୍ବ ଗୃହଗୋଟି ।୬୯।
ଏମନ୍ତେ ବାସ୍ତର ହାଥ ହୋଇବ ଆୟତନ
ଉପରକୁ ଉଚ୍ଚର୍ଗ ହୋଇବ ଚଉବଂଶ ଯୋଜନ ।୭୦।
ଚଇବଂଶ ଅଂଶା ହୋଇବ ଏକ ଖମ୍ବଗୋଟି
ଏକ ଅଂଶାକେ ଲଗିଥିବ ହୀରା ନବକୋଟି ।୭୧।
ମାଣିକ୍ୟ ପାଞ୍ଚକୋଟି ହୀରା ପାବକ୍କେ ଖଞ୍ଜିତା
ସହସ୍ରେକ ପନ୍ତିଥିବ ଗଜ ଯେ ମୁକୁତା ।୭୨।
ମାଳାର ଫେରରେ ବଇଡୁର୍ଯ୍ୟ ଥିବ ଜଡ
ପ୍ରବାଳର ଖଞ୍ଜଣୀ ଯେ ନିରନ୍ତରେ ପାୟେଡା ଗୁଜ କର ।୭୩।
ଯେତଂଣ ରାଜା ଯେତଂଣ ଖମ୍ବରେ ବସିଥିବ
ସେ ଖମ୍ବକୁ ବାହୁନବାକୁ ଧନ ନ ଅଣ୍ଟିବ ।୭୪।
ସେ ରାଜାର ଶତେକ ଭଣ୍ଡାର ସେ ସ୍ତମ୍ଭକୁ ନୋହିବ ସର
ଦେଖନ୍ତେଣ ବସିଥିବ କ୍ଷୁଧା ପିପାସା ପାସୋର ।୭୫।
ଆପଣେ ଶ୍ରୀ ଜଗନ୍ନାଥେ ଶ୍ରୀହସ୍ତେ ଚକ୍ରପଟେ କାଟି
ଏହି ସରୂପେ ହୋଇବଟି ଲକ୍ଷେ ସ୍ତମ୍ଭଗୋଟି ।୭୬।
ସେ ସ୍ତମ୍ଭର ତଳେ ଆସ୍ତାନ ଗୋଟିଏ ହୋଇବ ନିର୍ମିତ
ବେନିକାଠି ଉଚ୍ଚର୍ଗ ହୋଇବ ସ୍ଥଳୀ ଯେ ସପ୍ତହସ୍ତ ।୭୭।

---

ବୋଇଲେ ସୁରପୁରେ ଯେସନେ ସୁଧର୍ମା
ତେସନ ସଦୃଶ ସେହି ହଣିବ ସୁଷମା ।
ତା ତହୁଂ ସୁନ୍ଦର ହେଲେ ତୋର କାଣଗଣ
ବହୁ ପଣ୍ଡରୂପ ପାଇବ ଜାଣ ହେତୁ କର ।

ସୁବର୍ଣ୍ଣର ଦ୍ୱାଦଶ ଗୋଟି ଯେ ହୋଇବ ପାବଚ୍ଛ
ଲକ୍ଷେକ ଥମ୍ଭ ହୋଇବ ଆସ୍ଥାନ ହେବ ଲକ୍ଷ ।୭୮।
ଚହପଟ ଗୋଟିକ ଦିଲେ ହରି ବିଶ୍ୱକର୍ମା ଗୋଚରେ
ଅଷ୍ଟରତ୍ନେ ଗୁମ୍ଫେଣୀ ହୋଇବ ତହିଁର ଉପରେ ।୭୯।
ଅନେକ ସୁସଜ୍ଜ ଯେ ହୋଇବ ଅପୂର୍ବ
ଲକ୍ଷେ ନୃପତିଙ୍କ ବସିବାକୁ ହୋଇବାକ ଠାବ ।୮୦।
ମୁକୁତା ମାଳମାନ ଲମ୍ବିଥିବ ମାଣିକ୍ୟର ଝରା
ନନ୍ଦାବ୍ରତେକ ଲେଖନ ନେତର ଚନ୍ଦ୍ରାତପ ଅଷ୍ଟରତ୍ନେ ଚଉସରା ।୮୧।
ଯେସନେକ ସମ୍ପଦ ସେ ଗୁମ୍ଫାମଣ୍ଡପର ସ୍ଥଳୀ
କୁତୂହୋଳେ ରାଜାମାନେ ଦେଖିବେ ଉଭାରି ।୮୨।
ଯେସନେକ ଆଗ୍ୟାଂ ତାକୁ ଦେଇଣ ଜଗନ୍ନାଥେ
କୁବେରକୁ ବୋଇଲେ ଧନ ଦେବୁ ଯାଗକୁ ଲଗଇ ଯେତେ ।୮୩।

---

୭୮।୨ ଲକ୍ଷେକ ଅମ୍ଭ ହୋଇବ ଯେ ବସିବାକୁ ଆସନ ସୁସଜ୍ଜ ।(ଙ,ଚ)
୮୨।୨ କୁତୂହୋଳେ ରାଜାମାନେ ଦେଖିବେ ନିରେଖି । (ଝ,ଚ)
୮୨।୨ କୁତୂହୋଳେ ରାଜାମାନେ ଦେଖିବେ ପରିକଳି । (କ,ଝ)
୮୨।୨ କୁତୂହୋଳେ ରାଜାମାନେ ଦେଖିବେ ପରିମଳି । (ଥ,ଙ)
୮୩।୨ "କୁବେରକୁ ବୋଇଲେ ଧନ ଦେବୁ ଯାଗକୁ ଲଗଇ ଯେତେ"
ପରେ 'ଥ' ପୋଥିରେ ଅଧିକା ପାଠ—

ବିଶ୍ୱକର୍ମାକୁ ରାଇଣ ବୋଲନ୍ତି ଦେବହରି
ସୁବର୍ଣ୍ଣର ଗୃହରାଜା ଗଢ଼ିବୁ ନିର୍ମିତ କରି ।
ରାଜାକେ ସୁବର୍ଣ୍ଣ ପାଞ୍ଚ ପାଞ୍ଚ ହୋଇବ ଭାରଯା
ସୁବର୍ଣ୍ଣର ପୁତ୍ର ହୋଇବେକ ଭାରଯାକେ ଗୃହ ଗୃହ ଆତ୍ମଜା ।
ଦୋହିତା ଗୋଟିଏ, ଗୋଟିଏ ଭାରଯାକେ ଗଢିଥିବୁ ।
ଷୋଳସାଧନ ହୋଇବ ବାସ୍ତର ନିଯୋଗ
ଯେମାନ ସମସ୍ତ ସବୁ ସୁବର୍ଣ୍ଣର ହୋଇବ ।
ଘଡଇ ଘଣ୍ଟତାଳ ପାଦାନ୍ତି ଆଦିକରି
ଗଜ ଅଶ୍ୱ ସହିତେ ସୁବର୍ଣ୍ଣର ହୋଇବ ଆଗ୍ୟାଂ ଦିଲେ ହରି ।
ରାଜାକେ ଯେତେ ଭିଆଣ ପୂର୍ବ ପାଣ୍ଡି ଭିଆଣନ୍ତି
ପ୍ରମାଣେ ସୁବର୍ଣ୍ଣ ସହସ୍ରେକ ରଥ ବେନି ସହସ୍ର ହସ୍ତ ହାଥୀ ।

(ଅବଶିଷ୍ଟାଂଶ ପର ପୃଷ୍ଠାରେ)



ଆହୋ ନାରାୟଣ ଫେରିତ ସମସ୍ତେ ଆରମ୍ଭ କ୍ରିଣ
ମନ୍ଦର ପର୍ବତ ଉପରେ ଆସ୍ଥାନ ସଞ୍ଚା ପାତି ।୮୪।

ଦଶମେବଞ୍ଚ ଗୁରଗଣ ଅଳଙ୍କାର ସଇନ
ଭଣ୍ଡାରୁ ଧନମାନ ଘର ଘର କରି ଆଣି ।୮୫।
ଚତୁରଂଶ ବଇନେଶ ଆରୋହି ରଥହାଥେ
ଚଳନ୍ତି କେଶବ ଯେ ଦ୍ୱାରକା ପ୍ରଶସ୍ତେ ।୮୬।
ବରୁଣ ଭୁବନେ ଯାଇଂ ବିଜୟେ ଜଗବନ୍ଧୁ
ଦେଖିଣ ପୂଜାକଲା ବାରିନିଧି ନାଥ ସାଧୁ ।୮୭।

ରତ୍ନାକର ଦେଖିଲା ଯହୁଂ ଶ୍ରୀ ଜଗନ୍ନାଥେ
ହେ ଦେବରାଜ ବିଜୟେ କେଉଣ ଅର୍ଥେ ଯେଥେ ।୮୮।
କନକ ସିଂହାସନେ ବସାଇଂ ବାରିନିଧି
ଅନେକ ପୂଜାକଲା ସେ ଯେସନେକ ବିଧି ।୮୯।
ଅନେକ ହରଷ ଯେ ହୋଇଲା ଜଳପତି
ନାରାୟଣ ଦର୍ଶନେ ମୋର ଫିଟିଲା ଦୁର୍ଗତି ।୯୦।

ରତ୍ନାକର ସନ୍ନିଧେ ଯେ ବଦନ୍ତି କେଶବ
ରାଜସୂୟଯାଗ କରିବେ ଯୁଧିଷ୍ଠିର ରାଜଦେବ ।୯୧।
ଆହୋ ବାରିନିଧି ଭଣ୍ଡାର ଫେଇଥିବୁ ଯାଗ ସାରିବା ପରିଯନ୍ତେ
ପଇଲମ ଯୋଗାଡ଼ ଦେଉଥିବୁ ଲାଗଇ ଯେତେ ଯେତେ ।୯୨।
ତାରକା ହରବିଜୟ କାଳେ ଆକାଶେ ଦେବରାୟେ
ରତ୍ନଯୋଗାଡ଼ ଲୁଚାଇଛନ୍ତି ତୋହୋର ପୁରେ ସମସ୍ତ ଦେବତାୟେ ।୯୩।

---

ସ୍ୱରସହସ୍ର ଅଶ୍ୱ ସାଗରେକ ପାଦାନ୍ତ ।
ଛତ୍ରବାଦୀ ଆଦିକରି ସୁବର୍ଣ୍ଣରେ ନବାଣି
ଯେତେ ସରୂପେ ସେ ରାଜାୟେକ ବୋଲି ଗଣି ।
ଯେହରୂପେ ସୁବର୍ଣ୍ଣର ସ୍ୱରରାଜା ଭିଆଇବୁ ।
ତେବେ ଲକ୍ଷେ ରାଜାଙ୍କୁ ପ୍ରବେଶ ହୋଇବ ସବୁ
ଲକ୍ଷେକୁ ଯେତେକା ରାଜା ଯେବେ ଊଣା ହୋଇ
ରାଜସୂୟ ଯଜ୍ଞ ନୋହୋଇ ଧର୍ମବ୍ରାପତ ହୋଇବ କାହିଂ ।

ତ୍ରେତୟାଯୁଗେ ଯହୁଂ ତାରକା ନାଶଗଲା
କାର୍ତ୍ତିକ କୁମାର ହାଥେ ଯେ ଦଇତ ପ୍ରାଣ ହଲା ।୯୪।

ପୁଣ ଉପତ୍ତି କାଳେ ସେ ହୋଇଲା ରାବଣ
ସେହୁ ଧାଡ଼ ହଲା ପଳାଇଲେ ଦେବଗଣ ।୯୫।

ସେ ରତ୍ନ ଯୋଗାଡ଼ମାନ ଅଛଇ ତୋର ପୁରେ
ସେ ପଇଲମ ଯୋଗାଡ଼ମାନ ମାଗିଲେ ସ୍ୱାମୀ ଦାମୋଦରେ ।୯୬।

ରତ୍ନାକର ବୋଇଲା କରପତ୍ର ଯୋଡ଼ି
ତୋହୋର ଭଣ୍ଡାରେ ସିନା ନାଥ ମୁହିଂ ସେ ଅଧିକାରୀ ।୯୭।

ଜଳଚର ପଂକଚର ବେନି ଅସୁର ହୋଇଲେ ଦୁଭର
ଜଳ ଭୁବନ ମନ୍ଥନ କଲେ ସେ ମୋହୋର ।୯୮।

ଯେବେ ବାସୁକିଧିଙ୍କ ମୋର ଭଣ୍ଡାର ଜୁର କଲ
ଦେବତାଂକର ବଚନେ ତାହାନ୍ତ ନାଶିଲୁ ଦେବହର ।୯୯।

ଆଣି ସେ ଭଣ୍ଡାର ପୁଣ ଥୋଇଲୁ ମୋର ତହିଂ
ଆପଣେ ଥୋଇଲା ଦ୍ରବ୍ୟ କାହାକୁ ମାଗୁ ହୋ ଗୋସାଇଂ ।୧୦୦।

ଯେତେକେ ତୋହୋର ଦେବ ହୋଇବାକ କାର୍ଯ୍ୟ
ତେତେକ ଯୋଗାଡ଼ ମୁଂ ଦେବଇଂ ଦେବରାଜ ।୧୦୧।

ଲକ୍ଷେକ ରାଜାଂକୁହିଂ ଯେତେକ ପଇଲମ ଝଁସି
ଜଳଚରମାନେ ବହି ଦେଉଥିବେ ଦେବହରି ।୧୦୨।

ରତ୍ନାକରଂକୁ ଆଗ୍ୟାଂ ଦେଇଣ ଅନନ୍ତ
ଦ୍ୱାରିକାପୁରେ ଯାଇଂ ବିଜୟେ ଜଗନ୍ନାଥ ।୧୦୩।

ଦ୍ୱାରିକା ସଭାୟେ ହେ ବିଜୟେ ଉଗ୍ରସେନ
ଅସ୍ଥାନେ ବିଜୟେ ଯାଇଂ ଦେବ ଜନାର୍ଦ୍ଦନ ।୧୦୪।

ନାରାୟଣଂକ ଆଗତ ଶୁଣିଣ ଦେବ କାମପାଳେ
ବିଜୟେ କାମପାଳ ସଭା ନିବର୍ତ୍ତି ବେଳେ ।୧୦୫।

---

୧୦୪।୨ ଯାତବଂଶ ଯାଦବ ଯେ ହୋଇଣ ତୋଷମନ । (ଙ,ଘ)

ଆସ୍ଥାନ ତେଜଣ ଉଠିଲେ ଯାଦବ ସମସ୍ତ
ନୀଳାମ୍ବରଂକ ପଦ୍ମପାଦେ ପ୍ରଣମ୍ଭ ଶ୍ରୀଜଗନ୍ନାଥ ।୧୦୬।
ଅନେକ ବନୋସ୍ତି ହୋଇଣ ଦେବସ୍ୱାମୀ
ବଳରାମଂକ ପାଦତଳେ ଶତ ସହସ୍ର ଦଣ୍ଡ ପରଣାମି ।୧୦୭।
ନାରାୟଣଂକୁ ଦେଖି ଧଇଲେ ଦେବ କୋଳେ
କୁଶଳ ବାରତା ଯେ ପୁଛନ୍ତି କାମପାଳେ ।୧୦୮।
ବାବୁ ଦ୍ୱାରକା ଛାଡଣ ତ ତୁ ଗଲୁ ଅପାର ଧନ
ପଥ ନରେପଇ ଧନ ନ ସରଇ ଜନାର୍ଦ୍ଧନ ।୧୦୯।
ଜରାସନ୍ଧ ଦୁଷ୍ଟ ସେ ଥିବା ପରଯନ୍ତେ
ମନକଇଂ ବକୃତ ମୂର୍ଚ୍ଛି ନୋହୋଇ କଦାଶ୍ଚିତେ ।୧୧୦।
ବାବୁ ଗୋମନ୍ତ ଯୁଦ୍ଧକାଳେ ମୁଂ ପିଟିଲି ବଜ୍ରହଳ
ସଂଗ୍ରାମେ ଜରାସନ୍ଧ ଯେ ପାଡିଲା ବକ୍ଷସ୍ଥଳ ।୧୧୧।
ଆରବେଳ ବୁଲାଇ ମୁଂ ପିଟନ୍ତେଣ ହଳେ.
ଦେବତାଯେ଼ ଡାକଲେ ଥାଇଣ ସ୍ୱର୍ଗଆଳେ ।୧୧୨।
ଯେତେକ ବାଘାତେ ନାଶ ନ ଗଲା ଜାରା
ପ୍ରତ୍ୟକ୍ଷେ ଦେଖିଲ ସେ ଅମର ମହାବୀରା ।୧୧୩।
ପ୍ରଥମ ଧାଡରେ ସେ ଗୋପପୁରକୁ ବେଢ଼ିଲା
ତାହାର ହେତୁ ଆମ୍ଭନ୍ତ ପଯେ଼ଡ ପଡଲା ।୧୧୪।
ଗୋପପୁର ତେଜଣ ରହିଲୁ ମଥୁରା
ତହିଂକ ପୁଣ ଧାଡ ଧଲାକ ବୀର ଜାରା ।୧୧୫।
ତହୁଂ ପୁଣ ସଂଗ୍ରାମେ ଜିଣିତ ନୁଆର
ଅବନ୍ତୀପୁରକୁ ଗଲୁ କହନ୍ତ ହଳଧାରୀ ।୧୧୬।
ତହିଂକ ଧାଡ ପୁଣ ଧଲାକ ଜରାସନ୍ଧ
ତହୁଂ ପୁଣ ଅପସରି ଆମ୍ଭେ ଅଇଲୁଂ ଗୋବନ୍ଦ ।୧୧୭।

---

୧୦୮ । ଦେଖିଣ ପ୍ରଣପତ୍ୟ ତାଂକୁ ହେଲେ ଦେବହରି
କୁଶଳ ବାରତା ପଚ୍ଚରନ୍ତି ଅମ୍ବା ପ୍ରଳମ୍ବା କଦମ୍ବା ଅଇରି ।
(ଘ,ଞ)

୧୧୦।୨ ମନର ଭ୍ରାନ୍ତି ମୋହୋର ନ ଆଇଟି କଦାଚତେ । (ଘ,କ,ଛ,ଞ)

ଗୋପ୍ୟାନ ହୋଇ ରହିଲାଇଁ ଗୁପତେ
ତହିଂ ଅନେକ ଯୁଦ୍ଧ ହୋଇଲା ଅପ୍ରମିତେ ।୧୧୮।
ପର୍ବତେ ରହି ଯେ ନୁଆଁଇଲୁ ତାହାର ଡରେ
ମଧୁବନେ ତହୁଂ ଯାଇଂ ରହିଲୁ ଦାମୋଦରେ ।୧୧୯।
ଅଷ୍ଟାଦଶବାର ତହିଂକ ଦଳ ଧାଡି
ବଳ ହଳ ମୂଷଳେ ନୋହିଲା ଅପହାରି ।୧୨୦।
ବିଧାତା ବୋଇଲେ ରାମ ନିଧନ ନ କର ଯେହାକୁ ତୁ
ତୋହୋର ହାଥରେ ଜାରିକୁ ନାହିଂ ହାବେ ମୃତ୍ୟୁ ।୧୨୧।
ଧାତାର ବଚନେ ମୁଂ ଅଇଲି ଅପସରି
ତେଣୁ ସେ ଜରାସନ୍ଧକୁ ଥାଉଂ ନାଶ କରି ।୧୨୨।
ହରି ହେ ସମୁଦ୍ର ଭିତରେ ରଞ୍ଚିଲୁ ଦ୍ୱାରକା
ତେଣୁ କରି ଜରାସନ୍ଧକୁ ସବୁରି ମନେ ଶଂକା ।୧୨୩।
ଦ୍ୱାରକାଉଂ କେହି ବାହାର ନୋହନ୍ତି ତାରି ଡରେ
ଜରାସନ୍ଧ ନାଶଯିବା ଯାଚ୍ଛେଂ ତୁ ଯିବୁ ନିର୍ଭରେ ।୧୨୪।
ଜାରି ନାଶ ଯିବାକୁ କେମନ୍ତ କରିବାକ ବୁଦ୍ଧି
ତେବେ ସେ ହୋଇବ ନା ସକଳ କାର୍ଯ୍ୟ ସିଦ୍ଧି ।୧୨୫।
ପ୍ରହସିତ ହୋଇଣ ସେ ବଦନ୍ତି ନାରାୟଣ
ଦ୍ୱାରକାଯେ ଉଦ୍ଧବ ତୁମ୍ଭେ କରିଅ ଫକ୍ଷିଷେଣ ।୧୨୬।
ବଳରାମେ ବୋଇଲେ ହେ ଉଦ୍ଧବ କାହିଂକ
ଜରାସନ୍ଧ ବଧ ହେଲା ଅଇଲୁକ ଦେଖି ।୧୨୭।
କରପତ୍ର ଯୋଡିଣ ସେ ବଦନ୍ତି ହୃଷିକେଶୀ
ଶ୍ରୀ ଦେବ କାମପାଳ ଜରାସନ୍ଧ ହୋଇଲା ବିନାଶି ।୧୨୮।
ଅନେକ ସାନନ୍ଦେ ଯେ ବୋଲନ୍ତି ହଳହସ୍ତେ
ଜରାସନ୍ଧ ବଧ କରାଇଲୁ ହରି ତୁ କାହାରି ହାଥେ ।୧୨୯।
ଗୋବିନ୍ଦେ ବୋଇଲେ ଯେ ଶୁଣିମା ଦେବରାଜେ
ମଗଧ ଦେଶେ ଗଲୁ ଯୁଧିଷ୍ଠି ଦେବଂକର କାର୍ଯ୍ୟେ ।୧୩୦।
ଭୀମ ଅର୍ଜୁନକଇଂ ନେଲୁଂ ଦେବ ତୁଲେ
ଜାରିକୁ ଯାଗରେ ଭେଟିଲୁ ଦେବ ଆଡ଼ମ୍ବରି ବେଳେ ।୧୩୧।

ବେଦ ଆଧାନ କରି ଯେ ମାଗିଲୁଂ ତାହାକଇଂ ଦାନ
ସଂଗ୍ରାମ ମାଗିଲୁ ତାକୁ ସେ ହଲ୍କ ଚୋଷମନ ।୧୩୨।

ଜରାସନ୍ଧ ତୁଲେ ଦେବ ସଂଗ୍ରାମ କଲା ବୀର ଭୀମେ
ଜରାସନ୍ଧକୁ ଭୀମ ଯେ ଧଇଲା ସଂଗ୍ରାମେ ।୧୩୩।

ଜନ୍ମକାଳହୁଂ ଜାରା ଦେବ ଅଟଇ ବେଣିଫାଳ
ଧରିଣ ଚିରି ପକାଇଲା ତାକୁ ପବନର ବାଳ ।୧୩୪।
ବଡବା ଅନଳେ ଦେବ ପକାଇଲା ଖଣ୍ଡେକ
ଭୂଚର ହୋଇଣ ଦେବ ରହିଲା ଅର୍ଦ୍ଧ ଅଙ୍ଗ ଯେତୁକ ।୧୩୫।

ଛୟାଣୋଇ ସହସ୍ର ରାଜା କାଳଦମନର ତୁଲେ ଥିଲେ
ମଧୁବନ ସଂଗ୍ରାମେଣ ସମସ୍ତେ ସେମାନେ ପଳାଇଲେ ।୧୩୬।
କାଳଦମନ ନିଧନେ ଜାରା ସେ ରାଜାମାନଙ୍କ ନେଲା ଧରି
ଛୟାଣୋଇଂସହସ୍ର ରାଜା ସମସ୍ତ ରଖିଲା ସେ ବନ୍ଦୀକରି ।୧୩୭।
ଯତନେ ଥୋଇଲା ନେଇ ସେ ଯେ ନିଆଳ ପିନ୍ଧାଇ
ଆହୁତଯେ ପାତିଲା ଋଷିମାନଙ୍କ ହକାରି ।୧୩୮।
ସ୍ୱାମୀ ଆମ୍ଭେ ପ୍ରବେଶ ହୋଇଲୁ ଯେବଣ ଦିନର
ସେହି ଦିବସେ ରାଜାଙ୍କ ମାରି ଦିଅନ୍ତା ଆହୁତର ।୧୩୯।

ଜାରାକୁ ମାରି ଦେବ ରାଜାଙ୍କ ଉଦ୍ଧରି
ଜାରାର ପୁତ୍ର ସହଦେବକୁ କଲୁ ମଗଧ ଦେଶର ଅଧିକାରୀ ।୧୪୦।

ରାଜାମାନଙ୍କ ସେହିଠାବରେ କଲୁ ନିମନ୍ତ୍ରଣ
ଶୁଣି ଅନେକ ସାନନ୍ଦ ଦେବ ସନ୍ଧିଷେଣ ।୧୪୧।
ବାବୁ ଅନେକ ସାନନ୍ଦ ହୋଇଲ ଜରାସନ୍ଧ ନାଶଗଲେ
ଭୀମସେନକୁ କଂପେ ହରି ନ ଆଣିଲୁ ତୋହୋର ତୁଲେ ।୧୪୨।
ଉତ୍ସବ କର ବାବୁ ଭୁବନ ଦ୍ୱାରିକା
ମହାଭୟରୁ ଭୀମସେନ କଲକ ନିଶଂକା ।୧୪୩।

---

୧୪୩। ଉତ୍ସବ କରନ୍ତୁନା ହରି ଭୁବନ ଦ୍ୱାରକା
ମହା ଆପଦରୁ ଭୀମ ରକ୍ଷା କଲା ଯେତିକା । (ଘ,ଟ,ଝ)

ଭୀମସେନ ଉଚ୍ଛବ କର ବୋଲ ସ୍ୱେଠେ ବଥିଅ ଧୂନ୍ନ
ଦେଖନ୍ତୁ ଜାଣନ୍ତୁ ହରି ସ୍ୱେଥିର କାମେମ୍ନ ।୧୪୪।
ପୁଣ ପୁଣ ବଲଦେବ କହନ୍ତ ବହୁ ପୁରସରି
ଭୀମସେନର ନାମେ ହାଦେ ବହୁ ପ୍ରଶଂସା ସେ କରି ।୧୪୫।
ଜଗନ୍ନାଥେ ବୋଇଲେ ବଡ ମହିମାଂ ହୋଇବ
ଯୁଧିଷ୍ଠିଦେବ କରିବେ ରାଜସୂୟ ଯଜ୍ୟଂ ଉତ୍ସବ ।୧୪୬।
ଲକ୍ଷେକ ନୃପତିଂକ ଆଣିମେ ଦେବ ସାଧି
ସ୍ୱେକୁଂ ସ୍ୱେକେ ପାଣ୍ଡବେ ଅଟନ୍ତ ମହାଯୋଧୀ ।୧୪୭।
ରାଜସୂୟ ଯାଗ ଦେବ ହୋଇବ ମହାସଭେ
ସଜ ହୋଇଥାଅ ଆମ୍ଭେ ସମସ୍ତେହେଂ ଯିବା ।୧୪୮।
ଶୁଣି ବଲରାମେ ହେଲେ ପରମ ସାନନ୍ଦ
ଦେଖିବା ଯୁଧିଷ୍ଠିଂକର ଉଚ୍ଛବ ସମ୍ପଦ ।୧୪୯।
ହରି ଲକ୍ଷେକ ନୃପତି ଆସିବେ କାହାର ବୋଲେ
ମହା ମହା ବଳବନ୍ତା ଅଛନ୍ତ ସନ୍ୟ ତାହାଂକର ଭୁଲେ ।୧୫୦।
ଗୋବନ୍ଦେ ବୋଇଲେ ଦେବ ରାଜାସ୍ୱେ କେତେ ମାନ
ବିଭୀଷଣ ଯହିତେ ଯେ ଆସିବେ ସମସ୍ତ ।୧୫୧।
ଭୋ ସ୍ୱାମୀ, ପାତାଳ ସ୍ୱର୍ଗୁଂ ଆସିବେ ବାସୁକି ନାଗରାଜା
ନାଗବଲନ୍ତ ଯେନ ସେ କରିବେ ପାଦପୂଜା ।୧୫୨।
ଆକାଶୁଂ ଆସିବେ ଦେବ ସମସ୍ତ ଦିଗପାଳମାନେ
ବ୍ରହ୍ମାରୁଦ୍ର ଆଦି କରି ଆସିବେ ମଘବାନେ ।୧୫୩।
ମେଘ ପବନ ଆଦିକରି ସମସ୍ତେହେଂ ଥିବେ ଖଟି
ସ୍ୱେମନ୍ତ ସମ୍ପଦ ଦେବ ଅର୍ଜିବେ ଯୁଧିଷ୍ଠି ।୧୫୪।
ବଲରାମେ ବୋଇଲେ ହରି ବହନ ଚାଲ ଯିବା
କାହିଂ ହୋଇବ ସ୍ୱେଡେ ସମ୍ପଦ ସରୂପ ଦେଖିବା ।୧୫୫।
ମାନଧାତା ଯଜ୍ୟଂକଲା ଶୁଣିଥିଲୁଂ ପୂର୍ବେ
ଯୁଧିଷ୍ଠି ରାଜସୂୟ ଯଜ୍ୟଂ ବାରୁ ଦେଖିବାକ ସ୍ୱେବେ ।୧୫୬।
ଗୋବନ୍ଦେ ବୋଇଲେ ସ୍ୱାମୀ ଚତୁର୍ମାସ୍ୟା ଅନ୍ତରେ
ସାତବଂଶ ସଂଗେ ଯେନ ବିଜେ କରିବା ବଲେବରେ ।୧୫୭।

ଅନେକ ମନ୍ତ୍ରମାଂ ଦେବ ବଳରାମଂକର ଆଗେ କହି
ଦ୍ୱାରକା ମହାରଣାନ୍ତ ସନ୍ନିଧେ ହକରାଇ ।୧୫୮।
ଦଶଲକ୍ଷ ସୁବର୍ଣ୍ଣର ନଉଡ଼ ଦଶଲକ୍ଷ ଚେଲାଉଣୀ
ଦଶଲକ୍ଷ ସୁବର୍ଣ୍ଣ କୋଡ଼ୋଇ ଦେବ ଆଣି ।୧୫୯।
ଭଣ୍ଡାରୁ ପ୍ରସନ୍ନାକର ଧନ ଦେଉଥିବ ଆଣି
ନିରନ୍ତରେ ନିର୍ବାଣ କରିବ ତୁମ୍ଭେ ପୁଣି ।୧୬୦।
ଦଶଲକ୍ଷ ମାଠିଆ ଯେ ଦଶଲକ୍ଷ ଗରଣ୍ଡା
ରାଜାନ୍ତ ସ୍ନାହାନକୁ ହୋଇବ ବଦନ୍ତି ଜଗୁନାହା ।୧୬୧।
ଦଶଲକ୍ଷ ସୁବର୍ଣ୍ଣର ନାଳୁଆ ଦଶଲକ୍ଷ ଝରି
ଯେ ଚତୁର୍ମାସ୍ୟା ଭିତରେ ସବୁନ୍ତି ଥିବ ହୋ ନିବାଡ଼ ।୧୬୨।
ସୁବର୍ଣ୍ଣର ଦେଉଡ଼ ଦେବ ଶତେକ ମଣ୍ଡିତ
ସୁବର୍ଣ୍ଣର ଧୂପ ଦେବ ଅଣି ଅହ୍ନବ୍ରତ ।୧୬୩।
ଅଶିଲକ୍ଷ ଦେବ ହୋ ସୁବର୍ଣ୍ଣର କୋପରା
ସୁବର୍ଣ୍ଣ ଧୂପକୁ ରୂଖା ହୋଇବ ଅଣି ଯେ ସାଗରା ।୧୬୪।
ଅକ୍ରୂର ଅନାଧୃଷ୍ଟ ଉଦ୍ଧବ ସେ ସାତ୍ୟକୀ
ସେ ଘଟଣ ଯୋଗାଡ଼ମାନନ୍ତ ସବୁ ସେମାନେ ଥିବେ ରଖି ।୧୬୫।
ଯେକପଦାର୍ଥ ଯେଥୁଂ ଅନ୍ତର ହୋଇଲେ
ପ୍ରାଣେ କେହି ନ ବ୍ରତିବଟି ଯୁଧିଷ୍ଠି ଦେବଙ୍କର କୋପ କଲେ ।୧୬୬।
ଦ୍ୱାରକାପୁରେ ଯେ ଅଛନ୍ତି ଗନ୍ଧକାସ୍ତି
ଗନ୍ଧ ଜୁଆଦ ଦେବ କର୍ପୂର କସ୍ତୁରୀ ।୧୬୭।
ରାଜାକେ ତହିଂ ଶତେ ମାତ ନିର୍ବାଣ କରିବ
ଷୋଳ ଦିବସକୁ ଷୋଳ ସଜ ଗୋଟିକେ ଦେବ ।୧୬୮।
ଯେହ୍ନମତ କରି ଲକ୍ଷେ ରାଜାଂକୁ ଭିଆଇବ ।୧୬୯।
ସାତ୍ୟକୀ ମୂଳେ ଗନ୍ଧ ଦେଉଥିବ ତୋଳାଇ
ଚନାଯେକ ଊଣା ହୋଇଲେ ଯୁଧିଷ୍ଠିଂକର କୋପ ହୋଇ ।୧୭୦।

---

୧୬୫।୨ ଯେହ୍ନାଂକ ଘଟଣ ଯୋଗାଡ ତୁମ୍ଭେ ଦେଉଥିବ ଲେଖି ।

(ଚ,ଥ,ଙ୍କ)

ଯଦି ଚନାପ୍ୟେକ ବାଗୁ ତୁମ୍ଭେ ଉଣା ଯେ କରିବ
ଯୁଧିଷ୍ଠିରଙ୍କର କୋପେ ତୁମ୍ଭେ ସମସ୍ତେ ନାଶଯିବ ।୧୭୧।

ଦ୍ୱାରକାପ୍ୟେ ଅଛନ୍ତି ଯେତେଙ୍କ ପାଞ୍ଚ ହାଥୀ ଛନ୍ତି
ତାହାନ୍ତ ଘଇ ଆଗ୍ୟାଂ ଦଅନ୍ତି ଶ୍ରୀପତ୍ତି ।୧୭୨।

ପାଞ୍ଚ ପିତାମ୍ବରମାନ ଦେବ ରାଜାଗଣମାନଙ୍କୁ
ଯେତେକ ଲଗଇ ଷୋଳ ଦିବସକୁ ।୧୭୩।

ରାଜାଙ୍କୁ ଦିନକରେ ହେଉଥିବ ଯାହାକୁ ଯେତେ ଲଗି
ଭଣ୍ଡାରୁ ଧନ ମୋହୋର ଦେଲ୍ଲାଯାଅ ଲେଖି ବେଗି ।୧୭୪।

ଉଦ୍ଧବର ମୂଳେ ପାଞ୍ଚ ଲେଖି ଦେଉଥିବ ।୧୭୫।

ଯତ୍ନକରି ଦେବ ଯେହା ଚତୁର୍ମାସ୍ୟା ଭିତରେ
ନୋହିଲେ କୋପିବେଟି ଯୁଧିଷ୍ଠି ଠାକୁରେ ।୧୭୬।

ତାହାନ୍ତ ଶାଡୀଦେଇ କହିଲେ ନାରାୟଣ
ଭଣ୍ଡାରୁ ଧନ ଲେଖି ଦେବାକୁ ଆଗ୍ୟାଂ ହୋଇଲା ଉଗ୍ରେସେନ ।୧୭୭।

ଦ୍ୱାରକାରେ ଛନ୍ତି ଯେତେକ ହାଣ୍ଡୁଆ
ସମସ୍ତ ଭିଆଣକୁ ଆଗ୍ୟାଂ ଦିଲେ ଜଗୁନାହା ।୧୭୮।

ରାଜସୂୟି ଯାଗକୁ ଯାହା ଯାହା ଲଗିବ
ଜଣେ ଜଣେ ଆଗ୍ୟାଂ ଦଅନ୍ତି ପଦ୍ମଲଭ ।୧୭୯।

ସମସ୍ତ ସଞ୍ଚିତ ଭିଆଇବାକୁ ଦେବଦର
ରାତ୍ରେ ନିଦ୍ରା ନାହିଂ ଦେବ କ୍ଷୁଧା ତେଜ୍ୟା କରି ।୧୮୦।

ମନେ ମନେ ଦେବ ଧାମନ୍ତି ଅନ୍ତଖଟରେ
ଯେଉଂଠାରେ ଯାହା ଲୋଡା ଆଗ୍ୟାଂ ଦିଅନ୍ତି ଚକ୍ରଧରେ ।୧୮୧।

ଧନ୍ୟ ସେ ରାଜସୂୟି ଯଜ୍ୟଂ ଧନ୍ୟ ଧର୍ମରାପ୍ୟେ
ଆପେ ଜଗନ୍ନାଥ ଯଶତ ଯାହା କପ୍ୟେ ।୧୮୨।

*

ନାମ ଯୁଦ୍ଧିଷ୍ଠିଙ୍କର ଭଉଣୀ ଜଗନ୍ନାଥ
ତନ୍ତ୍ରଭୁବନେ ନାହିଁ ରାଜସୂୟ ଯାଗ ଉଦ୍ଦାତ ।୧୮୩।

ଦ୍ୱାରକାଭୁବନେ ଦେବ ଯେମାନ ବେଗେ ସଞ୍ଚି
ଖଗେଶ୍ୱର ପିଠିରେ ବଜଯେ ଶିଘ୍ରବହ୍ନି ।୧୮୪।

ତହୁଁ ବଜଯେ କଲେ ଦେବ ଜନାର୍ଦ୍ଦନେ
ଘୃତ ସମୋଦ୍ରେ ଯାଇଁ ମିଳଲେ ବହନେ ।୧୮୫।

ଘୃତ ଅଧିପତି ଯେ ଅଟଇ ଅମୃତାକ୍ଷ
ତାହାକଇଁ ରାଇ ଆଗ୍ୟାଂ ଦଲେକ ଶ୍ରୀବତ୍ସ ।୧୮୬।

ଅଣି ପଦ୍ମ ସେନାଂକୁ ସେ ଘେନିଣ ମେଘ ଦ୍ରୋଣ
ତୋ ତହୁଁ ଘୃତ ନେଉଥିବ ରାଜସୂୟ ଯାଗେଣ ।୧୮୭।

ଶୁଣିଣ ପରମ ସାନନ୍ଦ ହୋଇଲା ବାରନିଧି
ରାଜସୂୟ ଯଗେ୍ୟଂ ଖଟିଲେ ଆମ୍ଭର କାର୍ଯ୍ୟ ହୋଇବ ସିଦ୍ଧି ।୧୮୮।

ଘୃତ ସମୋଦ୍ରକୁ ଅକ୍ଷତ ଦଲେ ଦେବରାଜେ
ତକ୍ଷଣେ ଜଗନ୍ନାଥ ବଇନେବ ପିଠିରେ କଲେ ବଜେ ।୧୮୯।

ରତ୍ନାକର ଭୁବନେ ବଜଯେ ହୃଷିକେଶି
ଜଳଅନ୍ଧାର ପୁରେ ଦେବ ଯାଉଛନ୍ତି ପଶି ।୧୯୦।

ଦେଖିଲା ରତ୍ନାକର ଯେ ବଇନେବ ବାହାନେ
ଶ୍ରୀହସ୍ତେ ଅର୍ଘ୍ୟଘେନି ଆସି କଲାକ ଦ୍ରଶନେ ।୧୯୧।

---

୧୮୯।୨ ତକ୍ଷଣେ ଜଗନ୍ନାଥ ବଇନେତ୍ର ପିଠିରେ କଲେ ବଜେ—ପରେ 'ଘ' ପୋଥିରେ ଭିନ୍ନ ପାଠ—

ରତ୍ନାକର ସନ୍ନିଧେ ବଜଯେ ଦେବହରି
ରତ୍ନାଧି ଭୁବନେ ଯାଉଛନ୍ତି ବଜେକରି ।
ଜଳପତି ନାଥଂକର ଭୁବନ ହନେ୍ୟଷ୍ଟି
ଶୂନ୍ୟରେ ବଜଯେ କରୁଛନ୍ତି ହୃଷିକେଶି ।

୧୯୧ । ଦେଖିଲା ବରୁଣ ରାଜା ବଜଯେ ନାରାୟଣ
ଗଡଘାଲ ଶୁଦ୍ଧଲା ଆସି ତତକ୍ଷଣ । (ଛ)

ଅନେକ ବନୋସ୍ତି ଜଳାଧିପ ରାଜା
ଶ୍ରୀ ଜଗନ୍ନାଥଂକ ଚରଣେ କଲକ ଦ୍ରବ୍ୟପୂଜା ।୧୯୨।

ଗୋବନ୍ଦେ ଆଜ୍ଞାଂ ଦେଲେ ଶୁଣସି ରତ୍ନାକର
ସୁବର୍ଣ୍ଣ ଯୋଗାଡ଼ମାନ କରତୁ ସମ୍ଭାର ।୧୯୩।

ଯେସନକ ବଚନ ଶୁଣି ଦେବ ଜଳନିଧି
ତକ୍ଷଣେ ଫେଡ଼ିଲ୍ଲ ସେ ଭଣ୍ଡାର ବାରିନିଧି ।୧୯୪।

ସତ୍ୟଯୁଗେ ଦେବତାଯେ ତାରକାର ଭୟେ
ବରୁଣ ତହିଂ ସୁବର୍ଣ୍ଣ ଯୋଗାଡ଼ମାନ ଥୋଇଲେ ଦେବତାଯେ ।୧୯୫।

ରତ୍ନାକର ସନ୍ନିଧେଣ କହନ୍ତ ବନମାଳୀ
ଯେ ରତ୍ନ ଯୋଗାଡ଼ମାନ କର ହୋ ହାଦେ ଝିଳ ।୧୯୬।

ଅନେକ ସାନନ୍ଦ ହୋଇ ଦେବ ଜଳାଧି ଜଳପତି
ଜଳଚରନ୍ତ ଯେନଣ ସେ ନିର୍ମାଣ କରନ୍ତି ।୧୯୭।

ଗୋବନ୍ଦେ ବୋଇଲେ ଚତୁମାର୍ସ୍ୟା ମହାଯଜ୍ଞଂ
ଦେନକୁ ଦେନ ରତ୍ନ ଯୋଗାଡ଼ ଦେଉଥିବ ସର୍ବ ।୧୯୮।

ବାରିନିଧି ବୋଇଲ୍ଲ ପରମଭାଗ୍ୟ ଆମ୍ଭର
ରାଜସୂୟି ଯଜ୍ଞଂକୁ ଦେଉଥିବୁ ନିତ୍ୟେହେଂ ଯୋଗାଡ଼ ।୧୯୯।

ଅତ୍ୟନ୍ତ ପୁଣ୍ୟ ଯେହୁ ପୂର୍ବେ ଥିବ ଅର୍ଜି
ସେହୁ ସେ ଯୁଧେଷ୍ଟି ଦେବଂକ ପାଦପଦ୍ମ ପୂଜ ।୨୦୦।

ନାରାୟଣଂକ ଆଜ୍ଞାଂଯେ ଦେବ ରତ୍ନାକର
ନିର୍ବାଣ ଝିଳ କରଇ ସେ ରତ୍ନ ଯୋଗାଡ଼ ।୨୦୧।

ତହୁଂ ବଇନେହ ପିଠିରେ ବଜଯେ ଦେବହର
ଚଳଲେ ହୃଷୀକେଶ ପାତାଳ ସ୍ୱର୍ଗପୁରୀ ।୨୦୨।

---

୨୦୦।୧ ଅତ୍ୟନ୍ତ ପୁଣ୍ୟ ଯୁଧେଷ୍ଟିଦେବ ଅଛନ୍ତ ଅରଜ ।(ଛ)
୨୦୦।୨ ସେହୁ ସେ ମହାଯଜ୍ଞଂ ପାରଇ ଦେବ ସର୍ଜି । (ଘ)

ହଟକେଶ୍ୱର ଭୁବନେ ଥାଇଂ ମୟୂ ଦାନବ
ତାହାର ପୁରେ ଭଜନ୍ତେ କଲେକ ବାସୁଦେବ ।୨୦୩।
ବାରତା ପାଇଣ ସେ ବଦ୍ୟାକେତୁର ନାତି
ସଙ୍ଗେ ଘେନିଲ ସେ ପଞ୍ଚବଂଶ ପଦ୍ମ ରଥୀ ।୨୦୪।
ଲକ୍ଷେ ଭାର ସୁବର୍ଣ୍ଣ ପାଣିଦ୍ରବ୍ୟ ଘେନିଣ ସେ ରଙ୍ଗେ
ଶତ ସହସ୍ର ପ୍ରଣପତ୍ୟ ଜଗନ୍ନାଥଂକ ପଦ୍ମପାଙ୍ଗେ ।୨୦୫।
ଆହୋ ମୟୂ ଦାନବ ରାଜସୂି ଯାଗ କରିବେ ଧର୍ମ ଯେ ଯୁଧେଷ୍ଟି
ରାଜସୂି ଯାଗକୁ ଦେବୁ ତୁ ମାୟାସଭା ଗୋଟି ।୨୦୬।
ଅବାଡେ ଶବ୍ଦମାନ ଯେ ହୋଇବ ଲେଖନ
ଜଳେ ସ୍ଫଟିକ ହୋଇଥିବ ଯେତେକବର୍ଣ୍ଣ ।୨୦୭।
ଜଳରେ ସ୍ଥଳ ହୋଇବ ସ୍ଥଳେଣ ହୋଇବ ଜଳ
ଶୂନ୍ୟେଣ ଖମ୍ବ ହୋଇବ ଶୂନ୍ୟେଣ ହୋଇବ ଗୃଳ ।୨୦୮।
ଶନ୍ଖୁଳ କଣ୍ଟକ ହୋଇବ ସଭାର ନାମ
ଶୂନ୍ୟେଣ ତେର ପାବଛ ହୋଇବ ଉତକର୍ମ ।୨୦୯।
ଯୁଧେଷ୍ଟି ଦେବ ଠାକୁରଂକୁ ଯେ ହୋଇବ ଭଗତା
ସେହି ସେ ସଭାରେ ବସିବାକୁ ହୋଇବ ମହାଗ୍ୟାଂତା ।୨୧୦।
ଯୁଧେଷ୍ଟି ଦେବଂକୁ ଯେ ହୋଇବାକ ରପୁ
ତାହାଂକୁ ଅଦୃଶ୍ୟ ହୋଇବ ସଭାର ବପୁ ।୨୧୧।
ଯେତେସନେକ କୂଠ ଯେ କହିଲେ ବାସୁଦେବ
ଶୁଣିଣ ସନମତ ଯେ କଲା ମୟେ ଦାନେବ ।୨୧୨।
ତୋହୋର ବଚନ ଦେବ ଅଟଇ ଅଲଂଘିତ
ଶନ୍ଖୁଳ କଣ୍ଟକ ସଭା ମୁଂ କରିବଇଂ ଜାତ ।୨୧୩।
ମୟୂ ଦାନବକୁ ସନମତ କରାଇଣ ନାରାୟଣ
ଲକ୍ଷେ ରାଜାଂକୁ ଦେବୁ ତୁ ରତ୍ନ ଆଭରଣ ।୨୧୪।
ତାଡ ଝୁମ୍ପା ସରଳ ବାହୁଟି ଜଗଦଳା
ଶିରକୁ ସୀମନ୍ତିମା ହୃଦକୁ ରତ୍ନମାଳା ।୨୧୫।

---

୨୦୬।୨ ଲକ୍ଷେରାଜା ବସିବାକୁ ଦେବୁ ମାୟା ମଣ୍ଡୋପ ଗୋଟି । (ଛ)

ରତ୍ନ ଆଭରଣ ଦେବୁ ରାଜାଗଣମାନଂକୁ
ଯେତେକ ଲାଗଇ ଦେବୁ ରାଜସୂୟଯାଗ ସଭାକୁ ।୨୧୬।
ଏମନ୍ତେ ଅନେକ ଆଜ୍ଞା ତାଙ୍କୁ ଦିଲେ ଦେବହର
ଶୁଣି ମୟଦାନବ ତା ସନମତ କର ।୨୧୭।
ପାତାଳେ ଅଛନ୍ତି ତୋର ଯେତେକ ସଇନ୍ୟ
ସଭା ସଙ୍ଗତେ ଯିବୁ ରତ୍ନମାନ ଘେନ ।୨୧୮।
ଅକ୍ଷତ ଗୁଆ ତାଙ୍କୁ ଘେନାଇ ଦାମୋଦର
ବିଜୟେ ଜଗମୋହନ ବଇନେଣ ପିଠିର ।୨୧୯।
ପାତାଳ୍କୁଂ ବାହାର ହୋଇ ଦେବ ଯେ ଅନନ୍ତ
ଆକାଶେ ବିଜୟେ ମାଇଂ କଲେ ଜଗନ୍ନାଥ ।୨୨୦।
ଆସିଣ ଦର୍ଶନ କଲାକ ବିଶ୍ୱକର୍ମା
ସଭାଏକ ଦେଖାଇଲା ଚତୁର୍ଲକ୍ଷ ସୁଧର୍ମା ।୨୨୧।
ଦ୍ୱାଦଶ ଯୋଜନ ସେ ଆୟେତନ ସ୍ଥଳୀ
ସୁବର୍ଣ୍ଣ କମ ଉପରେ ଅଷ୍ଟରତ୍ନ ଝଳ ।୨୨୨।
ତିମିର ବିଦାରଣ ବିରାଜଇ ରତ୍ନମଣି
ଆଦିତ୍ୟ ଉଦୟ ପ୍ରାୟେ ଦିଶଇ ରଶ୍ମିଶ୍ରେଣୀ ।୨୨୩।
ଗୃହଦିଗକଇଂ ସେ କମ ଦିଶଇ ଆଶ୍ରିଜ
ଦେଖିଣ ସାନନ୍ଦ ଯେ ହୋଇଲେ ଦେବରାଜ ।୨୨୪।
ସୁବର୍ଣ୍ଣର ସ୍ତମ୍ଭ ଆଉ ସୁବର୍ଣ୍ଣର ଶେଣୀ
ସୁବର୍ଣ୍ଣର ଓରା ଅଷ୍ଟରତ୍ନେ ଖଞ୍ଜାଣୀ ।୨୨୫।
ଲକ୍ଷେକ କୋଟି ଯେ ଅଛଇ ନନ୍ଦାବର୍ତ୍ତ
ବ୍ରହ୍ମାଣ୍ଡ ଝଳକଇ ଜାଣି ତେଜ ଯେ ଆଦିତ୍ୟ ।୨୨୬।
ଯେବଣ ଆଜ୍ଞା ଦେଇଅଛନ୍ତି ଦେବହର
ଦେବଂକୁ ଅସମ୍ଭବ ସେ ସଭା ନିର୍ମାଣ କର ।୨୨୭।
ସାତପଦ୍ମ ବନ୍ଧାଣି ଲାଗି ଅଛନ୍ତି ଅନୁବ୍ରତେ
ପୀଡ ଘଟଣ କରଅଛନ୍ତି ଯେ ଅନେକ ଭଷତେ ।୨୨୮।

---

୨୨୮। ସୁବର୍ଣ୍ଣର ପୀଠ ନିର୍ମାଣ କରନ୍ତି ରତ୍ନ ଜଡ଼ିତ ସହିତେ । (ଛ)

ରତ୍ନକାଠି ଉସର୍ଗ ସେ ଦ୍ୱାଦଶଯୋଜନ ସ୍ଥଳୀ
ସ୍ଫଟିକର ଚାବଛ ମର୍କତ ଶୁଦ୍ଧଶାଳୀ ।୨୨୯।
ଚନ୍ଦ୍ରବଂଶ ଚାବଛ ଯେ ମାଳାପ୍ୟେ ନିର୍ମିତ
ଦେଖିଣ ହରଷ ଯେ ହୋଇଲେ ପ୍ରଭୁ ଜଗନ୍ନାଥ ।୨୩୦।
ଆପଣେ ବିଶ୍ୱକର୍ମା ରୂପ ଧରିଣ ଦେବହରି
କମିଲ୍ ପଟଳ ଯେଉଁଣ ଦେବ ନିର୍ମାଣ ସେ କରି ।୨୩୧।
ଯେବଣ ଠାବରେ କମ ମନକୁ ନ ମିଳି
ଆପଣେ ଲେଖନ କଲେ ଦେବ ବନମାଳୀ ।୨୩୨।
ଯେ୍ସନେକ ନିର୍ମାଣ ଯେ କଲେ ବିଶ୍ୱକର୍ମା
ସେ୍ ସଭା ଦେଖି ପ୍ରଶଂସା କରିବେ ବେଦବ୍ରହ୍ମା ।୨୩୩।
କୁବେରକୁ ହକାରି ଯେ ବଦସ୍ପନ୍ତି ଅଚ୍ୟୁତ
ଧନକୁ ବିକୃତ କଛୁ ନ ଧରିବୁ ଚିତ୍ତ ।୨୩୪।
ଯେତେକ ଧନ ଲାଗଇ ରାଜସୂୟ ଯାଗ ସଭାକୁ
ଯଚେପ କରି ଦେବୁ ଯେ ବିଶ୍ୱକର୍ମାକୁ ।୨୩୫।
ନାରାୟଣଂକ ବଚନେ ବୋଲଇ ଧନପତି
ତୋହୋର ଭଣ୍ଡାର ସିନା ଯଚନ୍ତ ଶ୍ରୀପତି ।୨୩୬।
ଅଳକା ଭୁବନୁ ବିଜେକଲେ ଲକ୍ଷ୍ମୀପତି
ଅମର ଭୁବନେ ଦେବ ବିଜେ କଲେକ ଉତ୍ପତି ।୨୩୭।
ଆସ୍ଥାନ ତେଜିଣ ଯେ ଉଠିଲେ ଦେବରାଜା
ଶ୍ରୀ ଜଗନ୍ନାଥଂକ ପାଦପଦ୍ମେ କଲେକ ଦିବ୍ୟପୂଜା ।୨୩୮।
ନାରାୟଣ ବୋଇଲେ ଶୁଣ ହୋ ମଘବାନ
ଯୁଦ୍ଧେଷ୍ଠି ଦେବ କରିବେ ରାଜସୂୟ ଯାଗ ବିଧାନ ।୨୩୯।
ସେ୍ ତୋହୋର ଅମରାବତୀ ଯେ ସ୍ୱର୍ଗ ଭୁବନୁଂ
ମେଞ୍ଚିନ ଯୋଗାଡ ଦେଉଥିବୁ ତୋହୋ ନନ୍ଦନ ବନୁଂ ।୨୪୦।

---

୨୩୩।୨ "ସେ୍ ସଭା ଦେଖି ପ୍ରଶଂସା କରିବେ ବେଦବ୍ରହ୍ମା" । ପାଠ ପରେ
'ଥ' ପୋଥିରେ ଅଧିକା ପାଠ—
ସୁବର୍ଣ୍ଣର ଗୃହିରାଜା ଗଢିବୁ ମନ ଦେଇ
ନୋହିଲେ ରାଜସୂୟ ନୋହିବ କହିଲେ ଯଦୁସାଇଂ । (ଥ)

ଆମ୍ବ ପଣସ ଆଉ କଦଳୀ ନଡ଼ିକାଳ
ଟଭ୍ର ନେମ୍ବାଉ ଜମ୍ବିଲ ମଧୁର କଣ୍ଟାହୁଲ ଫଳ ।୨୪୧।
ଦାରକ୍ଷ କଇଥ ନାନା ଅପୂର୍ବ ଯେ ଦ୍ରବ୍ୟ
ଯତ୍ନ କରି ସଞ୍ଚିତ ଯେହ୍ନା କରାଅ ବାସେବ ।୨୪୨।
ତୋହୋର ତୋଟାଳନ୍ତ ଯେ ଛଆର ଦୃତକର
ଆଜହୁଂ ଫଳମାନନ୍ତ ତୁ ନ କରବୁ ଉଜାଡ଼ ।୨୪୩।
ଆକାଶଗଙ୍ଗାଯେ ସେ ଲଗିଥିବ ନାବ
ନାବେ ପ୍ରେରଇଂ ତୁ ଦେଉଥିବୁ ବାସେବ ।୨୪୪।
ସେ ଗଙ୍ଗା ଅଛନ୍ତ ଇନ୍ଦ୍ରପ୍ରଶସ୍ତେ ଯେ ଲଗି
ପ୍ରେରଇଂ ଦେଉଥିଲେ ନାବ ଲଗିବ ଯାଇଂ ବେଗି ବେଗି ।୨୪୫।
ତୋହୋର ନନ୍ଦନ ବନର ଫଳ ଫୁଲୁରି ଯେ ମାନ
ତେବେ ଅର୍ଣ୍ଣିବ ନା ସକଳ ଥାଠ ସନ୍ୟ ।୨୪୬।

ଅହୋ ତୋହୋର ଅର୍ଜିଲି ସେ ଅଟନ୍ତି ପାଣ୍ଡବ
ତୋତେହେଂ ତହ୍ନିଂ ଅନେକ ଧର୍ମିହ୍ନିଂ ହୋଇବ ।୨୪୭।
ଇନ୍ଦ୍ର ଦେବତା ବୋଇଲା ହରି ଯେ ତୋହୋର ଆଜ୍ଞାଂ
କାହାର ବେଳେ ତାହା କରିପାରିବ ଅବଜ୍ଞାଂ ।୨୪୮।
ବିଦ୍ୟାଧରମାନେ ମୋର ଅଛନ୍ତ ଛପନ ଯେ କୋଟି
ସମସ୍ତ ଘେନିଥିବ ରାଜସୂୟି ଯାଗେ ଖଟି ।୨୪୯।
ଆଜ୍ଞାଂ ଦେଇଣ ସେ ବିଜଯେ ବାସୁଦେବ
ପଛେଣ ପୁଷ୍ପେକ ଚଢ଼ି ଗୋଡ଼ାନ୍ତି ବାସବ ।୨୫୦।

ଇନ୍ଦ୍ର ଗୋବିନ୍ଦ ଯେ ତହୁଂ ଚଳନ୍ତ ତୋଷମନେ
ପ୍ରବେଶ ହୋଇଲେ ଯାଇଂ ନନ୍ଦନ ନାମେ ବନେ ।୨୫୧।
ଦେଖନ୍ତି ତୋଟା ଯେ ମେରୁ ସମାନେ ସ୍ଥଳୀ
ଶତେଛତିଶ ଯୋଜନ ଅଟଇ ଉଗୁଳ ।୨୫୨।
ସୁବର୍ଣ୍ଣର ପାଚେରି ଯେ ଷାଠିଯେ ତାଳ ଉଚ
ଛତିଶ ତାଳ ଓସାର ବିସ୍ତାର ସୁସଞ୍ଚ ।୨୫୩।
ଗଗନ ଶିଖରେ ଲଗିଅଛି ବୃକ୍ଷ ଶିଖ
ଫଳଭରେ ଭୂମିରେ ଲୁଗୁଅଛି ବୃକ୍ଷଂକର ଶାଖ ।୨୫୪।

ପାଚଣ ପଂକ୍ତିଫଳ ପଡ଼ୁଛନ୍ତି ଭୂମି
ଦେଖି ପ୍ରଶଂସା କରନ୍ତି ଇନ୍ଦ୍ର ଗୋବିନ୍ଦ ବେନି ସ୍ୱାମୀ ।୨୫୫।
ଇନ୍ଦ୍ର ସ୍ୱର୍ଗରଇ ଯେ ନନ୍ଦନ ବନ ଦେଖି
ଯୁଧିଷ୍ଠିର ଦେବଙ୍କ ଯାଗକୁ ହୋ ଯେହ୍ନେ ସଞ୍ଚିଥିଲ ରଖି ।୨୫୬।
ଜୟତୁ ଭଗବାନ ଯେ ତୋହୋର ଚରିତ
ଅତି ମାୟାଯେଣ ତୁ ମାୟାଧର ଚକ୍ରହସ୍ତ ।୨୫୭।
ତୁ ସେ ସଚରାଚର ପାଳନ୍ତା ଶ୍ରୀବତ୍ସ
ଗତ ଆଗତ ଦେବ ଯେ ସବୁ ଅଛୁ ସଞ୍ଚ ।୨୫୮।
ଆପଣେ ଶ୍ରୀହସ୍ତରେ ଦେବ ଯେ ରତ୍ନମାଳା ଧରି
ତୋଳାଇଲୟାନ୍ତି ଦେବ ଶ୍ରୀକରେ ହଲେ ଶାଢ଼ୀ ।୨୫୯।
ସମସ୍ତ ଫଳମାନ ସୁବିଧାନେ କରସି ରକ୍ଷା
ରାଜସୂୟ ଯାଗ ସରଲେ ପୂରେଇବ ତୁମ୍ଭ ମନବାଞ୍ଛା ।୨୬୦।
ନାରାୟଣଂକ ବଚନେ ସକଳ ଗନ୍ଧର୍ବେ
ଅନେକ ପୂଜା ସେହ୍ନ କରନ୍ତି ବାସୁଦେବେ ।୨୬୧।
ଇନ୍ଦ୍ର ଗୋବିନ୍ଦ ତୁମ୍ଭେ ତିନିଲୋକେ ଆଧିପତି
ଆମ୍ଭେମାନେ ସମସ୍ତେ ତୁମ୍ଭର ବଶ୍ୟବୃତ୍ତି ।୨୬୨।
ଯେତେକ ଫଳ ପୁଷ୍ପ ଯୋଗାଡ଼ ଲାଗଇ ରାଜସୂୟ ଯାଗ ସଭାକୁ
ନାବମାନ ସ୍ୱାମୀ ପଠିଆଇବା ଯେହ୍ନେ ନନ୍ଦନ ବନକୁ ।୨୬୩।
ନାରାୟଣ ବୋଇଲେ ହୋ କଇବର୍ତ୍ତ ନିଷାଦ ଆଧିପତି
ସାତପଦ୍ମ ନାବ ଘେନି ବାହୁଥିବେ ହବାରୁତି ।୨୬୪।
ନିର୍ଦ୍ଧାର ଆଜ୍ଞା ସ୍ୱାମୀ ହଲେ ଜନାର୍ଦ୍ଦନ
ବିଜୟେ ଜଗମୋହନ ଖଗେଶ୍ୱର ବାହନ ।୨୬୫।
ଇନ୍ଦ୍ରଦେବତାନ୍ତ ବଦନ୍ତି ଦେବରାଜ
ଦେବାଙ୍ଗ ବସ୍ତ୍ର ଦେବୁ ଯେମନ୍ତେ ହୋଇବ କାର୍ଯ୍ୟ ।୨୬୬।
ସୁବର୍ଣ୍ଣ ଯୋଗାଡ଼ନ୍ତି ଯେତେ ଲାଗଇ ଦେବରାୟେ
ଚିତ୍ରସେନ ଦେଉଥିବ ରାଜସୂୟ ଯାଗ ସଭାୟେ ।୨୬୭।
ସୁରେଶ୍ୱରେ ନିମନ୍ତ୍ରଣ କରି ଦେବ ଅଚ୍ୟୁତ
ନିଷାଦ ରାଜ୍ୟେ ଯାଇଂ ବିଜୟେ ଜଗନ୍ନାଥ ।୨୬୮।

କଇବ୍ରତ ନୃପତ୍ତି ଦେଖି କଲେକ ଅନେକ ପୂଜା
କସ ଅର୍ଥେ ଏଜେ ସ୍ୱାମୀ ଦେବାଧି ଦେବରାଜା ।୨୬୯।
ବଦଯ୍ୟନ୍ତ ଜନାର୍ଦ୍ଦନ ଶୁଣ କଇବ୍ରତ ରାଜ୍ୟେ ଶ୍ରେଷ୍ଠ
ରାଜସୂ ଯାଗ ସଭା ଆସି ହୋଇଲାଣି ନିକଟ ।୨୭୦।
ନାବମାନ ସଞ୍ଚିତ କଲୁକ ହୋ କଇବ୍ରତ
ନନ୍ଦନବନ ହାଦେ ଢାଳକ ପୁରୁହୂତ ।୨୭୧।
ନିଷାଦ ବୋଇଲା ସ୍ୱାମୀ ଦେଖ ବନମାଳୀ
ପଞ୍ଚବଂଶ ମଣ୍ଡିତ ନାବ ମୁଂ ଅଛଇ ବଟାଳି ।୨୭୨।
ଆହୁର କେତେ ନାବ କରିବ ନିରମାଣ
ରାଜସୂ ଯାଗ ସଭାକୁ ଯେତେ ଅଣ୍ଟଇ ସେ ଜାଣ ।୨୭୩।
ହାବାରାବେ ବାହୁଥିବୁ ନନ୍ଦନବନକୁ
ଧାଡିକାରେ ଲାଗୁଥିବ ଇନ୍ଦ୍ରପ୍ରସ୍ଥ ଭୁବନକୁ ।୨୭୪।
ନିଷାଦକୁ ଆଜ୍ଞାଂଦେଇ ଚଳିଲେ ହୃଷୀକେଶ
ବାରୁଣାବନ୍ତେ ଯାଇଂ ହୋଇଲେ ପ୍ରବେଶ ।୨୭୫।
ଦେଖିଲେ କରାତରାଜା ବନର ନୃପମଣି
ଅନେକ ପୂଜାବିଧି କଲେକ ଦେବ ଚକ୍ରପାଣି ।୨୭୬।
ବଦଯ୍ୟନ୍ତ କେଶବ ତୁ ଶୁଣ ହୋ କରାତ
ବନକାଠମାନ ଗୃହ ଦେଖିବା ସମସ୍ତ ।୨୭୭।
କମିଲା ଲାଗିଛନ୍ତ ଅନେକ ବନ୍ଧାଣୀ
ଅଶ୍ୱଶାଳ ଗଜଶାଳ ଦେଖିଲେ ଚକ୍ରପାଣି ।୨୭୮।
ତାଡ ତୋଡର ଯେ ସରଳ ରତ୍ନମାଳା
ଶ୍ରୀହସ୍ତେ ଶାଢୀ ଦେଲେ ଦେବକୀର ବାଳା ।୨୭୯—୧୫୪୪।

———

୨୭୨।୨ ପଞ୍ଚବଂଶ ମଣ୍ଡିତ ମୁଂ ଅଛଇ ପଖାଳ । (କ,ଗ)

*

## ରାଜାମାନଙ୍କୁ ନିମନ୍ତ୍ରଣାର୍ଥେ ଭୀମ, ଅର୍ଜୁନ, ନକୁଳ, ସହଦେବ ଚାରି ଭାଇଙ୍କୁ ଚାରିଦଗେ ଯିବାକୁ ଶ୍ରୀକୃଷ୍ଣଙ୍କର ଆଦେଶ

ତହୁଂ ବିଜେକରି ଦେବ ଶିଖିପତି
ହସ୍ତିନା ଭୁବନେ ଯାଇଂ ବିଜୟେ ତତକ୍ଷଣାନ୍ତି ।୧।
ଆସ୍ଥାନେ ବିଜୟେ କରିଛନ୍ତି କୁରୁପତି
ଭୀଷ୍ମ ଦ୍ରୋଣ କୃପ ଶଲ୍ୟ କର୍ଣ୍ଣ ମହାରଥୀ ।୨।
ବିଜୟେ ଧର୍ମସୁତ ଭୀମ ଅର୍ଜୁନ ନକୁଳ ସହଦେବ
ଆସ୍ଥାନରେ ବିଜୟେ ଯେ ଋଷିମାନ ସର୍ବ ।୩।
ଜଗନ୍ନାଥଂକୁ ଦେଖି ଆସ୍ଥାନୁ ଉଠିଲେ ସର୍ବରାଜା
ନାରାୟଣଂକ ପଦ୍ମପାଦେ କଲେ ସର୍ବେ ପୂଜା ।୪।
ଆସ୍ଥାନେ ବିଜୟେ ଯାଇଂ ଦେବ ଦଇତାରି
କୁଶଳ ବାରତା ଯେ ପଚାରନ୍ତି ଶ୍ରୀହରି ।୫।
ଯୁଧିଷ୍ଠିର ଦେବେ ବୋଇଲେ ଶୁଣ ହୋ ଶ୍ରୀବତ୍ସ
ପିତାଂକ ବ୍ରହ୍ମହତ୍ୟା ଦୋଷ ନାରଦେ କହିଲେ ପ୍ରତକ୍ଷ ।୬।
ରାଜସୂୟ ଯାଗ ହରି କରିବା ନିମନ୍ତେ
ଜରାସନ୍ଧ ବଧ କରାଇଲୁ ଯେବଣ କାର୍ଯ୍ୟ ଅର୍ଥେ ।୭।
ତହିଂକ କେବଣ ଚରିତ କଲୁ ଯେ ଭିଆଣ
ଏବେ ମୋହୋର ବଚନ ହରି ସାବଧାନେ ଶୁଣ ।୮।
ସ୍ୱାମୀ ପ୍ରାଗେ ଖ୍ୟାସ ଦେବ ମୁଂ ପିତାର ନିମନ୍ତେ
ନୋହିଲେ ରହିନ୍ତି ଯେଣି ମୁଂ ଗମିବି ସର୍ବ ତୀର୍ଥେ ।୯।
ଗୋବିନ୍ଦେ ବୋଇଲେ ଦେବ ରାଜସୂୟ ଯାଗ କରିବା
କିସ ନିମନ୍ତେ ଯାଗ ଗୁଣ୍ଡ କରିବ ତୀର୍ଥକଇଂ ସେବା ।୧୦।
ଯୁଧିଷ୍ଠିର ବୋଇଲେ ତୁ ନିଚିନ୍ତ ହୋଇଲୁ ଶ୍ରୀବତ୍ସି
ମହାଯାଗ ସମ୍ଭକୁ ଦେବ କଷ୍ଟହିଂ ନ ସମ୍ଭ ।୧୧।
ଜଗନ୍ନାଥେ ବୋଇଲେ ଦେବ ସେ କଥାକୁ ନ କର ଚିନ୍ତା
ମୁହିଂ ସେ ସକଳ ଦେବ ଭିଆଣ କରନ୍ତା ।୧୨।

ଯାହାର ଆଗ୍ୟାଂଶେ ଦେବ ସଚରାଚର ବ୍ରତ
ମୁହିଂ କଞ୍ଚିତ ପ୍ରାଶେ ମଣଇ ରାଜସୂଯାଗ ପ୍ରତ ।୧୩।
ଚାରିଦିଗକଇଂ ଯେବେ ଦୂତ ବରଗାଇ
ରାଜାଗଣମାନନ୍ତ·ଆଣିମା ନିମନ୍ତ୍ରାଇ ।୧୪।
ଚାରିଦିଗକୁ ଦେବ ବରଗିବା ଦୂତ
ଧାର୍ମିକ ଦେଖି ଚାରିଜଣ କରିବା ସଞ୍ଚିତ ।୧୫।

ଯୁଧିଷ୍ଠିର ଦେବେ ବୋଇଲେ ଶୁଣିମା ଚକ୍ରଧାରୀ
ବିଚାର କରି ଦେବ ପେଷ ଯେ ଜଣ ଚାରି ।୧୬।

ନାରାୟଣେ ବୋଇଲେ ହୋ ତୋହୋର ସହୋଦରେ
ତାହାଂକର ଗଲେ ରାଜାମାନେ ସାଧ ହୋଇବେ ସର୍ବପୁରେ ।୧୭।
ପଶ୍ଚିମଦିଗକୁ ସ୍ୱାମୀ ଭୀମସେନ ଯାନ୍ତୁ
ଉତ୍ତରେ ଅର୍ଜୁନ ଯାଇଂ ରାଜାମାନନ୍ତ ନିମନ୍ତୁ ।୧୮।
ଦକ୍ଷିଣେ ନକୁଳ ଯାଉ ପୂର୍ବେ ସହଦେବ
ଯେହାଂକର ଗଲେ ସେ ଚାରିଦିଗ ସାଧ ହୋଇବ ।୧୯।
ଯୁଧିଷ୍ଠିର ବୋଇଲେ ଭୁ ବିଚାର ଅଚ୍ୟୁତ
ମୋହୋର ବିଚାରକୁ ନ ଯୋଗାଇ ଯେମନ୍ତ ।୨୦।
ଭୀମ ଅର୍ଜୁନ ଯାଆନ୍ତୁ ଦେଶ ନିମନ୍ତ୍ରିଣ
ନକୁଳ ସହଦେବ ଅଟନ୍ତି ଦେବ ସାନ ।୨୧।
ତାହାଂକର ବୋଲେ କି ସାଧ ହୋଇବେ ରାଜାମାନେ
ଯେହ୍ନ ନ ଯିବେ ବୋଲନ୍ତି ଯୁଧିଷ୍ଠିର ରାଜନେ ।୨୨।
ସ୍ୱାମୀ ଯେଉଂଣ ଦିନେ ମାଦ୍ରୀଦେବୀ ପ୍ରାଣତ୍ୟାଜ ହୋଇଲେ
ବାଳୁତ ପୁତ୍ର ଦୁଇଗୋଟି ମୋତେ ସମର୍ପିଲେ ।୨୩।
କେମନ୍ତେ ଦୂରାନ୍ତର ପଠିଆଇବି ଦେଖନ୍ତେ
ସୁକୁମାର ବାଳୁତ ସେ ଅଟନ୍ତି ବେନି ଭ୍ରାଥେ ।୨୪।
ରାଜସୂି ଯାଗ ହରି ନୋହୁ ମୋର ପଛେ
ତାହାନ୍ତ ପଠିଆଇ ମୁହିଂ ନୁଆରିବି ଶ୍ରୀବତ୍ସେ ।୨୫।
ଜଗନ୍ନାଥେ ବୋଇଲେ ସାଧୁ ସାଧୁ ତୋହୋର ଧର୍ମ
କେବଣ ସାଧିବା ତୋତେ କଳ୍କ ଜନମ ।୨୬।

ଅନେକ ପ୍ରଶଂସା ଯେ କରନ୍ତି ଦେବହରି
ଆପଣାର ସୋଦରନ୍ତ ଉପେକ୍ଷା ଦେବ କରି ।୨୭।
ସାବତ ଭ୍ରାଥନ୍ତ ସୋଦ୍ର୍ୟାପଣ ତୋର ଗୁଣ
ଅନାସ୍ତ ବନ୍ଧୁ ଦେବ ଅକାରଣକଇଂ କାରଣ ।୨୮।
ପଛିମେ ବସନ୍ତ ଦେବ ଦୁଷ୍ଟ ରାଜାମାନେ
ତାହାନ୍ତ ସାଧ କରିବ ପବନର ନାନେ ।୨୯।
ଉତ୍ତରେ ବସନ୍ତ ରାଜା ମହା ମହା ପ୍ରତାପୀ
ଅର୍ଜ୍ଜୁନର ନାମେ ସେ ଶଂକା କରିବେ ସର୍ବସ୍ଥାପି ।୩୦।
ସ୍ୱାମୀ ପୂର୍ବଦିଗେ ବସନ୍ତ ଯେତେକ ନୃପତି
ଧାର୍ମିକ ବିବେକ ସେ ଦୁଭାର ନୁହନ୍ତି ।୩୧।
ସହଦେବ ବୋଲେ ସେ ସମସ୍ତେ ହେବେ ସାଧି
ଯେ ଦୁଷ୍ଟ ହୋଇବ ତାହାନ୍ତ ଚର୍ମେ ମୁଂ ପକାଇବି ଛେଦି ।୩୨।
ଦକ୍ଷିଣେ ବସନ୍ତ ଦେବ ଯେତେକ ନୃପତି
ଦେବତା ବ୍ରାହ୍ମଣେ ପୂଜା ଦୁଷ୍ଟ ସେ ନୋହନ୍ତି ।୩୩।
ସ୍ୱାମୀ ଯେ ଅବା ସାଧ ନୋହଇ ନକୁଳ କୁମାରକୁ
ଅବଶ୍ୟ ପ୍ରାଣେ ମୁଂ ନାଶ କରିବଇଂ ତାହାକୁ ।୩୪।
ଆପଣେ ଶ୍ରୀହସ୍ତେ ଶାଢୀ ଦିଲେକ ଭୀମସେନକୁ
ତୁମ୍ଭେ ବିଜେକରି ଯାଅ ପଚ୍ଛିମ ଦିଗକୁ ।୩୫।
ଦୁଇଗୁଣା ପଞ୍ଚାଶ ସହସ୍ର ରାଜା ବସନ୍ତ ପଚ୍ଛିମ ଦିଗେ
ବିନା ସାଂଗ୍ରାମେ ସେ ସାଧ ନୋହନ୍ତି କେଉଂଣ ବାଗେ ।୩୬।
ଯେଉଂଣ ରାଜା ହାଦେ ହୋଇବ ଅସାଧି
ସନ୍ୟ ନାଶକରି ଆଣି ମୁଂ ତାହାକଇଂ ବାନ୍ଧି ।୩୭।
ଅନେକ ଦୋଷକଲେ ନାଶ ନ କରିବୁ ନୃପତି
ଯେମନ୍ତେ ଗୃହଉଣା ଲକ୍ଷେକ ରାଜା ଅଛନ୍ତି ନା ପୃଥୀ ୩୮।
ଯେବଣ ନୃପତି ଅବା ମାରିବୁ ସମରି
ଥାଠ ସନ୍ୟ ଆଦ୍ଦକରି ହୋଇବ ସୁବର୍ଣ୍ଣରି ।୩୯।

---

୩୦।ଂ ସର୍ବସ୍ଥାପି = ସର୍ବଥା + ଅପି, ସର୍ବଦା ।

ଦୃଢର ଦୁଷ୍ଟ ପ୍ରକୃତି ଅଚ୍ଛୁ ତୁରେ ଭୀମା
ରାଜାସୂୟେ ଅନେକ ଦୋଷ କଲେ କରିବୁଟି କ୍ଷମା ।୪୦।
ଆହୋ ଆଶ୍ୱିନ ଶୁକ୍ଳପକ୍ଷ ଦଶମୀର ଦିନ
ଚନ୍ଦ୍ରବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ ।୪୧।
ଧୃତି ନାମେ ଯୋଗ ତତ୍ତୁଲ୍ଲ ନାମେ କରଣ
ତାର ଚନ୍ଦ୍ର ଅମୃତ ଯୋଗରେ ଘଟଣ ।୪୨।
ସପତମେ ଶନୋଇଶ୍ଚର ଯେକାଦଶେ ବୃହସ୍ପତି
ସ୍ୱାତି ତୁଲ ରାଶିକ ସୁବିଧାନେ ଯୋଗ ପ୍ରୀତି ।୪୩।
ଦିଗ ଅନକୂଳ ଯେ ମାହେନ୍ଦ୍ର ଯୋଗ ଲଗ୍ନେ
ଈଶାନେ ମହାଲକ୍ଷ୍ମୀ ଯେ ମଗର ବାହନେ ।୪୪।
ମାହେନ୍ଦ୍ର ଯୋଗବେଳେ ଯେ କଲେକ ଅନକୂଳ
ପଶ୍ଚିମ ଦିଗେ ମାରୁତି ଚଳଇ ସର୍ବ ମଙ୍ଗଳ ।୪୫।
ସୁବିଧାନେ ଯାତ୍ରା ଯେ ଶୁଭ ସ୍ଥିର ଲଗ୍ନେ
ଇନ୍ଦ୍ରପ୍ରସ୍ଥରୁ ଭୀମସେନ ବାହାର ପରସ୍ଥାନେ ।୪୬।
ଜୟଶଙ୍ଖ ଧ୍ୱନି ଯେ ବିପ୍ରେ ବେଦଧ୍ୱନି
ଗ୍ରହ ପୂଜେ ଯେ ମଙ୍ଗଳ ଅଷ୍ଟକ ବଖାଣି ।୪୭।
ସହସ୍ରେକ ରଥ ଗୃହ ସହସ୍ର ମତ୍ତହାଥୀ
ଅହ୍ୱବ୍ରତେକ ଅଶ୍ୱ ଦଶଲକ୍ଷ ପାଦାନ୍ତ ।୪୮।
ଅହ୍ୱବ୍ରତେକ ବୀରତୂର ବୀରକାହାଳୀ ବୀରଦାଉଣ୍ଡି
ଅଷ୍ଟରତ୍ନେ ଆଭରଣ ରଥ ଗଜ ଅଶ୍ୱ ମଣ୍ଡି ।୪୯।
ପାଟଛତ୍ର ଆଲମ୍ବ ମୟୂର ଝାଲ ଛତା
ତିନିକୋଶ ମାତ୍ର ଚଳଇଂ ନ ଯାଇ ଗଣିତା ।୫୦।
ଯମୁନା ନଦୀ ପାର ହୋଇଲେ ସୁବିଧାନେ
ଗୋଡ଼ାଇ ତିଆରନ୍ତି ହରି ବଇନେଜ ବାହନେ ।୫୧।
ଆହୋ ଭୀମସେନ ରାଜ୍ୟକୁ ନ ପଶି ଆଗେ ବରଗିବୁ ଦେଶାଉର
ରାଜାମାନନ୍ତ ବାରତା କରିବେ ପଶ୍ଚିମେ ବିଜୟେ ବୃକୋଦର ।୫୨।
ଜରାସନ୍ଧକୁ ବଧିବଂ କଲୁ ପଶ୍ଚିମ ଦିଗେ
ରାଜାମାନେ ତୋତେ ଜାଣି ଅଛନ୍ତି ଭୂଅଭାଗେ ।୫୩।

---

୫୩।୨ ସମସ୍ତ ରାଜା ସାଧ ହୋଇବେ ଅତିବେଗେ । (ଘ,ଠ)

ନଅ ଦିବସକୁ ତୁମ୍ଭର ସମସ୍ତ କରିବ ବରଣ
ପଞ୍ଚାଶସହସ୍ର ରାଜା ସାଧିକରି ବେଗେ ଆଣ ।୫୪।
ମକର ମାସ ଶୁକଳ ପକ୍ଷ ଅର୍କବାର ରେବତୀ
ସେଦିନ ଯାଗ ହେବଟି ପ୍ରଥମ ଆହୁତି ।୫୫।
ରାଜାନ୍ତ ଘେନି ଆସିବୁଂ ନଅ ଯେ ଦିବସେ
ନୋହିଲେ ଚନ୍ଦ୍ରମାରି ଶିର ଛେଦିବ ଯୁଧିଷ୍ଠି ଦେବଙ୍କ ଆଦେଶେ ।୫୬।

ଆହେ। ଭୀମ ଦୁଇଗୁଣା ପାଞ୍ଚସହସ୍ର ନୃପତି
ଯେତିହାନ୍ତ ସଭାରେ ଗଣିତା ଆଣି ଦେବୁଟି ସତ୍ତ୍ୱରିତ ।୫୭।
ଭୀମସେନକଇଂ ଆଜ୍ଞାଂ ଦେଇଣ ଅଚ୍ୟୁତ
ହସ୍ତିନାପୁରେ ଯାଇଂ ବିଜୟେ ଜଗନ୍ନାଥ ।୫୮।
ଇନ୍ଦ୍ରପ୍ରସ୍ଥେ ଯେ ବିଜୟେ ଦେବ ଦଇତାରି
ଅର୍ଜୁନକୁ ସନ୍ନିଧେ ହକାରି ବଚନ ଅବଧାରି ।୫୯।

ଆହେ। ଉତ୍ତରଦିଗେ ଗୃଳଶ ସହସ୍ର ରାଏ
ଦଣ୍ଡିଘେନି ଉତ୍ତରକୁ ବିଜୟେ କରି ଧନୁର୍ଜୟେ ।୬୦।
ରାଜାନ୍ତ ନିମନ୍ତ୍ରଣ କରି ହୋ କରିଟୀ
ଯେତିହେତେନିକ ଆଜ୍ଞାଂଦିଲେ ଧର୍ମରାଜା ଯୁଧିଷ୍ଠି ।୬୧।
ରାଜାମାନଂକରି ଯେତେକ ସଇନି
ସମ୍ଭରେ ଆସିବେ ଦେଖା ଦରଶନି ଧନ ଘେନି ।୬୨।
ଯଦ୍ୟପି ରାଜାଏ ତୋତେ ହୋଇବେ ଦୋଷକାରୀ
କାର୍ଯ୍ୟର ନିମନ୍ତେ ତାହାନ୍ତ ଦୋଷ ଯେ ନ ଧରି ।୬୩।
ଅନେକ ଦୋଷ ଯେବେ କରିବେ ନରପତି
ସନ୍ୟସେନା ମାରିବ ରାଜାନ୍ତ ଆଣିବ ନିମନ୍ତ ।୬୪।
ଅକ୍ଷୌହିଣୀତେକ ରଥ ବେନି ଅକ୍ଷୌହିଣୀ ହାଥୀ
ପାଞ୍ଚ ଅକ୍ଷୌହିଣୀ ଅଶ୍ୱ ବେନିକୋଟି ପାଦାନ୍ତ ।୬୫।

---

୫୪।୨ ଆହୁତିରେ ପକାନ୍ତା ଜାଗ କଲ୍ପ ତୁ ରକ୍ଷଣ । (ଘ,ଠ,ଞ)
୫୯।୨ ଅବଧାରି, ଅବଧାରି ଉଭୟ ଲେଖା ଦେଖାଯାଏ ।
୬୪।୨ ସନ୍ୟ ସେ ନ ମାରବୁ ରାଜାନ୍ତ ଆଣିବୁ ନିମନ୍ତି । (ଛ,ଟ)

ସହସ୍ରେକ ପାଟଛତ୍ର ଆଲମ୍ବ ବେନିଲକ୍ଷ
ଉଦଣ୍ଡ ଲକ୍ଷେକ ମୟୂର ଝାଲି ବେନିଲକ୍ଷ ।୬୬।
ବେନିଲକ୍ଷ ଶଙ୍ଖ ବୀରତୂର ବଜ୍ରଘୋଷ ଦାଉଣ୍ଡି
ଅଷ୍ଟରତ୍ନେ ଆଭରଣ ରଥ ଗଜ ଅଶ୍ୱନ୍ତ ମଣ୍ଡି ।୬୭।
ବଧିବାବନ ସୁମର ଚଳ ହୋ ଧନୁର୍ଜୟେ
ସର୍ବ ମଙ୍ଗଳ ମାଡାଙ୍ଗୀ ହୃଦରେ କର ଲୟେ ।୬୮।
ଆହୋ ନଉଦ୍ଧବସକୁ କଣ୍ଟି ସବୁନ୍ତ
ମହାଯାଗ ହୋଇବ ମକର ଶୁକଳ ପକ୍ଷ ଦଶମୀ ଅର୍କବାର ନକ୍ଷତ୍ର
ରେବତୀ ।୬୯।
ସେହିଦିନ ରାଜାମାନନ୍ତ କରାଇବୁ ଦର୍ଶନ
କ୍ଷତ୍ରିୟେ ଜଗଜ୍ଜିତା ତୁ ପାର୍ଥିବ ଫାଲଗୁନ୍ୟ ।୭୦।
କାର୍ତ୍ତିକ ଶୁକଳ ପକ୍ଷ ପଣ୍ଡିତବାର ଚଉଠୀ
ମୂଳା ନକ୍ଷତ୍ରେ ଅନୁକୂଳ କଳ୍କ କଷ୍ଟୀ ।୭୧।
ଆହୋ ଉତ୍ତର କୋଶଳ ରାଜ୍ୟେ ଅଛନ୍ତି ବଡ ଦୁଷ୍ଟ
ସେ ରାଜାର ନାମ ଯେ ଅଟଇ ଯମାଗୋଷ୍ଠ ।୭୨।
ଯମର ବୋଲେ ସେ ଯେ ପୃଥୀକି ଅଟଇ ଅଧିକାରୀ
ତପରେ ତୋଷିଲା ସେ ଗଗନବେହାରୀ ।୭୩।
କିହ୍ୱଣ ପୋଛଇ ସେ ଯେତେକ ନାମ ଧରି
ବେନିଖଣ୍ଡେ ଛୁଡଇ ଯେହ୍ନେ ଅସିଧାରେ ଛେଦନ କରି ।୭୪।
କେମନ୍ତ କରି ପଶିବୁ ବାବୁ ତାହାର ଭୁବନେ
ତାହାକଇଂ ଜିଣିଲେ ସାଧ ହୋଇବେ ଆଉର ରାଜାମାନେ ।୭୫।
କ୍ଷତ୍ରିୟେ ପଣେ ତୁ ଯେ ଅଟୁ ଜଗତ ଜନେ ଜିତା
ମୁହିଂ ଅର୍ଜୁନ ତୋତେ ହୋ କସ ତଆରନ୍ତା ।୭୬।

---

୭୩।୧ ପ୍ରାଗ ଦେଶରେ ସେ ଯେ ଅଟଇ ଅଧିକାରୀ । (ଖ୍ର ଘ,ଙ,ଠ)

୭୫ । ବଶ୍ୟଆସୀ (ସମାଧାନ) କରଣ ତାକୁ ବୋଲିବ ବଚନ
ତାହାକଇଂ ଜିଣିଲେ ବଶ ହୋଇବେ ରାଜାମାନ । (ଚ,ଟ)

୭୫।୨ ଆଉର—ଅନ୍ୟ ।

ବିଘ୍ନରାଜ ସୁମରି ତୁ ହୋ କର ଅନକୂଳ
ଚଳ ହୋ ଧନୁର୍ଜୟେ ମାହେନ୍ଦ୍ର ଲଗ୍ନ ବେଳ ।୭୭।
ନାରାୟଣଂକ ଆଜ୍ଞାଂୟେ ଶୁଭଯୋଗ ହେଜି
ଚଳଇ ପାଣ୍ଡବ ଯେ ଅଭୟେ ଫାଲଗୁନି ।୭୮।
ସହସ୍ରେକ ବୀରତୂର ମୃଦଙ୍ଗ ଝମକ ଭେରୀ ବାଜେ
ଉତ୍ତର ଦିଗ ପ୍ରଚଣ୍ଡେ ଅର୍ଜୁନ ଦିଗବିଜେ ।୭୯।
ନନ୍ଦିଘୋଷ ରଥ ଜଗନ୍ନାଥ ସ୍ୱାମୀ ସାଜ
ବାହୁଣ ଅଶ୍ୱ ଯେ ଯୋଚିଲି ଗୃଣବାଜୀ ।୮୦।
ଖେପନ୍ତି ଅଶ୍ୱ ଯେହ୍ନେ ଗଗନେ ଖଗଇନ୍ଦ୍ର
ଆକାଶେ ଥାଇ ଦେଖିଲେ ଯେ ଦେବ ଅସକନ୍ଦ ।୮୧।
ମାତଳୀକି ରାଇଣ ବୋଇଲେ ସହସ୍ରାକ୍ଷ
ବସନ୍ତ ସାରଥି ଯେ ଅଟଇ ତୋର ବହ୍ନି ।୮୨।
ତାହାକଇଂ ରାଇ ଆଜ୍ଞାଂ ଦିଅ ତୁ ହୋ ପୁଣି
ସେହୁ ରଥେ ଯାଇଂ ବାହୁ ବୀର ଫାଲଗୁନି ।୮୩।
ତାହାକଇଂ ରାଇ ଆଜ୍ଞାଂ ଦେଲେକ ସୁରପତି
ଦେବରାଜା ବଚନେ ସେ ବାସବର ନାତି ।୮୪।
ଆଜ୍ଞାଂ ହେଜି ଚଳିଲା ସେ ବସନ୍ତ ସାରଥି
ଅନେକ ହରଷ ଯେ ହୋଇଲା ତାର ମତି ।୮୫।
ମକରନ୍ଦ ବନେ ଯେ ତ୍ରିବେଣୀ ବଟ ତଳେ
ଅର୍ଜୁନଙ୍କୁ ଭେଟିଲା ସେ ମାତଳୀର ବାଳେ ।୮୬।
ଦେଖିଲା ଧନୁର୍ଜୟେ ଯେ ବସନ୍ତ ସାରଥି
ରଥ ତେଜ ପୂଜାକଲା ବତିସବୀର୍ଯ୍ୟର ନାତି ।୮୭।

---

୮୨।୨ "ବସନ୍ତ ସାରଥି ଯେ ଅଟଇ ତୋର ବହ୍ନି"—ପାଠ ପରେ 'ଠ' ପୋଥିରେ ଭିନ୍ନ ପାଠ—
ପିତାଠାରୁ ଆଜ୍ଞାଂ ପାଇ ମାତଳି ସନ୍ତତି
ବେଗେ ମର୍ତ୍ତ୍ୟକୁ ଅଇଲା ବସନ୍ତ ସାରଥି ।

ବାବୁ ବାହା ତୁ ରହୁବର ପବନ ଆଘାତେ
ନଉ ଦିବସେ ଚଉଶ ସହସ୍ର ରାଜା ସାଧ ହୋଇବେ ଯେମନ୍ତେ ।୮୮।
ଯୁଧିଷ୍ଠିର ସନ୍ନିଧେ ପ୍ରବେଶ ନନ୍ଦବାଳ
ସନ୍ନିଧେ ହକାର ଆଜ୍ଞାଂ ଦିଲେକ ନକୁଳ ।୮୯।
ତୁ ହୋ ନକୁଳ ଯାଅସି ଦକ୍ଷିଣ ଦିଗେ
ଯେତୁକଗୁଣା ସାତ ସହସ୍ର ରାଜାନ୍ତ ନିମନ୍ତି ଘେନି ଆସିବୁ ବେଗେ ।୯୦।
ରାଜାନ୍ତ ଅଣାଇବୁ ନଉ ଦିବସର ମଧେ
ରାଜାନ୍ତ ନ ମାରବୁ ତୁ ସନ୍ୟ ମାରବୁ ଯୁଦ୍ଧେ ।୯୧।
ଯେ ଅବା ଦୁଷ୍ଟର ତେତେ ହୋଇବ ଦଣ୍ଡଧାରୀ
ସନ୍ୟ ବଧ କର ସେ ରାଜାନ୍ତ ଆଣିବୁ ବନ୍ଦୀ କର ।୯୨।
ଯଦ୍ୟପି ବଧ କରବୁ ଯେଉଂଣ ରାଜାକୁ
ରାଜସୂୟ ଯାଗ ନୋହିବଟି ନିରାଧାର କହିଲଇଂ ତୁକୁ ।୯୩।
ଦକ୍ଷିଣ କୋଶଳ ରାଜା ଭୂମନୁ ଚନ୍ଦ୍ରବଂଶ
ଦୁଯୋଧନର ଶ୍ୱଶୁର ସେ ତାହାର ଦୋହିତା ନାମ ଭାନୁବଣ ।୯୪।
ପ୍ରଥମେ ପ୍ରବେଶ ହୋଇବୁ ତାହାର ଭୁବନେ
ତାହାକଇଂ ନିମନ୍ତଲେ ଆସନ୍ତଟି ସମସ୍ତ ରାଜାମାନେ ।୯୫।
ଅହିବ୍ରତେକ ରଥ ପାଞ୍ଚ ଅହିବ୍ରତ ହାଥୀ
ଦଶ ଅହିବ୍ରତ ଅଶ୍ୱ ତେରଲକ୍ଷ ପାଦାନ୍ତ ।୯୬।

---

୮୮। "ନଉ ଦିବସେ ଚଉଶ ସହସ୍ର ରାଜା ସାଧ ହୋଇବେ ଯେମନ୍ତେ ।"
ପରେ 'ଞ' ପୋଥିରେ ଅଧିକା ପାଠ—

ବାବୁ ସ୍ନେହ ତୁରଙ୍ଗମ ଘେନଣ ହଗତେ
ନଉଦିନେ ରାଜାମାନ ଆଣିବୁ କେମନ୍ତେ ।
ବସନ୍ତ ସାରଥି ଚଉରଅଶ୍ୱ ଆଣିଥିଲା
ସେ ଅଶ୍ୱମାନନ୍ତ ଅର୍ଜୁନ ରଥରେ ଯୋଚିଲା ।
ସାରଥି ପଣେ ବସିଲ ଅର୍ଜୁନ ରଥରେ
ଦେଖିଣ ହରଷ ହେଲ ଧନଞ୍ଜୟ ବୀରେ ।

୯୧। ରାଜାନ୍ତ ନ ମାରବୁ ରୁ ସନ୍ୟ ନ ମାରବୁ ଯୁଦ୍ଧେ । (ଟ,ଚ)
୯୬। ଦଶଲକ୍ଷ ଅଶ୍ୱ ଯେ ତେରଲକ୍ଷ ପାଦାନ୍ତ । (ଥ,ଟ,ଚ,ଞ)

*

ଲକ୍ଷେକ ପାଟଛନ୍ତ ଯେ ଲକ୍ଷେକ ବାଦ୍ୟକାର
ମାହେନ୍ଦ୍ର ବେଳେ ନକୁଳ ଦକ୍ଷିଣକୁ ବାହାର ।୯୭।
ମାଦ୍ରୀର ତନୟ୍ ତହୁଂ ଚଳଇ ହରଷେ
ମକର ଶୁକଳ ପକ୍ଷ ତ୍ରୟୋଦଶୀର ଦିବସେ ।୯୮।
ସେଦିନ ପ୍ରବେଶ ଆସି ହୋଇଲା ଯାଗସ୍ଥାନେ
ସମ୍ମୁରେ ଆସିବେଟି ଦକ୍ଷିଣ ଦିଗ ରାଜାମାନେ ।୯୯।
ମୋହୋର ମହିମାଂ ତୁ ଜାଣିଅଛୁଂ ନା ଭଲେ
ତହିଁଘାତେ ନାଶ ଯିବୁଟି ନଉ ଦିବସେ ନଇଲେ ।୧୦୦।
ଆପଣେ ଶ୍ରୀଜଗନ୍ନାଥେ ରଥେକ ଦିଲେ ସାଜ
ବାଛୁଣ ଯୋଚଲେ ଯେ ବାରଣ ସ୍ବୁର ବାଜୀ ।୧୦୧।
କାର୍ତ୍ତିକମାସ ଶୁକଳ ପକ୍ଷ ତ୍ରୟୋଦଶୀ ଚନ୍ଦ୍ରବାର
ଅଶ୍ୱିନୀ ନକ୍ଷତ୍ର ବେଳ ଯେ ଦେଢ ପ୍ରହର ।୧୦୨।
ବାଣିଜ୍ୟ ନାମେ କରଣ ବରିଯ୍ଯାନ ନାମେ ଯୋଗ
ଶୁଭ ଅନକୂଳେ ବିଜୟେ ନକୁଳ ଦକ୍ଷିଣ ଦିଗଭାଗ ।୧୦୩।
ଅନେକ ବ୍ରାହ୍ମଣ ତହିଂ କରନ୍ତ ବେଦଧ୍ୱନି
ମଙ୍ଗଳ ହୁଳହୁଳ ଦିଅନ୍ତ ଯେ ସକଳ ସୁଲଭ କାମେମି ।୧୦୪।
ମାଦ୍ରୀରନନ୍ଦନ ଯେ ଦକ୍ଷିଣ ଦିଗେ ବିଜେ
ବାରୁଣାବନ୍ତ ଯାସ୍ୱେ ଆସନ୍ତ ଦେବରାଜେ ।୧୦୫।
ସକଳ ସୁବିଧାନେ ନକୁଳକୁ ତିଆରି
ଖଗେଶ୍ୱର ବାହାନେ ବାହୁଡନ୍ତ ଦେବହରି ।୧୦୬।
ସହଦେବକଇଂ ସନ୍ନିଧେ ବସାଇ ଅଚ୍ୟୁତ
ପୂର୍ବଦିଗକଇଂ ଗାତୀ ଦିଲେକ ଜଗନ୍ନାଥ ।୧୦୭।
ମନ୍ତ୍ରୀ ଚୂଡ଼ାମଣି ସକଳ ଗୁଣେ କୁଶଳ
ମାହେନ୍ଦ୍ର ବେଳ ଘେନି ତୁ ଅଇଶାନ୍ୟ ଭାଗେ ଚଳ ।୧୦୮।
ସହସ୍ରେକ ରଥ ଯେ ଦୁଇସହସ୍ର ମତ୍ତ ନାଗ
ସାତଲକ୍ଷ ପାଦାନ୍ତ ଯେ ଲକ୍ଷେକ ତୁରଙ୍ଗ ।୧୦୯।

---

୧୦୦।୧ ମୋହୋର ନିସ୍ବମ ତୁ ଜାଣିଥାଅ ଭଲେ । (ଟ,ଥ,କ)
୧୦୯।୨ ସ୍ୱେଖାର ବାରସ ଯେ ଲକ୍ଷେ ତୁରଙ୍ଗ । (ଙ,ଖ,ଗ,ଛ)

ଢମକ ନିଶାଣ ଆଦ୍ୟ ବହୁତ ବାରତୂର ବାଜେ
ଶୁଭଯୋଗେ ସହଦେବ ପୂର୍ବଦିଗକୁଇଁ ବିଜେ ।୧୧୦।
ଜଗନ୍ନାଥେ ବୋଇଲେ ଶୁଣ ହୋ ସହଦେବ ମହାମନ୍ତ୍ରୀ
ପ୍ରେକ୍ଷିଣା ଷଷ୍ଠସହସ୍ର ପୂର୍ବ ଦିଗେଣ ନୃପତି ।୧୧୧।
ଧାର୍ମିକ ବିବେକ ସେ ପଣ୍ଡିତ ସର୍ବରାଜା
ତୋତେ ଦେଖି ସମସ୍ତେହେଁ କରିବେ ପାଦପୂଜା ।୧୧୨।
ରାଜାମାନେ ଆସନ୍ତି ଯେତେକେ ବୁଦ୍ଧିବଳେ
ପ୍ରୀତିଭାବ ଉପୁଜାଇ ଆଣିବୁଂ କୁତୂହଳେ ।୧୧୩।
ଚଳଇ ସହଦେବ ନାରାୟଣଂକ ବଚନେ
ପୂର୍ବଦିଗକୁଇଁ ବିଜେ ରାଜାନ୍ତ ନିମନ୍ତ୍ରଣେ ।୧୧୪।
ଚତୁରଦିଗକୁଇଁ ଚର ପାଣ୍ଡବନ୍ତ ପଠିଆଇ
ଅନେକ ସାନନ୍ଦ ଯେ ହୋଇଲେ ଯଦୁସାଇଁ ।୧୧୫।
ଯୁଧିଷ୍ଠିରଂକ ଆଗ୍ରମୁରେ ଯେ କହନ୍ତି ଜନାର୍ଦ୍ଦନ
ନଉଦିବସେ ଆସିବେ ସମସ୍ତ ରାଜାଗଣ ।୧୧୬।
ଯୁଧିଷ୍ଠିର ବୋଇଲେ ବାବୁ ଶୁଣିମା ଅନନ୍ତ
ରାଜାନ୍ତ ବିଶ୍ରାମିବାକୁ ଠାବ ହୋଇବ କେମନ୍ତ ।୧୧୭।
ଖର କାକର କୁହୁଡ ଶୀତ ଯେ ଖାଇଲେ
ପିତାର ପାତକ ଯିବ କି ଅପଖ୍ୟାତି ଉପୁଜିଲେ ।୧୧୮।
ଯୁଧିଷ୍ଠିର ଦେବଂକୁ ସେ ଘେନିଣ ଦେବରାଜେ
ଦୁର୍ଯୋଧନ ସହିତେ ଇନ୍ଦ୍ରପ୍ରଶସ୍ତେ କଲେ ବିଜେ ।୧୧୯।
ପ୍ରବେଶ ନାରାୟଣ ଯମୁନାନଦୀ କୂଳେ
ଘଟଣ ଭୁବନମାନ ସ୍ୱାମୀ ସେ ଦେଖାଇଲେ କୁତୂହଳେ ।୧୨୦।
ଘଟଣ ବିଜ୍ଞାଣୀମାନେ ଲକ୍ଷ ଲକ୍ଷ ହୋଇଛନ୍ତି ଲାଗି
ଦିବାରାତ୍ରେ ଅପସର ନାହିଂ ଆରୋପନ୍ତି ବେଗି ବେଗି ।୧୨୧।
କାଇବ୍ରତ ନୃପତି ସେ ନାବେ ଦାରୁନ୍ତ ପୂରେଇ
ପାଷାଣ ସହିତେ ଯମୁନା କୂଳେ ଉତ୍ତରୁଛନ୍ତି ନେଇ ।୧୨୨।

---

୧୧୮। ପିତାର ଦୋଷ ନ ଗୁଡ଼ବ ଅପଖ୍ୟାତି ଉପୁଜିଲେ । (ଟ,ଞ୍ଚ)
୧୨୧। ଦିବାରାତ୍ରେ ଅବଶ୍ରାମେ ନର୍ମାଣନ୍ତି ବେଗି । (ଞ୍ଚ,ଠ)

ଅଶିଲକ୍ଷ ଯୋଦ୍ଧା ଯେବେ କରନ୍ତି ଆଧିପତ୍ତି
ବାରୁଣାବନ୍ତ ଭୁବନେ ଆଣି ବନ୍ଧଣ ପକାନ୍ତି ।୧୨୩।
ସାତଲକ୍ଷ ପଦର ମେବଛ ବନ୍ଧାଣୀ
ନବର ସଙ୍ଗ୍ରାମାନ ଘଟଣ କବାଣି ।୧୨୪।
ଦେଖିଣ ଆଶ୍ରିଜ ହେଲ ରଜା ମାନଗୋବନ୍ଦ
ଯୁଦ୍ଧେଷ୍ଟି ଦେବ ଦେଖିଣ ପରମ ସାନନ୍ଦ ।୧୨୫।
କର୍ଣ୍ଣ ଶଲ୍ୟ ଶକୁନିଂକ ଦେଖି ନ ଫୁରଇ କଛୁ
ଦେବଂକୁ ଅଶକ୍ୟ ଯେତେ ଭୁଆଣ ହୋଇଅଛୁ ।୧୨୬।
ତରଣି ମେବଛ ସୂପକାର ଦ୍ୱଜ ଶ୍ୱଦ୍ୟମାନ
ସେ ଘଟଣକାର୍ଯ୍ୟମାନନ୍ତ ରନ୍ଧ ଦଅନ୍ତି ଭୋଜନ ।୧୨୭।
ଖାଦ୍ୟ ବଗ୍ଧର ଯେ କରନ୍ତି ତାହା ଗୃହଂ
ଯେତେଥକୁ ତଣ୍ଡୋଲ ମେଞ୍ଜନ ହର ଫଟଥିଲୁ କାହ୍ନଂ ।୧୨୮।
ଜୟତୁ ଜଗମୋହନ ସାତୁକ୍ୟ ସିଦ୍ଧବୁଦ୍ଧି
ଜୟତୁ ଜଗମୋହନ ଉପାୟ ବାରନଧି ।୧୨୯।
ଜୟତୁ ଜଗମୋହନ ସଯୂଳ ଜନ ଚିନ୍ତା
ଜୟତୁ ଜଗମୋହନ ସଂସାର ଉଦ୍ଧାରନ୍ତା ।୧୩୦।
ଜୟତୁ ଜଗମୋହନ ସର୍ବ ସିଦ୍ଧ ଯୋଗୀ
ଜୟତୁ ଜଗମୋହନ ଏଇଲୋକ ଜନ ଭାବ ।୧୩୧।
ଜୟତୁ ଜଗମୋହନ ସକଳ ଜନ ଭାବେ
ଜୟତୁ ଜଗମୋହନ ଉପାୟ ସର୍ବଠାବେ ।୧୩୨।
ଜୟତୁ ପରମେଶ୍ୱର ନିରାକୁଳ ନିରଞ୍ଜନ
ଜୟତୁ ପରମେଶ୍ୱର ଅଭୟେ କୁଳଶୂନ୍ୟ ।୧୩୩।
ଜୟତୁ ପରମେଶ୍ୱର କୃତାନ୍ତେକ ଦର୍ପ ଧ୍ୱଂସା
ଜୟତୁ ପରମେଶ୍ୱର ଜଗତ ଜନ ଚିନ୍ତା ମନୀଷା ।୧୩୪।
ଜୟତୁ ପରମେଶ୍ୱର ପର ଦୁଖେ ଦୁଖୀ
ଜୟତୁ ପରମେଶ୍ୱର ଆଦ୍ୟଅନ୍ତ ମଧ୍ୟ ସାକ୍ଷୀ ।୧୩୫।

---

୧୩୦।୨ ଜୟତୁ ଜଗମୋହନ ସଯୂଳ ବୋଧନ୍ତା । (ଚ,ଛ)

ଜୟତୁ ପରମେଶ୍ୱର ଯୋଗୀଜନ ହୃଦେ
ଜୟତୁ ପରମେଶ୍ୱର ପରମ ସାନନ୍ଦେ ।୧୩୬।
ଜୟତୁ ପରମେଶ୍ୱର କେଶବ ମୂରତି
ସର୍ବଜନ ଚିନ୍ତାମଣି ନାଥ ଫେଡ଼ ମୋହୋର ଦୁର୍ଗତି ।୧୩୭।
ଯାହାକଇଂ ପ୍ରସନ୍ନ ସ୍ୱାମୀ ଫେଡ଼ୁ ସର୍ବ ଚିନ୍ତା
ଅନାଥ ଜନକୁ ନାଥ ଗତି ହଅନ୍ତା ।୧୩୮।
କଅଛ ପ୍ରସନ୍ନ ସ୍ୱାମୀ ହୋଉ ତୁ ଯାହାକୁ
ଅଭଗତେ ଠାବ ହଲୁ ସ୍ୱାମୀ ତୁ ମାନଧାତାକୁ ।୧୩୯।
ତୁ ଦେବ ତଇଲୋକ୍ୟ ଭୁବନକୁ ଚିନ୍ତାମଣି
ନାଶକର ଦଣ୍ଡ ଦେବ ଖଣ୍ଡ ଚକ୍ରପାଣି ।୧୪୦।
ଅସୁର ଦର୍ପ ନିଶୋଧନ ଜୟ ତୁ ହୃଷିକେଶି
ଶୂଦ୍ରମୁନ ସାରୋଳ ଦାସକୁ ମୁକତି ଗତି ଦେସି ।୧୪୧—୧୬୮୫।

———

# ରାଜସୂୟ ଯଜ୍ଞ

## ଯଜ୍ଞଶାଳା ଓ ସଭାଗୃହ, ରାଜାମାନଙ୍କ ସହ ସୈନ୍ୟ ଗଜ ଅଶ୍ୱଙ୍କର ଗୃହ ନିର୍ମାଣ ଓ ରାଜସୂୟ ଯଜ୍ଞର ଆୟୋଜନ

ଶୁଣ ହୋ ଯୋଗେଶ୍ୱର ବଦପୃନ୍ତ ବ୍ରହ୍ମବେତ୍ତା
ନାରାୟଣଂକ ବଚନେ ସେ ସକଳ ନିର୍ମିତା ।୧।
ଗଙ୍ଗା ଯମୁନା ଦୁଇ ନଦୀର ମଧ୍ୟସ୍ଥାନେ
ମହାକ୍ଷେତ୍ର ଭୂମି ହୋଏ ଦ୍ୱାଦଶ ଯୋଜନେ ।୨।
ଯେଉଥିର ଚଉଦିଗେ ବେଢ଼ି ଚଉଆଡ଼େ
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣାବନ୍ତ କଗୁଡ଼େ ।୩।
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଦୁର୍ଗମ ଗିରି ବସି
ଯୁଧିଷ୍ଠି ଦେବ ସୁମରଲେ ବ୍ୟାସ ମହର୍ଷି ।୪।

———

୧୪୦।୨ ନାଶକର ପାଣ୍ଡି ରୁ ଖଣ୍ଡନ୍ତା ଚକ୍ରପାଣି । (ଘ,ଙ,ଡ)

ଧ୍ୟାନେଣ ଜାଣିଲେ ସେ ପଣ୍ଡିତ ଭଗ୍ୟଂବାସୀ
ମନରେ ଉଦବେଗ ହୋଇଲେ ବ୍ୟାସ ମହର୍ଷି ।୫।
ପରାଶରଂକ ନନ୍ଦନ ଜାଣିଲେ ତଲ୍ଲୟେ
ଷାଠିଏ ସହସ୍ର ଶିଷ୍ୟନ୍ତ ଘେନି ପ୍ରବେଶ ସତ୍ୟବତୀର ତନୟେ ।୬।
ଜଇମିନି ଶୁକମୁନି ବଇଶମ୍ପାୟନ
ଅଙ୍ଗିର ବାଲମୀକ ଉଦ୍ଦାଳକ ତପୋଧନ ।୭।
ଏହିମାନଂକର ମୂଳେ ଯେ ଷାଠିଏ ସହସ୍ର ଶିଷି
ତାହାନ୍ତ ଘେନି ପ୍ରବେଶ ହୋଇଲେ ବ୍ୟାସ ମହର୍ଷି ।୮।
ଇନ୍ଦ୍ରପ୍ରସ୍ଥେ ରାଜୟେ ପାଣ୍ଡବେ କଉରବେ
ଆସ୍ଥାନେ ଦ୍ରୋଣ କର୍ଣ୍ଣ ବିଦୁର ଶକୁନି ଗାଙ୍ଗବେ ।୯।
ମହା ସମ୍ଭବେ ସେ ଆସ୍ଥାନ ଗହଳ
ପ୍ରବେଶ ହୋଇଲେ ଆସି ସତ୍ୟବତୀର ବାଳ ।୧୦।
ଏହିମାନେକ ସମୟେ ରାଜୟେ ବ୍ରହ୍ମବେତ୍ତା
ଆସ୍ଥାନ ତେଜ୍ୟା କରି ଉଠିଲେ ଧର୍ମପୁତ୍ରା ।୧୧।
ଶ୍ରୀକରେ ରତ୍ନଝରି ଘେନିଣ ଧର୍ମରାଜା
ବ୍ୟାସଂକର ପଦ୍ମପାଦେ କଲେ ଦିବ୍ୟପୂଜା ।୧୨।
ସମସ୍ତ କୁଶଳ ପୁଚ୍ଛା କରନ୍ତ ତପୋନିଷ୍ଠି
ସର୍ବ କୁଶଳ ବୋଲି ବୋଲନ୍ତ ଧର୍ମରାଜା ଯୁଧିଷ୍ଠି ।୧୩।
ପଚ୍ଚରନ୍ତ ଧର୍ମସୁତ ଶୁଣିମା ବ୍ରହ୍ମର୍ଷି
ମମପିତା ପଣ୍ଡୁ ହୋଇଲେ ବ୍ରହ୍ମହତ୍ୟା ଦୋଷୀ ।୧୪।
ରାଜୁସି ଯଗ୍ୟଂକୁ ଆଗ୍ୟାଂ ଦିଲେକ ଶ୍ରୀପତି
ଯାଇନ୍ତ ଘେନିଣ ମୁଂ ଯେ ତୀର୍ଥ କରି ଯାନ୍ତି ।୧୫।
ରାଜୁସି ଯଗ୍ୟଂ ବୋଲି ସର୍ବ ଯେ କେମନ୍ତ
ମୋତେ ଅଶକ୍ୟ ଅଟଇ ଏ ଅଶ୍ରୁତ ଅଦୃଷ୍ଟି ଯୁଗତ ।୧୬।
ବ୍ୟାସେ ବୋଇଲେ ଯାହାକଇଂ ସଂପକ୍ଷ ପରମେଶ୍ୱର
ବାବୁ ରାଜୁସି ଯଗ୍ୟଂ ତୋତେ କେତେକ ମାତର ।୧୭।
ଆହୋ ବାବୁ ଯେତେବେଳୁଂ ବାଧ ଗଲା ଜାରା
ଲକ୍ଷେକ ନୃପତି ତୋତେ ହୋଇଲେ ଭୃତ୍ୟ ପରା ।୧୮।

ଦେବତାମାନଂକୁ ତୁ ସୁମରବୁ ଯେତେବେଳେ
ଆସି ପ୍ରବେଶ ହୋଇବେ ସମସ୍ତ ଦିଗପାଳେ ।୧୯।
ଖାଣ୍ଡବ ବନୁଂ ଖାଇଣ ସମସ୍ତ ମଜ୍ଜଷଧି
ଅଗ୍ନିଦେବତାର ଅର୍ଜୁନ ଖଣ୍ଡିଲା ଲୁଦୁବୁଦୁ ବ୍ୟାଧି ।୨୦।
ତେଣୁ ଅଗ୍ନିଦେବତାଙ୍କେ ହୋଇଛନ୍ତି ପ୍ରସନ୍ନ
ପୁଷ୍କରଦେବତା ତୋତେ ହୋଇଛନ୍ତି ସପକ୍ଷ ବର୍ଦ୍ଧମାନ ।୨୧।
ଆବର ଯାହାକୁ ସପକ୍ଷଟି ଦେବ ନାରାୟଣ
ରାଜସୂୟ ଯଜ୍ଞଂ ତୁହୋ କରସି ଆରୋପଣ ।୨୨।
ଯଜ୍ଞଂଶାଳ ଭୂମି ନେଇ ଦେଖାଇଲେ ଦେବ ହରି
ମକର ତଳ ବୁଣାଇଲେ ଶୂଳେ ଭୂମି ଚିରି ।୨୩।
ଯଜ୍ଞଂକୁ ସଞ୍ଜା ଯେ କରନ୍ତି ତହିଂ ବ୍ରହ୍ମବେଦୀ
ସମିଧ ଘୃତ ଯବ ତଳ କରନ୍ତି ନିର୍ମିତା ।୨୪।
ରାଜାମାନଂକୁ ନବର ଯେ ଅଶ୍ୱଶାଳ ଗଜଶାଳ
ଭାଗ ଭାଗ କରି ନେଇ ପାତିଲେ ତହିଂ ନଳ ।୨୫।
ଯେତେକବଂଶ ଦଣ୍ଡେ ପାତିଲେ ନଳକାଠି
ପାଞ୍ଚନଳ ଆୟତନ ଯେତେକ ବଖରା ଗୋଟି ।୨୬।
ବଶାଶତେ ବଖରାଯେ ଘରେକ ନିର୍ବାଣି
କାନ୍ଥଗୃହ ଆଦିକରି ସବୁ ପାଷାଣେ ଘଟଣ ଜାଣି ।୨୭।
ଯମୁନା ନଦୀର ଯେ ଦକ୍ଷିଣ ଭାଗ କୂଳେ
ଯେତେକ ଆୟେତନ ଉଠିଲା ଯାଗଶାଳେ ।୨୮।
ଯେମନ୍ତେ ଅଶିପଦ୍ମ ନଉ ସାଗର ବଶାଶତେ ମର୍ତ୍ତ୍ୟ
ଯେତେକ ଯଜ୍ଞଂଶାଳ ହୋଇଲା ନିର୍ମିତ ।୨୯।

---

୧୯। ରାଜାମାନଂକୁ ତୁ ସୁମରବୁ ଯେତେବେଳେ
　　ଆସି ପ୍ରବେଶ ହୋଇବେ ସମସ୍ତ ଭୂଅପାଳେ । (ଘ,ଢ଼,ଠ,ଞ)
୨୦। ଅଗ୍ନିଦେବତାର ଅର୍ଜୁନ ଖଣ୍ଡିଲ ମହାଅଗ୍ନି ବ୍ୟାଧି । (ଥ,ଝ)
୨୨। ମହାଛତ୍ର ଭୂମି ହୋଇଛେ ଦ୍ୱାଦଶ ଯୋଜନେ । (ଢ଼,ଝ,କ,ଚ,ଙ)

ଅଞ୍ଜନ ନାମେଣ ମଧୁବନର ବିଶ୍ୱକର୍ମା
ତାହାର ଉପର ବଂଶେ ଗଞ୍ଜିଲେ ସଭା ସୁଧର୍ମା ।୩୦।
ତାହାନ୍ତ ଆଜ୍ଞାଂ ଯେ ହେଲେ ବ୍ୟାସ ମହାପଣ୍ଡିତ
ତୋହୋର ଉପର ବଂଶେ ଯେ ତ୍ରେତୟୁଗେ ସଭା ନିର୍ମିତ ।୩୧।
ଆହୋ ଯେ ଆସ୍ଥାନେ ବଜେ ଲକ୍ଷେକ ରାଏ
ସୁଧର୍ମା ସଭା ସାରକ୍ଷେ ଘଟଣ କରିବୁ ଗ୍ରହୀ ମଣ୍ଡୋପ ଗୋଟାଏ ।୩୨।
ଅଞ୍ଜନ ବୋଇଲା ମୋତେ ଆଜ୍ଞାଂ ହେଲେକ ଚକ୍ରପାଣି
ଅଳକା ଭୁବନ ସାଦୃଶେ ଗ୍ରହୀ ମଣ୍ଡୋପ ନିର୍ବାଣି ।୩୩।
ନବରମାନ ଘଟଣ କରିବଇଂ ଯେ ସ୍ଥାନେ
ଦୂତୀ ଅମର ଜାଣି ଦେଖିବେ ରାଜାମାନେ ।୩୪।
ଆଜ୍ଞାଂ ପ୍ରମାଣେ ତହିଂ ଲାଗିଲା ଅଞ୍ଜନ
କାଠ ପାଷାଣ ଆଦି କରି ଯେ କରନ୍ତ ସର୍ଜନ ।୩୫।
ଆହୋ ଚଉଷଠୀ କାଠିଏ ଯେ ବଖରାଏ କରି
ଯେମନ୍ତେ ଯେକଶାଳ ଗୋଟି ବଖରା ସହସ୍ର ଗ୍ରହ ।୩୬।
ଯେମନ୍ତେ ସହସ୍ରେ ପାରିଦ୍ଧ ଘର ଉଠିଲା ବାରୁଣାବନ୍ତେ
ସହସ୍ରେ ପରିଯୁଧ ଘର ରଂଚିଲା ଇନ୍ଦ୍ରପ୍ରଶସ୍ତେ ।୩୭।
ବିଶାଶତେ ସାଗର ଘର ଯମପ୍ରଶସ୍ତ ଭୁବନେ
ଅଶ୍ୱଶାଳ ଗଜଶାଳ ମାପି ହେଲେ ଜନାର୍ଦ୍ଧନେ ।୩୮।
ପାଟହାଥୀ ପାଟଘୋଡାକୁ ସୁବର୍ଣ୍ଣ ରସାଣ ଶାଳ ସଞ୍ଜି
ଗ୍ରହଲକ୍ଷ ଘର ଲେଖନ ଶକୁନିର ପାଞ୍ଜି ।୩୯।
ଆହୋ ଉଟ ଅଶ୍ୱ ବଇଲ ମର୍ଦ୍ଦନ ବାଦ୍ୟକାର
ଗଙ୍ଗାକୂଳେ ଉଠିଅଛି ଅଶି ସାଗର ଘର ।୪୦।
ଆହୋ ଯେକୋଇଶ କାଠି ବଖରା ଯେକ ବୋଲି
ଯେକ ବଖରକେ ତହିଂ ବସଇ ଯେକ ଚୁଲ୍ଲୀ ।୪୧।
ଯେକା ଚୁଲ୍ଲୀକରେ ଅଷ୍ଟ ଉତ୍ତର ଶତେ ପଖା
ଲକ୍ଷେ ରାଜାର ସନ୍ୟ ଆସିବେ କେ କରିବ ଲେଖା ।୪୨।

---

୪୦।୧ ହୋ ଉଟଶାଳ ଅଶ୍ୱଶାଳ ବଇଲ ବାଦ୍ୟକାର । (ଝ,ଡ,ଞ)

ଆହୋ ଯେ କୋଇଣ ଦଣ୍ଡେ ହୁଏ ଯେ କାଠି ଯେ
ଯେ କୋଇଣ କାଠିରେ ଯେକ ବଖରା ଯେ ।୪୩।
ଯେକ ଘରକେ ଉଠଇ ତହିଁ ବଖରା ଶଯେ
ଅନେକ ଘର ନିର୍ବାଣ ଯେ ହୋଇଲା ସେହି ଠାଯେ ।୪୪।
ଯେମନ୍ତେ ନଉପଦ୍ମ ଅଣିଆଗର ଉଠଇ ଛନ୍ଦଶାଳ
ଛନ୍ଦଶାଳମାନ ହୋଇଲା ଯମୁନା ନଦୀ କୂଳ ।୪୫।
ଯେମନ୍ତେ ବନ୍ତିଶଲକ୍ଷ ଉଠିଲା ଯେ କୁମ୍ଭାରଶାଳମାନ
ମୃତ୍ତିକା ହାଣ୍ଡିମାନ ତହିଁ କରବେ ଘଟଣ ।୪୬।
କଣଯୂଗରୀ ବୋଲି ଯେକଇ ନଦୀଗୋଟି
ମେଖଳାଗଙ୍ଗାଉଂ ସେ ଦକ୍ଷିଣ ଭାଗେ ଫିଟି ।୪୭।
ସେ ନଦୀର ତୀରେ ବିଶାଳଛେ ମେବଳ୍ଛ ଛନ୍ଦଶାଳ
ବ୍ରାହ୍ମଣମାନଂକୁ ସେହି ବଡାଇ ବୃଷାଳ ।୪୮।
ସହସ୍ରେ ଅଷ୍ଟବ୍ରତ ଘର ବାରୁଣାବନ୍ତେ ନିର୍ବାଣି
ଯେତେ ଶାଳ କରବେ ତାମ୍ବର ବନ୍ଧାଣୀ ।୪୯।
ତମ୍ବାର ଯୋଗାଡ଼ମାନ କରବେ ନିର୍ମିତ
ଯେ ବନ୍ଧାଣୀମାନେ ଯେ ଲଗିଛନ୍ତି ପଞ୍ଚାଶ ମଭୁତ ।୫୦।
ପାଞ୍ଚଲକ୍ଷ ଘର ତହିଁ ଉଠଇ ଟିମାଣିଶାଳ
ଲୁହା କର୍ମମାନ ଘଟଣ କରବେ ସକଳ ।୫୧।
ଅସିପଦ୍ମ ଧରା ତହିଁ ତେରଲକ୍ଷ ଘର
ବୁଲନ୍ତି ଶାଣ ଯେ ଅସି କରନ୍ତି ତୀଖଧାର ।୫୨।
ଚଉରାଣୋଇଂ ସହସ୍ର ଘର ଅଛଇ କମକାରଂକ
ସୁବର୍ଣ୍ଣର କମମାନ ଯେ ଅଷ୍ଟରତ୍ନେ ଲେଖି ।୫୩।
ତାଡତୋଡର ଝୁମ୍ପା ସରଲ ବାହୁଟି କଂକଣ
ନେପୂର କଣ୍ଠାଞ୍ଚଳ ହୃଦରେ ଭୂଷଣ ।୫୪।
ମୁକୁଟ କୁଣ୍ଡଳ ତାଡ ବଦ ମୁଦ୍ରି ଗଢି
ଅଷ୍ଟରତ୍ନେ ଖଞ୍ଜିଲେ ଯେମାନ ସର୍ବ ଜଡ ।୫୫।
ପଇଲମ ତାଟିଆ ରତ୍ନହଂସ ଆଦ୍ୟ କର
ପୀଢା ସିଂହାସନ ଖଟୁଲି କମ କର ।୫୬।

*

ସୁବର୍ଣ୍ଣର ନଉତି ଘଟଣେ ନିର୍ବାଣ
ଯେହ୍ନେ ସର୍ଜନା କରନ୍ତି ବଇଶ୍ୟ ଜାତିମାନ ।୫୭।
ଗୃଳଣ ସାଗର ବସଇ ସୁପୁଚ୍ଛି ସୂଚୀକର୍ମ ବନ୍ଧାଣି
ଯେମାନଂକୁ ଅଣି ସାଗର ଘର ନିର୍ବାଣ କଲେ ଦେବ ସ୍ୱାମୀ ।୫୮।
ଶେଯ ମୁଚୁଳ ହଂସୁଳଭୁଳ ସୁପାଣ୍ଡ ଶେଯ
ଯେମାନ ଭିଆଣ ଯେ କରିଲେ ଦେବରାଜ ।୫୯।
ନାନା ଅଷ୍ଟରତ୍ନେ ଖଞ୍ଜିଣି ରତ୍ନକର୍ମିଙ୍କ
ପରିହରଣ ବସ୍ତ୍ର ସୁଠାମ କଲେକ ଖଞ୍ଜାଇ ।୬୦।
ବ୍ୟାସନ୍ତ ଯେମନ୍ତ ସେ ଦେବ ଚକ୍ରପାଣି
ଆଗ୍ୟାଂ ପରମାଣେ ସେ ସମସ୍ତ ନିରବାଣି ।୬୧।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା ଜଇନ୍ତା ପଞ୍ଚୁକଟକ ମାଣ୍ଡ
ଉଠିଲେ ଶାଳମାନେ ନଗ୍ର ପର୍ବତ ଚୂଡ ।୬୨।
ଘଟଣ କମମାନ କଳଣା ନ ଯାଇ ଲେଖା
ରାଜାମାନେ ଆସି ନିହାଇ ଦଅନ୍ତି ଦେଖା ।୬୩।
କାର୍ତ୍ତିକେ ବୁଣିଲେ ତିଳ ଫୁଟିପଡ଼ଇ ତଳେ
ଆପଣେ ଥାଇ ବ୍ୟାସେ ତୋଳାଇଲେ ଯାଗଶାଳେ ।୬୪।
ପଞ୍ଚୁ ରାଜ୍ୟରେ ହୋଯ୍ୟେ ଯେତେକ ଧାନ ସଞ୍ଜା
ତଣ୍ଡୁଳ କରଣ ତାହା ସଞ୍ଚିଲେ ପରଜା ।୬୫।

---

୫୮।୧ ସୁପୁଚ୍ଛି—ଭଲ ମିଶାଇ କରି କାମ କରିବା ।
୫୯।୨ ଯେମାନ ଆଭରଣ କରିଲେ ଯେ ସର୍ବରାଜ । (କ,ଘ)
୬୦। ଖଞ୍ଜିତ ଇନ୍ଦ୍ରନେତର କବାଇ
ପରିହରଣ ସୁସ୍ଥାନ ହେମପଟ୍ରେ ଖଞ୍ଜାଇ । (ଛ)
୬୦।୧ କବାଇ—ସାଞ୍ଜୁ ବା ଆବରଣ ପରିଛଦ ।
୬୫। ଯେତେକ ବୃକ୍ଷେଣ ଯେ ସଚରାଚର ବୃତ୍ତି
ତଣ୍ଡୁଳ କରି ତାହା ସଞ୍ଚିଲେ ପ୍ରଜାପତି । (ଚ,ଝ)
୬୫।୧ ସଞ୍ଜା—ସଙ୍ଖ୍ୟା, ସସନ୍ଧା,

ଦ୍ୱାପରେ ନିର୍ବାଣକଲେ ମାତକେ ଯେତେକବାଟି
ବାଟିକେ ତଣ୍ଡୁଳ ଦେବ ଯେତେକ ଯେ ପଡ଼ନ୍ତି ।୬୬।
ଯେତେସନକ କରି ଭିଆଇଲା ମନ୍ତ୍ରୀ ଶକୁନି
ସାଧୁ ମନ୍ତ୍ରୀ ବୋଲିକରି ପଞ୍ଚୁ ରାଜ୍ୟେ ଉଠିଲାକ ଧ୍ୱନି ।୬୭।
ଅଶିସହସ୍ର ମାପୁଣିଆ ଘେନି ମନ୍ତ୍ରୀ ଯେ ଶକୁନି
ଇନ୍ଦ୍ରପ୍ରସ୍ଥେ ମାପି ବସିଲେ ତଣ୍ଡୁଳମାନ ଘେନି ।୬୮।
ଆନ୍ତୁ କମ କଲେକ ଦଶ ସହସ୍ର ଘର
ତଣ୍ଡୁଳମାନ ତହିଂ ପୂରବନ୍ତି ନିରନ୍ତର ।୬୯।
ଯେତେକ ସଇନ ଲାଗିଛନ୍ତି ବାହ୍ମଣିକାହ୍ମ
ରାନ୍ଧଣା ବଧାନେ ସବୁନ୍ତିହିଂ ନିଯୁକ୍ତ କରି ।୭୦।
ବାହାର ବେଷଘରେ ରାନ୍ଧଣା କରିବାଣି
ପଦ୍ମେ ସାଗରେ ମଣ୍ଡିତେ ଭୁଞ୍ଜନ୍ତି ବାହ୍ମଣି ।୭୧।
ଉଠାବନ୍ତି ଘରମାନ ଅନେକ ରତ୍ନେ କମି
ଦେଖିଣ ସାନନ୍ଦ ଯେ ଜଗନ୍ନାଥ ଦେବସ୍ୱାମୀ ।୭୨।
ଅନେକ ବାହ୍ମଣି ମୂଳେ ଅଞ୍ଜନ ବିଶ୍ୱକର୍ମା
ହବାରବେ ଲାଗିଲେ ସେ କମକାହ୍ମ ମହାତମା ।୭୩।
ଅନେକ ମହାରଣା ତାହାଂକ ତୁଲେ ଛନ୍ତି ଲାଗି
ଆହାର ନିଦ୍ରା ତେଜଣ ଗଢନ୍ତି ବେଗି ବେଗି ।୭୪।
ଆହୋ ବଇବସ୍ୱତ ମନୁ ଦେଖ ଜଗନ୍ନାଥଂକର ମାୟା
ଆହାର ନ ରୁଚଇ ବାହ୍ମଣିମାନଂକର ପୁଲକତ କାୟା ।୭୫।
ଆହାର ନିଦ୍ରା ମଇଥୁନ ତେଜନ୍ତି ସମସ୍ତ ରଣା
ସବୁହିଂ ସୁବର୍ଣ୍ଣର ନିର୍ବାଣ ପାଣିଦ୍ରବ୍ୟ ଘଟଣା ।୭୬।
ଗଜଶାଳ ଅଶ୍ୱଶାଳ ଗୋଶାଳ ଆଦି କରି
ରୂପାରପଣ ରତ୍ନଯେତେଣୀ ଝିଂକରି ଓହାଡ଼ କରି ।୭୭।

---

୬୮।୧ ଅଶି ସହସ୍ର ନାପିତ ଘେନି ମନ୍ତ୍ରୀ ଶକୁନି । (ଚ,ଛ)

୭୩। ଅନେକ ବାହ୍ମଣି ମୂଳେ ଜାଣ ବିଶ୍ୱକର୍ମା
ନଗରମାନ ଘଟଣ କଲେ ଅଦ୍ଭୁତହିଂ ଉପମା । (ଘ,ଞ)

ହାଥୀଦନ୍ତ କମମାନଂକୁ ଦଶଲକ୍ଷ ଶିଂଗର
ସ୍ଥୂଳ କର୍ମମାନ ନିବାଉନ୍ତ ଶତେଲକ୍ଷ କୁନ୍ଦୁରା ।୭୮।
ରୂପାପଟ୍ଟମାନ ଯେ ଉପରେ ଗୁମ୍ଫେଣୀ
ବଖରାକେ ସୁବର୍ଣ୍ଣର କଳସ ନିରବାଣି ।୭୯।
ଆଉ ଦୀର୍ଘେ ପଞ୍ଚାଶ ପଞ୍ଚାଶ ଯୋଜନ ପ୍ରତି
ନିରନ୍ତରେ ଭୁବନ ଯେହ୍ନେ ଅମର ବାରସ୍ୱର୍ଣ୍ଣ ।୮୦।
କନେକର ରୁଅ ଶେଣି ବଚା ଆଦିକର
ସଷ୍ଟିକର ପୀଠ ଆଣି ମୟୂଦାନବ ଉହାର ।୮୧।
ଆପଣେ ନିର୍ବାଣ କରଣଛନ୍ତି ଜଗନ୍ନାଥ ଦେବସ୍ୱାମୀ
ଯାଗଶାଳମାନ ଉଠିଅଛୁ ଯେ ମଧ୍ୟସ୍ଥାନ ଭୂମି ।୮୨।
ପୂର୍ବଦ୍ୱାରେ ଅଛୁ ବଟ ପଶ୍ଚିମ ଦ୍ୱାରେ ଶମୀ
ଉତ୍ତରେଣ ଜଟୀବଟ ଦକ୍ଷିଣରେ ଗନ୍ଧ ଆମି ।୮୩।
ତିନିଶାଖା ତିନିପୁରେ ବଶାଶତେ ତାଳ ଉଞ୍ଚ
କୋଶେକ ଆୟେତନ ଯାଗଶାଳ ସୁସଞ୍ଚ ।୮୪।
ଜଟୀ ବଟୀ ହଟୀ ଯେ ଆବର ସାଂପୁଟୀ
ଯେତୁ ଗୃହର ସମିଧେ ଯଗ୍ୟଂଶାଳ ଖଟି ।୮୫।
ପଶ୍ଚିମ ହୋମନାଥେ ନଡପ ଶାଳମାନ
ସତୁରପଦ୍ମ ଘଣା ବୁଲଇ ପ୍ରତିଦିନ ।୮୬।

---

୮୦।୨ ''ନିରନ୍ତରେ ଭୁବନ ଯେହ୍ନେ ଅମର ବାରସ୍ୱର୍ଣ୍ଣ'' ପାଦାନ୍ତ ପରେ 'ଛ' ପୋଥିରେ ଅଧିକ ପାଠ—

କନକ ରସାଣ ରୁଅ ଶେଣି ସ୍ତମ୍ଭ ବଡା
ସଷ୍ଟିକର ପୀଠ ଲଗିଛୁ ମୁକୁତା ।
ନନ୍ଦାବ୍ରତେକ ଓଷ୍ଟ ପାଲଟା ସିଂଘ କମ
ଯେବଣ କାର୍ଯ୍ୟକୁ ଉସ୍ରକ ଶ୍ରୀ ପୁରୁଷୋତ୍ତମ ।
ଅପୂର୍ବ ତରୁ ଲୋକେ ଉଠ ଉଠ ଯାଗଶାଳ ମଧ୍ୟସ୍ଥାନ ଭୂମି
ପୂର୍ବଦ୍ୱାରେ ବଟ ପଶ୍ଚିମ ଦ୍ୱାରେ ଶମୀ ।
ଉତ୍ତରେ ଯେଉଂ ବଟ ଦକ୍ଷିଣେ ସୁପୁଟି
ଗନ୍ଧମା ତ୍ରିଶାଖା ତିନପୁରେ ହେଟି ।

କୁଷ୍ମାଣଦେଶର ରାଜା ନାମ ଋଷିକେଶୀ
ନାବେ ପୂରେଇ ଆଣି ଦେଉଅଛୁ ସର୍ବରାଶି ।୮୭।
ମଞ୍ଜିଷଠି ପଦ୍ମ କ୍ଷୀରସାଗର ବିଦ୍ରୁତ
ଶ୍ୱେତବୃନ୍ଦ ହୁଲା ଦ୍ୱୀପ ସାଗର କ୍ଷୀର ।୮୮।
ଯେମନ୍ତେଣ ପଞ୍ଚାଶ ସହସ୍ର ଯୋଜନ ବିଶଇ ଆଲୋଅମଧ୍ୟେ
ମହାଋଷୀମାନେ ଘଟଣ କରୁଛନ୍ତି ରାତ୍ର ଯେ ଦିବସ ପ୍ରାପ୍ତେ ।୮୯।
ଦିବାରାତ୍ରେ ତାହାଙ୍କଇଂ ନାହିଂ ଅବସାନ
ଖଟନ୍ତି ବେପାରୀପ୍ତେ ଯେ ଯାହାର ନିଯୋଗମାନ ।୯୦।
ଆପଣେ ଜଗନ୍ନାଥେ ଅନୁବ୍ରତେ ରାଜେକର
ସମସ୍ତ ବିନ୍ଧାଣିମାନଂକୁ ଶ୍ରୀହାଥେ ଦିଲେ ଶାଢୀ ।୯୧।
ଅନେକ ରତନେଣ ବାହୁଟି ଜଗଦଳା
ଲଲାଟେ ସୀମନ୍ତିନୀ ଛାଡି ତୋଡର ହୃଦେ ରତ୍ନମାଳା ।୯୨।
ଆହୋ ନଉଦିବସ ମଧ୍ୟେ ସମସ୍ତ କର ନିର୍ବାଣି
ଯେତେ ରତ୍ନ ଅଣେଇ ଆମ୍ଭେ ଦେଉଥିବୁ ଆଣି ।୯୩।
ମୋହୋର ଆଜ୍ଞାଂ ଭ୍ରଷ୍ଟ କରିବ ଯେଉଂଣ ଜନ
ତାହେ ଶିର ଛେଦିବ ଯୁଧିଷ୍ଠି ଦେବଂକ ଆନ ।୯୪।
ଜୀବନକଇଂ କାରଣ ଯେହୁ ରାଜସୂୟଯଜ୍ଞଂ ସଭା
ସମସ୍ତ ପାତକ ଯେଥି ଦହନ କରିବା ।୯୫।
ଜନ୍ମେ ଜନ୍ମେ ସୁଫଳ ଯାହାର ସୁଭାଗି
ସେ ମହାଯଜ୍ଞଂ କାର୍ଯ୍ୟେଂ ସୁବଧାନେ ଥିବ ଲାଗି ।୯୬।
ଜଣ ଜଣକେ ଆଜ୍ଞାଂ ଦେଉଅଛନ୍ତି ଶ୍ରୀପତି
ଆପଣେ ଚରଣେ ସ୍ୱାମୀ କରନ୍ତି ଦିବାରାତ୍ର ।୯୭।
ବଇନେଣ ଆରୋହି ଦେବ ମଧୁହାରୀ
ପ୍ରବେଶ ହୋଇଲେ ଯାଇଂ ଅମର ସ୍ୱର୍ଗ ପୁରୀ ।୯୮।

---

୮୮। ୨ "ଶ୍ୱେତବୃନ୍ଦ ହୁଲା ଦ୍ୱୀପ ସାଗର କ୍ଷୀର" ପାଦାନ୍ତ ପରେ 'ଛ'
ପୋଥିରେ ଅଧିକା ଶ୍ଳୋକ ପଦ—
ଯେତେସନକ ଭିଆଣ କରିଛନ୍ତି ଦେବରାଜ୍ୟେ
ତମ୍ଭା ବିଦ୍ରୁତ ଲଳୁଆ ସୁବର୍ଣ୍ଣ ଦ୍ୱୀପ ଶ୍ୱରାଜ୍ୟେ ।

ସ୍ତମ୍ଭମଣ୍ଡୋପ ଯାଇଁ ଦେଖିଲେ ଅନେକେ
ସଭା ପଟାନ୍ତର କରିବାକୁ ନାହିଁ ବିଶ୍ବଲୋକେ ।୯୯।
ଦେଖିଣ ସାନନ୍ଦ ଯେ ହୋଇଲେ ଦେବରାଜା
ଅଇରାବ୍ରତ ଆରୋହି ବିଜୟେ ବିଡୋଜା ।୧୦୦।
ଇନ୍ଦ୍ର ଗୋବିନ୍ଦ ବସି ବିଶ୍ବକର୍ମାକଇଁ ହକାରି
ଶ୍ରୀହାଥେ ନାରାୟଣେ ଯେ ଆପଣେ ଦିଲେ ରତ୍ନଶାଢୀ ।୧୦୧।
ସୁଧର୍ମାସଭା ଯେ ଅତଅ ସୁସଞ୍ଜ
ମାନବ ମାନଙ୍କେ କାହିଁ ଦେଖିବାକ ମଞ୍ଜ ।୧୦୨।
କ୍ଷୁଧା ତୃଷା ନ ନାଗଇ ଯେଉଂଣ ସଭାୟେ ଥିଲେ ବସି
ରାତ୍ର ଦିବସେ ତହିଁ ଚନ୍ଦ୍ର ଉଦୟେ ପରକାଶି ।୧୦୩।
ସଭା ଦେଖିଣ ସେ ଅନେକ ସାନନ୍ଦେ
ଅନେକ ପ୍ରଶଂସା କରନ୍ତି ଇନ୍ଦ୍ର ଯେ ଗୋବିନ୍ଦେ ।୧୦୪।
ବତିଶଲକ୍ଷ ବିନ୍ଧାଣି ବିଶ୍ବକର୍ମା ମୂଳେ
ସଭା ଆୟେତନ କରିଛନ୍ତି ମେରୁ ମେଖଳେ ।୧୦୫।
କରପଦ୍ମ ଯୋଡିଣ କହଇ ବିଶ୍ବକର୍ମା
ସଭାକୁ ଅନେକ ପ୍ରଶଂସା କରନ୍ତି ବେଦବ୍ରହ୍ମା ।୧୦୬।
ନାରାୟଣ ବୋଇଲେ ତୁ ଅନାଦି ବିଶ୍ବରୂପୀ
ସିଦ୍ଧସାଧକ ହେତୁ ତୁମ୍ଭ ଅଟୁ ସର୍ବବ୍ୟାପି ।୧୦୭।
ତ୍ରଇଲୋକ୍ୟର ମଧ୍ୟେ ୟେ ତୋହୋର ସଭା ଦେଖି
ଫିଟିବ ଦୁଷ୍କୃତ ଅନେକ ପାତକ ଉପେକ୍ଷି ।୧୦୮।
ତିମିର ବିଦାରଣେ ଯେ ଅନର୍ଘ୍ୟ ପଞ୍ଚମଣି
ଘଟଣକର ତୁଲେ ତାହା ଥିବୁ ତ ଜବାଣି ।୧୦୯।
ୟେସନେ ଆଗ୍ୟାଂ ଦେଇଣ ଦେବରାଜେ
ଇନ୍ଦ୍ର ଗୋବିନ୍ଦ ଦୁହେଁ ନନ୍ଦନବନେ କଲେ ବିଜେ ।୧୧୦।
ଦେଖନ୍ତି ତୋଟା ଯେ ସଦାଇ ବସନ୍ତ
ଫଳଭରେ ଶାଖାୟେ ଲୋଟନ୍ତି ଭୂମିଗତ ।୧୧୧।
ତୋଟାଳମାନଙ୍କୁ ତହିଁ ଆଗ୍ୟାଂ ଅବଧାରି
ସୁବଧାନେ ଥାଅ ତୋଟା ଯତ୍ନେ ରକ୍ଷାକରି ।୧୧୨।

ରାଜସୂୟ ଯଜ୍ଞ ଆସି ହୋଇଲା ସନ୍ନିଧାନ
ସର୍ବେ ଅଛଇଂ ପୁଣ ପଞ୍ଚବଂଶ ଧନ ।୧୧୩।
ତୋଷାନ୍ଲେ ବୋଇଲେ ହର ଯେ ତୋହୋର ଆଜ୍ଞାଂ
ଦେବତା ଗନ୍ଧର୍ବ କେ ବା କରିବ ଅବଜ୍ଞାଂ ।୧୧୪।
ନାରାୟଣକଇଂ ବିନୋଦୀ କହିଲେ ମଘବାନ
ତୋହୋର ପ୍ରସନ୍ନେ ମୋହୋର ଉଦ୍ଧତ ହୋଇଲା ଧର୍ମ ।୧୧୫।
ଯେବଣ ବିଧାନ ଦେବ କରିଅଛ ଆରୋପଣ
ଯେ ସର୍ବସମ୍ପଦ ତୋହୋର ନାରାୟଣ ।୧୧୬।
ଗୋବିନ୍ଦେ ବୋଇଲେ ବହୁତ ଭାରାୟେ ହୋ ପଶିଲୁ ଦେବରାୟେ
ତୁ ସେ ସୁରେଶ୍ୱର ଯେଥକୁ କରିଥିବୁ ସଦୟେ ।୧୧୭।
ଯେସନେକ ଆଜ୍ଞାଂ ଦେଇଣ ଦେବହରି
ବିଜୟେ ଜଗମୋହନ ହସ୍ତିନା ରାଜ୍ୟପୁରୀ ।୧୧୮—୧୮୦୩।

———*———

## ପଶ୍ଚିମ ଦିଗ ରାଜା ନିମନ୍ତ୍ରଣ କାରଣେ
## ଭୀମଙ୍କର ଗମନ

ଯେଥୁ ଅନନ୍ତରେ ଶୁଣ ବଇବସୁତ ମନୁ
ଛଡଅର୍ଦ୍ଧ୍ୟେ ପୂଜାକଲା କୃଷ୍ଣଋଷିର ତନୁ ।୧।
ଜୟତୁ ବ୍ରହ୍ମବେତ୍ତା ପଣ୍ଡିତ ଅଗସ୍ତି
ଅମୃତଦୃଷ୍ଟି ମୋତେ କରାଇଲୁ ବ୍ରହ୍ମପନ୍ତ ।୨।
କଳିକାଳ ତରିବାକୁ ମୁଂ ବଳାଇଲି ଇଚ୍ଛା
ତୋହୋର ପ୍ରସାଦେ ମୋର ପୂରିବ ମନବାଞ୍ଛା ।୩।
ଯେହେନେକ ଆଜ୍ଞାଂ ଦିଲେ ପ୍ରଭୁ ଦେବରାଜେ
ଭୀମସେନ କଲା ଯେ ପଶ୍ଚିମଦିଗେ ବିଜେ ।୪।
ରାଜାନ୍ତ ନିମନ୍ତ୍ରଣ ସେ କଲାକ କେମନ୍ତେ
ଯେହା ସଞ୍ଚପିଣ ମୁନି କହିବା ସ୍ୱାମୀ ମୋତେ ।୫।
ବଦନ୍ତି ଯୋଗେଶ୍ୱର ମହା ବ୍ରହ୍ମବେତ୍ତା
ଶୁଣ ସାବଧାନେ ତୁ ଧାର୍ମିକ ବଳବନ୍ତା ।୬।

ତୁଳମାସ କୃଷ୍ଣପକ୍ଷ ଦଶମୀର ତିଥି
ଚନ୍ଦ୍ରବାର ପୁଷ୍ୟା କକଡାରେ ଚନ୍ଦ୍ର ଥିତ ।୭।
ବାଣିଜ୍ୟ ନାମେ କରଣ ସାଧ୍ୟ ନାମେ ଯୋଗ
ତୁଳ ସଂକ୍ରାନ୍ତ ଠାରୁ ତିନଦିନ ଭୋଗ ।୮।
ସମଦଣ୍ଡ ଘେନିଣ ଯେ ପବନ ଆତ୍ମଜେ
ପଶ୍ଚିମ ସୋମନାଥେ ଭୀମସେନ କଲା ଧ୍ୱଜବଜେ ।୯।
ଆପଣେ ରଥୀ ସେ ଆପଣେ ରଥ ବାହି
ପବନ ଦେବତା ଦେଖିଲେ ସାରଥି ରଥେ ନାହିଁ ।୧୦।
ମରୁତ ନାମେ ସାରଥିକ ଡକାଇଲେ ଚଞ୍ଚଳ
ପବନୁଂ ବେଗି ଶ୍ୱେତଅଶ୍ୱ ଯେ ଦିଲେକ ମହାବଳ ।୧୧।
ଯେବେ ଶ୍ୱେତଅଶ୍ୱ ନେଇ ଯୋଚ ଭୀମସେନର ରଥେ
ତୁହି ରଥେ ସାରଥିହୋଇ ବାହିବୁ ଅନୁବ୍ରତେ ।୧୨।
ପବନର ବଚନେ ସେ ମରୁତ ସାରଥି
ଶ୍ୱେତଅଶ୍ୱ ଘେନିଆସି ପ୍ରବେଶ ତତକ୍ଷଣି ।୧୩।
ପଶ୍ଚିମ ସୋମନାଥେ ବଜଯେବେ ପାବେନି
ମରୁତ ସାରଥି ପ୍ରବେଶ ହେଲା ଶ୍ୱେତଅଶ୍ୱନ୍ତ ଘେନି ।୧୪।
ଶ୍ରୀକରେଣ ଘେନିଅଛୁ ଜୟେରତ୍ନ ମାଳା
ହୃଦରେ ଲଂବାଇଲା ନେଇ ପବନର ବଳା ।୧୫।
ରତ୍ନ ମଣି ମକୁଟ ଯେ ଦିବ୍ୟ ଅଳଂକାର
ହୃଦରେ ଆଭରଣ କଲା ପାଣ୍ଡବ ସୁନ୍ଦର ।୧୬।
ଭୀମସେନ ବୋଇଲା ତୁ ଅଇଲୁ କାହାର କତି
ଯେବେ ମର୍ତ୍ତ୍ୟସ୍ୱର୍ଗର ନୋହୁ ତୁ ମାନବ ଜାତି ।୧୭।
ଅତିଅନ୍ତ ସୁନ୍ଦର ସୁକୁମାର ତୋହୋର କାୟେ
ପ୍ରତକ୍ଷେ ଦିଶୁଅଛୁ ଅମରାଧିନାଥ ପ୍ରାୟେ ।୧୮।
ବୋଲଇ ମରୁତ ତୁ ହୋ ଶୁଣ ଭୀମସେନ
ମୋତେ ପେଷିଲେ ତୋହୋର ପିତା ଯେ ପବନ ।୧୯।
ଯେବେ ତୋହୋର ରଥରେ ମୁଂ ହୋଇବ ସାରଥି
ବାହିବ ତୁରଙ୍ଗମ ମୁଂ ପଶ୍ଚିମ ମୂରତି ।୨୦।

ରାଜାଗଣମାନନ୍ତ କରିବୁ ସର୍ବ ସାଧି
ମୁହିଁ ମହାପଣ୍ଡିତ ତାରଣ ଭଗ୍ୟଂ ବୁଦ୍ଧି ।୨୧।
କେମନ୍ତେ ଯୁଦ୍ଧକରିବୁ ତୁ ସାରଥି ବହୁନେ
ଅନେକ ଦୁର୍ଦ୍ଧର ଦୁଷ୍ଟ ଯେ ଅଛନ୍ତି ରାଜାମାନେ ।୨୨।
ପବନଦେବତାର ମୁଂ ଅଟଇ ସାରଥି
ମନୁଅନ୍ତର କରାଇ ମୁଂ ଅନେକ କାଳବ୍ରତି ।୨୩।
ଭୀମସେନ ବୀରଙ୍କରଇ ଯେହ୍ନେ ବଡ଼ାଇ ଅଗୋଚର
କଷଣ ନିମନ୍ତେ ଅଇଲୁ ଅବା ଯେହ୍ନେ କେଉଂଣ ଅସୁର ।୨୪।
କାମରୂପୀ ହୋଇଥାଆନ୍ତାଟି ନିଶାଚର
କପଟେ ନାଶକରିବ ଯେହ୍ନେ ଅବା ରହ୍ଵଣ ରଥର ।୨୫।
ବୀର୍ଯ୍ୟର ମାରୁତି ଯେ ତାଙ୍କୁ କରଇ ଅପ୍ରତେ
ବୋଇଲୁ ଅପରଚେ ସଙ୍ଗେ ବିଶ୍ୱାସ ମୁଂ କରିବ କେମନ୍ତେ ।୨୬।
ବୋଲଇ ସାରଥି ବାବୁ ନ ଜାଣୁ କି ମୋତେ
ମୁହିଂ ଜାଣଇ ତୋହୋର ପିତାର ଜନମ ସହିତେ ।୨୭।
ତୋହୋର ଜ୍ୟେଷ୍ଠଭ୍ରାଥ ବୀର ହନୁମନ୍ତ
ତାହାର ଜନ୍ମ ମୁଂ ଯେ ଜାଣଇ ଯଥାର୍ଥ ।୨୮।
ପବନର ମାତା ଯେ ଅଟଇ ହାଦେ ଦିତି
କଶ୍ୟପ ତୋଷିଲେ ସେ ଯେ କଳ୍ପେ କଳ୍ପେ ବ୍ରତି ।୨୯।
ଅନେକ ପ୍ରଳୟର ମୁଂ ଜାଣଇଂ ବାରତା
କାଳେହେଂ ନୋହିଲୁ ତାର ପୁତ୍ର ଯେ ହୋଇତା ।୩୦।
ଆକାଶଗଙ୍ଗା କୂଳେ ତୋଷିଲା ନିରାକାର
ପ୍ରସନ୍ନେ ଧବଳାଙ୍ଗୀଙ୍କୁ ଯାଚହିଲେ ଅଭୟେ ବର ।୩୧।
ମହାବଳବନ୍ତା ତୋର ହୋଇବ କୁମର
ଯେହ୍ନମନ୍ତ ବୋଲି ତାଙ୍କୁ କଶ୍ୟପ ହିଲେ ବର ।୩୨।

---

୨୫।୨ କପଟେ କାର୍ଯ୍ୟନାଶ ଯେହ୍ନେ କରିକ ଆମ୍ଭର । (ଘ,ଛ,ଠ)
୨୭।୨ ମୁହିଂ ଜାଣଇ ତୋହୋର ପିଅର ଜନମ ସହିତେ । (ଘ,ଙ,ଠ)

*

ଗର୍ଭରେ ବଢ଼ନ୍ତେ ସେ ପବନ ବଳବନ୍ତା
ଅଣଗୃଷଖଣ୍ଡ କରି ତାହା କାଟିଲ୍ ଇନ୍ଦ୍ର ଯେ ଦେବତା ।୩୩।
ବାସବ ଛେଦିଲ୍ ତାହା ଡିରଣି ଆକାରେ
ତେଣୁ ଅଣଗୃଷଖଣ୍ଡ ଯେ ହୋଇଲ୍ ଶୂନ୍ୟରେ ।୩୪।
ବହୁତ ମନ୍ତ୍ରର ଯେ ଅପାର କାଳର କଥା
ସଞ୍ଚପି କହିବାକୁ କେହ୍ନୁ ହୋଇବ ସାମରଥା ।୩୫।
ତୋହୋର ବଡ଼ଙ୍କର ଚରିତ ଶୁଣିମା ବୃକୋଦର
କୋଇନ୍ତାଯେ ପ୍ରସନ୍ନ ହୋଇଲେ ପବନ ଅଣାକର ।୩୬।
ତିନିମନ୍ତ୍ର ତପେ ଜପିଣ ସେ ଅପୂର୍ଣ୍ଣା ଅଞ୍ଜନୀ
ତାହାର ଚହ୍ନ ବର୍ଣ୍ଣ ସେ ନୁଆରଲ୍କ ଯୋନି ।୩୭।
ସାଧୁ ସାଧୁ ସାଧେବୀ ସେ କୋଇନ୍ତା ମାହେଶ୍ଵରୀ
ପବନର ବୀର୍ଯ୍ୟେ ସେ ନୋହିଲ୍ ମହାଭାର ।୩୮।
ପ୍ରତକ୍ଷେ ଅଣାକାର ଯେ ଗର୍ଭେ ଦିଲ୍ ତତ୍ତ୍ବୁ
ସେ ବ୍ରହ୍ମଭେଦ ଗର୍ଭେ ଛନ୍ଦିଲ୍ ମହାଧାତୁ ।୩୯।
ଭୀମସେନ ଆଶ୍ରିଜ ହୋଇଲ୍ ମରୁତ ସାରଥିର ବଚନ ଶୁଣି
ଯେମନ୍ତ ସମୟେ ଶୁଭିଲ୍ ଆକାଶରୁ ବାଣୀ ।୪୦।
ଯେଥିକୁ ଭ୍ରାନ୍ତ ତୁ ନ କର ଆନ ଚିତ୍ତ
ପବନ ବୋଇଲେ ଯେ ମୋହୋର ସାରଥି ମରୁତ ।୪୧।
ଯେ ତୋହୋର ରଣେ ଯେବେ ହୋଇବ ସାରଥି
ବାହିବ ତୁରଙ୍ଗମ ସେ ପବନ୍କୁଂ ବେଗ ଗତି ।୪୨।
ଅଦଭୁତ ବଚନେ ସେ ହୋଇଲ୍ ମନ ତୋଷ
ସାରଥିକ ପୂଜାକଲ୍ ଅନେକ ହରଷ ।୪୩।
ପିତାର ଆଗ୍ୟାଂ ପ୍ରମାଣେ ସେ କରି
ହୋଇଲୁ ସାରଥି ରଥ ବାହାସି ମୋହୋରି ।୪୪।
ଅନେକ ଆୟେ ରତ୍ନେ ସେ ମଣ୍ଡିଲ୍କ ବେଗେ ରଥ
ପୁଷ୍ପକ ବିବାନ ଜାଣି ଦିଶଇ ଫଜାତ ।୪୫।

---

୩୩।୧ ସେହିକ ପୁତ୍ର ହୋଇଲ୍ ପବନ ବଳବନ୍ତା । (ଝ,ଥ,ଜ,ଚ,ଝ,ଣ)

ଶିବସାଦେର ଘର୍ଥେ ଖ୍ରୀମସେନ ସ୍ତ୍ରାହାନ ଯେ ସାର
ଶ୍ରୀସୋମନାଥ ସ୍ୱାମୀଂଙ୍କ ଅନେକ ଭୃସ୍ତି କର ।୪୬।
ଜୟତ୍ତୁ ବିଶ୍ୱନାଥ ଅନ୍ଧକ ବିଦାରଣ ପରମଯୋଗୀ
ଜୟତ୍ତୁ ବିଶ୍ୱନାଥ ଜଗୁ ସୋଦର ଶରଣ ସର୍ବଭୋଗୀ ।୪୭।
ଜୟତ୍ତୁ ବିଶ୍ୱନାଥ ଅସୁର ବିଦାରଣ ତ୍ରିପୁର
ଜୟତ୍ତୁ ବିଶ୍ୱନାଥ କାମାଙ୍ଗ ନାଶନ ପଞ୍ଚୁଶିର ।୪୮।
ଜୟତ୍ତୁ ସପ୍ତଳ ଜନ ବୋଧନ ଶୂକଳାଙ୍ଗ
ଡାକ ଘୋର ଶବଦେଣ ବିଭଂସିତ ଖଟ୍ୱାଙ୍ଗ ।୪୯।
ଜୟତ୍ତୁ ଅନଙ୍ଗ ବିଦାରଣ ସିଦ୍ଧବେଶ୍ମ
ଜୟତ୍ତୁ ଜଗତ ବନ୍ଧୁ ସଂସାର ଉଦ୍ଧାରନ୍ତା ।୫୦।
ଗିରିଜାର ବଲ୍ଲଭ କୁମାର ସମ୍ଭବେ
ବାଞ୍ଛା ପ୍ରାପତ ତୁ ଯେ କରିବା ମହାଦେବେ ।୫୧।
ଜୟତ୍ତୁ ସୋଡଳ ନାଥ ତାଣ୍ଡବ ରସ ଖେଡେ
ମାଇଲୁ ପ୍ରଜାପତି ତୁ କଥାର ସଂଘୋଡେ ।୫୨।
ଭଗତମଚ୍ଛଳ ନାଥ ଶରଣ ପଞ୍ଜର ସ୍ୱାମୀ
ଶୂଦ୍ରମୁନି ସାରୋଳ ଦାସ ଶତ ସହସ୍ର ଦଣ୍ଡ ପରଣାମି ।୫୩।
ଖ୍ରୀମସେନ ମୁଖୁଂ ସ୍ୱେସନକ ସ୍ତୁତି ଶୁଣି
ବିଜୟେ ବିଶ୍ୱନାଥଦେବ ଶୂଳପାଣି ।୧୫୪।
ବୃଷଭ ଆରୋହେ ବିଜୟେ ଦେବକାଶୀ
ପଞ୍ଚବଦନେ ପଞ୍ଚଦଶ ଲୋଚନ ପ୍ରକାଶି ।୫୫।
ଗଙ୍ଗା ଯମୁନା ସରସ୍ୱତୀ ଧବଳାଙ୍ଗୀ
ବହଇ ଜାହ୍ନବୀ ନଦୀ ଅଭୟେ ବରଦାଙ୍ଗୀ ।୫୬।
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜ
ହୃଦେ ପିନ୍ଧିବା ଦେବ ବାସୁକ ସର୍ପରାଜ ।୫୭।
ପବନ ନନ୍ଦନ ଦଣ୍ଡ ପ୍ରଳଂବ ଶତ ସହସ୍ରେ
ସ୍ୱାମୀ ପଶ୍ଚିମ ଦ୍ୱାରେ ମୋତେ ପେଷିଲେ ଠାକୁରେ ।୫୮।

---

୫୭। ୨ ହୃଦେ ପନଙ୍ଗ ପଇତା ବାସୁକ ଦର୍ପଗର୍ଜି । (ଙ,ଘ,ଙ,ଛ)

ସ୍ୱାମୀ ପଞ୍ଚାଶ ସହସ୍ର ନୃପତ୍ତ କରିବ ନିମନ୍ତ୍ରଣ
ନଉଦିବସ ମଧ୍ୟେ ସାଧିବ ସକଳ ରାଜାଗଣ ।୫୯।
ସ୍ୱାମୀ ଅନୁବ୍ରତେ ମୋତେ ଚଳେ କରିଥିବା
ଶିବଗଣନ୍ତ ଧେନି ଦେବ ରାଜସୂ ଯଗେ୍ୟଂ ଯିବା ।୬୦।
ବଦନ୍ତି ବିଶ୍ୱନାଥ ପଞ୍ଚୁବଦନ ଦେବ
ଆହେ। ପଛିମଦିଗ ରାଜାନ୍ତ କୁ ନିମନ୍ତ୍ରିବୁ ସବ ।୬୧।
ଯେଣ୍ଣିକ ରାଜାଯେ୍ୟ ଅଛଇଟି ବଡ଼ାଇ ପ୍ରତାପୀ
ମେଖଳଦେଶର ନୃପତ୍ତ ସେ ଅଟଇ ମହାକୋପୀ ।୬୨।
ଅନେକ ସାଂଗ୍ରାମ କଲା ମଗଧେଶ୍ୱର ବୀର
ସାଂଗ୍ରାମେ ହାରି ପଳାଇଲା ବୀର ଜାରି ।୬୩।
ଭୀମସେନ ବୋଇଲା ସେ ଅଟଇ କେଉଂଣ ବଂଶୀ
କାହାର ପୁତ୍ର ହୋଇଲା ଯେଣ୍ଡେକ ତେଜରାଶି ।୬୪।
ଉମାର ବଲ୍ଲଭ ବୋଲନ୍ତି ଆଦିଦେବେ
ଭୀମସେନକଇଂ କହନ୍ତି କଥାର ପ୍ରସ୍ତାବେ ।୬୫।
ସତ୍ୟଯୁଗେ ବନ ଗହନେ ଗମନ୍ତେ ମୁନିବ୍ୟାସେ
ବଇଶାଖ ଶୁକଳ ତ୍ରୟୋଦଶୀ ଦିବସେ ।୬୬।
ପୁଷ୍ୟା ନକ୍ଷତ୍ର ଯେ ବାଣିଜ୍ୟ ନାମେ କରଣ
ଧୃତ୍ତ ନାମେ ଯୋଗ କକଡ଼ା ଚନ୍ଦ୍ର ଘଟଣ ।୬୭।
ସେ ଦିନେ ବ୍ୟାସେ ଯେ ଭ୍ରମନ୍ତି ବିପୁନେ୍ୟ
ବଜାଇ ମହାପଣ୍ଡିତ କୁତୂହୋଳ ମନେ ।୬୮।
ନାନାରୂପେ ସେ ଯେ ବୁଲନ୍ତି ବନେ ଭ୍ରମି
ସମସ୍ତ ଜୀବକଇଂ ଇଚ୍ଛନ୍ତି ସେହୁ କାମୀ ।୬୯।
କୁତୂହୋଳେ କ୍ଷଣେ କ୍ଷଣେ ହୋଅଇ ଆନରୂପୀ
ଶୃଙ୍ଗାର କଉତୁକେ ବଢ଼ିଲା ରସକ୍ଷେପି ।୭୦।

---

୬୮।୨ ବିଜୟନ୍ତି ପଣ୍ଡିତ ଯେ କୁତୂହୋଳ ମନେ । (କ,ଜ)
୬୯।୨ ସମସ୍ତ ଠାକୁର ସେ କଇଛା ପଣ୍ଡିତ ମହାଧର୍ମୀ । (ଙ,ଡ)
୬୯।୨ ସମସ୍ତ ରୂପେ ଶୃଙ୍ଗାର ଇଚ୍ଛଇ ମହାବ୍ରହ୍ମୀ । (ଛ)

ଆହୋ ହରଣୀ ଘଲେକ ଯେ ଦେଖିଲେ ବ୍ରହ୍ମପତି
ହରଣେକ ହୋଇ ସେ ହରଣୀକି କଲେ ରତି ।୭୧।
ସେ ଉପେ ମହାତମାର ବୀର୍ଯ୍ୟ ଯେ ପଡ଼ିଲା
ହରନାଥ ବୋଲି ଚନ୍ଦ୍ରଂ ପୁତ୍ରେକ ଉପୁଜିଲା ।୭୨।
ମହାଭାଗ୍ୟଂ ପଣ୍ଡିତ ସେ ଅଟଇ ନରପତି
ଇସ୍କନ୍ଧା ଠାକୁର ସେ ଅଭଯେ୍ଁ ଚକ୍ରବର୍ତ୍ତି ।୭୩।
ଶ୍ରୀରାମଂକୁ ସେବା ସେ କଲା ତ୍ରେତୟା ଯୁଗେ
ସେତୁବନ୍ଧ ବାନ୍ଧିଲା ସେ ବାରନିଧି ସଙ୍ଗେ ।୭୪।
ପୁଣିହିଂ ବହୁତନ୍ତ ମୁନି ସେ୍ଁକଇ ସମଯେ୍ଁ
କୃଷ୍ଣଭଦ୍ରା ନଦୀକୂଳରେ ଦେଖିଲେ ମୃଗୁଣୀ ପଲ ଗୋଟିଯେ୍ଁ ।୭୫।
ଆହୋ ଭୀମସେନ ଯମନୀକା ନାମେଣ ଯେ ସେ୍ଁକଇ ମୃଗୁଣୀ
ଆତଙ୍କ କାମରେ ସେ ହୋଇଅଛଇ ବରହିଣୀ ।୭୬।
ମୃଗ ରୂପ ଧରଣ ସେ ବ୍ୟାସ ତପୋଧନୀ
ବନେ କ୍ରୀଡ଼ା କଲେ ସେ ଯମନୀକା ମୃଗୁଣୀକି ଘେନି ।୭୭।
ବଭଲତ ଶୃଙ୍ଗାରେ ଗ୍ରୁଡ଼ଲେ ବନ୍ଦୁ ଗୋଟି
ପୁତ୍ରେକ ଉପୁଜିଲା ମଣିଷ ଶରୀର ମୃଗ ମୁଣ୍ଡଗୋଟି ।୭୮।
ମୃଗସେନ ନାମ ତାର ଜଗତେ ବଖ୍ରାନ୍ତି
ମେରୁ ଦକ୍ଷିଣ କୋଣଲେ ସେ ଅଟଇ ଆଧିପତି ।୭୯।
ପଞ୍ଚାଶ ପଦ୍ମ ତାର ଖଟନ୍ତି ରାଜିତ
ସବୁଂକର ବାହାନ ସେ ଚଡ଼ନ୍ତି ମୃଗନ୍ତ ।୮୦।
ଆହୋ ଭୀମସେନ ସେ ସହସ୍ରାଅର୍ଜୁନ ତୁଲେ ଅନେକ ଯୁଦ୍ଧ କଲା
ସତ୍ୟଯୁଗେ ମାନଧାତା ତାକୁ ଜିଣି ତ ନୁଆରିଲା ।୮୧।
ତାହାକୁ ସଂଗ୍ରାମେ ତୁ ଜିଣି ନୁଆରିବୁ ଭୀମ
ବ୍ୟାସଙ୍କୁ ସୁମରିବୁ ଯେବେ କଷ୍ଟୋର ପଡ଼ିବ ସାଂଗ୍ରାମ ।୮୨।
ସେ ବ୍ୟାସେ ଯାଇଂ ତୋତେ ହୋଇବେ ପ୍ରସନ୍ନ
ତେବେ ସେ ସାଧ୍ୟ ତୋତେ ହୋଇବ ନୃପତି ମୃଗସେନ ।୮୩।
ବହୁତ କଟାଳ ତୋତେ ନାହିଂନା ଆନ ଠାବ
ସମସ୍ତ ସାଧ୍ୟ ହୋଇବ ତୋତେ ବଦଯ୍ୟନ୍ତ ମହାଦେବ ।୮୪।

ରାଜାମାନଙ୍କ ଯେତେକର ଆସ ସବ ସାଧି
ଯାଅ ରେ ପାଣ୍ଡବ ତୋର କାର୍ଯ୍ୟ ହୋଉ ସିଦ୍ଧି ।୮୫।

ଯେ ଶହସ୍ରମାନ ତୋତେ ଦେଉଛୁ ଭୀମସେନ
ଜଗଜ୍ଜିତା ନାରାଜମାନେ ତୋତେ ହୋଇବେ ପ୍ରସନ୍ନ ।୮୬।

ଯେବଣ ଶହସ୍ର ଯେନି ଜିଣିଲୁଂ ତ୍ରିପୁର
ସେ ନାରାଜ ତୋତେ ଦେଲ ତା ନାମ ପଞ୍ଚଶିର ।୮୭।

ଅମୋଘ ଶକତି ହାଦେ ଶୂଳ ଯେ ଶକତି
ବଜ୍ର ମୁଦୁଗର ଭୀମକୁ ଦେଲେକ ପଶୁପତି ।୮୮।

ବଜସ୍ତ ଡମ୍ବରୁ ଦେଲେ ଘୋଷଣ ଯେ ବାଦ୍ୟ
କୁତୂହଳୀ ପୁରୁଷ ଭୀମକୁ ଦେଲେକ ବଜ୍ର ସିଂହନାଦ ।୮୯।

ଆବର ଦେଲେ ସ୍ୱାମୀ ମହାକାଳ ବାଣ
ଯେଣୁକର ସକଳ ରାଜାନ୍ତ ତୁ ଜିଣ ।୯୦।

ପ୍ରସନ୍ନେ ଅନେକ ଶହସ୍ର ଦେଲେକ ପଶୁପତି
ଯାଅ ଯା ଭୀମ ତ୍ରିଯୁଲୋକେ ତୋତେ ନ ପଡୁ ଦୁର୍ଗତି ।୯୧।

ଯେସନେକ ଆଗ୍ୟାଂ ତାକୁ ଦେଲେକ ପଞ୍ଚମୁଖେ
ତତ୍ଖଣ ବଲ୍ଲେଶ୍ୱର ନାଥ ଗଲେକ ଅନ୍ତରୀକ୍ଷେ ।୯୨।

ଯେସନେକେ ପଶ୍ଚିମ ସୋମନାଥ ଜିଣିଣ ଚଳଇ ମହାବୀର
ପଶ୍ଚିମ ଦିଗକଇଂ ଗମଇ ବୃକୋଦର ।୯୩।

ସମ୍ଭବେଣ ଥାଠ ଯେମନ୍ତ ପାଣ୍ଡବ
ପଶ୍ଚିମ ଦିଗ ରାଜା କରଣେ ଚଳଇ ବେଗୁଂବେଗ ।୯୪।

ମାନଭଙ୍ଗ ବୋଲ ଯେକଇ ପର୍ବତେ
ମାନେ ବସିଲେ ତହିଂ ଗଜର ନଜଯୁଗ ପରଯନ୍ତେ ।୯୫।

ସେ ପର୍ବତେ ପ୍ରବେଶ ହୋଇଲା ପାବେନ
ଆକାଶ କମ୍ପୁଅଛୁ ଯେ ବୀରଭୂର ଧ୍ୱନ ।୯୬।

ମାନସାନନ୍ଦ ବୋଲଣ ଯେକ ଦେଶଗୋଟି
ମାନଅର୍ଜୁନ ବୋଲି ତହିଂରେ ଅଛଇ ରାଯେତି ।୯୭।

ବସ୍ତୁ ପ୍ରସାଦ ବୋଲି ଯେକଇ ନଦୀଗୋଟି
ତ୍ରିବେଣୀ ବାହୁନୀ ସେ ସାଗରେ ଅଛି ଫୁଟି ।୯୮।
ସେ ନଦୀର କୂଳେ ରାଇଜ ତାହାର
ବଡ଼ାଇ ଧାର୍ମିକ ସେ ଅଟଇ ଦଣ୍ଡଧାରୀ ।୯୯।
ଭୀମସେନ ପରବେଶ ସେ ମାନଭଙ୍ଗ ପରବତେ
ରାଜ୍ୟଗୋଟି କମ୍ପେ ତାର ବୀର ତୂର ଘାତେ ।୧୦୦।
ଆସ୍ଥାନେ ବଜେକର ବୋଲଇ ନରପତି
କାର ବୀର ତୂର ଶବଦେ କମ୍ପିଲା ମୋର ପୃଥୀ ।୧୦୧।
ରାଜାର ବଚନେ ଯେ ଚଳଲେ ଦେଶାନ୍ତରେ
ଧାଡକାରେ ରାଜପୁଂ ବେଗେ ହୋଇଲେ ବାହାରେ ।୧୦୨।
ପଚାରୁଂ ଓଡ଼୍ଲାବନ୍ତ ଆଗିଆଣି ଆଠ
ମୁନେଷ୍ୱଂ ପଚ୍ଚରନ୍ତ ତୁମ୍ଭେ କେଉଣ ଦେଶୀ ଅଟ ।୧୦୩।
ଅଦଭୂତେ କମ୍ପେ ରାଜ୍ୟେ ପଶିଲ ଆମ୍ଭର
ପରରାଜ୍ୟେ ପଶିବାକୁ କସ ଶକ୍ୟ ଯେ ତୁମ୍ଭର ।୧୦୪।
ବୋଲନ୍ତ ଭୀମସେନ ଚରଗଣନ୍ତ ବଚନେ
ବାରତା କହ ଯାଇଂ ତୁମ୍ଭ ରାଜାର ସନ୍ନିଧାନେ ।୧୦୫।
ରାଜାକୁ ଯାଇଂ କହ ହୋ ଜାଗ ନିବାରଣ
ରାଜସୂୟ ଯଗ୍ୟଂକୁ ପଶ୍ଚିମ ଦିଗ ରାଜାନ୍ତ ବରଣ ।୧୦୬।
ରାଜାନ୍ତ ନିମନ୍ତ୍ରଣ କରିବେ ପଶ୍ଚିମେ ଦିଗେ
ସମଦଣ୍ଡ ଘେନିଣ ରାଜାୟେ ଯିବେ ବେଗେ ।୧୦୭।
ତହୁଂ ବାରତା ଯହୁଂ ଶୁଣିଲେକ ସନ୍ଦେଶ
ମାନଅର୍ଜୁନର ଆଗେ ଯାଇଂ କହିଲେ ସନ୍ଦେଶ ଆଦେଶ ।୧୦୮।
ସ୍ୱାମୀ ରାଜସୂୟ ଯାଗ ସେ କରିବା ନିମନ୍ତେ
ଜରାସନ୍ଧ ନିବାରଣ ହୋଇଲା ଯାହାର ହାଥେ ।୧୦୯।
ସ୍ୱାମୀ ସୋହୋଡ଼ ସୁନ୍ଦର ସେ ପବନର ବଚ୍ଛି
ପଶ୍ଚିମ ଦିଗକଇଂ ସେ ରାଜାନ୍ତ ନିମନ୍ତ୍ରଣେ ବଜେ କରିଅଚ୍ଛି ।୧୧୦।

---

୯୮।୧ ବସ୍ତୁ ଭଦ୍ରା ବୋଲି ଯେକଇ ନଦୀ ଗୋଟି । (ଚ,ଟ,ଥ)
୯୮।୨ ତ୍ରିବେଣୀ ବାହୁନୀ ସେ ସାଗରେ ଯାଇ ଭେଟି । (ଥ,ଛ)
୧୧୦।୧ ସ୍ୱାମୀ ପାଣ୍ଡବ ସୁନ୍ଦର ସେ ପାଣ୍ଡୁ ରାଜାର ବଚ୍ଛି । (ଥ,କ,ଟ)

କୋଇନ୍ତାଂକର ନନ୍ଦନ ଯେ ବ୍ୟାସଂକର ନାତି
ଭୀମସେନ ଠାକୁର ସେ ପ୍ରତକ୍ଷେ ଅଛନ୍ତି ।୧୧୧।
ସନ୍ଦେଶ ବାରତା ଯହୁଂ ପାଇଲେ ନୃପବର
ଜଗଣ୍ଟ ଘଣ୍ଟ ବାଜା ଉଠିଲା ଧାଡକାର ।୧୧୨।
ଶତେକ ଭାର ସେହୁ ଘେନିଣ ପାଣିଦ୍ରବ୍ୟ
ରାଜ୍ୟରେ ପାସ୍ୱେତା ପାଡ ସେ କରଇ ଉତ୍ସବ ।୧୧୩।
ଶ୍ରୀକରେ କନେକ ଅଞ୍ଜୁଳିଏ ଘେନି ରାଏ
ଭୀମସେନ ଆମୁରେ ନେଇ କନେକ ବୃଷ୍ଟି କଏ ।୧୧୪।
ସନ୍ନିଧେ ପ୍ରବେଶ ହୋଇଣ ମହାବଳୀ
ପାଏ ଯାଇଂ ନୃପତି କରଇ କାଉଚ୍ଛୁଳ ।୧୧୫।
କରପଦ ଯୋଡଣ ସେ ଅନେକ ଭୃସ୍ତି ବୋଲ
ଆମୁରେ ମାନଅର୍ଜ୍ଜୁନ ଶୁଣିଲା ଗଣ୍ଡଘୋଳ ।୧୧୬।
ପୁଣ ପୁଣ ନୃପତି ହୋଅଇ ପରଣାମି
ଦଶ ଦୋଷ ଅପ୍ରାଧ କ୍ଷମା କରବା ଦେବ ସ୍ୱାମୀ ।୧୧୭।
ଦେଶାନ୍ତର ମୁଖେ ମୁଂ ବାରତା ନ ପାଇଲ
ସ୍ୱାମୀକ ଭଗତି ନିମନ୍ତେ ଥୋକାଏ ଦୂର ପାଗ୍ଛେଟି ନୁଆଁରଲ ।୧୧୮।
ଆନନ୍ଦେ ଅଶ୍ରୁଜଳ ବହଇ ନେତ ବେନି
ଆମୁରେ ନୃପତି ଯାଇଂ କରଇ ଦଣ୍ଡିମ୍ନୀ ।୧୧୯।
ଶରଣ ଶରଣ ବୋଲି ଫୁକାରଇ ବହୁତ ବୋଧେ
ସ୍ୱାମୀ ତୁମେ ମହତ ଉପେକ୍ଷା କରବା ଅଗ୍ୟାନର ଅପ୍ରାଧେ ।୧୨୦।
ରଥର ଉପରେ ଥାଇଂ ବୋଇଲେକ ପାବେନ
ମାନଅର୍ଜ୍ଜୁନେ ନିମନ୍ତିଲେ ଅକ୍ଷତଗୁଆ ଘେନି ।୧୨୧।
ତୋହୋର ଥାଠ ସଇନ୍ୟ ଯେତେକ ଅଛୁ ବାବୁ
ସମଦଣ୍ଡ ଘେନି ମକରମାସେ ରାଜୁସି ଯଗ୍ୟଂକୁ ଯିବୁ ।୧୨୨।
ଭନଏ ଭାବେ ବୋଲଇ ମାନଅର୍ଜ୍ଜୁନ ଚନ୍ଦ୍ରବ୍ରଣ୍ଟ
ସ୍ୱାମୀ ! ମୋହୋର ପୁରେ ମୁଣୋହ୍ଣ କରବା ମାରୁତି ।୧୨୩।
ସ୍ୱାମୀ ଅନ୍ତଅନ୍ତ ମହାଭାଗ୍ୟ ମୁଂ ଦେଖିଲ ନୟନେ
ପିତୃଲୋକେ ମୁକତି ମୋହୋର ଦରଶନେ ।୧୨୪।

ଭୀମସେନ ବୋଇଲା ମୁଂ ନୁଆରଇ ରହି
ରାଜ୍ୟକେ ମୁଣୋହିଂ ମୋତେ ହୋଉଥିବ କାହିଂ ।୧୨୫।
ପଞ୍ଚାଶସହସ୍ର ରାଜା ସାଧିବ ନଉଦିବସର ମଧ୍ୟେ
ସାଧ୍ୟ ଅସାଧ୍ୟ ରାଜାଙ୍କୁ ଅଛନ୍ତି ମୁଂ ଜିଣିମଇଂ ଯୁଦ୍ଧେ ।୧୨୬।
ନଉଦିବସେ ରାଜାଙ୍କୁ ଯେବେ ପ୍ରବେଶ ନୋହିବେ
ଚକ୍ରେଣ ଶିର ମୋର ଛେଦିବେ ବାସୁଦେବେ ।୧୨୭।
ରାଜ୍ୟକେ ମୁହିଂ ମୁଣୋହିଂ କରୁଥିଲେ ଭଲେ
ପଞ୍ଚାଶ ସହସ୍ର ରାଜା ସାଧିବ କେମନ୍ତେ ମୁଂ ସୁଖଭୋଗ ଇଛିଲେ ।୧୨୮।
ମାନଅର୍ଜୁନ ରାଜାକୁ ଭୀମସେନ ନିମନ୍ତ
ମାନଭଙ୍ଗ ଦେଶରୁ ଭୀମ ବାହାର ତତକ୍ଷଣାନ୍ତ ।୧୨୯।
ବୀରତୂର ଶବଦେ ଥାଠ ଯେ ଚଳାଇ
ବନ ପର୍ବତ କନ୍ଦର ଜିଣି ଅନେକ ଦୂର ଯାଇ ।୧୩୦।
କରତାର ନାମ ବୋଲଣ ସ୍ନେକଇ ପରବତେ
ଶରଣଭଦ୍ରା ବୋଲଣ ବହଇ ସ୍ନେକତୀର୍ଥେ ।୧୩୧।
କାର୍ତ୍ତିକମାସ ଶୁକଳପକ୍ଷ ଯେ ପଉର୍ଣ୍ଣମୀ
କୃତ୍ତିକା ଅନ୍ତେ ନକ୍ଷତ୍ରେ ଭୀମସେନ ଜଳଗାମୀ ।୧୩୨।
ଆ କା ମା ବ ଇ ଯେ ଅଟଇ ସେ ଦିନର
ତୀର୍ଥେ ସ୍ନାହାନ ସାରି ଦାନ ଦେଲାକ ବୃକୋଦର ।୧୩୩।
ମନୋହର ଦେଶର ସେ ସୁବାହୁ ଦଣ୍ଡଧାରୀ
ବୃଶଶତ ପାରିଦଣ୍ଡ ଘେନି ସେ ଅଇଲେ ତୀର୍ଥକରି ।୧୩୪।
ରାଜାର ଅଗ୍ରତେ ତହିଂ ଜଣାଇଲେ ମୁନେହି
ଭୀମସେନ ଠାକୁରେ ଅଛନ୍ତି ଶରଣଭଦ୍ରା କୂଳେ ରହି ।୧୩୫।
ପଞ୍ଚାଶ ସହସ୍ର ରାଜା ସେ କରିବେ ନିମନ୍ତ୍ରଣ
ଯୁଧିଷ୍ଠିରଦେବଙ୍କ  ଆଜ୍ଞାଂଙ୍କୁ ପଶ୍ଚିମ ଦିଗକଇଂ ବରଣ ।୧୩୬।
ଶୁଣି ପରମ ସାନନ୍ଦ ଯେ ସୁବାହୁ ନୃପତି
ଭୁଲେଣ ଅଛଇ ତାହାର ପଞ୍ଚଖର୍ବ ହାଥୀ ।୧୩୭।
ଭୀମସେନ ଆଗତ ବୋଲି ରାଜାମାନେ ଶୁଣିଲେ
ହାଥୀମାନ ତେଜ୍ୟାକରି ସମସ୍ତେ ବଶହସ୍ତ ହୋଇଲେ ।୧୩୮।



ଆହୋ ସ୍ୱାମୀ ବୃକୋଦର ସାବ୍ଧ ସାବ୍ଧ ବୋଲ
ଦନ୍ତେ ତରଣ ଯେନ ଶୁଣ୍ଡଲେ ଗଡଧାଲ ।୧୩୯।
ସୁବର୍ଣ୍ଣଚୂଡ଼ ପର୍ବତେ ବଜସ୍ତେ ପାବେନ
ରାଜାମାନେ ଦ୍ରଶନ କରନ୍ତି ଦେଖା ଦରଶନ ଧନ ଯେନ ।୧୪୦।
କାଳଞ୍ଜନ ପଡିହାରୀ କାଳଧ୍ୱଂସନ ଡଗର
ବନସ୍ତେ ବାରତା ଜଣାଇଲେ ଭୀମସେନ ସ୍ୱାମୁର ।୧୪୧।
ମନୋହର ଦେଶର ରାଜା ସୁବାହୁ ନୃପମଣି
ଗୃହଶତ ପାରଦଣ୍ଡ ଭୁଲେ ବଳ ସାତ ଯେ ଷଡଉଣୀ ।୧୪୨।
ସାବ୍ଧ ସାବ୍ଧ ବୋଲକର ବନସ୍ତେ ପରଣାମି
ସୁବାହୁ ନୃପତି ଦ୍ରଶନ କରଇ ଦେବସ୍ୱାମୀ ।୧୪୩।
ଆହୋ ନାମ ସଙ୍କେତ ଲସ୍ତେ ଯେ ପବନର ବଳା
କଞ୍ଚତେ ପାଣ୍ଡବ ସୁନ୍ଦର ସୁବାହୁ ନୃପତିକ ଦେଖିଲ ।୧୪୪।
ଶ୍ରୀଭୁଜ ତୋଳ ବୋଇଲେ ତାକୁ ପବନ ଆତ୍ମଜ
ଥାଠ ସଇନ ଯେନ ରାଜୁସି ଯାଗକୁ ଯା ଯା ।୧୪୫।
ଯେତେକ ସଇନ ତୋହୋର ଗଜ ଅଶ୍ୱ ରଥ
ସମଦଣ୍ଡ ଯେନ ପ୍ରବେଶ ହୋଇବୁ ଇନ୍ଦ୍ର ଯେ ପ୍ରଶସ୍ତ ।୧୪୬।
ମକର ମାସର ମଧ୍ୟେ ହୋଇବ ମହାଯଗ୍ୟଂ
ଦେଖା ଦରଶନ ଯେନ ଯାଅ ଯା ବେଗ ବେଗ ।୧୪୭।
ଶୁଣିଣ ସାନନ୍ଦ ହୋଇଲେ ସକଳ ରାଜାମାନେ
ସ୍ୱାମୀ ଶ୍ରବଣେ ଯାହା ଶୁଣିଥିଲୁ ତାହା ଦେଖିଲୁ ନୟନେ ।୧୪୮।
ତୁମ୍ଭେ ସେ ମାରୁତି ଅଟ ପାଣ୍ଡବ ସୁନ୍ଦର
ଜାର ନିବାରଣ ସ୍ୱାମୀ ତୁ ପ୍ରଚଣ୍ଡ ବୃକୋଦର ।୧୪୯।
ସ୍ୱାମୀ ବକ ହିଡମ୍ବେକ ଯେ କୁମ୍ଭିରୀ କନ୍ଧରୀ
ଯାହାର ବଧାତେ ସ୍ତେ ମଣ୍ଡଳେ ଦତ୍ୟଗୃହ ।୧୫୦।
ସ୍ୱାମୀ ତୁମ୍ଭ ସେ ବଷଲଡୁ ଖାଇ ପାରକଲୁ
ନାଗେଣୀ ବଳ ଗଞ୍ଜି ବେଲାବଳୀ ଆଣିଲୁ ।୧୫୧।
ପାଣ୍ଡବାସୁରକୁ ମାରି ଉଦ୍ଧରିଲୁ କଉରେବ
ଯାହାର କୋପକୁ ଶଂକା କରନ୍ତି ବଳଦେବ ।୧୫୨।

---

୧୫୨।୨ ଯାହାର କୋପକୁ ଶଂକା କରନ୍ତି ବାସୁଦେବ ।(ଘ,ଛ)

ତୁ ଦେବ ଦୁଷ୍ଟଙ୍କର ପ୍ରକୃତି ଦର୍ପ ଧ୍ୱଂସା
ଭଗତ ଜନ ମଙ୍ଗଳ ସ୍ୱାମୀ ହୋ ପୂରଅ ମନୀଷା ।୧୫୩।

ଦୁଷ୍ଟଙ୍କୁ ନାଶି ଶରଣ ପଞ୍ଜର ବୀର ଭୀମ
ଅନେକ ଦୋଷ କରିଥିଲେ ସ୍ୱାମୀ କରିବାକ କ୍ଷମ ।୧୫୪।

ଜରାସନ୍ଧ ବଧି ଦେବ ରଜାନ୍ତ ଉଦ୍ଧରିଲୁ
ଛୟାଣୋଇ ସହସ୍ର ରଜାନ୍ତ ତୁ ବନ୍ଦୀ ମୁକଳ କଲୁ ।୧୫୫।
ରାଜସୂୟି ଯଜ୍ଞଂ ସଭା ଦେଖିବୁ ତୋହୋର ପ୍ରସନ୍ନେ
ହରିବୁ ଅନେକ ପାତକ ତରିବୁ ପିତୃଜନେ ।୧୫୬।
ଅକ୍ଷତ ଗୁଆ ଘେନଲେ ଯେ ସୁବାହୁ ନୃପତି
ଗୃହଶତ ପାରଦଣ୍ଡ ଘେନି ଅନୁକୂଳ କଲା ତତକ୍ଷଣାନ୍ତ ।୧୫୭।
ତହୁଂଣ ଭୀମସେନ ଚଳଇ ତୋଷମନେ
ଦଣ୍ଡ ଘେନି ବଜାୟେ କୁଣ୍ଡଳୀ ନାମେ ବନେ ।୧୫୮।
କୁଣ୍ଡୀନଗ୍ର ବୋଲି ଏକ ଦେଶଗୋଟି
ଭୀଷ୍ମକ ବୋଲଣ ତହିଂର ଯେକଇ ନୃପତି ।୧୫୯।
ରୁକ୍ମ ରୁକ୍ମଣ ରୁକ୍ମବାହୁ କରି ତାର ପୁଏ ତିନି ଯେ ତନୟେ
ରୁକ୍ମଣୀ ବୋଲଣ କରି ତାହାର ତନୁଜାୟେ ।୧୬୦।
ରୁକ୍ମଣ ବୋଲିକରି ଯେ ତାହାଂକର ଜ୍ୟେଷ୍ଠବଳା
ଦୁଷ୍ଟଂକର ସଙ୍ଗେ ତାହାର ଅନୁବ୍ରତେ ମେଳା ।୧୬୧।
ଜଗନ୍ନାଥଂକୁ ଭଙ୍ଗାଇ ରୁକ୍ମଣୀ ବିଭାକାଳେ
ଦୁଷ୍ଟ ପ୍ରକୃତିରେ ସେ କରଇ ଶିଶୁପାଳେ ।୧୬୨।
ରୁକ୍ମଣୀଂକ ହରଣ ନିଅନ୍ତେ ଜଗନ୍ନାଥେ
ବହୁତ ସାଂଗ୍ରାମ କଲା ରୁକ୍ମଣ ମନ୍ଦବ୍ରୁତେ୍ୟ ।୧୬୩।
ବିଗେଣ ହରି ଛେଦୁଥିଲେ ତାହାର ମୁଣ୍ଡଗୋଟି
ରୁକ୍ମଣୀର ବଚନେ ତାକୁ କଲେ ସାତବେଣ୍ଟି ।୧୬୪।
ଲଜେଣ ନ ଗଲା ସେହୁ ଆଉ କୁଣ୍ଡୀନଗ୍ରକୁ
ହରଉଦ୍ୟାନ ବନେ ସେ ଖଟିଲା ରୁଦ୍ର ଦେବତାଂକୁ ।୧୬୫।
ଭଗତେ ପ୍ରସନ୍ନ ତାଂକୁ ହୋଇଲେ ବିଶ୍ୱନାଥେ
ପିନାକ ସମାନେ ଧନୁଏ ଦେଲେ ତାର ହାଥେ ।୧୬୬।

ରୁଦ୍ର ପ୍ରସନ୍ନେ ସେ ଅଟଇ ମହାବଳୀ
ରାଜ୍ୟେ ପ୍ରବେଶ ହୁଅନ୍ତେ ଭୀମସେନକୁ ଓଗାଳି ।୧୬୭।
କାହିଂର ମାନବ ରେ ଯେତେ ଦର୍ପ କଂପା
ମୃତ୍ୟୁ ଆଶ୍ରେ କଲରେ ପାମର ମନ୍ଦଦର୍ପୀ ।୧୬୮।
ରେ ରେ କାର କରି ଯେ ଧାମଇ କୁମାର
ଭୀମସେନକୁ ଓଗାଳିଲ୍ ସେ କଟକ ବାହାର ।୧୬୯।
ରୁକ୍ମଣ ଆଗ୍ୟାଂ ଦେଲ୍ ଆପଣା ସଇନକ
ବନ୍ଧ ଶିରେ ନାରାଜ ଗୃହ୍ନଂଛ କାହ୍ନଂକ ।୧୭୦।
ଆହୋ ରୁକ୍ମଣ ଆଗ୍ୟାଂପ୍ୟେ ସେ ଧାଇଂଲେ ସଇନ
ବନ୍ଧନ୍ତ ନାରାଜନ୍ତ ଅବଛନ୍ନେ ବାଣ ଘେନ ।୧୭୧।
ରେ ରେ କାର ଶବଦେ ବନ୍ଧନ୍ତ ବୀର ଡାକେ
ଯେସନେକ ବରଷାକାଳେ ଖେପନ୍ତ ବଳାହକେ ।୧୭୨।
ଭୀମସେନ ଯେ ଯାଉଥିଲ୍ ଅତ୍ତବେଗେ
ଆରେ ରହ ରହ ବୋଲ ଆସି ଓଗାଳିଲ୍ ଆଗେ ।୧୭୩।
କରେଣ ଶହସ୍ର ଧରି ବେନିବଳେ ବେଗେ ଉଠି
ବାଣ ଜାଳାବଳୀରେ ହୋଇଲ୍ ଶର ବୃଷ୍ଟି ।୧୭୪।
ଶରେଣ ଶର ଯେ ପଡଛାଳ ବେନି
ଝଲକନ୍ତ ଅସିପନେ ଯେହ୍ନେ ପ୍ରଦୋଷ ବହ୍ନି ।୧୭୫।
ଭୀମସେନର ଥାଟ ଯେ ଉଠିଲେ ଗଳଗାଜ
ରୁକ୍ମଣର ଥାଟ ଯେ ପଳାଇଲେ ଭାଜ ।୧୭୬।
ରୁକ୍ମଣ କୋପକଲ୍ ଯେ ଥାଟଭଗ୍ନ ଦେଖି
ଆପଣେ ଉଠିଲ୍ ବେଗେ ଉତ୍ପ୍ରୋଧ ଉପେକ୍ଷି ।୧୭୭।
ଅବାରଣ ମୁକୁଟବନ୍ଧା ସଙ୍ଗେ ଲକ୍ଷେକ ଯେ ଯୋଧୀ
ପ୍ୟେକମୁଖ ହୋଇଣ ସେ ଆଟକନ୍ତି ବାଣ ବନ୍ଧି ।୧୭୮।
ଭୀମସେନର ସଇନ ନ ଧୁଞ୍ଜନ୍ତ ଅଛନ୍ତ ସର୍ବେ ଲାଗି
ଅନିବାରଣ ଶରେ ବନ୍ଧନ୍ତ ବେଗି ବେଗି ।୧୭୯।
ଆପଣେ ସହୁଂ ରୁକ୍ମଣ ଉଠିଲ୍ ଥାଟ ଘେନି
ଘାପ୍ୟେଣ ଭାଜିଲେ ଯେ ପାଣ୍ଡବ ସଇନ ।୧୮୦।

ସୁଝନ୍ତି ଭଜନ୍ତି ପାଲଟନ୍ତି ପଦ୍ମୁଁ ଦଣ୍ଡ
ଦେଖିଣ ମାରୁତି ଯେ କୋପେଣ ପରଚଣ୍ଡ ।୧୮୧।
ରୁକ୍ମଣ ନାଗଜମାନ କରୁଅଛୁ ବୃଷ୍ଟି
ତୁଷାର ଆକରେ ସେ ପଡ଼ଇ ଶର ଘୋଟି ।୧୮୨।
ଦୁସହ ସମର ଦେଖିଣ ବୀର ଭୀମ
କମ୍ପଇ ଅଧର ବସିଲା ଅଙ୍ଗେ ଘମ ।୧୮୩।
ବାହଇ ତୁରଙ୍ଗମ ହେ ମରୁତ ସାରଥି
ଆକାଶେ ରଥ ନେଲ ସେ ପବନର ଗତି ।୧୮୪।
ମାରୁତିର ହାଥେ କୃତାନ୍ତେକ ଗଦା ଦେଖି
ଭପ୍ତେ ପଳାଇଲେ ସଇନ୍ୟ ସାଂଗ୍ରାମ ଉପେକ୍ଷି ।୧୮୫।
ଦଣ୍ଡଭଗ୍ନ ଦେଖିଣ ହେ ଉଠିଲା ଆପଣ
ନବଲିଗିକୋନ୍ତ ଘେନି ଯେ ବୁଲାଇ ଧାଇଂଲା ରୁକ୍ମଣ ।୧୮୬।
ମିଥୁନ ମେଘେ ଯେହ୍ନେ ଗର୍ଜଇ କର୍ଘାତ
ବୁଲାନ୍ତେଣ ମହାକୁନ୍ତ ଶୁଭଇ ସେହ୍ନମତ ।୧୮୭।
ରୁକ୍ମଣର ଭୁଲେ ସେ ଯେ ଉଠିଲେ ବାଜତେ
ମାଇଲେ ଲଂକଆ ଧର ପବନ ଆଘାତେ ।୧୮୮।
ମୂର୍ତ୍ତି ଦେଖିକର ସହି ନୁଆରିଲେ ପାବେନ୍ନ
ଆପଣେ ଉଠିଲା ହେ କରେଣ ଗଦାବର ଘେନି ।୧୮୯।
ରଥରୁ ଉତ୍ତୁରଣ ଧାମଇଂ ବୀର କୋପେ
ମେଦନୀ ଦଲଦଲତ ପାଣ୍ଡବ ପଦଚାପେ ।୧୯୦।
ରଥେକ ଆରୋହଣ ଯେ ଧାମଇଂ ରୁକ୍ମଣ
ଲକ୍ଷେ କୋନ୍ତ ମାଇଲା ଭୀମସେନର ଉପରେଣ ।୧୯୧।
ଗଦା ବୁଲାଇଣ ଭୀମ ପିଟିଲା ଗଳଗାଜ
ସମସ୍ତ କୋନ୍ତମାନ ସେ ପକାଇଲା ଭାଙ୍ଗି ।୧୯୨।
କାଲେବର ଗଦା ବେଗେ ବୁଲାଇଣ ବୀର ପିଟି
ଭାଙ୍ଗିଣ ରଥମାନ ପଡ଼ିଲା ମହାଲୋଟି ।୧୯୩।
ହାଥୀଂକର ଉପରେ ଆରୋହିଲେ ରୁକ୍ମଣର ସର୍ବ ସେନା
ବୃକୋଦର ଉପରକୁ ବନ୍ଧିଲେ ଯାଗମୁନା ।୧୯୪।

ମରୁତ ଦେବତା ଯାହାକୁ ବରଦାୟେ
ସେ କ ଘୁଞ୍ଚଇ ହୋ ଛର୍ଷୀଂକର ଶର ଘାୟେ ।୧୯୫।
କୋପେଣ ବୁଲାଇଲା କାଳେବର ଗଦାବରେ
ପିଟିଲା ଭୀମସେନ ହାଥୀଂକର ଉପରେ ।୧୯୬।
ବୃକୋଦର ପ୍ରହାରେ ଭଜାଲ ହାଥୀଂକ କୁମ୍ଭସ୍ଥଳ
ଯୋଦ୍ଧା ମାହୁନ୍ତ ଆଦ୍ୟ କର ପଡଲେ ଅସମ୍ଭାଳ ।୧୯୭।
କୋପେଣ ହାଥୀଂକର ଧଇଲା ଯୋରହସ୍ତେ
ବୁଲାଇଲା ମାରୁତ ସେ ପବନ ଆଘାତେ ।୧୯୮।
ଯେକଇ ହାଥୀ ଉପରେ ଆରେକ ହାଥୀ ନେଇ ପିଟି
ଗଜଗାଜ ମହାନାଗେ ପଡଲେ ମହୀଲୋଟି ।୧୯୯।
ପୁଣିହୁଂ ଉଠନ୍ତ ବାରେ କରେ ଧରଣ ଗ୍ରବ
ବରଷନ୍ତ ଊଷମୁନା ନାରଜ ଅସମ୍ଭବ ।୨୦୦।
ନାରଜେଣ ପାଣ୍ଡବ ଯେ ଅଟନ୍ତ ଅଭୟେ
ଶତଶୃଙ୍ଗ ପ୍ରସନ୍ନେ ପାଷାଣ ଧାର କାୟେ ।୨୦୧।
ପୁଣି ପୁଣି ମାରୁତ ଉଠିଲା ମହାରାଗେ
ଗଜେ ଗଜ ଅଶ୍ୱେ ଅଶ୍ୱ କଗୃଡଇ ପରତାଗ୍ରେୟଂ ।୨୦୨।
ଆହୋ ଅସମ୍ଭବ ସେନାୟେ ପଡଲେ ମହୀଲୋଟି
ମହାବାତେ ଯେହ୍ନେ ପଂକୁ ଫଳ ହୋୟେ ବୃଷ୍ଟି ।୨୦୩।
ଦଣ୍ଡ ଅପଚୟେ ସହୁଂ ତାର ଦେଖିଲା ରୁକ୍ମଣ
ପରଘେଳ ବୁଲାଇ ସେ ଧାମଇଂ ଆପଣ ।୨୦୪।
ଦ୍ୱିବ୍ୟ ଶହସ୍ରେକ ବୁଲାଇ ଅସିପତ୍ର
ଭୀମସେନ ଉପରକୁ ମାଇଲା ଯେସେନେକ ନିର୍ଘାତ ।୨୦୫।
ଦେଖିଣ ମାରୁତ ଯେ ପାଡିଲା ଗଦାବର
ବେନଖଣ୍ଡ ହୋଇଲା ରୁକ୍ମଣ ଅସିବର ।୨୦୬।
ପୁଣିହୁଂ ପିଟିଲା ଯେ ପବନ ଆତ୍ମଜେ
ରୁକ୍ମଣ ଉପରେ ନେଇ ପ୍ରହାର କଲା ଗୁରୁତେ ।୨୦୭।

୨୦୨।୨ ଗଜେ ଗଜ ଅଶ୍ୱ କଗୃଡଇ ପ୍ରତଗ୍ୟାଂ ଅଢବେଗେ । (ଥ,ଠ)
୨୦୨।୨ ପ୍ରଢଗ୍ୟାଂ—ପରତାଗ୍ରେୟଂ—ପ୍ରଢଗ୍ୟାଂସ୍ତେ ।

ଶରୀରୁ ରୁଧିର ବାହାର ହୋଇ ଫୁଟି
ନିଚେଷ୍ଟେ ରୁକ୍ମଣ ସେ ପଡ଼ିଲା ମହୀଲେଟି ।୨୦୮।
କୋପେଣ କ୍ଷେପିଲା ସେ ପାଣ୍ଡବ ଅଗ୍ରର୍ଗଳ
ଆକ୍ଷେଷି ଧଇଲା ଯାଇଂ ରୁକ୍ମଣର ବାଳ ।୨୦୯।
ରକତକୁମୁଦ ଜାଣି ବେନିଚକ୍ଷୁ ଅଧରେ ଦନ୍ତ ଚିପି
ବାମକରେ କେଶ ଡାହାଣ କରେ ଖଡ଼ଗ ଧରି କୋପୀ ।୨୧୦।
ଯରେଣ ଛେଦବ ସେ ରୁକ୍ମଣର ମାଥ
ମରୁତ ସାରଥି ଯାଇଂ ଧଇଲା ଭୀମସେନର ହାଥ ।୨୧୧।
ବାବୁ ରାଜାନ୍ତ ନିମନ୍ତ୍ରଣେ ଅଇଲୁ ଧର୍ମ ଅର୍ଥେ
ଯେତେବେଳ ରାଜାକୁ ନାଶକରିବୁ କେଉଂଣ ମନ୍ତ୍ରେ ।୨୧୨।
ସାରଥି ବଚନେ ଭୀମ ସମ୍ବରିଲା ଅସିବର
ରୁକ୍ମଣ ବୋଇଲା ସ୍ୱାମୀ ତୁ କେବଣ ଦେଶର ଦଣ୍ଡଧର ।୨୧୩।
ମୁହିଂ ଯେ ଯୁଦ୍ଧ କଲାଇଂ କୃଷ୍ଣ ବଳରାମେ
ଅଷ୍ଟାଙ୍ଗେ ସେ ବଳଦେବ ମୋତେ ଜିଣିଲେ ସାଂଗ୍ରାମେ ।୨୧୪।
ଭୀମସେନ ବୋଇଲେ ତୁ କିଂପାଇଂ ରାମକୃଷ୍ଣେ ବଇରି
କେଉଂଣ କୃତ୍ୟେ ତୁ ତାହାନ୍ତ ଦ୍ୱନ୍ଦକାରୀ ।୨୧୫।
ରୁକ୍ମଣ ବୋଇଲା ତୁ ଶୁଣ ହୋ ବୀରମଣି
ରୁକ୍ମଣୀଦେବୀ ଅଟନ୍ତି ସେ ମୋହୋର ଭଗ୍ନୀ ।୨୧୬।
ମାତା ପିତାଏ ବରିଲେ ଯେ ଜଗନ୍ନାଥଂକୁ
ମୁହିଂ ବଳାତ୍କାରେ ବରିଲି ଶିଶୁପାଳକୁ ।୨୧୭।
ତହିଂର ନିମନ୍ତେଣ ହୋଇଲା ବଡ଼ ଦ୍ୱନ୍ଦ
ତେଣୁ କରି ଅପମାନ ମୋତେ କଲେକ ଗୋବିନ୍ଦ ।୨୧୮।
ରୁକ୍ମଣ ବଚନ ଶୁଣି ଆଗ୍ରଜ ପାଣ୍ଡବ ଅଗ୍ରର୍ଗଳ
ଧାଡ଼ିକାରେ ଗୁଡ଼ିଲା ସେ ରୁକ୍ମଣର ବାଳ ।୨୧୯।
ଭୁଜେ ଭିଡ଼ ରୁକ୍ମଣକୁ କରଇ କୋଳାଗ୍ରତ
ତୁତ ସୋଦର ମୋହୋର ପ୍ରାଣର ସଙ୍ଘାତ ।୨୨୦।
ଆହୋ ରୁକ୍ମଣ ହରି ବଳରାମେ ଆମ୍ଭର ଶଳା
ତୁତ ରୁକ୍ମଣୀର ସୋଦର ପଦ୍ମନର ମଉଳା ।୨୨୧।

ତୋହୋର ଆତ୍ମରତ ଅନେକ ପୀରତି
ନ ଜାଣିଣ ରୁକ୍ମଣ ତୋତେ କଲାଇଁ ଅନେକ ଦୁର୍ଗତି ।୨୨୨।
ଆହୋ ରୁକ୍ମଣ ତୋତେ ନ ଜାଣି ଦ୍ରୋହକଲୁ
ସମରେ ପରାଭାଇ ତୋତେ ଅନେକ ବୋଇଲୁଂ ।୨୨୩।
ତୁ ଆତ୍ମର ସୋଦର ଯେ ଅଟୁ ଇଷ୍ଟବନ୍ଧୁ
ଧର୍ମେଣ ତୋର ଶିର ନ ଛେଦିଲ କନ୍ଧୁଂ ।୨୨୪।
ଶୁଣିଣ ରୁକ୍ମଣ ଯେ ଶତ ସହସ୍ର ପରଣାମି
ସାଧୁ ବୃକୋଦର ମୋତେ ରକ୍ଷାକଲ ସ୍ୱାମୀ ।୨୨୫।
ଶୂରବର ସୁନ୍ଦର ତୁ ବୃକୋଦର ଜେନା
ମୋହୋର କସ ଦର୍ପ ମୁଂ କଶ୍ମିତ ଜନ ସିନା ।୨୨୬।
ସୁବଧାନେ ନାଥ ମୁଂ ତୋତେ ଭେଟିଲି ପ୍ରତକ୍ଷେ
ମୁକତକଇଂ କାରଣ ଦେବ ମୁଂ ପାଇଲି ସାରକ୍ଷେ ।୨୨୭।
ଜାଗ ନିବାରଣ ତୁ ଯେ ପ୍ରତକ୍ଷେ କଲୁ କ୍ଷମା
ତୁମ୍ଭ ସେ ରଖିଲୁ ନାଥ ପଞ୍ଚମହାଗର ଗାରମା ।୨୨୮।
ମୁହିଂ ମୂର୍ଖଜନ ଯେ ଅଟଇ ସର୍ବଦା ଅଗ୍ୟାନ
ଶରଣମସ୍ତିଲ ନାଥ ମୋତେ ସାହ୍ୱକର ଭୀମସେନ ।୨୨୯।
ବୃକୋଦର ବୋଇଲେ ତୁ ମୋହୋର ପ୍ରାଣସାହା
ସମଦଣ୍ଡ ଦେଖି ଯେବେ ରାଜୁସିଯାଗକୁ ଯା ଯା ।୨୩୦।
ଧନୁମାସ ଶୁକଳପକ୍ଷ ପଉର୍ଣ୍ଣମୀର ତିଥି
ପୁଷ୍ୟାନକ୍ଷତ୍ରେ ଯାଇଂ ପ୍ରବେଶ ହୋଇବୁ ଧାତି ।୨୩୧।
ରୁକ୍ମଣ ବୋଇଲା ସ୍ୱାମୀ ସଦୟେ ଯେବେ ଚତ୍ତେ
ମୋହୋର ପୁରେ ମୁଣୋହ୍ନ କଲେ ତେବେ ସେ ଯାଇଂ ପ୍ରତେ ।୨୩୨।
ଭୀମସେନ ବୋଇଲା ତୋହୋର ମାଇଲି ଅନେକ ସଇନ
ଅନେକ ଯୋଧ ତୋର ରାଜ୍ୟେ ଶୁଭଇ ଧୂନ ।୨୩୩।
ଆହୋ ରୁକ୍ମଣ ମୁଂ ତୋତେ କଲଇ ଅନେକ ଅପରାଂଜୟେ
ବାରତାପାଇ ବେଗେ ଅଇଲେ ଭୀଷ୍ମକ ମହାରାୟେ ।୨୩୪।
ନରେନ୍ଦ୍ରେଣ ପାୟେତ୍ତା ପାଡଣ ନରପତି
ବେଳେ ଦ୍ରଶନ ଯାଇଂ କଲାକ ମାରୁତି ।୨୩୫।

ଗୃହମଧ୍ୟରେ ଥୋଇଲା ନେଇ ପାଦାଅର୍ଘ୍ୟସ୍ଥାଳୀ
ଭୀମସେନ ଅଗ୍ରତେ କରଇ କୃତାଞ୍ଜଳି ।୨୩୬।
ଆନନ୍ଦେ ଅଶ୍ରୁଜଳ ବହଇ ଚକ୍ଷୁବେନି
ଭୀଷ୍ମକ ପୂଜାକଲା ଅନେକ ରତ୍ନ ଘେନି ।୨୩୭।
ଅନେକ ସ୍ତବନୋକ୍ତି କହଇ ଭୀଷ୍ମକ ନୃପବର
ତୁ ସେ ପଞ୍ଚମହାବଗର ଠାକୁର ବୃକୋଦର ।୨୩୮।
ସ୍ୱାମୀ ଶାସ୍ତି କଲେହେଁ ତୁମ୍ଭେ, ନାଶିଲେ ହୋ ତୁମ୍ଭ
ଶରଣ ରକ୍ଷଣ ଦେବ ତୋ ଡହୁଂ ଆନ ନାହିଂ ।୨୩୯।
ମୁହିଂ ନ ଜାଣି ମରାଇଲି ଅନେକ ସଇନ
ମୁହିଂ ସେ ହାରିଲି ତୋହୋର କସ ଅପମାନ ।୨୪୦।
ମୋହୋର ଭୁବନକଇଂ ଯିବା ହେ ଦେବେ ଯେବେ
ସର୍ବପାତକ ନାଶିବ ଯାହା ଅର୍ଜିଅଛି ପୂର୍ବେ ।୨୪୧।
ସ୍ୱାମୀ ମୋହୋର ରାଜ୍ୟେ ତୋହୋର ପଡିଲେ ପାଦରଜ
କୁଣ୍ଡୀନଗ୍ରୀ ମୋହୋର ହୋଇବ ଅଇଶ୍ୱର୍ଯ୍ୟ ।୨୪୨।
ତୋହୋର ସ୍ନାହାନ ଉଦକ ପଡିଲେ ମୋହୋର ରାଜ୍ୟର
ସୁବଧାନେ ବୃଷ୍ଟି ଯେ କରିବେ ସୁରେଶ୍ୱର ।୨୪୩।
ଆଜହୁଂ ନିକଣ୍ଟକ ହୋଇବ ମୁହିଂ ରାଜା
ଆହୁଂ ସୁଖୀ ହୋଇବେ ମୋହୋର ସକଳ ଜନପ୍ରଜା ।୨୪୪।
ଆଜହୁଂ ସୁଲଭ ହୋଇବେ ମୋହୋର ପିତା ମାତା
ତୁମ୍ଭ ସେ ବୃକୋଦର ମୋହୋର ଇଷ୍ଟ ଯେ ଦେବତା ।୨୪୫।
ଅନେକ ସ୍ତୁତି କରି ଭୀଷ୍ମକ ନୃପବର
ଭୀମସେନ ଠାକୁରଂକୁ ଘେନି ପ୍ରବେଶ କଟକ ଭିତର ।୨୪୬।
ଆହୋ ବୃନ୍ଦାଅର୍କେ ଦେଖି ଯେହ୍ନେ ଧାମନ୍ତି ମନୁଷ୍ୟେ
କ୍ରୋଧ ଚିନ୍ତା ଗୃହକରି ଧାମନ୍ତି ହରଷେ ।୨୪୭।
ତନପୁନନ୍ତ ଘେନି ରାଜା ଯେ ଭୀଷ୍ମକ
ଗୃହର ଡାକୁଛନ୍ତି ଭୀମସେନର ବେନିପାଖ ।୨୪୮।



ଇନ୍ଦ୍ର ଦେବତାଂକୁ ଦେଖି ଯେହ୍ନେ ସାନନ୍ଦ ହେମବନ୍ତ
କୁଣ୍ଡୀନଗ୍ର ଦେଶ ଲୋକେ ଅନେକ କୃତ କୃତ ।୨୪୯।
ସୁବର୍ଣ୍ଣ କଲଶେ ନେତପାଟାଙ୍ଗ ଉଡନ୍ତ
ଉଭ୍ର ସଡା ଦୋଣା ଉଭାରିଲେ ଚଉକନ୍ତ ।୨୫୦।
ଅନେକ ଆଲମ୍ବ ପାଟଛତ୍ର ଗହନେ
ଗ୍ରୁମୁରେ ନୃତ୍ୟ ଗୀତ କରନ୍ତ ଭରହରଷ ନାୟେକାମାନେ ।୨୫୧।
ସୁବର୍ଣ୍ଣର ଜଗଣ୍ଟ ମଣ୍ଡିଲେ ଝରମଳେ
ବଳଘ୍ୱେ ପାଣ୍ଡବ ଯାଇଂ ମାହାନ୍ଦ୍ର ଯୋଗବେଳେ ।୨୫୨।
ରାଜ୍ୟେଣ ଉତ୍ସବ ଯେ କରାଇଲେ ଭୀଷ୍ମେକ ନୃପବର
ଅନେକ କୃତ କୃତ କୁଣ୍ଡୀନଗ୍ର ପୁର ।୨୫୩।
ଯହ୍ନଂ ସେ ପ୍ରସନ୍ନ ମୋତେ ପାଣ୍ଡବ ପଞ୍ଚାଳ
ଆବର କାହାକୁହ୍ନଂ ଭୟେ ନାହ୍ନଂ ମୋର ସର୍ବକାଳ ।୨୫୪।
ଅହ୍ନଗ୍ରତେକ ସୂପକାର ହକାର ନୃପମଣି
ରାନ୍ଧଣା ଯୋଗାଡ ଗ୍ରୁମୁକୁ ବେଗେ ଆଣି ।୨୫୫।
ଭୀମସେନ ଗ୍ରୁମୁରେ ହେଲେ ନଡପ ଯୋଗାଡ
ସୂପଂକୁ ଅନ୍ନମାନ ମେଞ୍ଜନ ଅପାର ।୨୫୬।
ଆପଣାର ସୂପକାର କରନ୍ତ ରନ୍ଧନ
ବଳମ୍ବ ଦେଖି ଆପଣେ ପଶଇ ଭୀମସେନ ।୨୫୭।
ଗଉଗ୍ର ଶଉଗ୍ର ନଳ ବଧି ରାନ୍ଧଣା ତନ୍ତ୍ରପ୍ରତ
ବାଳକାଳେ ଦୋହୋରାୟେ ପ୍ରସନ୍ନେ ଦେଇଛନ୍ତ ।୨୫୮।
ଦୋହୋରା ସୁମର ଯେବଣ ପାକ ବାର କରଇ ଲାଗି
ତତକ୍ଷଣେ ରନ୍ଧନ ହୋଅଇ ବେଗି ବେଗି ।୨୫୯।
ଶତେ ପଉଟି ତଣ୍ଡୋଳ ପ୍ରହରକେ ପଚ
ହାଥ ଲାଗନ୍ତେ ସେ ଅମୃତ ପାକ ହୋଉଅଛୁ ।୨୬୦।
ପାଞ୍ଚଘଡର ମଧ୍ୟେ ହୋଇଣ ରାନ୍ଧଣା
ସ୍ତ୍ରାହାନସାର ମୁଣୋହ୍ନରେ ବଜେ ପବନ ଦୁଲଣା ।୨୬୧।
ରାନ୍ଧ ହୋଇଅଛୁ ଯେ ସମ୍ପୂର୍ଣ୍ଣ ସାତଘଡ
ଷାଠିୟେପଉଟି ଅନ୍ନ ଭୋଜନ ବାର କର ।୨୬୨।

ଆବର ଅନ୍ୟ ଯେ ଶୃକଳଶପଉଣ୍ଟି
ଯୋଦ୍ଧା ଗଉଡ ସଇନ ସବୁଂଙ୍କୁହ୍ନଂ ଅଣ୍ଟି ।୨୬୩।
ଭୋଜନେ ଅବିପୁତ୍ତ ଯେ ସାଂଗ୍ରାମେ ଅବିପୁତ୍ତ
ନିଦ୍ରାରେ ଅବିପୁତ୍ତ ଯେ ମଇଥୁନେ ଅବିପୁତ୍ତ ।୨୬୪।
ଗମନେ ଅବିପୁତ୍ତ ସେ ଶବ୍ଦସ୍ତ୍ରେ ଶାହାସ୍ତ୍ରେ ଅବିପୁତ୍ତ
ଭରହର ବାଦ୍ୟେ ଅବିପୁତ୍ତ ଯନ୍ତ୍ରବାଦ୍ୟେ ଅବିପୁତ୍ତ ।୧୬୫।
ଭୋଜନ ସାରଣ ସେ କଲେକ ଆଂଗ୍ରେବନ
ସିଂହାସନ ପରେ ବଜେ ପବନ ନନ୍ଦନ ।୨୬୬।
ଆପଣେ ରୁକ୍ମଣ ଯେ ତାମ୍ବୋଲ ଦଲ ସଞ୍ଚ
ନାନା କୁସୁମେ କେଶ ଯେ ସାଂକୋଉଣ ଅଛୁ ।୨୬୭।
କୁଟୁମ୍ବଯାକ ଘେନ ସେ ଭୀଷ୍ମେକ ନୃପବର
ଭୃତ୍ୟପଣେ ଖଟିଅଛୁ ଭୀମସେନର ଗ୍ରୁମୁର ।୨୬୮।
ଶ୍ରୀହସ୍ତେ ଶାଡୀ ଦଲେ ଯେ ପବନ ଆତ୍ମଜା
ବଡ ବିପୁତ୍ତ ଆମ୍ଭକୁ ହୋ କରଇଲୁ ମହାରାଜା ।୨୬୯।
ମାଗ ହୋ ଭୀଷ୍ମେକ ଯେ ତୋହୋର ମନଇଚ୍ଛା
ସତ୍ୟବାକ୍ୟେ ବୋଲୁଅଛୁ ମୁଂ ତୁମ୍ଭର ପୁରେଇବ ମନୋବାଞ୍ଛା ।୨୭୦।
ଭୀଷ୍ମେକ ବୋଇଲା ଯେବେ ବରଦେବୁ ହୋ ପାବେନ
ମହାଭାରଥ ଯୁଦ୍ଧେ ମୋହୋର ପୁତ୍ରନ୍ତ-ଥିବୁ ଚହ୍ନି ।୨୭୧।
ଭୀମସେନ ବୋଇଲା ସ୍ବେ ପୋସ୍ବେ ଯେବେ ମୋହୋର କଡ
ମୋହୋର ଦେହ ଥିବା ଯାସ୍ବେ ତୋହୋର ପୁତ୍ରନ୍ତ ନାହ୍ନଂ ଭୀତ ।୨୭୨।
ଆହୋ ଭୀଷ୍ମେକ ଯଦ୍ୟପି ହୋଇବେ ତୋହୋର ପୁତ୍ର କଉରବଂକ କଡ
ଚହ୍ନିଲେ ନ ମାରବ ସ୍ବେ ମୋହୋର ବିବାର ସତ୍ତ୍ୟ ସତ୍ତ୍ୟ ।୧୭୩।
ସ୍ୱାମୀ ମହନ୍ତଂକର ବାକ୍ୟ ଯେ ପାଷାଣ ରେଖା ଜାଣି
ଆଜ୍ଞଂ ମୋହୋର ପୁତ୍ରଂଙ୍କୁ ନିର୍ଭ୍ରାନ୍ତ ହୋଇଲଇଂ ପୁଣି ।୨୭୪।
ରାତ୍ର ଅଡାଇ ପ୍ରହରେ ଭୀମସେନର ସଜାଉଂ ବାଜେ
କୁଣ୍ଡୀନଗ୍ର କଣି ପ୍ରବେଶ ପଦ୍ମଦଳ ରାଜ୍ୟେ ।୨୭୫।
ବୃଦ୍ଧମାନବଂଶିକ ରାଜା ପଦ୍ମ ଯେ କେଶରୀ
ପାଞ୍ଚଶତ ପାଶଦଣ୍ଡ ଘେନ ସେ ରାଜା ସମ୍ପରେ ରାଜ୍ୟ କର ।୨୭୬।

ସପତ କ୍ଷଉଣୀ ସନ୍ୟବଳ ତାହାକୁ ଅଛଇ
ପଦ୍ମଦଳ ଦେଶରେ ସେହୁ ଠାକୁର ଅଛଇ ।୨୭୭।
ତାହାର ଦେଶେ ଯାଇଂ ପ୍ରବେଶ ମହାବୀର
ବୀରତୂର ଶବଦେ ଯେ କମ୍ପିଲା ମହୀଭାର ।୨୭୮।
ରାଜାର ଅଗ୍ରତେ ଯାଇଂ ଜଣାଇଲେ ମୁନେନ୍ଦ୍ର
ସ୍ୱାମୀ କେବଣ ଦେଶର ରାଜା ପଦ୍ମଗିରି ଶିଖରେ ଅଛୁ ରହି ।୨୭୯।
ରଥ ଅଳପ ଗଜ ଅଳପ ପାଦାନ୍ତବଳ ହେଳ
ବାଣତୂର ଶବଦେ ଯେ କମ୍ପିଲା କୁରୁମ ଉଚ୍ଛଳ ।୨୮୦।
ସ୍ୱାମୀ ବଡାଇ ପ୍ରତଗ୍ୟାଂ ସେ ଅଭୟେ ବଳବନ୍ତା
ଯୋଦ୍ଧାପଣେ ସାମରଥା ପ୍ରାକ୍ରମେ ଶକତା ।୨୮୧।
ବର୍ତ୍ତର ବୁଝିବା ପଦ୍ମଦଳ ଦେଶର ଅଧିକାରୀ
ସନ୍ଧାନ ଦେବା କି ତାହାକୁ ପାରିବା କି ସାଂଗ୍ରାମ କରି ।୨୮୨।
ଶୁଣିଣ ରାଜ୍ୟେଶ୍ୱର କଥା କୁତୂହାଳେ
ତିନିଲକ୍ଷ ଯୋଦ୍ଧା ରାଇଲ ରବ ଅସ୍ତ୍ରକାଳେ ।୨୮୩।
ସାଜ ରେ ମାତଙ୍ଗ ମହାବଳ ମତ୍ତହାଥୀ
ରାଜ୍ୟକୁ ପଶି ନ ଦିଅ ଧରିଆଣରେ ସେହୁ ରଥୀ ।୨୮୪।
ପଦ୍ମଦଳକେଶରୀ ରାଜାର ନିରାଧାର ବଚନେ
ସମ୍ପଦଣ୍ଡ ହେନି ଧାଇଂଲେ ମୁକୁଟବନ୍ଧା ଯୋଦ୍ଧାମାନେ ।୨୮୫।
ବାହୁଡି ହୁଳା ଚହ୍ନଂ ଯେ ଲଗିଲ ବେନିକୋଟି
ରାବକାଳେ ମହୀନ୍ଦ୍ର ଗିରିମାଳ ଆସଇ କି ଉଠି ।୨୮୬।
ଧର ଧର ମାର ମାର ପଡୁଅଛୁ ଘୋର ଡାକ
ମେଦିନୀ କମ୍ପୁଅଛୁ କ୍ଷତ୍ରୀଂକର ବୀରହାକ ।୨୮୭।
ଭୀମସେନକୁ ବୋଇଲ ସେ ମରୁତସାରଥି
ଦଣ୍ଡ ଗୋଟାଏ ସାଜ ଆସୁଅଛୁ ରାଜା ନିଶାରାତ୍ର ।୨୮୮।
ବିଶେଷେ ଅନ୍ଧକାର ସେ ଦୁଗୁଣ ରଜନୀ
ସାଂଗ୍ରାମେ ପଡିଲେ କେହି ନୁଆରିବା ଚହ୍ନି ।୨୮୯।
ଆହେ ବୃକୋଦର କରିବା କେଉଂଣ ଉପାୟେ
ଯେହୁକ୍ଷଣି ମରିବେ ଯେହାର ସଇନ ନୈଗୃଏ ।୨୯୦।

ଭୀମସେନ ବୋଇଲା ତାତ ନ କହ ଏମନ୍ତ
ଥୋକାଏ ନ ମଲେ ହାଦେ ଏହାର ନ ଭାଞ୍ଜଇ ମତ ।୨୯୧।
ମୁହିଂତ ଅର୍ଗଳା ଷଣ୍ଢି ଏ ରଣରଂକା
ସବୁନ୍ତ ମାରିପାରଇ ଏକା ଜଗନ୍ନାଥଂକୁ ମୋତେହାର ଶଂକା ।୨୯୨।
ଯେତେ ପ୍ରତଗ୍ୟାଂ କରୁଛନ୍ତି ରାଜାମାନେ
ଏମାନନ୍ତ ଜର ବନ୍ଦୀ କରିଥିଲଟି ପକାନ୍ତା ହୁତାଶନେ ।୨୯୩।
ଜରାସନ୍ଧ ମାରି ମୁଂ ଯେ ଉଦ୍ଧରିଲି ସବୁନ୍ତ
ବିଶାଶତେ ଦିନ ନିହାଇ ହୋଆଇ ପାସୋରିଲେ ସକଳ ନୃପତି ।୨୯୪।
କହୁଂ କହୁଂ ବ୍ରିକୋଦରର ବଢ଼ିଲାକ ମହାରାଗ
ପର୍ବତ ଉପରୁ ଡେଇଁ ପଡିଲାକ ଅତିବେଗ ।୨୯୫।
ନିଦାଘକାଳେ ଯେନ୍ହେ ଦିଶଇ କୃତାନ୍ତ
ସେଇ ସରୂପ ବିକାଶଇ ଭୀମସେନର ଗାତ୍ର ।୨୯୬।
ବେନିଲୋଚନ ବିକାଶଇ କାଳଚନ୍ଦ୍ର ପ୍ରାଏ
ଶୂନ୍ୟଭୁବନ ଭେଦଇ ଘୋର ରୂପକାଏ ।୨୯୭।
ମନ୍ଦର ଗିରି କି ନିଜ ସ୍ଥାନ ଗ୍ରୁଡି ଉଠି
ସେହ୍ନ ସରୂପେ ବୀର ପଦ୍ମଦଳ ଥାଠକୁ ଘୋଟି ।୨୯୮।

ବିରୂପ ବୀରଭଦ୍ର ବୋଲି ବେନି ସେନାପତି
ସେ ଦୁହେଂ ଲଗିଛନ୍ତି ବ୍ରିକୋଦରର ବେନି କତି ।୨୯୯।
ରାହୁର ଭୁଲେ ଯେସନେକେ କେତୁ ଯେ ମଙ୍ଗଳ
ସେହ୍ନ ସରୂପେ ଦିଶନ୍ତି ତିନିହେଂ ଅର୍ଗଳ ।୩୦୦।
ରେ ରେ କାରି ଶବଦେ ଯେ ଉଠିଲେ ଗଳଗାଜ
ହାସେଣ ପଦ୍ମଦଳ ଥାଠ ପଳାଇଲେ ଭଜି ।୩୦୧।
ପାଣ୍ଡବ ସୁନ୍ଦର ଯେ କରେଣ କାଳେବର ଗଦା ଧରି
ଯେସନେକେ ମତ୍ତଗଜଙ୍କୁ ନ ଗଣଇ କେଶରୀ ।୩୦୨।
ବ୍ୟାଘ୍ର ଦେଖିଣ ଯେହ୍ନେ ପଳାବନ୍ତି ସୁରଭି
ଧାମଇଂ ମାରୁତି ଯେ ଗଦାବର ପ୍ରାଭବି ।୩୦୩।
ଗିରିବର ସାଦ୍ରିଶେ ଭୀମ ଗଦା ବୁଲଇଲା ତୋଳି
ରଥ ଗଜ ଅଶ୍ୱ ପାଦାନ୍ତି ସମସ୍ତ ହୋଉଛନ୍ତି ଧୂଳି ।୩୦୪।

କୋପଭରରେ ଦନ୍ତ ସେ ଘୃଷନ୍ତେ ବେଳପାଠି
ମେଘଗର୍ଜନ ପ୍ରାୟେ ଶୁଭଇ ଅନାବୃଷ୍ଟି ।୩୦୫।
ଆହେ। ବଇବସୁତ ମନୁ ଅଣି ସହସ୍ର ଯୋଦ୍ଧାଏ ଯେ ଥିଲେ ଆଗିଆଣି
ଗଦା ପ୍ରହାରେ ପଡ଼ିଲେ ଯେସ୍ନେହେ ବାତେ କଦଳୀ ବନ ଜାଣି ।୩୦୬
ଗଦା ବୁଲାବନ୍ତେ ଉଡ଼ିଲେ ରଥ ଅଶ୍ୱ ଗଜେ
ପଡ଼ନ୍ତି ଅନେକ ଦୂରେ ଚୂର ହୋଇ ସର୍ବ ଭାଂଜେ ।୩୦୭।
ରାଜାର ନଗରେ ପଶିଲେ ଗଳଗାଜ
ଗଦାବର ବଘାତେ ଘରମାନ ପଡ଼ୁଛନ୍ତି ଭାଂଜ ।୩୦୮।
ଭୁଳ କୃଷ୍ଣ ଅମାବଇରେ ଯେସ୍ନେହେ ସ୍ୱାଞ୍ଚ ପବନ
ସେହ୍ନ ରୂପେ ଭାଞ୍ଜିଲେ ଘର ବୃକ୍ଷମାନ ।୩୦୯।
ଦେଖିଣ ପଦ୍ମକେଶରୀ ଯେ କଲ୍ପକ ମହାଭୟେ
ରାଜ୍ୟ ତେଜଣି ସେ ଯେ ପଳାଇଲା ରାୟେ ।୩୧୦।
ଆରେ ରହ ରହ ବୋଲି ଡାକଇ ପାବେନ
ରାଜାକୁ ଗୁଡ଼କର ପଳାଇଲେ ସକଳ ସଇନ୍ୟ ।୩୧୧।
ମରୁତ ସାରଥି ବୋଲଇ ନ କର ଭୀମ କୋହ
ରାଜାଂକୁ ଯାଇଂ ଜଣାଇବା କଥାର ସନ୍ଦେହ ।୩୧୨।
ଆହେ। ଭୀମସେନ ନିସତ ହୋଇ ସେ ପଳାଇଲା ରାଜ୍ୟ ତେଜ
ସନ୍ୟ ନ ମାର ତାହାର ରାଜ୍ୟ ପକାଇଲୁ ଭାଂଜ ।୩୧୩।
ଏମନ୍ତେ ବୃକୋଦରେ ସମାର୍ଜି ଚଳଇ ମରୁତ
ପଦ୍ମକେଶରୀ ପଳାବନ୍ତେ ଓଗାଳିଲା ତୁରିତ ।୩୧୪।
ଆହେ। ରହ ରହ ପଦ୍ମକେଶରୀ କାହ୍ନିଂକ ପଳାଉ
ଖେଳନ୍ତା ସିଂହ ଗୁମ୍ଫୁରୁ କେତେ ଦୂର ଯାଉ ।୩୧୫।
ଜାରା ନିଶୋଧନ ପ୍ରତଗ୍ୟାଂ ଯାର ସାଧୁ
ଭଗତଜନ ମଙ୍ଗଳ ଶରଣପଞ୍ଜର ଯାହାର ବିରଧି ।୩୧୬।
ଆହେ। ପଦ୍ମକେଶରୀ ଭୀମସେନ ପଞ୍ଚମ ହଗଦ୍ୱଜେ ବୋଲି ନ ଜାଣୁଂ କ
ଚଞ୍ଚଳ ପବନ ଗୁମ୍ଫୁରୁ ତୁ ପଳାଉ କାହ୍ନିଂକ ।୩୧୭।
ଭୀମସେନ ହଗଦ୍ୱଜେ ଶୁଣି ପଦ୍ମକେଶରୀ
ରଥର ଉପରୁ ରାଜା ପଡ଼ିଲା ଉବୁର ।୩୧୮।

ଶ୍ରିଯୁ୍ୟ ସୁମନ୍ତ ବୋଲଣ ବେଗେ ପାଠଗ୍ରଣୀ
ଚାହାନ୍ତ ଯେନ ଆସି ପ୍ରଣପତ୍ୟ କଲ୍ଲକ ନୃପମଣି ।୩୧୯।
ଖ୍ରୀମସେନ ଠାକୁରେ ଉଭ୍ଭ ହୋଇଛନ୍ତି ମେଡର ଉପରେ
ମୁଖରେ ହାଥଭର ପ୍ରଣପତ୍ୟ ନୃପବରେ ।୩୨୦।
ପଦ୍ମକେଶଗ୍ଧ ଗ୍ରଜା ଅନେକ ଧୂରୁଂ ଆସଇ ପରଣାମି
ବୋଲଇ ଦଣଦୋଷ ଅପ୍ରାଧ କ୍ଷମା କରବାକ ଦେବସ୍ୱାମୀ ।୩୨୧।
ସ୍ୱାମୀ ଜଗ୍ସନ୍ଧ ଘରେ ମୁହ୍ବଂ ପଡ଼ଥିଲ ବନ୍ଦୀ
ଅନେକ ଶାସ୍ତି ଆମ୍ଭନ୍ତ ସେ ଦେଉଥିଲ ବାନ୍ଧ ।୩୨୨।
ମହାଘୋରୁ ଉଦ୍ଧାରଣ କଲ୍ ଯେତୁଣ ଜନ
ସ୍ୱାମୀ ଚହ୍ନି ନୁଆରଲ ଶାସ୍ତି ପାଇଲ ଅକାରଣ ।୩୨୩।
ମତିହୀନ ବାକ୍ୟହୀନ କ୍ରିୟା ମୋର ହୀନ
ପରଲୋକ ବନ୍ଧୁ ମୋତେ ଉଦ୍ଧର ହୋ ଭୀମସେନ ।୩୨୪।
ଜତ ମହାପ୍ରସାଦ ବୋଇଲେ ଗଦାପାଣି
କାଳେବର ବୋଇଲେ ତୁ ଉଠ ହୋ ନୃପମଣି ।୩୧୫।
ଆଗ୍ୟାଂ ପ୍ରମାଣେ ପଦ୍ମକେଶଗ୍ଧ ଗ୍ରେଷ୍ଟ ଉଠି
ଆନନ୍ଦେ ଅଶ୍ରୁଜଳ ବହଇ ବାକ୍ୟ ନୁଆସଇ ଫୁଟି ।୩୨୬।
ଅକ୍ଷତ ତାମ୍ବୁଳ ନେଇ ତାକୁ ହଲେକ ପାବେନ
ଚଳସି ହୋ ପଦ୍ମକେଶଗ୍ଧ ତୋହୋର ପାରଦଣ୍ଡମାନନ୍ତ ଯେନ ।୩୨୭।
ଶୁଭେ ପ୍ରବେଶ ହୋଅ ଗ୍ରଜୁସ୍ୱିଯଗ୍ୟଂ ସଭ୍ଭ
ଅଗ୍ୟାନେ ଦୋଷ ତୁ କଲୁସି ରେ ବାବା ।୩୨୮।
ପୁଣ ପୁଣ ପ୍ରଣପତ୍ୟ ପଦ୍ମଦଳ ଅଧିକାଗ୍ଧ
ସ୍ୱାମୀ ମୋହୋର ପୁରେ ମୁଣୋହ୍ୱ ଯିବା ବଜେକଗ୍ଧ ।୩୨୯।
ଭୀମସେନ ବୋଇଲା ମୋର ସୁଖଭୋଗେ ନାହ୍ୱଂ ଇଚ୍ଛା
ଯଗ୍ୟଂ ସନ୍ନିଧି ହୋଇଲାନି ଜଗନ୍ନାଥଂକର ବଡ଼ାଇ କଇଛା ।୩୩୦।
ଆହୋ ପଦ୍ମକେଶଗ୍ଧ ନଉଦ୍ଦବସର ମଧ୍ୟେ ଯେବେ
ଗ୍ରଜାନ୍ତ ଯେ ନୁଆଣିବ
ଯେଉଂଠାରେ ଥିବ ସେହ୍ୱଠାରେ ଚକ୍ରରେ ଛେଦନ
ହୋଇବ ବୋଲି ବୋଲଛନ୍ତି ବାସୁଦେବ ।୩୩୧।

ଆହୋ ପଦ୍ମକେଶରା ସେହେନ୍ତକେ ସନ୍ଦେଶ ବାସୁଦେବଂକର ଆଗ୍ୟାଂ
କାହାର ବେଳେ ତାହା କରିବ ଅବଗ୍ୟାଂ ।୩୩୨।
ଆହୋ ଆମ୍ଭେ ଏତପେ ହୋଇଲୁନ ଅପରାଧୀ
ପଞ୍ଚାଶ ସହସ୍ର ରାଜା ନଉଦ୍ଧବତେ କେମନ୍ତେ କରିବ ସାଧି ।୩୩୩।
ଆହୋ ପଦ୍ମକେଶରା ଜରାସନ୍ଧ ବଧକାଳେ
ରାଜସୁିଯଗ୍ୟଂ ବୋଲି କହିଲେଟି ଭୁମ୍ଭନ୍ତ ହରି
ନଅଲ ଫେଡିବାର ବେଳେ ।୩୩୪।
ତେତେକ କଥା ଯେବେ ପାସୋରିଲୁ ଭୁହି ପାଞ୍ଚମାସେ
ପୁଣିହିଂ ସାଂଗ୍ରାମ କର କଥାର ଅବଶ୍ଯାସେ ।୩୨୫।
ଯେତେ ବୋଲକରି ରାଜାକୁ ଚଳାଇ
ମରୁତ ସାରଥିକ ବୋଇଲା ଚାଲ ବେଗେ ରଥ ବାହି ।୩୩୬।
ପଦ୍ମଦଳ ରାଏ ତନ୍ତୁଂ କଲାକ ପରସ୍ତାନ
ହଜପୁ ପାଣ୍ଡବ ସୁନ୍ଦର ହିରଣ୍ୟନାମେ ବନ ।୩୩୭।
ହିରଣ୍ୟକେଶରା ବୋଲି ଯେକ ନଦୀଗୋଟି
ପଞ୍ଚୁଧାରା ପର୍ବତୁଂ ସେ ବାହାର ହୋଇ ଫୁଟି ।୩୩୮।
ସେ ନଦୀର କୂଳେ ପଚ୍ଛିମଆଡେ ମାଧବସେନ ନୃପତି
ସେହି ହିରଣ୍ୟ ନଗ୍ରେଣ ସେ ଅଟଇ ଆଧିପତି ।୩୩୯।
ସେ ରାଜାର ଦେଶାଉର ପଦ୍ମଦଳ ଦେଶରେ ଥିଲା
ସେ ଯାଇ ମାଧବସେନ ରାଜା ଆଗରେ ବାରତା କହିଲା ।୩୪୦।
ସ୍ୱାମୀ ପଚ୍ଛିମଦ୍ୱାର ବରଣେ ବୃକୋଦର ଜେନା
ଅନେକ ରାଜାମାନଂକର ରାଜ୍ୟ କରି ଆସୁଅଛୁ ଚୂନା ।୩୪୧।
ଆହୋ ମାଧବସେନ ସେ ଶରଣ ପଞ୍ଚାର କଇଛା ଜଗଜ୍ଜେଠୀ
ସମଦଣ୍ଡ ଘେନି ରାଜା ଚାଲ ଯିବାକ ପାଗ୍ରେଟି ।୩୪୨।
ଦେଶାଉର ମୁଖରୁ ଯେସନକ ବାରତା ଶୁଣି
ଅଗିଲକ୍ଷ ତୁରଙ୍ଗମ ମାଧବସେନର ପଲାଣି ।୩୪୩।
ସୁବର୍ଣ୍ଣର ଲେଖନ ପାଟ ପରିହରଣ ସର୍ବାଙ୍ଗେ
ମୁକୁତା ଫେର ଝଲକତ ମାଣିକ୍ୟର ସଙ୍ଗେ ।୩୪୪।

କାହାର ହାଥେ ପାଟଛତ୍ର କେ ଆଲଟ ଗୃମରେ
ଅଣିଲକ୍ଷ ଯୋଦ୍ଧା ଯେ ହୋଇଲେ ବାହାରେ ।୩୪୫।
ଭୀମସେନ ଆହାର୍ଣ୍ଣିକ ସାରନ୍ତ ନଗ୍ର ହିରଣ୍ୟକେଶୀ
ଯେଉଁମନ୍ତର ସମୟେ ମାଧବସେନ ରାଜା ପ୍ରବେଶ
ହୋଇଲକ ଆସି ।୩୪୬।
କାଳଞ୍ଜନ ପଡ଼ିହାରୀ ଯେ କାଳଧ୍ୱଂସନ ଡଗର
ଆହୋ ଠାକୁରଂକ ଆହାର୍ଣ୍ଣିକ ବେଳ ରହ ରହ ସେହିଠାର ।୩୪୭।
ଶୁଣିଣ ମାଧବସେନ ରହିଲା ଅପସରି
ସମସ୍ତ ସନ୍ୟ ତାହାର ରହିଲେ ଦୃଷ୍ଟି ଅବଲୋକନ କରି ।୩୪୮।
ଗ୍ରୁମୁରେ ଜଣାଇଲେ ଯାଇ କାଳଞ୍ଜନ ପଡ଼ିହାରୀ
ସ୍ୱାମୀ ମାଧବସେନ ରାଜାୟେ ଆସୁଛୁ ଦ୍ରଶନ କର ।୩୪୯।
ଆଗ୍ୟାଂ ହୋଇଲା ହୋ ଆସୁ ସେ ମାଧବ
ଦେଖିଲେ ଥାଠଯାକ ତାହାର ସମସ୍ତେ ଭଗତଭାବ ।୩୫୦।
ଆଲମ୍ବ ପାଟଛତ୍ର ଉଦ୍ଧଣ୍ଡ ମୟୂରଝାଲ ପଚ୍ଛୀୟେକଲଖୀ
ଅବଲୋକନ କର ଭୀମସେନ ଠାକୁରେ ତାହା ଦେଖି ।୩୫୧।
ଗୃହାନ୍ତେ ମାଧବସେନ କଲକ ନିଉଗ୍ଛାଳ
ଆଲଟ ଗୃମର ମୟୂରଝାଲି ପଖା ଭେଟି ଡାଳ ।୩୫୨।
ଦେଖା ଦରଶନକୁ ସହସ୍ରେ ଭାର ଧନ
ଭେଟିଣ ନିଉଗ୍ଛାଳ କଲକ ସେ ମାଧବସେନ ।୩୫୩।
ଦେଖିଣ କୋଳାଗ୍ରତ ତାହାନ୍ତ କଲେକ ଭୀମସେନ
ଆମ୍ଭର ସୋଦର ବାସୁଦେବଂକର ତୋହୋର ଯେଉଁକନାମ ।୩୫୪।
ଆବର ବେଳେ ଆମ୍ଭଂକୁ ନ କରିବ ପ୍ରଣାମ
ଶ୍ରୀକରେ ଶାଢ଼ୀ ଢଲେକ ପାର୍ଥିବ ଭୀମସେନ ।୩୫୫।
ସମଦଣ୍ଡ ଭେଟି ରାଜସୂୟ ଯାଗକୁ ଯାଅ ଯା ମାଧବସେନ ।୩୫୬।
ଭୀମସେନର ବଚନେ ମାଧବସେନ ନୃପତି
ସ୍ୱାମୀ ମୋର ଆଜ ସଞ୍ଚୟେ ହୋଇଛୁ ପିତୃଛଥି ।୫୫୭।
ସ୍ୱାମୀ ଗଣ୍ଡାଗୋଟିୟେକ ମାର ଆଣଇଂ ମୁହିଂ
କଣକଲୁ ଭୋଜନ କାରଣ ହୋଇବ ନା ମୁକୁଇଂ ।୩୫୮।

*

ଏମନ୍ତେ ଅନେକ ବଚନେ ଯେ ଭୀମସେନ କି ପୁତ୍ର
ବନଫଳ ଯୋଗାଡ଼ ଯେ ଆଣିଲା ତତକ୍ଷଣାନ୍ତ ।୩୫୯।

ଅନେକ ସୁଶୀତଳ ପଦାର୍ଥ ଦ୍ରବ୍ୟ ଯୋଗାଡ଼ମାନ
ସ୍ନାନସାର ମାରୁତି କରଇ ଭୋଜନ ।୩୬୦।

ଆଚ୍ଛୋଦନ ସାରଣ ସେ ପାଣ୍ଡବ ଶିରୋମଣି
ହିରଣ୍ୟନଗରୁ ଚଳଇ ଦେଖିଣ ଆନ ସନ୍ୟ ପଲ୍ଲୀ ।୩୬୧।

ଆହୋ ଚେଦ୍ଦିଦେଶ ବୋଲି ଏମନ୍ତ ରାଜ୍ୟ ଗୋଟିଏ
ସେହି ରାଜ୍ୟେ ପ୍ରବେଶ ହୋଇଲେ ପବନ ତନୟେ ।୩୬୨।

ଆହୋ ସେ ଚେଦ୍ଦିଦେଶର ଠାକୁର ଅଟଇ ଦମଘୋଷ
ମଦନଗୋପାଳ, ଋଷିପାଳ, ଶିଶୁପାଳ ବୋଲି ତିନି ଶିଷ ।୩୬୩।

ପାଞ୍ଚପଦ୍ମ ଶୂରପରାଯୁଧ ତାର ସନ୍ୟବଳ
ଅସୁର ଅଂଶେ ଜାତ ସେ କୁମର ଶିଶୁପାଳ ।୩୬୪।

ପିଙ୍ଗଳଭଦ୍ରା ବୋଲିଣ ଏମନ୍ତ ନଦୀଗୋଟି
ଶିବପିଙ୍ଗଳ ଜଟାରୁ ସେ ଆସୁଅଛି ଫୁଟି ।୩୬୫।

ସେ ନଦୀର କୂଳେ ଚେଦ୍ଦିଦେଶ ଯେ ବସଇ
ରାଜ୍ୟର ଆୟତନ ଯୋଜନ ପଞ୍ଚାଶଇ ।୩୬୬।

ସେ ଦମଘୋଷ ରାଜାକୁ ଖଟନ୍ତି ବଣାଶତେ ପାରିଦଣ୍ଡ ନୃପତି
ପଞ୍ଚବଂଶ ସହସ୍ର ରଥ ପଞ୍ଚାଶ ଅଶ୍ବବ୍ରତ ହାଥୀ ।୩୬୭।

କୋଟିଏ ଲକ୍ଷ ସାଜଇ ରେଖାର ତୁରଙ୍ଗ
ଜରାସନ୍ଧର ଭଣେଇ ସେ ଅଟଇ ଅର୍ଦ୍ଧଅଙ୍ଗ ।୩୬୮।

ସେ ରାଜ୍ୟରେ ପ୍ରବେଶ ଯାଇଂ ପଣ୍ଡୁପୁତ୍ରେ
ମହୀ ହେଲ ଦେଖଇ ତାହାର ବୀରତୂର ଶବଦ ଘାତେ ।୩୬୯।

ମୃଗୟା ବନୋଦେ ବନସ୍ତେ ଭ୍ରମଇ ଶିଶୁପାଳ
ରେଖାର ଖୁରୁସାଣୀ ତୁରଙ୍ଗମ ପଞ୍ଚଶତ ବଳ ।୩୭୦।

ଭ୍ରମଇ କୁମାର ସେ ବେଣ୍ଟର ବନୋଦେ
ବନ କନ୍ଦର ତଳି ତଳି ହାଥୀଂକର ଘଣ୍ଟରାବ ଶବଦେ ।୩୭୧।

ସହଦେବଙ୍କ ଲାଗିଅଛୁ ହୁଲା ଯେ ବାହୁଡ
ପାରଧି ବନୋଦେ ଶିଶୁପାଳ ଖେଦଇ ମୃଗାର ।୩୭୨।
ମାରଇ ବ୍ୟାଘ୍ର ଭାଲୁଙ୍କ ଶାର୍ଦ୍ଦୂଳ ବନଜୀବ
ଗଣ୍ଡା ମୃଗ ଧରଇ କଉତୁକ ମତ୍ତଭାବ ।୩୭୩।
ଦୁଷ୍ଟଜୀବମାନ ମାରଇ ସେ ଋଷିଙ୍କର ନିମନ୍ତେ
ସଜ୍ଜନଜୀବ ଧରଇ ସେ ଭୋଜନର ଅର୍ଥେ ।୩୭୪।
ନନ୍ଦାବ୍ରତେକ ବୋଲି ଯେତ୍କ ପର୍ବତ ଗୋଟି
ସେ ପର୍ବତ ଉପରେ ଯାଇ ଶିଶୁପାଳ ଉଠି ।୩୭୫।
ବନେ ଦେଖିଲା ଯାଇ ଶିଶୁପାଳ ଭୀମସେନର ଥାଟ
ଆସନ୍ତି ବନକ୍ଷେପି ନ ପାଇଣ ବାଟ ।୩୭୬।
ପର୍ବତେ ଥାଇ ତାହା ଦେଖଇ ଶିଶୁପାଳ
ରାଜେ ବନେ ଗମଇଂ ରେ କେଉଣ ଅସୁର ମହୀପାଳ ।୩୭୭।
ଶିଶୁପାଳ ଆଜ୍ଞାଂ ଦେଲା ଯୋଦ୍ଧାମାନନ୍ତ ରାଇ
ବାନ୍ଧ ରେ ନାରାଜ ପର୍ବତ ଉପରେଣ ଥାଇ ।୩୭୮।
ମନ୍ତ୍ରିଣ ଧନୁଧର ଧାମନ୍ତ ସର୍ବଯୋଧୀ
ପର୍ବତ ଶିଖରେ ଥାଇଂ ଅନେକେ ବାଣ ବାନ୍ଧି ।୩୭୯।
ଉଚ୍ଚଗୁଂ ଶର ପଡନ୍ତେ ଅବଚ୍ଛନ୍ନେ
ଘାୟେଣ ଘୂମାଇଲେ ପାଣ୍ଡବ ସଇନେ ।୩୮୦।
ସଇନ ଅସାଷ୍ଟମ ଦେଖିଣ ପାବେନ
ଆପଣେ ଧାଇଂଲା କରେ କାଳେବର ଗଦା ଘେନି ।୩୮୧।
କାଳ ବକରାଳ ଯେ ବେନି ସେନାପତି
ଯେତ୍ନ ଦୁଇବାରେ ବୃକୋଦର ବାମ ଡାହାଣେ ଲାଗିଛନ୍ତି ।୩୮୨।
ରଥ ତେଜା କରଣ ଉଠିଲା ଧାଡକାରେ
ଯେତ୍ନସନେକେ ଶିଳାବୃଷ୍ଟି କରଇ ଆଷାଢ଼ରେ ।୩୮୩।

---

୩୮୦।୨ 'ଘାୟେଣ ଘୂମାଇଲେ ପାଣ୍ଡବ ସଇନେ' ପାଠାନ୍ତରେ—(ଖ)
ପୋଥିରେ ଅଧିକ ପାଠ—

ଶର ବାଜନ୍ତେ ରୁଧିରେ ହେଲେ ବଳେପନ
ଆତଙ୍କେ ଡାକନ୍ତି ରକ୍ଷାକର ଭୀମସେନ ।

ସେହିମତ ପଡ଼ୁଅଛୁ ଅବଚ୍ଛନ୍ନେ ବାଣ
ଶହସ୍ର ପଡ଼ି ଚୂର ହୋଉଅଛନ୍ତି ବ୍ରିକୋଦର ହସ୍ତଦେଣ ।୩୮୪।
ପର୍ବତ ଉପୁଡ଼ି କି ଆସୁଅଛୁ ଗୃଳି
ଥମ୍ଭୀଭୂତେ ଶିଶୁପାଳ ସନ୍ୟନ୍ତ କିଛୁହିଁ ନ ବୋଲି ।୩୮୫।
ଆରେ ଆରେ ବେ ଲ ସନ୍ୟରେ ପଶିଲା ଅବଗାହି
ଗାହୁ ଆନ୍ଦେଷିଲେ ଯେହ୍ନେ ରଖିଲା କେହି ନାହିଁ ।୩୮୬।
କେଶ ମୁକୁଳିତ ବଗଳିତ ବସନ
ଶରଦମେଘ ପ୍ରାୟେକ ଶୁଭୁଅଛୁ ଗରଜନ ।୩୮୭।
ପ୍ରହାରନ୍ତି ସଇନ କୁନ୍ତ ଯାଠି ମୁନା ଖାଷ
ଭୀମ ଶରୀରେ ପଡ଼ି ନ ଫୁଟନ୍ତି ହୁଅନ୍ତି ବମୁଖ ।୩୮୮।
ବନ୍ଧଣ ବମୁଖ ହୋଇଲେ ସମସ୍ତ ପାରଦଣ୍ଡ ରାଜାମାନେ
ନାରାଜ ଗୋଟିଏ ନାହିଁ କାହାରହିଁ ହୋଣେ ।୩୮୯।

ରେ ରେ କାର କରି ଭୀମସେନ ଯହୁଁ ପଡ଼ିଲାକ ଧାଇଁ
ପର୍ବତ ଉପରୁ ସର୍ବେ ପଡ଼ିଲେକ ଡେଇଁ ।୩୯୦।
ଶିଶୁପାଳ ସଇନ ପଳାବନ୍ତି କେଶବାସ ଅସମ୍ଭାଳେ
ଗୋଡ଼ାଇ ପିଟଇ ଭୀମସେନ କ୍ଷବିଯ୍ୟୁ ଅଗ୍ରୁର୍ଗଳେ ।୩୯୧।
ଅନେକ ସଇନ ଯେ ପଡ଼ିଲେ ସମରେ
ପର୍ବତ ଉପରୁ ପଡ଼ି କର ଚରଣ ହୋଇଲାକ ଚୂରେ ।୩୯୨।
ଶତେକ ଯୋଦ୍ଧା ଘେନି ଦମଘୋଷର ବାଳ
ଭୀମସେନ ଉପରେ ଶରବୃଷ୍ଟି କଲାକ ଶିଶୁପାଳ ।୩୯୩।
ଭୀମସେନ ସାନନ୍ଦ କଟାଳ ଯୁଦ୍ଧ ଦେଖି
ଗଦାବର ବୁଲାଇଲା ବୀର ଭୟୁ ଯେ ଉପେଖି ।୩୯୪।
ଶିଶୁପାଳ ରଣେ ଅଟଇ ନିର୍ଭୟୀ
ଶବଶ୍ରୀ ପ୍ରସନେ ପାଷାଣ ଯେ ତାର କାୟୀ ।୩୯୫।
ପିଟନ୍ତେ ଯେ ଗଦାବର ହୋଇମ୍ବିକା ନାହି
ଶିଶୁପାଳ ମୁଦୁଗରରେ ସମ୍ଭାଳିଲା ତାହା ।୩୯୬।
ମୁଦୁଗର ବୁଲାଇ ପିଟେ ଶିଶୁପାଳ ଜେନା
ଭୀମ ବାମ ଅଙ୍ଗେ ପଡ଼ି ହୋଇଲାକ ଚୂନା ।୩୯୭।

ଶିଶୁପାଳ ବୋଇଲା ତୁ ଅଟୁ ସାମରଥ
ମୋହୋର ମୃଦୁଗର ଯାହା ହୋଇଲାକ ବ୍ୟର୍ଥ ।୩୯୮।
ବଶହସ୍ତ ହୋଇଲେ ଯହୁଂ ଦମଘୋଷର ବାଳ
ପଛଘୁଞ୍ଚା ଦେଇ ପଳାଇଲା ସେ ତତକାଳ ।୩୯୯।
ରେ ରେ କାର ଶବଦେ ଭୀମସେନ ଆକ୍ଷୋଷି
ବାମକରରେ ଧଇଲା ଯାଇ ଶିଶୁପାଳ କେଶ ପାଶି ।୪୦୦।
ରାବ ହୋଇଲାନ ତହୁଂ ଦ୍ୱାଦଶ ଯେ ଘଡ଼ି
ଶିଶୁପାଳ କେଶ ଧରି ଭୀମସେନ ଜାନୁରେଣ ପାଡ଼ି ।୪୦୧।
ବଜ୍ରେକର୍ଣ୍ଣକଠାର ମାଇଲା ଗଣ୍ଡସ୍ଥଳେ
ଶିଶୁପାଳର ଶିର ନ ଛିଡ଼ିଲା ଭୀମସେନର କୋପାନଳେ ।୪୦୨।
ବଜ୍ରେକର୍ଣ୍ଣକଠାର ଭାଙ୍ଗି ହୋଇଲା ବେନିଖଣ୍ଡ
ନବନଣି ଅସିଧାରେକ ଘେନି ଭୀମସେନ ପ୍ରହାରେ ପ୍ରଚଣ୍ଡ ।୪୦୩।
ଅସିପନ୍ନ ପଡ଼ିଲା ଯେ ଶିଶୁପାଳ କଣ୍ଠେ
ଖଣ୍ଡ୍ରାହ୍ନିଂ ଚୂର ହୋଇଲା ପ୍ରତଗ୍ୟାଂ ଗଲା ଭ୍ରଷ୍ଟେ ।୪୦୪।
ଶିଶୁପାଳ କେଶଧରି ପାଣ୍ଡବ ପଞ୍ଚାଳ
କେବଣ ଆଶ୍ରିଂଜ ରେ ତୋହୋର ନ ଛିଡ଼ଇ ବକ୍ଷସ୍ଥଳ ।୪୦୫।
ଭୀମସେନ ପଚ୍ଚରଇ ଅନଙ୍ଗ ପ୍ରାପ୍ୟେ ରୂପ ଦେଖି
ଅଙ୍ଗାରପନ୍ନଗ ଅଇଲା କ ଅମର ଉପେଖି ।୪୦୬।
ଦେଶାନ୍ତର କହିଲା ଯାଇଂ ଦମଘୋଷର ଆଗେ
ପୁତ୍ର ତୋର ନାଶ ଯାଉଛି ରାଜା ବଜପ୍ୟେ କର ବେଗେ ।୪୦୭।
ଶୁଣି ଅସମ୍ଭାଳ ହୋଇଣ ଧାମଇଂ ନୃପମଣି
ଗୋଡ଼ାବନ୍ଧ ଅମାନାତ୍ୟେ ଆଠ ଯେ ସଲ୍ଲିଣି ।୪୦୮।
ରାଗେଣ ଦମଘୋଷ ରାଜା କରେ ଘେନିଣ ଖଡ଼ଗେ
ଅଧର ପୁଷ୍ଟକରି ଧାମଇଂ ଅନ୍ତବେଗେ ।୪୦୯।
ଦଣ୍ଡମାନଙ୍କ ଘେନି ଦମଘୋଷ ରାଜପ୍ୟେ ପବଂତର ତଳେ
ଦେଖିଲା ଶିଶୁପାଳର କେଶ ଧରିଅଛି ପବନର ବାଳେ ।୪୧୦।
ଶିଶୁପାଳର କେଶ ଧରିଅଛି ବାମକରେ
ଦକ୍ଷିଣ କରେ ଗଦା ବୁଲାଇ ଅନ୍ତ ଖରେ ।୪୧୧।

ପର୍ବତଉପରୁ ବୀର ପଡ଼ିଲେକ ତେଣିଂ
ଦମଘୋଷର ସୈନ୍ୟ ରହିଲେ ଥମ୍ଭୀଭୂତ ହୋଇ ।୪୧୨।
ଭୀମସେନର କୋପ ଦେଖି ବିଚାରଇ ମରୁତ ସାରଥି
ଦମଘୋଷର ସମ୍ପଦ ସରିବ ଯେଘାନ୍ତ ।୪୧୩।
ରଥ ଘେନି ମରୁତ ପ୍ରବେଶ ଦମଘୋଷ ପାଶେ
ରାଜାର ସନ୍ନିଧେ ଯାଇ କହଇ ବିଶ୍ୱାସେ ।୪୧୪।
କାହାକଇଂ କୋପ ତୁହ୍ମେ କରୁଛୁ ନୃପମଣି
ଭୀମସେନ ଠାକୁରେ ପଶ୍ଚିମ ଦିଗବିଜେ ତୁ କିଂପେ ନ ଜାଣି ।୪୧୫।
ଜରାସନ୍ଧ ନିବାରଣ କଲେକ ସଂଗ୍ରାମେ
ରାଜାନ୍ତ ବନ୍ଦୀରୁ ମୁକତ କଲେ ଯୁଧିଷ୍ଠି ଦେବଙ୍କର ଧର୍ମେ ।୪୧୬।
ତାହାର ତୁଲେ ତୋହୋର କିସ ହୋ ବିବାଦ
ଯେହ୍ନକ୍ଷଣି ବୁଡାଇବୁ ଯେତେକ ସମ୍ପଦ ।୪୧୭।
ଯେସନେକ ବାରତା ପାଇଣ ଚେଦିଦେଶର ରାୟେ
ପଞ୍ଚଭୂତ ଆତ୍ମାରେ ତାର ବସିଲା ବଡ ଭୟେ ।୪୧୮।

ଯେହ୍ନ ସେ ଭୀମସେନ ହିଡମ୍ବିକାର ପ୍ରାଣନାହା
ଅଗ୍ୟାନେ ସୁତ ମୋର ହୋଇଲେକ ଦୋରେହା ।୪୧୯।
କେଉଂଣ ସମୁଦ୍ରେ ଯାଇ ପଶିବଇଂ ମୁହିଂ
ପାଣ୍ଡବେ ବିବାଦୀ ହୋଇଲେ ଜୀବନ ମୋର କାହିଂ ।୪୨୦।
ମରୁତ ସାରଥି ବୋଇଲା ସେ ଦୁଖୀଜନ ଉଦ୍ଧାରଣ
ଭଗତଜନମଚ୍ଛଳ ସେ ଶରଣ ଜନ ନିସ୍ତାରଣ ।୪୨୧।
ଆସ ଆସ ରାଜା ସମର୍ପିଇଂ ତୋତେ ନେଇଂ
ପୁଣ ତୋର ରକ୍ଷାହେତୁ ତୋର କିଛିହିଂ ଦୋଷ ନାହିଂ ।୪୨୨।
ବୋଲଇ ଦମଘୋଷ ମୋହୋର କିଛିହିଂ ନାହିଂ ଭରସା
ତୋହୋର ବଚନେ ମୁହିଂ କଲି ପ୍ରତିଆଶା ।୪୨୩।
ଦମଘୋଷ ହାଥ ଧରି ମରୁତ ସାରଥି
ଭୀମସେନ ସମ୍ମୁଖକୁ ଆଣିଲା ତତକ୍ଷଣାନ୍ତ ।୪୨୪।
ଦଶନହ ମୁଖେ ଭରି ଦମଘୋଷ ପରଣାମି
ବୋଇଲା ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବସ୍ୱାମୀ ।୪୨୫।

ବ୍ରତମୁକ ବିଦାରଣ ବକରାକ୍ଷସ ଦର୍ପ ଧ୍ୱଂସି
କଳମ୍ବ ଅସୁର ବିଦାରିଲୁ ମଧୁବନେ ପଶି ।୪୨୬।
ପାଣ୍ଡବାସୁର ମାରି ଉଦ୍ଧରିଲୁ କୁରୁବଂଶ
ଭକ୍ଷିଣ ପାରିକଲୁ ଦେବ କାଳଗରଳ ବିଷ ।୪୨୭।
ଜାରା ନିବାରଣ ନାଥ ମହାଯଗ୍ୟଂ ଭଞ୍ଜା
ଯୁଗାନ୍ତେକ ବାଦ୍ୟ ଯେ ଭେରୀ ତାର ଦର୍ପଗଞ୍ଜା ।୪୨୮।
ଦେବଙ୍କର ରକ୍ଷଣ ତୁ ସମସ୍ତ ଶାହାସ୍ରେଣ ନିର୍ଜିତା
ଦୁଃଖୀଜନ ଉଦ୍ଧାରଣ ଶରଣ ରଖନ୍ତା ।୪୨୯।
ଦମଘୋଷ ସୁତକର ଅନେକ ପରଣାମି
ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବସ୍ୱାମୀ ।୪୩୦।
ନ ଜାଣି ଶିଶୁପାଳ ମୋର ଚୋଟେ କଲା ଅନେକ ଦୋଷ
ଧର୍ମେଣ ରକ୍ଷା କଲୁ ସ୍ୱାମୀ ତାକୁ ନ କଲୃ ନାଶ ।୪୩୧।
ଦମଘୋଷ ସୁତ ଶୁଣି କୋଇନ୍ତାଂକ ଦୁଲାଳ
ଶାନ୍ତଭଜ ଗୁଡିଲା ସେ ଶିଶୁପାଳର ବାଳ ।୪୩୨।
ଭୀମସେନ ପଚ୍ଚରଇ ତୁହ୍ମ ସେ ଦମଘୋଷ
ମୋହୋର ହଗବନେ କ ନ ଜାଣଇଂ ତୋହୋର ଶିଷ ।୪୩୩।
ପୁଣି ବୋଇଲା ତୋର ପୁତ୍ର ଦୁଷ୍ଟ ଯେ ପ୍ରକୃତି
ଜଗନ୍ନାଥଂକ ତୁଲେ ହାଦେ ଅନେକ ଅପ୍ରୀତି ।୪୩୪।
ଦମଘୋଷ ବୋଇଲା ସ୍ୱାମୀ ଶୁଣିମା ବୃକୋଦର
ପରାର୍ଦ୍ଧ ଦେଶର ରାଜା ଯେ ଅଟଇ କାଶୀଶ୍ୱର ।୪୩୫।
ତାହାର ଭାରିଯା ନାମ ଅଟଇ ପଦ୍ମାବତୀ
ତାରତହ୍ନଂ ଉପୁଜିଲେ ବେନି ଯେ ଦୁହିତା ।୪୩୬।

---

୪୩୬। ‘ତାହାର ଭାରିଯା ନାମ ଅଟଇ ପଦ୍ମାବତୀ’ ପରେ ‘ଙ୍କ’ ପୋଥିରେ ଭିନ୍ନ ପାଠ—

ତାହାର ଭାରିଯା ନାମ ଅଟଇ ପଦ୍ମାବତୀ
ତାର ତହୁଂ ଉପୁଜିଲେ ତିନି ଯେ ଦୁହିତା ।
ବଡ ଦୁହିତାର ନାମ ଅଟଇ ଦଇବକୀ
ଆଉ ଦୁହିତା ଦେବକୀ ଆଉ କୁନ୍ତୀ ଲେଖି ।

(ଅବଶିଷ୍ଟାଂଶ ପର ପୃଷ୍ଠାରେ)

ବଡ଼ ଦୁହିତାର ନାମ ଯେ ଅଟଇ ଦେବକୀ
ଆର ଦୁହିତାର ନାମ ଯେ ଶ୍ରିୟା ଦଇବକୀ ।୪୩୭।
ଦେବକୀ ପ୍ରଦାନ ଯେ ହୋଇଲେ ବସୁଦେବଙ୍କୁ
ଦଇବକୀକ ପ୍ରଦାନ କଲେ ଦେବ ମୁକୁ ।୪୩୮।
ସ୍ୱାମୀ ବାସୁଦେବ ମୁହିଂ ସୋଦର ବେନି ସଡ଼ୁ
ଯେକ ଆତ୍ମା ହୋଇଥାଉଂ କେହି କାହାକୁହିଂ ନ ଗ୍ରଡ଼ୁ ।୪୩୯।
ବାସୁଦେବ ଉପୁଜଲେ ଦେବକୀର କୋଳେ
ଦଇବକୀ କୋଳେ ଉପୁଜଲା ଶିଶୁପାଳେ ।୪୪୦।
ନାରାୟଣ ଜ୍ୟେଷ୍ଠ ହୋଯେ ଶିଶୁପାଳ କନେଷ୍ଠ
କେବଣ ମହାକ୍ଷଣେ ହୋଇଲେ ଦୁହେଂ ଭେଟ ।୪୪୧।
ଶିଶୁପାଳେ ଦେଖି ନାରାୟଣ ଅତି ପ୍ରୀତ
ଜଗନ୍ନାଥଂକୁ ଦେଖିଲେ ଶିଶୁପାଳ କରଇ ଭୀତ ।୪୪୨।
ବାଳକାଳେ ଦେବକୀ ଯେ ନ ପାରଲେ ପ୍ରତିପାଳ
ଗୋକୁଳେ ବଢ଼ିଲେ ଯାଇଂ ଦେବ ବନମାଳୀ ।୪୪୩।
ସ୍ୱାମୀ ପ୍ରୟାଗେ ସ୍ନାନ ପଡ଼ଲା ଯେକଇ ସମୟେ
ଗୋବନ୍ଦ ନନ୍ଦ ଯଶୋଦା ତୀର୍ଥ କରି ଆୟେ ।୪୪୪।
ଦଇବକୀ ଶିଶୁପାଳକଇଂ ଘେନିଣ ମୁହିଂ ଗଲି
ଦଇବକୀ ଯଶୋଦାଂକୁ ପୀରତି କରାଇଲି ।୪୪୫।
ଦଇବକୀ ଶିଶୁପାଳକୁ ଦିଲେ ବାସୁଦେବଙ୍କର କୋଳେ
ଧଇଲେ ବାସୁଦେବ ଶିଶୁପାଳକୁ ବାଳୁତ କୁତୂହୋଳେ ।୪୪୬।
ସୁନ୍ଦର ଦେଖି ନାରାୟଣ ଲଗାଇଲେ ହୃଦୟରେ
ଶରୀର ତୋର ଅଛୁଟ ହେଉ ବୋଇଲେ ଦାମୋଦରେ ।୪୪୭।
ଆରେ ଶିଶୁପାଳ ହେଉ ତୋହୋର ସହସ୍ରେ ସିଂହର ପରାକ୍ରମ
କେବେହେଂ ବଧ ତୁହି ନୋହିବୁ ସାଂଗ୍ରାମ ।୪୪୮।

---

(ପୂର୍ବ ପୃଷ୍ଠାର ପାଠାନ୍ତର)

କୁନ୍ତୀକ ପାଳଲେ କୁନ୍ତଭୋଜ ନୃପବର
ବେନି ଦୁହିତା ରହିଲେ ଉଗ୍ରସେନ ପୁର ।
ଦଇବକୀକ ପ୍ରଦାନ ହୋଇଲି ମୁହିଂ ଦେବ
ଦେବକୀକ ପ୍ରଦାନ ହୋଇଲେ ବସୁଦେବ ।

ଯେସନେକ ବରଦେଇ କୋଳେ ଛନ୍ତି ଧରି
ଶିଶୁପାଳ କାନ୍ଦଇ ଚରଣ ଦୁଇ ହଲାଇକରି ।୪୪୯।
ବାସୁଦେବଙ୍କର ହୃଦେ ବାଜଇ ତାର ପାଦ
ମୂର୍ଚ୍ଛାଗତ ହୋଇ ସ୍ୱାମୀ ପଡଲେ ଗୋବିନ୍ଦ ।୪୫୦।
ଧାଡିକାରେ କୋଳକରି ଧଇଲେ ଦେବକୀ
ରୁଧିର ବହଇ ଜଗନ୍ନାଥଂକର ବେନିଆଖି ।୪୫୧।
ଚେତନା ପାଇଂ ଦେବ କୋପାନଳେ ବୋଲି
ସୋଦର ପଣେ ତୋତେ ଯେହ୍ନକ୍ଷଣି ବର ଦେଲି ।୪୫୨।
ମୁହିଂ ଯେ ପଡିଲି ତୋର ପାଦ ପ୍ରହାରେଣ କରି
ତନ୍ହେ ଅବଶ୍ୟ ଶିର ଛେଦିବଇଂ ତୋହୋର ।୪୫୩।
ଶୁଣି ଦଇବକୀ ହୋଇଲେ ବିକଳ ଚିତ୍ତ
ଅନୁଗ୍ରହ କରି କେହ୍ନେ ନାଶିବୁ ଜଗନ୍ନାଥ ।୪୫୪।
ଯେ ରଖଇ ସେ ଭକ୍ଷଇ ଶୁଣିଛୁ କେଉଣସି କାଳେ
ଦଶଦୋଷ ଅପ୍ରାଧ କ୍ଷମା କରିବୁ ନା ଶିଶୁପାଳେ ।୪୫୫।
ଗୋବିନ୍ଦେ ବୋଇଲେ ତୁ ଗୋ ଶୁଣ ମୋର ମାତ
ଅଷ୍ଟ ଉତ୍ତର ଶତେବାର କ୍ଷମା କରିବି ତୋର ପୁତ୍ର ।୪୫୬।
ମାଗୋ ଯେତେ ବଇକୁଣ୍ଠ ହୋଇଲି ଜାଣ ମୁହିଂ
ଅବଶ୍ୟ ତନ୍ହେ ମାରିବି ଗୋ ଯେହାକଇଂ ।୪୫୭।
ମାଗୋ ଅଷ୍ଟଉତ୍ତର ଶତେବାର ଯେବେ ନ କରିବ ଦୋଷ
ସୁଖେ ଦ୍ୱାପର ଯୁଗ ଭୋଗ କରିବ ତୋର ଶିଷ ।୪୫୮।
ଅଷ୍ଟଉତ୍ତର ଶତେ ବେଳୁଂ ଯେବେ କଟାଳ କରଇ
କ୍ଷଣେହେଂ ନ ସହି ଛେଦନ କରିବି ଯେହାକଇଂ ।୪୫୯।
ଦଇବକୀ ବୋଇଲେ ବାବୁ ଶୁଣ ତୁ ଦାମୋଦର
ତେଣିକ ମାଇଲେ ଦୋଷ ନୋହିବ ତୁମ୍ଭର ।୪୬୦।
ସ୍ୱାମୀ ଶୁଣସି ପାଣ୍ଡବ ହୋ ଯେ ଆଦିକାଳର କଥା
ରୁକ୍ମଣୀ ହରଣ କାଳେ ହୋ ଅନେକ ଅବସ୍ଥା ।୪୬୧।

---

୪୫୮ । ମାଗୋ ଅଷ୍ଟଉତ୍ତର ଶତବେଳେ ଯେବେ କରଇ ଦୋଷ
ସୁଖେ ଦ୍ୱାପର ଯୁଗ ଭୋଗ କରିବ ତୋର ଶିଷ । (ଘ,ଙ)



ସାଂଗ୍ରାମେ ଚନ୍ଦେ ଯେହାକୁ ମାରୁଥିଲେ ଦେବହର
ବେଳେକ ଗୁଡଲେ ମାତାଂକ ବଚନ ସୁମର ।୪୬୨।
ଶିଶୁପାଲ ଗୋପାଲ ଯେ ଅଟନ୍ତ ବେନିଭାଇ
ଦେବକୀ ଦଇବକୀ ଯେ ବେନି ଭଯେଣୀ ଉପୁଜାଇ ।୪୬୩।
ଗୋବନ୍ଦଂକର ସୋହୋଦର ଯେ ଅଟଇ ଯୁଗତେ
ତୋହୋର ଅଭିନ୍ନ ସ୍ୱାମୀ ଯେହାକୁ ନାଶ କରବୁ କେମନ୍ତେ ।୪୬୪।
ଦମଘୋଷର ମୁଖରୁ ଯେସନେକ ବାକ୍ୟ ଶୁଣି
ହସି ବଚନ କହନ୍ତ ଯେ ପାଣ୍ଡବ ବୀରମଣି ।୪୬୫।
ଆହୋ ଦମଘୋଷ ମୁଂ ସାଂଗ୍ରାମର ଋଗେ
ବେନିବେଲ ତିଣ୍ଣିରେ ପ୍ରହାର ମୁଂ କଲଇ ଖଡଗେ ।୪୬୬।
ଆହୋ ଦମଘୋଷ, ଚନ୍ଦକୁ ବୋଲ ଯାହାର ବଡି ଅଛୁ ତିଣ୍ଣି
ମୋହୋର ବେଳେ ଖଡଗ ଘେନି କ ଯେହାର ମୁଣ୍ଡ କାଟି ।୪୬୭।
ଶିଶୁପାଳକୁ ଗୁଡଲ ମାରୁନ୍ତି ଦମଘୋଷର ବଚନେ
ଅନେକ ପୁରୁଷାର୍ଥ ତାହାକୁ କଲାକ ଭୀମସେନ ।୪୬୮।
ଭୀମସେନ ବୋଇଲା ଆହୋ ଦମଘୋଷ ନୃପତି
ରାଜୁସି ଯାଗ ସଭାକୁ ଯାଅ ସମଦଣ୍ଡ ଘେନି ଦିବାରାତି ।୪୬୯।
ମକର ମାସ ଶୁକ୍ଳ ପକ୍ଷ ଦଶମୀର ଦିନ
ସେ ଦିନ ପୂର୍ଣ୍ଣ ଆହୂତି ହୋଇବ ସଂପୂର୍ଣ୍ଣ ।୪୭୦।
ପ୍ରଥମ ପକ୍ଷେ ସମସ୍ତେ ହୋଇବେ ପରବେଶ
ଅନେକ ପୂଜା କରଣ ବୋଲଇ ଦମଘୋଷ ।୪୭୧।
ସ୍ୱାମୀ ଆଜ ମୁଣୋହ୍ୱ କରବା ମୋହୋର ଭୁବନେ
ରହ୍ୱ ନୁଆରଇ ମୁଂ ବୋଲଇ ଭୀମସେନେ ।୪୭୨।
ରାଜାନ୍ତ ନିମନ୍ତ୍ରିବ ମୁଂ ନଉ ଦିବସର ମଧ୍ୟେ
ଯେତ୍ୱମତ ସକଳ ରାଜା ଜଣିମଇଂ ଯୁଦ୍ଧେ ।୪୭୩।
ଚଳଇ ବୃକୋଦର ଯେ ସମଦଣ୍ଡ ଚଳାଇ
ଦମଘୋଷ ବାହୁଡଲା ଥୋକାଯେ ଦୂର ଯାଇଂ ।୪୭୪—୨୨୭୨।

---*---

# ନୈଋତସେନ ରାଜା ନିମନ୍ତ୍ରଣ ଓ ଜରାସନ୍ଧ ପୁତ୍ର ସହଦେବ ସହ ଯୁଦ୍ଧ

ନଇରୁତ ବୋଲି ଯେକଇ ପର୍ବତ ଗୋଷ୍ଠିଯେ
ସେ ଦେଶେ ପ୍ରବେଶ ଯାଇଂ ପଣ୍ଡୁର ତନଯେ ।୧।
ନଇରୁତସେନ ବୋଲି ତହିଂର ନୃପତି
ଶ୍ବେରମଣ୍ଡଳ ଦେଶର ସେ ଅଟଇ ଚକ୍ରବର୍ତ୍ତୀ ।୨।
ଢମକ ନିଶାଣ ଯେ ଅନେକ ବୀରତୂର ବାଜେ
ବିଜୟେ ଭୀମସେନ ଶ୍ବେରମଣ୍ଡଳ ରାଜ୍ୟେ ।୩।
ସେ ରାଜାର ଦେଶାନ୍ତର ଥିଲି ଚେଦ୍ଦିଦେଶେ
ବାରତା ଜଣାଇଲି ଯାଇଂ ନଇରୁତ ରାଜା ପାଶେ ।୪।
ସ୍ୱାମୀ ସାବଧାନେ ଶୁଣିମା ଶ୍ବେରମଣ୍ଡଳ ଅଧିକାରୀ
ଭୀମସେନ ଠାକୁରେ ପଶ୍ଚିମ ଦିଗେ ବିଜେକରି ।୫।
ରାଜାନ୍ତ ନିମନ୍ତ୍ରିବେ ଦେବ ରାଜସୂୟ ଯାଗ ଅର୍ଥେ
ଶିଶୁପାଳ ନାଶ ଯାଉଥିଲି ପ୍ରତିଗ୍ୟାଂ ଅନୁମତେ ।୬।
ଶରଣପଞ୍ଜର ନାଥ କଇଛା ଜଗଜେଠୀ
ସମଦଣ୍ଡ ଘେନି ରାଯେ ଚାଲି ଯିବା ହୋ ପାଶ୍ଚେଟି ।୭।
ମନ୍ତ୍ରୀ ସମାଜଂଇ ଚାଲି ଯିବା ହୋ ଦଣ୍ଡଧାରୀ
ଯୁଦ୍ଧେଷ୍ଟି ଠାକୁରଂକ କନିଷ୍ଠ ସେ ଜଗତେ ଅଧିକାରୀ ।୮।
ମନ୍ତ୍ରୀର ବଚନେ ରାଜା ସାନନ୍ଦେ କୃତ କୃତ
ଆସ୍ତାନୁଂ ଓହ୍ଲାଇ ରାଜା ଆସଇ ତୁରିତ ।୯।
ଭୀମସେନ କଟକେ ଯାଇଂ ପଶଇ ସମ୍ମୁରେ
ନଇରୁତସେନ ଦରଶନ କଲି ବରୁପା ନଦୀ ତୀରେ ।୧୦।
ଦଶନହ ମୁଖେ ଭରି ଧୂରୁ ପରଣାମି
ଶରଣପଞ୍ଜର ନାଥ ଉଦ୍ଧର ଦେବ ସ୍ୱାମୀ ।୧୧।
ଭୀମସେନ ବୋଇଲି ହୋ ଶୁଣ ନଇରୁତ
ସାର୍ଥକ ଜୀବନ ତୋହୋର ବିବେକ ଗ୍ୟାନବନ୍ତ ।୧୨।
ଅଛନ୍ତି ହୋ ଅନେକ ମୂର୍ଖ ଅଗ୍ୟାନ ନୃପତି
ଜାଣୁଂ ଜାଣୁଂ ଅନେକ ପାଉଛନ୍ତି ଶାସ୍ତି ।୧୩।

ନିମନ୍ତ୍ରଣ ଯୋଗାଡ଼ ଦିଲେକ ତୋଷମନେ
ଥାଠ ସନ୍ୟ ଘେନି ଯାଅ ଇନ୍ଦ୍ରପ୍ରସ୍ଥ ଭୁବନେ ।୧୪।
ନଇରୁତସେନ ବୋଇଲ ତୁ ଅଟୁ ଅନୁଗ୍ରହ ନାଥ
ତୋହୋର ପାଦରଜ ପଡ଼ିଲା ଖଣ୍ଡିଲ ଦୁରିପାତ ।୧୫।
ମୋହୋର ରାଜ୍ୟେ ସ୍ୱାମୀ ରହିବା ଆଜକ
ତୁମ୍ଭନ୍ତ ଦେଖିଣ ମୁକତ ହୋଇବେ ମୋହୋର ରାଜ୍ୟର ସର୍ବଲୋକ ।୧୬।
ବୃକୋଦର ବୋଇଲେ ମୋତେ ରହିତେ ବେଳ ନାହିଂ
ଭୋଜନ ଶୟନେ ମୋହୋର ସୁଖଭୋଗ କାହିଂ ।୧୭।
ପଞ୍ଚାଶସହସ୍ର ରାଜାନ୍ତ ନିମନ୍ତ୍ରିବ ନଉ ଦିବସେ
କୁତୂହୋଳ ବେଳ ନୋହୋଇ ଗମିବ ଧୂରଦେଶେ ।୧୮।
ଯେବେ ଦିଶନ୍ତା ରାଜ୍ୟ କେତି ହୋ ନଇରୁତସେନ
ବଡ଼ାଇ ସମ୍ଭରେ ତ ଦିଶଇ ନଗର ଘରମାନ ।୧୯।
ସ୍ୱାମୀ ଯେବେ ସେ ମଗଧଦେଶ ଜରାସନ୍ଧର କଟକ
ଯେବେଠେଂ ସେ ବନ୍ଦୀ ହୋଇଥିଲୁ ସମସ୍ତ ରାଜାଯାକ ।୨୦।
ଛୟାଣୋଈ ସହସ୍ର ଯେତେବେଳଯାଏଁ କାହିଂ ଥାନ୍ତୁ
ଯେବେ ତୁମ୍ଭର ପ୍ରସାଦେ ଆମ୍ଭର ସବୁରି ବ୍ରତହେତୁ ।୨୧।
ସେ ରାଜ୍ୟୁଂ ବାହାର ହୋଇ ଚଳଇ ଭୀମସେନ
ଦେଖନ୍ତି ରାଜଦଣ୍ଡେ ଉଭାର ସର୍ବଜନ ।୨୨।
ଜୟ ଜୟ ମଙ୍ଗଳ ଭାଷନ୍ତି ସର୍ବବାଳୀ
ହାଥରେ ଅର୍ଘ୍ୟ ଘେନି ଦିଅନ୍ତି ହୁଳହୁଳ ।୨୩।
ସେ ରାଜ୍ୟୁଂ ବାହାର ହୋଇ ପଶ୍ଚିମ ମୂରତି
ଆଗ୍ୟାଂ ହୋଇଲା ବାହୁଡ଼ ନଇରୁତ ଚକ୍ରବର୍ତ୍ତୀ ।୨୪।
ସାତ ଦିବସେ ଦଣ୍ଡେ ନ ରହ ରେ ବାବୁ
ଯେତେ ରାଜା ବାଟେ ଭେଟିବୁ ସମସ୍ତ ଘେନିଯିବୁ ।୨୫।
ବାହୁଡ଼ଇ ନଇରୁତ ନୃପତି ଦଣ୍ଡବତ ଯେ ମେଲ୍ଲାଇ
ରାଜ୍ୟରେ ନ ପଶି ରହିଲା ବରୁପା ନଦୀ ତୀରେ ଯାଇଂ ।୨୬।

---

୨୧।୨ ବ୍ରତ—ବର୍ତ୍ତି, ବଞ୍ଚିବା ଅର୍ଥରେ ବ୍ୟବହୃତ ।

ଚଳଇ ବୃକୋଦର ପଶ୍ଚିମ ଦିଗବଳେ
ବୀରତୂର ନିଶାଣ ଝମକ ଢୋଲ ବାଜେ ।୨୭।

ମଦନଧର ବୋଲି ୟେକଇ ପରବତେ
ଦମୟନ୍ତୀ ଯହିଁ ତପ କରୁଥିଲେ ପଞ୍ଚାଶ ସହସ୍ର ବରଷ ପରିଯନ୍ତେ ।୨୮।

ଗନ୍ଧବତୀ ବୋଲିଣ ଯେ ବହଇ ୟେକ ନଦୀ
ଗନ୍ଧମଳୟ ପର୍ବତୁଂ ଫୁଟି ଆସୁଅଛି ଭେଦି ।୨୯।

ଦକ୍ଷିଣକଇଂ ଧାରେକ ବହଇ ଉଜାଣି
ଉତ୍ତରକଇଂ ଧାରେକ ବହଇ ତ୍ରିବେଣୀ ।୩୦।

ଦୁଇନଦୀ ବହୁଅଛି ମଧ୍ୟଦେଶ ବେଢି
ପଞ୍ଚାଶ ୟୋଜନ ଆୟତନ ଉଚ୍ଚର୍ଗ ଯୋଜନ ଗୃର ।୩୧।

ଭୀମସେନ ବିଜୟେ ମଳୟବସନ୍ତ ପର୍ବତେ
ମେଦିନୀ ହେଲ ଟଳୁଅଛି ବୀରତୂର ଶବଦଘାତେ ।୩୨।

ଦେଶାନ୍ତରେ ବାରତା ଜଣାଇଲେ ସହଦେବ ନୃପତିକି
ସ୍ୱାମୀ କେଉଂଣ ଦେଶର ରାଜା ୟେ ପ୍ରୟାଣ କରଆସଇ ୟେଥିକି ।୩୩।

ଶୁଣିଣ ଆଗ୍ୟାଂଦିଲ ଜରାସନ୍ଧର ତନୟେ
ସନ୍ନିଧେ ଉଭା ହୋଇଛନ୍ତି ସେନାପତି ଜୟ ଯେ ବିଜୟେ ।୩୪।

ଆହୋ ଥାଠ ସନ୍ୟ ଦେଖି ଯାଅସି ୟେହିକ୍ଷଣି
ସ୍ୱମରାଷ୍ଟ୍ର କି ପରରାଷ୍ଟ୍ର ତଦନ୍ତ କରି ଜାଣି ।୩୫।

କିବା ଆସୁଅଛି ସମର କାମନ୍ତେ
କି ଅବା ଆସୁଅଛି ବାନ୍ଧବ ପ୍ରିୟ ଅର୍ଥେ ।୩୬।

ୟେହୁ ପଶ୍ଚିମ ଦିଗେ ତ ମୋତେ ନାହିଁ ପରରାଷ୍ଟ୍ର
ବାରତ ନ କର କର୍ମେ ଆଣି ଉଭିରଲ ଥାଠ ।୩୭।

କେବଣ ଦୁଷ୍ଟରାଜା ଅବା ଆସଇ ୟୁଦ୍ଧ ମାଗି
ଧାଅଂ ରେ ପାରିଦଣ୍ଡ ଉଗାଳ ଯାଇଂ ବେଗି ।୩୮।

ପବନୁଂ ବେଗହୋଇ ଯାଅ ଚରଗଣ
ରାଜ୍ୟକୁ ପଶି ନ ଦିଅ ରେ ଗାଡ ମୋହୋର ବାଣ ।୩୯।

ରାଜାର ବଚନେ ଚଳିଲେ ମୁନେହିଂ
ଭୀମସେନ ଠାକୁରେ ରହିଛନ୍ତି ମଲ୍ଲଯୁଗିର ତହିଂ ।୪୦।

ଆଗିଆଣି ଥାଟେ ଯାଇଂ ଉଗାଳିଲେ ଚରଗଣ
ରାଜ୍ୟ ନ ପଣ ବୋଲି ଦେବ ମଗଧେଶ୍ୱର ଆନ ।୪୧।

ଆଗିଆଣି ଥାଟେ ଥିଲା କୃତାନ୍ତେକ ସେନାପତି
ଆନ ପାଡନ୍ତେ ଅସି ପ୍ରହାର କଲା ତତକ୍ଷଣାନ୍ତ ।୪୨।

ବେନିଖଣ୍ଡ ହୋଇ ଛିଣ୍ଡି ପଡିଲା ମୁନେହିଂ
ଜୟ ବିଜୟେ ଦୁଇ ଗ୍ରାମୁରେ ବାରତା ଯାଇଂ କହି ।୪୩।

ସ୍ୱାମୀ ବଡାଇ ଦୁରାପଦ ତ ଅଟଇ ଦେବ ଥାଠ
ବନ୍ଧୁର ନାହିଂ ଦେବ ଅବଗୁରେ ଶିର କାଟ ।୪୪।

ସ୍ୱାମୀ ଦୂତ ଚରଗଣ ମଧ୍ୟସ୍ଥ ଶରଣ ଯେ ଚର
ଯେହାନ୍ତ ହତ୍ୟାକଲେ ବ୍ରହ୍ମହତ୍ୟା ଦୋଷ ସର ।୪୫।

ସ୍ୱାମୀ ଆନ ପଡିବା ମାନଙ୍କେ ନାଶକଲେ ପ୍ରାଣୀ
ଧାଇଂଣ ରାଜ୍ୟ ପଣନ୍ତି କାହାକୁହିଂ ନ ଗଣି ।୪୬।

ଶୁଣିଣ ଜୟ ବିଜୟେ ମହାକୋପାନଳେ
ଦୁଇକୁମରେ ହାଥେ ଧରିଅଛନ୍ତି ଶୂଳେ ଶୂଳେ ।୪୭।

ପଞ୍ଚାଶ ଲକ୍ଷ ଯୋଦ୍ଧା ଯେ ଚୈଖାର ତୁରଙ୍ଗ
ରେ ରେ କାର କରିଣ ଯେ ଧାଇଂଲେ ବେଗ ବେଗ ।୪୮।

କୁନ୍ତ ଅସିପଟ୍ଟ ବୁଲାଇଣ ମୁଦୁଗର ଜାଠି
ଆରେ ଆରେ ବୋଲିଣ ଯେକମୁଖ ହୋଇ ଉଠି ।୪୯।

କାଳ କୃତାନ୍ତକ ଭୀମସେନର ବେନି ସେନାପତି
ବଜ୍ରାବଳି ଗଦାଯେ, ଗଦାଯେ ଘେନି ଅଶ୍ୱେ, ଅଶ୍ୱେ ଚଢିଛନ୍ତି ।୫୦।

ଜରାସନ୍ଧର ସେ ଯେ ଉଠିଲେ ପୁତ୍ରବେନି
ବୁଲିବନ୍ତି କରେ ଲଂକଆ ଅନ୍ତରୀକ୍ଷେ ଘେନି ।୫୧।

ମେଘ ଗର୍ଜନ ପରାଯେକ ଶୁଭଇ ଘୋରରଡି
ଓହୋବଳ ଥାଟେ ତହିଂ ହାବୋଡା ହାବୋଡି ।୫୨।

ଆକାଶ କମ୍ପୁଅଛୁ ଓଡ଼ୋବଳ ମୁଖଧୁନି
ପ୍ରହାର କରନ୍ତ ଯେ ଯାହାର ଶହସ୍ର ଘେନି ।୫୩।

ଧାଅଂରେ ମାରରେ ବୋଲି ପଡ଼ଇ ଘୋର ଡାକ
ଗଗନରେ ଖେଳନ୍ତ ଯେସନେ ବଳାହକ ।୫୪।

ଯେସନେକ ଗୋଳ ଶୁଭିଲା ଓଡ଼ୋବଳ ଥାଟ
ଶହସ୍ର ଫଡ଼ ରୁଧିରମୟ ହୋଇଲା ସମରାଷ୍ଟ୍ର ।୫୫।
ସନ୍ୟଗୋଳ ଦେଖିଣ ଗର୍ଜେ ଭୀମ ମହାବଳ
ରଥୁ ଡେଇଂ ପଡ଼ିଲା ପାଣ୍ଡବ ଅଗ୍ରଗଳ ।୫୬।
କାଳଚକ୍ର ପ୍ରାୟେକ ବୁଲାଇ ବେନିଆଖି
ଭାଜିଲେ ମଗଧଥାଠ କୃତାନ୍ତେକ ରୂପ ଦେଖି ।୫୭।
ଗଦା ବୁଲାଇଣ ବେଗେ ପବନୁ ଆଘାତେ
ହାବୋଡ଼ା ହାବୋଡ଼ ହୋଇ ଯେ ପଡ଼ଲେ ଦୁରାପାତେ ।୫୮।
ମାର ମାର ବୋଲିଣ ଉଠିଲା ପାବେନି
ଗୋଡ଼ାଇ ମାଇଲା ସେ ଅନେକ ମଗଧ ଦେଶର ସଇନି ।୫୯।
ରକତେ କର୍ଦ୍ଦନ ହୋଇଲେ ଗଜ ଅଶ୍ୱ ମନୁଷ୍ୟ ସହିତେ
ପାୟେଡ଼ା ପଡ଼ିଲା ଅଷ୍ଟାଦଶ ଯୋଜନ ପର୍ଯ୍ୟନ୍ତେ ।୬୦।
ପବନ ବଳାତେ ଯେହ୍ନେ ପଡ଼ଇ ପଂକୁଫଳ
ମଗଧ ଦେଶର ଥାଠ ମର୍ଦ୍ଦିଲା ପାଣ୍ଡବ ଅଗ୍ରଗଳ ।୬୧।
ସଂଗ୍ରାମେ ନିପାତ ଯହୁଂ ହୋଇଲେ ସଇନି
ଦୁଷ୍ଟ ପଳାଇଲେ ଜୟେ ବିଜୟେ ଭାଇ ବେନି ।୬୨।
ସହଦେବ ଗୁମୁରେ ଯାଇଂ କହିଲେ ବାରତା
ସ୍ୱାମୀ ଅସଂଖ୍ୟ ମହିମାଂ ତାର ସଂଗ୍ରାମେ ମୟେମତ୍ତ ।୬୩।
ସ୍ୱାମୀ ଗୃହଲକ୍ଷ ଯୋଦ୍ଧା ତୋହୋର ପଡ଼ିଲେକ ରଣେ
ଯେଡ଼େବଡ଼ ଥାଠ ମର୍ଦ୍ଦନ ସ୍ୱାମୀ କଲ୍କ ଯେକାଜଣେ ।୬୪।
ପଚ୍ଛରିଲେ ନ କହଇ ସେ କେଉଂଣ ଦେଶ ରଜା
ନାଶକର ଦେବତା କ ସେ ପ୍ରତକ୍ଷେ ବଜୋଜା ।୬୫।

୫୪। ବଳାହକ—ମେଘ ।

ସ୍ୱାମୀ ୟେ ମଞ୍ଜରାଜା ହୋଇ କେ ଆସିବେ ତୋହୋର ସମ୍ମୁଖକୁ
ନାହିଂ ନାହିଂ ସ୍ୱାମୀ ୟେଥେ ପ୍ରମାଦ କରବାକୁ ।୬୬।
ଭଗ୍ନବଳ ଥାଟ ଦେଖି ନୃପତି ସହଦେବ
ମତ୍ତ ହାଥୀୟେ ଚଢ଼ିଣ ସେ ଚଳଇ ମତ୍ତଗଜ ।୬୭।

ହାଥେଣ ବେଣୀଗଦା ଘେନି ସେ କୁମରମଣି
ସାଜଲ ସମଦଣ୍ଡ ତାହାର ତେଇଶି ଷଉଣୀ ।୬୮।
ଭୁଲେଣ ରଥ ଆରୋହି ନବଶତ ପାରଦଣ୍ଡ
ବୀରତୂର ଶବଦେ ଯେ କମ୍ପଇ ଭୂଅଖଣ୍ଡ ।୬୯।
ମର୍ଦ୍ଦିତେକ ବୀରତୂର ସମ୍ମୁଖରେ ତାର ବାଜେ
ମନ୍ତ୍ରୀ ଅମନାତ୍ୟ ଘେନି ସାଂଗ୍ରାମକୁ କଲା ବଜେ ।୭୦।
ଦେଖିଲା ରାଜ୍ୟରେ ପଶନ୍ତି ପାଣ୍ଡବ ସଇନ
ସାଂଗ୍ରାମେ ନିର୍ଦ୍ଦୟେ ସେ ବୁଲନ୍ତି ଶହସ୍ର ଘେନି ।୭୧।
ସହଦେବ ସମ୍ମୁଖରେ ଭେଟିଲା ନେଇ ରଥ
ବିନ୍ଧନ୍ତି ନାରାଜନ୍ତ ଘେନିଣ ଅପ୍ରମିତ ।୭୨।
ଆକାଶେ ବିରାଜଇ ଯେହ୍ନେ ସୂର୍ଯ୍ୟ ପ୍ରତଗ୍ୟାଂ
ସ୍ୱାମୀର ଆଗ୍ୟାଂ ତେସନେ କରନ୍ତି ଅବଗ୍ୟାଂ ।୭୩।
ବିରାଜନ୍ତି ମୁକୁଟ ବାଳଆଦିତ୍ୟ ତେଜ ଜାଣି
ମଗଧେଶ୍ୱର ଥାଟ କୋନ୍ତ ପ୍ରହାରିଲେ ଆଣି ।୭୪।
ସେହ୍ନା ଟୋପର ଯେ ଛଉଷ ବଜ୍ରଘୋଟି
ବିନ୍ଧନ୍ତେଣ ନାରାଜନ୍ତ ଶସ୍ତ୍ରରେ ନ ଫୁଟି ।୭୫।
ଯାହାକଇଂ ସ୍ୱପକ୍ଷ ଯେ ପବନ ଦେବତା
କେ ତାହାର ସମ୍ମୁଖରେ ଅଛଇ ତ୍ରଇଲୋକ୍ୟେ ଗଣିତା ।୭୬।
ପାଣ୍ଡେବ ସୁନ୍ଦର ସେ କୃତାନ୍ତେକ ରୂପ
ତେଇଶି ଷଉଣୀ ବଳକୁ ୟେକା ବୃକୋଦର ଧାପ ।୭୭।
ତରୁଣଆଦିତ୍ୟ ପ୍ରାୟେ ଦିଶଇ ବୀର ବୃକୋଦର
କେ ଆସି ରଣେ ଝାସିବ ତାହାର ସମ୍ମୁଖ ।୭୮।
ଦଣ୍ଡ ଦେଖି ବୃକୋଦର ଉଠେ ଗଳଗାଜି
ମଗଧ ସଇନ ସବୁ ପଳାଇଲେ ଭାଜି ।୭୯।

କେଶରଙ୍କ ଦେଖି ଯେସ୍ନେ ପଳାବନ୍ତ ବନଖାବେ
ମହାଥାଠ ମନ୍ଥନ କଲ ସେ ଜଗନ୍ତି ତା ପାଣ୍ଡବେ ।୮୦।
ମହାଗୋଳ ହାନ୍ଦୋଳ କହ୍ବନ୍ତ କ ପାର
ଭୀମସେନର ଦର୍ପେ ସନ୍ୟ ଶର ବର୍ଷନ୍ତ ରୋଷଭର ।୮୧।
କାଳେବର ଗଦାଧର ଭୀମସେନ ପିଟି
ସହଦେବର ସଇନ ପଡଲେ ସବ୍ବ ମହାଲେଟି ।୮୨।
ଦଣ୍ଡଭଗ୍ନ ଦେଖି ଧାମଇଂ ମଗଧେଶ୍ୱର ରାସ୍ତେ
ଅଶିଲକ୍ଷ ଯୋଦ୍ଧା ଘେନି ସେ ଜରାସନ୍ଧର ତନଯେ ।୮୩।
ବୃକୋଦର ସ୍ମୁଖରେ ଯାଇଂ ସହଦେବ ଭେଟି
ଆନ୍ୱେଷିଣ ଯୋଦ୍ଧାଯେ କଲେ ଅନେକ ଶର ବୃଷ୍ଟି ।୮୪।
ଲୋହ ପାଷାଣ ଜାଣି ନିର୍ବାଣ ବଜ୍ର ଯାହାର କାଯ୍ୟ
ଅସ୍ତ୍ର ଶସ୍ତ୍ରେ ପାଣ୍ଡବେ ସେ ଅଟନ୍ତ ନିର୍ଭଯ୍ୟ ।୮୫।
ଯେକା ପ୍ରହାରକେ ଚୂର ହୋଅନ୍ତ ରଥେ
ଆରେକ ପ୍ରହାରକେ ଚୂର ହୋଅନ୍ତ ରଥ ଗଜ ମାହୁନ୍ତେ ।୮୬।
ସହଦେବ ଦେଖନ୍ତେ ପଡଲେ ଅନେକ ସନ୍ୟବଳ
ଶୋଣିତବୃଷ୍ଟି ହୋଇଲା ଯେସନେ ବରଷାର କାଳ ।୮୭।
ଦୁଇପଦ୍ମ ରଥୀ ଗୃହପଦ୍ମ ମତ୍ତନାଗ
ନବପଦ୍ମ ପଡଲେ ଯେ ଗ୍ରେଖାର ତୁରଙ୍ଗ ।୮୮।
ଅଗଣିତା ସନ୍ୟ ମଲେ କେ ତାହାରେ ଲେଖି
ପଳାଇଲେ ମଗଧ ସଇନ ଯେ ସାଂଗ୍ରାମ ଉପେକ୍ଷି ।୮୯।
ତିଳ ପ୍ରମାଣେ ସଇନ ପଡଲେ ଅପ୍ରମିତେ
ଥାଠକଇଂ ପସ୍ୱେଜ ପଡଲା ପାଞ୍ଚ ଯୋଜନ ପର୍ଯ୍ୟନ୍ତେ ।୯୦।
ଭୀମସେନ ଗଦାଘାତେ ଅନେକ ସନ୍ୟ ଉଡ
ରଥ ଗଜ ଅଶ୍ୱେ ଯାଇଂ ଅନେକ ଧୂରେ ପଡ ।୯୧।
ଜୟଦେବ ବିଜୟଦେବ ବୋଲି ସହଦେବର ବେନିଭ୍ରାଥେ
ତିନିହେଂ ରହିଛନ୍ତି ଚଢି ରଥେ ରଥେ ।୯୨।
ସହଦେବ ହାକ ଦଅଇ ହୋ ତୁ କେଉଂଣ ଦେଶର ରଥୀ
ମୁହିଂ ତୋହୋର ଶତ୍ରୁ ନୋହୋଇ କେଉଂଣ ଦୋଷେ ମୋହୋର
ସନ୍ୟ ନିପାତ ।୯୩।

❋

ମୁଂ ତୋତେ କେଉଂଣ ଦୋଷ ଅବା କଲଇଂ ଯେ ପୂର୍ବେ
ଭୀମସେନ ଠାକୁରେ ମୋତେ ରାଜ୍ୟ ଦିଲେ ପିତାର ଅଭାବେ ।୯୪।
ପିତା ମୋର ଜରାସନ୍ଧ ଥିଲା ବଡ ଦୁଷ୍ଟ
ଅପାର ନୃପତି ସେ ବାନ୍ଧିଲା ସକଳହିଂ ରାଷ୍ଟ୍ର ।୯୫।
ନାରାୟଣେ ବିବାଦୀ ସେ ହୋଇଲା ମନ୍ଦବାଣେ
ଅଷ୍ଟାଦଶ ବେଳ ଯେନ ଧାଡିଦିଲା ଥାଠେ ।୯୬।
ମର୍ତ୍ତ୍ୟ ସ୍ୱର୍ଗରେ ରହି ନୁଆରିଲେ ବାସୁଦେବ
କ୍ଷୀରୋଦ୍ର ଭିତରେ ଯାଇଂ ପାଇଲେ ସେହୁ ଠାବ ।୯୭।
ଛଦନ୍ତେ ଯାଇଂ ଇନ୍ଦ୍ରପଦକୁ କଲା ଇଚ୍ଛା
ରାଜାନ୍ତ ଧରିଆଣି ମନ୍ତ୍ର ଆବୋରିଲା ମନ୍ଦ କରିଚ୍ଛା ।୯୮।
ପଞ୍ଚଦଶ ଦିବସେ କଲାକ ସେ ପୂର୍ଣ୍ଣ ଆହୁତି
ରାଜାନ୍ତ ଆହୁତିରେ ପକାନ୍ତା ଆଶ୍ୱିନ ଶୁକଲ ଅଷ୍ଟମୀର ରାତି ।୯୯।
ସନ୍ଦେଶ ଜାଣିଣ ବିଜେକଲେ ବାସୁଦେବ
ସଙ୍ଗେ ଆଣିଥିଲେ ଭୀମ ଅର୍ଜ୍ଜୁନ ବେନି ଯେ ପାଣ୍ଡବ ।୧୦୦।
ଦାନ ପ୍ରତିଗ୍ରହେ ବିପ୍ରରୂପେ ଅଇଲେ କପଟେ
ଯାଗଶାଳେ ପଶିଲେ ମୋହୋର ପିତାର ନିକଟେ ।୧୦୧।
ବେଦ ଅଧ୍ୟାନ କରି ମାଗିଲେ ସେହୁଦାନ
ସତ୍ୟକରି ଶଙ୍ଖେ ପାଣି ଛାଡିଲା ମଘଦେଶର ରାଜନ ।୧୦୨।
ସତ୍ୟ କରାଇ ଜଗନ୍ନାଥେ ମାଗିଲା ସାଂଗ୍ରାମ
ମାଲବନ୍ଧେ ଜରାସନ୍ଧକୁ ବଧକଲେ ଭୀମ ।୧୦୩।
ଜାରାସନ୍ଧକୁ ବଧକରି ଅନୁଗ୍ରହ କଲେ ମୋତେ
ମଗଧ ଦେଶେ ଉତ୍ସବ କଲେ ଅଭିଷେକ ନିମନ୍ତେ ।୧୦୪।
ଭୀମସେନ ଠାକୁରେ ମୋତେ କୋଡରେ ବସାଇ
ରାଜ୍ୟେ ଅଭିଷେକ ମୋତେ ମଥାରେ ପାଟଦେଇ ।୧୦୫।
ଛୟାଳୋଇ ସହସ୍ର ରାଜାନ୍ତ ବନ୍ଦୀ ମୁକଳ କରି ଦିଲେ
ସମସ୍ତ ନୃପତିମାନଂକୁ ଆଣି ମୋତେ ସମର୍ପିଲେ ।୧୦୬।
ଯେସନେକ ଆଜ୍ଞାଂ ଦେଇଗଲେ ଭୀମସେନ ଠାକୁରେ
ଦିବାରାତେ ଅଛଇ ମୁଂ ଆଜ୍ଞାଂ ଶିରଧାରେ ।୧୦୭।

ପରଭୂମି ନ ସାଧଇ ନ ଯାଇଂ ପରରାଷ୍ଟ୍ରେ
ପରମାଣ ଆଜ୍ଞାଂଯେ ମୁଂ ନ ଜାଣଇ ପରଥାଠେ ।୧୦୮।
ସେ ସ୍ୱାମୀର ଆଜ୍ଞାଂଯେ ନ ଲଂଘଇ ପରସୀମା
ତୁ ମୋହୋର ସୈନ୍ୟ କଂପେ ନାଶିଲୁ ହୋ ମହାତମା ।୧୦୯।
ବ୍ରିକୋଦର ଶରଣ ମୁଂ ବ୍ରତଇ ସର୍ବକାଳେ
ମୋହୋର ଶରଣ ପିଅର ସେ ଅନ୍ତ ଯେତେବେଳେ ।୧୧୦।
କାର୍ପୁଣ୍ୟ ହୋଇଣ ଯହୁଂ କହଇ ଜରାସନ୍ଧର ନନ୍ଦନ
ସ୍ୱାମୀ କାହ୍ନଂ ଅଛ ରକ୍ଷାକର ମୋତେ ପାଣ୍ଡବ ଭୀମସେନ ।୧୧୧।
ସହଦେବ ମୁଖୁଂ ଯେସନେକ ବାକ୍ୟ ଶୁଣି
ଆସ ଆସ ସହଦେବ ହୋ କୁମର ଚୂଡ଼ାମଣି ।୧୧୨।
ବାବୁ ମୁହ୍ନଂ ସେ ପାଣ୍ଡବ ସୋହୋଡ଼ ଅଛଇ ବୀର ଭୀମ
ତୁ ନ ଜାଣି ଯୁଦ୍ଧକଲୁ ମୁହ୍ନଂ କଲଇଂ ତୋତେ ଡମ ।୧୧୩।
ଶୁଣିଣ ସହଦେବ ରଥରୁ ପଡ଼ଲୁକ ଡେଇଂ
ଶତେ ସହସ୍ର ଦଣ୍ଡପ୍ରଲମ୍ବ ହୋଇଲେ ଭିମଭାଇ ।୧୧୪।
ସ୍ୱାମୀ କ୍ଷମା କରବା ମୋର ଦଶଦୋଷ ଅପ୍ରାଧ
ନ ଜାଣି ପାମର ମୁଂ ଅନମିତେ କଲି ଯୁଦ୍ଧ ।୧୧୫।
ଶରଣ ସମ୍ଭାଳଣ ନାଥ ଭଗତଜନବତ୍ସଳା
କ୍ଷତ୍ରିୟେ ବୀରବର ତୁ ପ୍ରତଗ୍ୟାଂ ଅର୍ଗଳା ।୧୧୬।
କୁମ୍ଭେକ ବଧାଶ ନାଥ କପିଳାସ କଲୁ ରକ୍ଷା
ଅଗାଧ ଜଳେ କୁମ୍ଭିରୀ ନ କଲୁ ଉପେକ୍ଷା ।୧୧୭।
କନ୍ଦ୍ରାସଦତ୍ୟ ବଦାରଣ ତୁ ହିଡ଼ମ୍ବକ ଦର୍ପ ଧ୍ୱଂସା
ଶିବପୁର ନଗ୍ର ରକ୍ଷାକର ଗୃଣ୍ଡାଳ ବଳ ନାଶା ।୧୧୮।
ଦେବକଇଂ ଦେବ ତୁ ଶାହାସ୍ତ୍ରେ ପଣ୍ଡିତ ମହାଭଗ୍ୟଂ
ଗ୍ୟାନକଇଂ ଗ୍ୟାନଗୁରୁ ତୁ ଧାରଣକଇଂ ସର୍ବଗ୍ୟଂ ।୧୧୯।
ପାଣ୍ଡବାସୁର ନିବାରଣ ତୁ ବକାସୁର ଦର୍ପଗଞ୍ଜା
କାଳାନ୍ତକ ବଦାରଣ ନାଥ ନାଗେଣୀ ବଳ ଭଞ୍ଜା ।୧୨୦।
ଦୟାସାଗର ତୁ ଶରଣ ପଞ୍ଜର ବରଧୂ
ଜାର ନିଶୋଧନ ତୁ କଲୁ ମାଲ ଯୁଦ୍ଧୁଂ ।୧୨୧।

ପବନ ଆତ୍ମଜ ତୁ ଯେ ଦୟାର ସାଗର
ଦଣ୍ଡଦୋଷ ଅପ୍ରାଧ କ୍ଷମା କରସି ମୋହୋର ।୧୨୨।
ଅନେକ ତୃପ୍ତି କରଇ ମଗଧେଶ୍ୱର ବାଳ
ବେନିନେତ୍ରୁଂ ବହଇ ଆନନ୍ଦେ ଅଶ୍ରୁଜଳ ।୧୨୩।
ପୁଣ ପୁଣ ପ୍ରଣପତ୍ୟ କରଇ ବକଲେ
ଦୟାସାଗର ମାରୁତ୍ତ ଧଇଲେ ନେଇ କୋଳେ ।୧୨୪।
ମୁଖେ ଚୁମ୍ବନ ଦେଇ ବେନିଭୁଜେ ଭିଡ
ତୁ ସେ ମୋର ପୁତ୍ର ବୋଲଣ କୋଲେଣ ଭୀମ ଧର ।୧୨୫।
ଅନେକ ସଇନ୍ୟ ଯେ ମାଇଲୁ ତୋର ଅନମିତେ
ଗୁରଗଣେ ବାରତ କି ନ କହିଲେ ତୋତେ ।୧୨୬।
ପଶ୍ଚିମ ଦିଗେ ବଜେ ବୋଲିକ ତୁ ଆଗହୁଂ ନ ଜାଣୁ
ଦେଶାନ୍ତର ମୁଖରୁ କି ବାରତା ନ ଶୁଣୁ ।୧୨୭।
କଟକେ ପ୍ରବେଶ ହୋଇଲ୍ଲା କାଳଦଣ୍ଡ ପାଣି
ଅନେକ ଉଚ୍ଛବ କରାଇଲା ସହଦେବ ନୃପମଣି ।୧୨୮।
ଛାମୁରେ ଗୁମର ସେ ଡାଳନ୍ତ ଡିନିଗ୍ରାତେ
ଉଦଣ୍ଡ ପାଟଛତ୍ର ଧରନ୍ତି ପାତ୍ର ଅମାତ୍ୟେ ।୧୨୯।
ବଜପୁ ବୃକୋଦର ଚନ୍ଦ୍ରଶାଳା ମଧ୍ୟରେ
ଶୋଧ ଛାଡ ଉଚ୍ଛବ କଲାକ ରାଜ୍ୟରେ ।୧୩୦।
ଅନେକ କୃତକୃତ୍ୟ ହୋଅନ୍ତି ସର୍ବଜନେ
ହରିଲୁ ଦୁଷ୍କୃତମାନ ପ୍ରଭୁ ତୋହୋର ଦରଶନେ ।୧୩୧।
ପ୍ରତକ୍ଷେ ନାରାୟଣ ଦେଖିଲୁ ନିଦାବନ୍ତୁ
ତରିଲୁ ସଂସାରସାଗର ଘୋର କଷ୍ଟୁଂ ।୧୩୨।
ମୁଣୋହିକ ଯୋଗାଡ ସଞ୍ଜା ଯେ କରଇ ସହଦେବ
ସେ ଜାଣିଅଛୁ ଭୀମସେନର ମୁଣୋହି ଯେସନେକ ଭାବ ।୧୩୩।
ସହସ୍ରେକ ସୂପକାର ସଙ୍ଗତେ ଅଛନ୍ତି ଅନୁବ୍ରତେ
ରୋଷୁଅ ମଧ୍ୟରେକ ଭିଆଇଲେ ପରମଳ ରାନ୍ଧଣା ନିମନ୍ତେ ।୧୩୪।
ସୁସଞ୍ଚ ତଣ୍ଡୁଳମାନ ଷାଠିପୁ ପଡନ୍ତି
ଅନେକ ମେଞ୍ଜାନ ଯୋଗାଡ ଆଣିଲେ ଯାହାକୁ ଯେତେ ଅର୍ଦ୍ଧି ।୧୩୫।

ସହସ୍ରେକ ସୂପକାର ତହିଁ କରନ୍ତି ପଚନ
ଶତେକ ମାଲ କରନ୍ତି ଭୀମସେନେ ତଇଳ ମର୍ଦ୍ଦନ ।୧୩୬।
ସ୍ନାହାନ ସାରଲେ ସେ ଯେ ନଦୀର ଭିତରେ
ଆହାର୍ତ୍ତିକ ସାର ବୃକୋଦର ବିଜୟେ ମୁଣୋହ୍ଲ ମନ୍ଦିରେ ।୧୩୭।
ଘୃତରସ ଯୋଗାଡ଼ ନିରାମିଷ ଅନ୍ନ
ପରଶନ୍ତି ସୂପକାରେ ଅମୃତ ଯୋଗାଡ଼ମାନ ।୧୩୮।
ଭୁଞ୍ଜିଣ ପାଣ୍ଡବ ଯେ ଉଠିଲେ ଅତିବେଗେ
କରନ୍ତି ଆଚମନ ପମାରଜଳ ଯୋଗେ ।୧୩୯।
ଆଚମନ ସାରଣ ଦେବ ବିଜୟେ ଆସ୍ଥାନେ
ଖଟନ୍ତି ବିଳାସୁଣୀ ଯେ ଗଣିକାଗଣମାନେ ।୧୪୦।
ସରଗୁଣା ଅଧାଟୀ ବୀଣା ସପତସ୍ୱର ବେଣୀ
ଖଟନ୍ତି ବିଳାସୁଣୀ ଉରହରଷ ଗାୟେଣୀ । ୪୧।
ତମ୍ବୁରୁ ନାଦ ଝଂକାରନ୍ତି ତାନ ଧରି ହାଥେ
ମୋହନ୍ତି ମୋହିନୀ ଯେ ତାଣ୍ଡବ ନୃତ୍ୟଗୀତେ ।୧୪୨।

---

୧୩୬।୨ 'ଶତେକ ମାଲ କରନ୍ତି ଭୀମସେନ ତଇଲ ମର୍ଦ୍ଦନ' ପାଠ
ପରେ 'ଛ' ପୋଥିରେ ଅଧିକା ପାଠ—
ସ୍ନାହାନ ଯୋଗାଡ଼ ପାଣି ଶତେକ ଗରଆ
ଦିବ୍ୟ ଝୀନବସନ ତ୍ରିମୂର୍ତ୍ତି କୁସୁମ ଗନ୍ଧ ।
ସୁବର୍ଣ୍ଣର ପଇଲମ ଅଷ୍ଟରନ୍ତ୍ର ଝସେ
ହାଥ ମୁଖ ପଖାଳଣ ମୁଣ୍ଡ ବିବିଧ ପ୍ରକାରେ ଶୋଭ ।
ରତ୍ନକମ ଚଉକରେ ବସି ବିଜୟ ମୁଣୋହ୍ଲରେ
ଷଡ଼ରସ ଭୋଜନ ସୁସ୍ୱାଦୁ ଫଂକୁସାରେ ।
ଶାକର ମିଶ୍ରିତ ପରଶନ୍ତି ଇକ୍ଷୁରସ
ଭୋଜନେ ସନ୍ତୋଷ ସେ କୋଇନ୍ତାଂକର ଶିଷ ।
ମୁଣୋହ୍ଲ ସମ୍ପୂର୍ଣ୍ଣେ ଅଂଗ୍ରେବନ ସାର
କର୍ପୂର ତାମ୍ବୋଳ ମୁଖବାସ ଚନ୍ଦୁସମ ଲେପନ କରି ।
ପ୍ରସନ୍ନ ମୁଖ ହୋଇ ବିଜୟେ ଆସ୍ଥାନେ
ଖଟନ୍ତି ବିଳାସୁଣୀ ଗଣିକାବୃନ୍ଦମାନେ ।

ସ୍ନାହାନ ନିତ୍ୟକର୍ମ ସାରଣ ସହଦେବ
ମୁଣୋହ୍ନ ସାରି ଆସିଣ ଛାମୁରେ ଉଭା କଂକରଭାବ ।୧୪୩।
ଶ୍ରୀକରେ ଅର୍ଘ୍ୟ ଦେଲା ଜରାସନ୍ଧର ପୁତ୍ର
ବ୍ରିକୋଦରକଇଂ ପାଦାଅର୍ଘ୍ୟ ଦେଲାକ ତୋଷଚିତ୍ତ ।୧୪୪।
ଲକ୍ଷେଶ୍ୱର ସୁବର୍ଣ୍ଣ ଦେଲାକ ଦରଶନ
ପୁଣ ପୁଣ ମହାରାଜା କରଇ ଦଇନ ।୧୪୫।
ସହଦେବକୁ କୋଳେ ଧରି ବୋଲଇ ପାବନ
ରାଜସୂୟ ଯାଗକୁ ସଜକର ତୋହୋର ସଇନ ।୧୪୬।
ଶ୍ରୀକରେ ବ୍ରିକୋଦର ଦେଲା ଅକ୍ଷତ ଗୁଆ
ସମଦଣ୍ଡ ଦେଲା ତୁ ରାଜସୂୟ ଯାଗକୁ ଯାଅ ଯା ।୧୪୭।
ସହଦେବ ବୋଇଲା ଦେବ ଆଗ୍ୟାଂ ପରମାଣେ
ଇନ୍ଦ୍ରପ୍ରଶସ୍ତ ଭୁବନକୁ ମୋର ଅନକୂଳ ସ୍ନେହକ୍ଷଣେ ।୧୪୮।
ତେଇଶି ଷଉଣୀ ବଳ ସହଦେବ ସାଜ
ମଣ୍ଡନ୍ତ ରଥବର ଯୋଚନ୍ତ ଗୃରି ଗୃରି ବାଜି ।୧୪୯।
ସହଦେବଂକୁ ନମନ୍ତି ରାଜୂୟଂ ବାହାର ବ୍ରୁକୋଦର
ଶ୍ରୀମୁଖେ ବୋଇଲେ କଲ୍ୟାଣ ହେଉ ସହଦେବ ବାହୁଡ ।୧୫୦।
ନିଜସ୍ଥଳ କରଣ ସହଦେବ ପରଣାମି
ସ୍ନେହ ଦୟା ସର୍ବଦା ମୋତେ କରିଥିବା ଦେବସ୍ୱାମୀ ।୧୫୧।
ସମଦଣ୍ଡ ଦେଲା ବାହୁଡଇ ଜରାସନ୍ଧର ବଳ।
ହସ୍ତିନାକଇଂ ସମଦଣ୍ଡ ଦେଲାଣ ଚଳଗଲା ।୧୫୨—୨୪୨୮।

———

## ମରୁତ ରାଜା ନିମନ୍ତ୍ରଣ ଓ ବୀରବାହୁ ସହ ଯୁଦ୍ଧ

ମଗଧ ଦେଶୁଂ ବାହାର ହୋଇଲା ଭୀମସେନ
ମରୁତ ଦେଶେ ପ୍ରବେଶ ହୋଇଲା ମରୁତ ନନ୍ଦନ ।୧।
ପୃଥିବୀ ହେଲ ଦେନଇ ବୀରତୂର ନାଦେ
ସୁସ୍ୱର ଶୁଭଇ ଯେ ବଜାଇ ଶବ୍ଦେ ।୨।

ମରୁତ୍ତ ଦେଶେ ଯାଇଂ ଭୀମସେନ ପଶଇ
ଦେଶାନ୍ତରେ ବାରତା ନେଇ ଦୂତେ ଆଦେଶଇ ।୩।
ଶୁଣ ଦେବ ସାବଧାନେ ମରୁତସେନ ନୃପତି
ଭୀମସେନ ଠାକୁରେ ଅଇଲେ ପଶ୍ଚିମ ଦିଗ ରାଜାନ୍ତ ଜିଣନ୍ତି ।୪।
ମଗଧ ଦେଶୁ ଦେବ ବିଜେକଲେ କାଲି
ତାହା ଶୁଣି ଯମଦଣ୍ଡ ଘେନି ସେ ମରୁତସେନ ଆସଇ ଗୃଳି ।୫।
ଦଶନରେ ତୃଣ ଧରି ଯେ ସମସ୍ତେ ଛନ୍ତି ଭରି
ସ୍ୱାମୀ କାଳେବର ଗଦାପାଣି ରାଖ ରାଖ ବୋଲିଣ ଶରଣ ଫୁକାରି ।୬।
ଭୀମସେନ ରହିଅଛି ରଇବ୍ରତ ପର୍ବତେ
ତହିଂ ଯାଇ ଦର୍ଶନକଲା ନୃପତି ମରୁତେ ।୭।
ପାଣିଦ୍ରବ୍ୟ ଶତେଭାର ଦେଖା ଦରଶନି
ମରୁତସେନ ଦର୍ଶନ ଶ୍ୱେତହାଥୀ ଯେତେକ ଘେନି ।୮।
ଦେଖିଣ ସାନନ୍ଦ ହେଲା ବୀର ବୃକୋଦର
ଆସ ଆସ ନୃପତି ହୋ ଆମ୍ଭର ସୋଦର ।୯।
ଅହୋ ନୃପତି ମୋହୋର ପିତାର ନାମ ତୋର ନାମ
ତୁ ମୋତେ ଆଜ ବେଳେ ନ କରନ୍ତି ପରଣାମ ।୧୦।
ଅକ୍ଷତ ଗୁଆ ଯେ ଦିଲେକେ ଶ୍ରୀହସ୍ତେ
ଯମଦଣ୍ଡ ଘେନି ଯାଅ ଇନ୍ଦ୍ର ଯେ ପ୍ରଶସ୍ତେ ।୧୧।
ମରୁତସେନ ନୃପତି କରଇ ବହୁତ ସେବା
ମୋହୋର ଭୁବନେ ଦେବ ଆଜକ ରହିବା ।୧୨।
ମୁଣୋହି କରି ବିଜେକରିବା ଅନ୍ୟ ଦେଶେ
ଭୀମସେନ ବୋଇଲା ଅନ୍ନ ନ ରୁଚଇ ବିଶେଷେ ।୧୩।
ରାଜାନ୍ତ ଜିଣନ୍ତିବା ସେ ମୋହୋର ଅଧୀନ
କେମନ୍ତ ନୃପତିମାନେ ଯିବେଟି ବହନ ।୧୪।
ତୁ ଆଜ ଚଳ ଯେବେ ଯମଦଣ୍ଡ ଘେନି
ଶୁଣିଣ ମରୁତସେନ ଚଳାଇଲା ସଇନି ।୧୫।
ସଜାଡ଼ ବୀରତୂର ଠମକ ଘୋର ବାଜେ
ପାଣ୍ଡବ ସୁନ୍ଦର ବୃକୋଦର ପଶ୍ଚିମ ଦିଗେ ବିଜେ ।୧୬।

---

୧୬ । ୧ ସଜାଡ଼—ବୀରବାଦ୍ୟ ବିଶେଷ ।

ବଳାଙ୍ଗୀ ନଦୀକୂଳେ ନଗ୍ର ଉଜାଣି ଯେ କାନ୍ତ
ତହିଁ ରାଜ୍ୟ କରୁଥାଇ ବୀରବାହୁ ନରପତି ।୧୭।
ବଡାଇ ପ୍ରତାପୀ ରାଜା ସେ କାହାକୁହିଂ ନୋହେ ସାଧ୍
ଜରାସନ୍ଧ ଯୁଦ୍ଧେ ତାକୁ ନୁଆର ଭାବେ କଲା ବନ୍ଦୀ ।୧୮।
ପଞ୍ଚଦଶ କ୍ଷଉଣୀ ତାହାକୁ ସମଦଣ୍ଡ ଖଟଇ
ତାହାର ରାଜ୍ୟକୁ ବଂଙ୍ଗିର ପର୍ବତ ନିକଟଇ ।୧୯।
ସେ ରାଜ୍ୟେ ପ୍ରବେଶ ଯାଇଂ ହୋଇଲା ମାରୁତି
ଚରଗଣେ ଜଣାଇଲେ ବୀରବାହୁ ନୃପତି ।୨୦।
ସ୍ୱାମୀ ପାଣ୍ଡବ ସୁନ୍ଦର ସେ ବୃକୋଦର ଭୀମେ
ଦିଗବିଜେ କରି ଯେ ଅଇଲେ ପଶ୍ଚିମେ ।୨୧।
ବହୁତ ଦେଶର ରାଜା ସେ ଆସୁଅଛୁ ଜିଣି
ଆମ୍ଭର ରାଜ୍ୟରେ ବିଜେକଲେ ଦେବ କାଳଦଣ୍ଡପାଣି ।୨୨।
ଶୁଣିଣ କୋପକଲା ସେ ନୃପତି ବୀରବାହୁ
କୟେରେ ପାଣ୍ଡବ ତାହାର ଯେତେ ଦର୍ପ କାହୁଂ ।୨୩।
କାହାର କଣ୍ଠରେ ସେ ରେ ଯେତେକ ଦର୍ପ ବୀରଭୀମ
ନିଚୟେ ତୋହୋର ପାଞ୍ଜି ପୋଛିଲକ ଯମ ।୨୪।
ନ ଜାଣଇକ ସେ ମୋତେ ବୀରବାହୁ ନୃପତି ବୋଲି
ସାଂଗ୍ରାମରେ ପରାଜୟେ ମୁହିଂ କାହାରେ ନ ହେଲି ।୨୫।
କେ ଜାଣଇ ପାଣ୍ଡବ ରେ କେ ଜାଣଇ ଭୀମ
ସଞ୍ଚୟେ ନାଶଯିବ ସେ ଆଜର ସାଂଗ୍ରାମ ।୨୬।
ସୁବାହୁ ବୋଲିକରି ତାହାର ଅଛଇ ନିଜପାତ୍ର
ତାହାକଇଂ ରାଇକରି ବୋଇଲା କୋପଚିତ୍ତ ।୨୭।
ପଞ୍ଚ ଅଶ୍ୱକ୍ରାନ୍ତ ରଥ ବଂଶ ଅଶ୍ୱକ୍ରାନ୍ତ ହୟେ
ପାଞ୍ଚଲକ୍ଷ ପାଦାନ୍ତ ଭୁଲେ ପାତ୍ରକୁ ବରଗିଲା ରହୟେ ।୨୮।
ଯେତେ ସନ୍ୟ ଘେନି ତୁମ୍ଭେ ଓଗାଳ ହୋ ତାକୁ
ଛାଡଣ ନ ଦିଅ ଥାଠ ଆମ୍ଭର ରାଜ୍ୟକୁ ।୨୯।
ରାଜା ଆଗ୍ୟାଂ ପାଇ ପାତ୍ର ଉଠିଲା ବହନ
ସାଜ ସାଜ ବୋଲି ଡାକ ପଡିଲକ ସନ୍ୟ ।୩୦।

ରାଜ୍ୟରେ ଥାଠ ଆସି ପଶନ୍ତେ ମହାବଳୀ
ଆରେ ରହ ରହ ବୋଲି ଆଗେଣ ଓଗାଳି ।୩୧।
ଶୁଣିଲ ନାହିଂକ ତୁମ୍ଭ ରେ ନୃପତି ବୀରବାହୁ
ନିଚଯ୍ୟେ ନରବଳରେ ସେ ତୁମ୍ଭନ୍ତ ଘୋଟିଲାକ ରାହୁ ।୩୨।
ଆରେ କାଳ ଆବୋରିଲେ ବୃତନ୍ତ ଟିକ ପ୍ରାଣୀ
କ୍ଷୁଦ୍ର ମୃଗପଲକୁ ରେ ବଳସ୍ବା କାହିଂ ଗଣି ।୩୩।
ଅନେକ ପ୍ରତାପ୍ୟାଂ ତହିଂ କରନ୍ତ ସନ୍ୟମାନେ
ଓହୋବଳ ପ୍ରତାପ୍ୟାଂ ଯେ ଶୁଣଇ ଭୀମସେନେ ।୩୪।
ଆଗିଆଣି ଥାଟେ ଥିଲେ କାଳ ଯେ କୃତାନ୍ତ
ବଜ୍ରାବଳୀ ଗଦା ଘେନି ଅଛଇ ନିଜ ହାଥ ।୩୫।
ଅହୋ ସୁବାହୁ ପାଣ୍ଡ ରାଜାକୁ ଯାଇ ତୋର ବେଗେ କହ
ନାଶକର ଦେବତାକୁ କେ କରିବାକ କୋହ ।୩୬।
ବାଳକାଳେ ଯାର ପାଦଘାତେ ଶତଶୃଙ୍ଗ ହୋଇଲା ଚୂନା
ନ ଜାଣଇ କି ବୀରବାହୁ ବୃକୋଦର ଜେନା ।୩୭।
ରାଜସୂୟ ଯାଗ କରିବେ ଯୁଧିଷ୍ଠିର ରାଜଦେବ
ପୃଥିବୀର ରାଜାମାନେ ସମସ୍ତେ ଦଣ୍ଡ ଘେନି ଯିବ ।୩୮।
ଆହୋ ତୁମ୍ଭର ଆମ୍ଭର ପୂର୍ବେ ଅଛଇ କି ଦ୍ୱନ୍ଦ
ପଣ୍ଡିତ ଲୋକେ ଶୁଣି ହୋଉଅଛନ୍ତ ଆନନ୍ଦ ।୩୯।
ପ୍ରତକ୍ଷେ ନାଶକର ବଜ୍ୟେ ଯେଣେ କଲ ଆସି
କଯ୍ୟେ ଯେଣୁଂ ଉଭୁରି ଯିବ ଯମ ମୁଖେ ପଶି ।୪୦।
କୃତାନ୍ତକ ବଚନ ଶୁଣି ସୁବାହୁ ପାଣ୍ଡ କୋପେ
କୃତାନ୍ତକ ଉପରେ ଗଦା ପହୁରିଲା ଗରୁତାପେ ।୪୧।
ଗଦା ପହୁରିବା ଦେଖି ଭୀମସେନ ସେନାପତି
ବାମକରେ ଗଦା ତାର ଧଇଲା ତତକ୍ଷଣାନ୍ତ ।୪୨।
ସେହି ଗଦା ଉଚ୍ଛୁଡି ଧଇଲା ତାର ହାଥୁଂ
ଲେଉଟାଇ ପିଟିଲା ସେ ପ୍ରତାପ୍ୟାଂ ସାମରଥୁଂ ।୪୩।

---

୩୩।୨ ବଳସ୍ବା—କୁକୁର ।
୩୩।୨ କ୍ଷୁଦ୍ର ମୃଗପଲକୁ ରେ ଶାର୍ଦ୍ଦୂଳ କାହିଂ ଗଣି । (ଖ,ଠ)

**

ବଜ୍ରଗଦା ପଡ଼ି ତାର ରଥ ଚୂରିଗଲା
ପାଦଗତି ହୋଇ ସୁବାହୁ ପାଏ ମୁଦଗର ପ୍ରହାରିଲା ।୪୪।
ଗଦାବର ବୁଲାଇଣ ପିଟିଲା କୃତାନ୍ତକ
ଯେମନ୍ତେ ଓଡ଼ୋବଳ ସାଂଗ୍ରାମ ହୋଇଲା ଅନେକ ।୪୫।
କୃତାନ୍ତକ ଗଦାଘାୟେ ଲୋଟିଲା ସୁବାହୁ
ଚନ୍ଦ୍ର ଦେବତାକୁ ଯେସନେକେ ଘୋଟିଲାକ ରାହୁ ।୪୬।
ଆକ୍ଷୋଷି କୃତାନ୍ତେକ ସୁବାହୁ ଉପରେ ବସିଲାକ ମାଡ଼ି
ବେଣ୍ଟାଫାଳ କରି ତାଂକୁ ପକାଇଲା ଚିରି ।୪୭।
ସାଂଗ୍ରାମେ ନିଧନ ଯହୁଂ ହୋଇଲା ପାଏବୀର
ଭାଙ୍ଗିଣ ସଇନ୍ୟ ନ ଟେକଲେ ଶିର ।୪୮।
ଧାମନ୍ତ କାଳ କୃତାନ୍ତକ ସେ ବେନି ସେନାପତି
ମହାକାଳାନଳ ଜାଣି ଦିକାଶିଲେ ବେନିମୂର୍ତ୍ତି ।୪୯।
ବୁଲାଇ ଗଦାନ୍ତ ଅନିବାରଣ କରି ପିଟି
ସୁବାହୁ ସଇନ୍ୟ ପଳାନ୍ତ ସବୁ ପଡ଼ଲେ ମହୀତଳେଟି ।୫୦।
ରଥେ ରଥ କଗୃଡ଼ ଯେ ଗଜେ ଗଜ ଧରି
ପଡ଼ଲେ ଯୋଦ୍ଧାଯେ ରୁଧିର ଉଦ୍‌ଗାରି ।୫୧।
ଲକ୍ଷେକ ରଥୀ ଯେ ପାଞ୍ଚ ମର୍ଭ୍ଯ ତ ହୟେ
ପାଞ୍ଚକୋଶ ମାଡ଼ି ପଡ଼ଲେ ପୃଥ୍ୱୀ ରୁଧିରମୟେ ।୫୨।
ରାଜାର ଗ୍ରାମୁରେ ଯାଇଂ କହିଲେ ମୁନେଶ୍ୱଂ
ସ୍ୱାମୀ ସନ୍ୟଯାକ ନାଶଗଲେ ଜାଅନ୍ତା କେହି ନାହିଂ ।୫୩।
କାଳ କୃତାନ୍ତକ ବୋଲି ବେନି ସେନାପତି
ସ୍ୱାମୀ ପ୍ରତକ୍ଷେ ଦିଶନ୍ତ ଯେ ଯମ ଦେବତା ମୂରତି ।୫୪।
ଆମ୍ଭର ବୋଲ ତୁହୋ ନ କଲୁ ନୃପମଣି
ନାଶଗଲେ ସନ୍ୟ ତୋର ଗୃହ ଯେ ଷଉଣୀ ।୫୫।
ଶୁଣିଣ ଅଧର ପୃଷ୍ଟ କରଇ ନୃପତି ବୀରବାହୁ
ପାଣ୍ଡବ ମାଏକେ ଆବର ଯେୁଡ଼େ ଦର୍ପ କାହୁଂ ।୫୬।
ସନ୍ୟ ସାଜ ବୋଲି ଆଗ୍ୟାଂ ଦିଲାକ ନୃପମଣି
ରଥ ଗଜ ସନ୍ୟ ସମଦଣ୍ଡ ଯେ ପଲାଣି ।୫୭।

ପଞ୍ଚଦଶ କ୍ଷଉଣୀ ବୀରବାହୁର ଭୁଲେ ଥିଲେ
ସୁବାହୁ ସମରେ ଗୃହ କ୍ଷଉଣୀ ନାଶଗଲେ ।୫୮।
ସେହୁଗାର କ୍ଷଉଣୀ ପୁଣ ସନ୍ୟବଳ ସାଜ
ଧାମନ୍ତ ତାହାର ବଳ କୋପେଣ ଗଳଗାଜ ।୫୯।
ନଗ୍ରର ଭିତରେ ପଶି କୋପେଣ ଆସଇ ଭୀମ
ଦଣ୍ଡ ଦେଖି ଭୀମ ସୁମରେ ପୁରୁଷ ଉତ୍ତମ ।୬୦।
ସ୍ୱାମୀ ତୁ ଯେ ବୋଇଲୁ ନ ମାରବୁ ରାଜାମାନନ୍ତ
ପଶ୍ଚିମର ରାଜାମାନେ ତୋତେ ହେବେ ବଶ୍ୟାବୃତ୍ତ ।୬୧।
ଜରାସନ୍ଧକଇଂ ବଧକଲି ମୁଂ ନାକଠେ
ସେହୁତେ ବଡ ପ୍ରତଗ୍ୟାଂ ମୋହୋର ପାସୋରଲେନି ମନ୍ଦ ଦୁଷ୍ଟେ ।୬୨।
ଆଜର ଯୁଦ୍ଧେ ଦେବ ନ ବ୍ରୁତଇଟି ବୀରବାହୁ
ସେହୁ ରାଜାର ଭୁଲେ ଧନ ଦେବ ମୋର ତହୁଂ ।୬୩।
ସୁବର୍ଣ୍ଣ ରାଜାସେହୁ ପଛେ ଗଡାବନ୍ତୁ ଦେବଦ୍ୱର
ନୋହିଲେ ମୋହୋର ବେଳେ ସେହୁ ଦୁଷ୍ଟଂକର ପ୍ରତଗ୍ୟାଂ
ସହିତେକ ପାର ।୬୪।
ରାଜା ଦୁଇ ଗୃହ ନ ମାଇଲେ କ ସେହୁ ଦ୍ୱାଗ ହୋସେହୁ ସାଧି
ସେହୁ ଦୁଷ୍ଟଂକର ଥିଲେ କାର୍ଯ୍ୟ ନୋହୋଇ ଯେ ସିଦ୍ଧି ।୬୫।
ମରୁତ ସାରଥି ବୋଇଲା ବାବୁ କୋପ ଶାନ୍ତକର
ରାଜାନ୍ତ ମାଇଲେ ଯାଗ କେହ୍ନେ କରବେ ଯୁଦ୍ଧେଷ୍ଟି ନୃପବର ।୬୬।
ଅନେକ ବୁଝାଆରଣ ବୋଇଲା ମରୁତ ସାରଥି
ମାଧୁର୍ଯ୍ୟ ବଚନ କହି ତାର କୋପ କଲା ଶାନ୍ତ ।୬୭।
ବୀରବାହୁ ସନ୍ୟ ବେଢ଼ିଲେକ ଯାଇଂ କୋପେ
ମଣ୍ଡୂକା ଦେଖି ଯେହ୍ନେ ଗର୍ଜନ୍ତ କାଳସର୍ପେ ।୬୮।
ଧର ଧର ମାର ମାର ତାକୁ ପଡୁଅଛି ବୋବ
ପାଦର ଘାତେ ଯେ କମ୍ପୁଅଛି ମହୀଦେବୀ ।୬୯।

୬୧ । ୨ ବଶ୍ୟାବୃତ୍ତ — ବଶବର୍ତ୍ତୀ ।
୬୮ । ୨ ନିଦାଘ କାଳେ ଯେହ୍ନେ ଗର୍ଜନ୍ତ କାଳସର୍ପେ । (କ,ଙ,ଞ)

କଲକଲା ଶବଦେ ଦଅନ୍ତି ମୁଖରଡ଼
ମହା ବାତଘାତେ ଯେସନେ କଦଳୀ ବୃକ୍ଷ ପଡ଼ ।୭୦।
ସର୍ପନ୍ତ ଦେଖି ଯେସନେ ଖଗେଶ୍ୱର କୋହ୍ୱ
କନ୍ଧୁ ବଚନ ପ୍ରତଗ୍ୟାଂ ଆଉ ବୀର ନୁଆରନ୍ତି ସହ୍ୱ ।୭୧।
କାଳ କୃତାନ୍ତକ ବେନ୍ତି ସେନାପତି ଆଗସର
ବୀରବାହୁ ଥାଠେ ମିଳିଲେ ଯେହ୍ନେ ଦହମକେଶରୀ ।୭୨।
କାଳେବର ଗଦା ଘେନି ଯେ ଧାମଇଂ ମାରୁତି
ରଣେ ଅନିବାରଣ ସେ ଅଟଇ ଅଶାନ୍ତି ।୭୩।
ଯେସନେକେ ପର୍ବତ ଉଠିଆସଇ ମନ୍ଦର
ସେହ୍ୱ ସରୂପେ ଦଶଇ ପାଣ୍ଡବ ସୁନ୍ଦର ।୭୪।
ଗଦା ବୁଲିବନ୍ତେ ଯେ ବହଇ ପବନ
ଉଡ଼ିଲେକ ବାତଘାତେ ବୀରବାହୁ ସନ୍ୟ ।୭୫।
ଯେସନେକେ ପବନ ବହଇ ଉଲୁକାପାତେ
ରଥ ଗଜ ଅଶ୍ୱେ ପଡ଼ିଲେ ଗଦାର ଦଘାତେ ।୭୬।
ଅନେକ ଦୂରେ ଯାଇଂ ପଡ଼ିଲେ ଛୁଟିକି
କୃତାନ୍ତେକ ମୂରତି କେ ପାରବ ରଖି ।୭୭।
ଦେଖ ହୋ କ୍ଷର୍ଣୀପଣ ବୀରବାହୁ ନୃପତି
ଉଲୁକାପାତ ବାଡି ବଞ୍ଚାଇଲା ଯେ ପ୍ରତଗ୍ୟାଂ ମହାରଥୀ ।୭୮।
ପାଞ୍ଚ ଅକ୍ଷ୍ୱହୃତ ଛୁଟିଲେ ଘେନିଣ ମହାଯୋଧୀ
ଅନିବାରଣ ଶର ମେ ଭୀମସେନକଇଂ ବନ୍ଧି ।୭୯।
ଦେଖିଣ କୋହାନଳ ପବନର ବଂଶ
ଭୀମସେନ ଗୃହ୍ୱଂଲା ଯେ ମରୁତ ସାରଥିର ମୁଖ ।୮୦।
ତୁ ଯେ ସମାର୍ଜନା କଲୁ ପିତାମହ
ଯେତେକ ଅପରାଂଜଯେ ରଜାର ହୋଇଲା ଯେତେ କୋହ ।୮୧।
ଯେତେହାନ୍ତ ନ ମାଇଲେ ଯେ ପଞ୍ଚିମ ଦଗ ନୋହେ ସାଧି
କେସନେକେ ସହ୍ୱବ ଯେ ବଡ଼ାଇ ଅପରାଧୀ ।୮୨।
ମରୁତ ବୋଇଲା ବାବୁ କୋପ ସଂହାରକର ବୀର ଭୀମ
ଆପଣାର କାର୍ଯ୍ୟେ ହୋ କୋପ କର ଶମ ।୮୩।

ସେବକର ଦୋଷ ପ୍ରଭୁ ସଂହରଣ କରି
ଯେ ମହାପ୍ରଭୁ ସେ ସକଳ ଦୋଷ ଅପ୍ରାଧ କ୍ଷମା କରି ।୮୪।
ମରୁତ ଡଆରନ୍ତେ ବୀରବାହୁ ଆସଇ କଟାଳି
ବେଳୁଂବେଳ ପ୍ରତଗ୍ୟାଂ ସେ ବଢ଼ିଲା ମହାବଳୀ ।୮୫।
ସମ୍ମୁଖେ ସନ୍ୟ ଯହୁଂ ଦେଖିଲା ଦୁର୍ଜଏ
କୋପେଣ ଧାଇଂଲା ସେ ପବନ ତନଏ ।୮୬।
ଦେଖିଲା ଅଣିଲକ୍ଷ ଯୋଦ୍ଧା ଏକମୁଖ ହୋଇ
ପଶିଲେ ସାଂଗ୍ରାମେ ଯେ ଅସିପତ୍ର ବୁଲାଇ ।୮୭।

ଗଜଯୂଥ ଦେଖି ଯେହ୍ନେ ଧାମଇଂ କେଶରୀ
ଧାମଇଂ ବୃକୋଦର ଯେ କରେଣ ଗଦାବର ଉଭାର ।୮୮।
ରଡଘାତେ କମ୍ପିଲା ଯେ ସପତ ବ୍ରହ୍ମାଣ୍ଡ
ମେଦିନୀ କମ୍ପିଲା ଗିରିବର ସପତ ଭୂଅଖଣ୍ଡ ।୮୯।
ଉଡିଲା ପର୍ବତ ଯେହ୍ନେ ଆସଇ ସ୍ଥାନ ଛେକ
ରୋଷେଣ ପାଣ୍ଡବ ଯେ ଉଠିଲା ଗଳଗାଜ ।୯୦।
ଆକ୍ରୋଷି ଧଇଲା ସେ ରଥନ୍ତ ବେଳକରେ
ଏକରଥ ପ୍ରହାର କରଇ ଆରେକ ରଥ ଉପରେ ।୯୧।
ଗଜନ୍ତ ବୁଲାଇ ବାହାନାଦ କରି ପିଟି
ଗଜ ଅଶ୍ୱ ମାହୁନ୍ତ ରକତ କର୍ଦ୍ଦନ ହୋଇ ଉଠି ।୯୨।
ସଇନ ଅସାଷ୍ଟମ ଦେଖିଣ ବୀରବାହୁ
ହାକ ଦଅଇ ପାଣ୍ଡବା ରେ ଏତେକ ଦର୍ପ କାହୁଂ ।୯୩।
ପରରାଷ୍ଟ୍ରେ ପରଭୂମିରେ ପଶି ତୋର କଂମେ ଏତେ ଦର୍ପ
ଖଗେଶ୍ୱର ଆଗେ କାହ୍ନିଂ ପ୍ରତଗ୍ୟାଂ କରଇ ରେ କାଳସର୍ପ ।୯୪।
ଅନେକ ପ୍ରତଗ୍ୟାଂ କରି ସେ ବୀରବାହୁ ନୃପରାଏ
ଅଶ୍ୱେକ ଚଢି କ୍ଷେପିଲା ଶେଣାପଛୀ ପ୍ରାଏ ।୯୫।
ଶତେ ଶତେ ଭାର ସେ ବେଳଗଦା ବୁଲାଇ
ଭୀମସେନ ଉପରେ ପିଟିଲା ଗଦା ନେଇ ।୯୬।
ଯେସନେକେ ଗିରିବର ବଜ୍ରେ ପଡଇ ତୁଟି
ଭୀମସେନ ଉପରେ ପଡ ହୋଇଲା ରୁଧିର ବୃଷ୍ଟି ।୯୭।

ଘାଏଣ ଘୁମାଇଲା ସେ କୋଇନ୍ତା ଦେବୀର ବଳା
ଅସାଷ୍ଟମ ପାଇ ମାରୁତ ତେଜ ଅନର୍ଗଳା ।୯୮।
ବୃକୋଦର ମୂରଛ ବକାଣିଲା ବୀର ଭୀମ
ଗଦାବର ବୁଲାଇ ସେ ଉଠିଲା ସାଂଗ୍ରାମ ।୯୯।
ରହ ରହ ବୋଲଣ ଗଦା ପିଟିଲା ନେଇ ତୋଳ
ଗଜକୁମ୍ଭରେ ବାଜନ୍ତେ ଗଜ ହେଲା ଧୂଳ ।୧୦୦।
ପାଦଗତ ହୋଇଣ ଯେ ଧାମଇଂ ବୀରବାହୁ ନୃପତ
ବୃକୋଦର ଉପରେ ଗଦା ପିଟିଲା ନେଇ ଧାଡ ।୧୦୧।
ଆପଣାର ଗଦା ପାତିଲାକ ବୀରମଣି
ବେନିଗଦା ପଡ଼ ତାଳେ ଝଲକଲା ବହ୍ନି ।୧୦୨।
ପୁଣ ପୁଣ ଗଦା ପ୍ରହାର କଲାକ ବୃକୋଦର
ବୀରବାହୁ ଗଦା ଭଙ୍ଗ ହୋଇଲା ଶତଚୂର ।୧୦୩।
ରଣରଙ୍ଗେ ନିର୍ଭୟା ସେ କୁମୁଦସେନ ବଳା
ହାଥେଣ ବୀରବାହୁ ଘେନିଲା ଖଡ଼ଗଫଳା ।୧୦୪।
ପବନ ଗତ କର ବୁଲାଇ ଅସିପତ୍ର
ଅନ୍ତରୀକ୍ଷେ ପ୍ରହାର କଲା ନେଇ ଭୀମସେନର ଗାତ୍ର ।୧୦୫।
ବାମଅଙ୍ଗ ପାତିଲା ବୀର ଖଡ଼ଗ ପଡ଼ନ୍ତେ
ଅଗ୍ନି ଝଲକଲା ଯେ ଅସିପତ୍ରର ବଢାତେ ।୧୦୬।
ଖଡ଼ଗ ଭାଙ୍ଗନ୍ତେ ବୀରବାହୁ ହୋଇଲା ଶୂନ୍ୟହାଥ
ବୃକୋଦର ହୃଦେ ନେଇ ମାଇଲା ବଜ୍ରମୁଥ ।୧୦୭।
ପ୍ରତଗ୍ୟାଂ ବଳବନ୍ତା ସେ ପବନର ଶିଷ
ବାମକରେ ଦବାଣ୍ଡିଲା ସେ ବୀରବାହୁର କେଶ ।୧୦୮।
ଅନ୍ତରୀକ୍ଷେ ଦବାଣ୍ଡିଣ ଧରେ ତାର ବାଳ
ଦକ୍ଷିଣଭୁଜେ ଖଡ଼ଗ ବୁଲାଇ ଅନ୍ତରାଳ ।୧୦୯।
ପିଟିଲାକ ଭୀମସେନ କୋପାନଳ ଚିତ୍ତେ
ମରୁତ ସାରଥି ଧଇଲା ଭୀମସେନର ହାଥେ ।୧୧୦।
ମରୁତକଇଂ ପେଲପକାଏ ଭୀମସେନ ପରଚଣ୍ଡା
ଗାତେ ସାରଥି ତାହାର ଉଚ୍ଛୁଡ ଘେନିଲାକ ଖଣ୍ଡା ।୧୧୧।

ଗୁଡ ଗୁଡ ପିତାମହ ବୋଲଇ ବୃକୋଦର
ଅବଶ୍ୟ ଛେଦିବଇଂ ଯେ ବୀରବାହୁର ଶିର ।୧୧୨।
ମରୁତ ସାରଥି ବୋଇଲା ତୁ ଯେ ଅଇଲୁ ରାଜାନ୍ତ ନିମନ୍ତ
ଯେତ୍ବମନ୍ତ ରାଜାନ୍ତ ମାଇଲେ ରାଜସୂୟଯାଗ ହୋଇବ କେବଣ ମତ ।୧୧୩।
ସଜ୍ଜନକଇଂ ପାଳନ ତୁ ଦୁଷ୍ଟକଇଂ ଦର୍ପଧ୍ୱଂସା
ଭଗତଜନ ବତ୍ସଳ ତୁ ପୂରାଅ ମନୀଷା ।୧୧୪।
ମରୁତ ସାରଥି ବୋଇଲା ତୁ ଗୁଡ ସ୍ୱାକୁ ଶ୍ରେଷ୍ଠ
ଅନାଥ ଲୋକଂକୁ କଂପେ ତୋର ଯେତେକ କୋହ ।୧୧୫।
କାଳେ ଦନ୍ତେଣ ତରଣ ଯେଣ୍ଣ ନୃପତ ବୀରବାହୁ
ସ୍ୱାମୀ ଶରଣବତ୍ସଳ ନାଥ ଯେତେକ କୋପ କାହୁଂ ।୧୧୬।
ମୁହିଂ ଅନାସ୍ତ ଜନ ତୁ ଅନାସ୍ତ ଲୋକ ବନ୍ଧୁ
ଶରଣ ରକ୍ଷଣ ନାଥ ବଂଶ ତୋର ସାଧୁ ।୧୧୭।
ନ ଜାଣି ପ୍ରତଗ୍ୟାଂ ସ୍ୱାମୀ କଲାଇଂ ବହୁତ
ଅଗ୍ୟାନ ମୂର୍ଖ ଯେ ମୋହୋର ପ୍ରକୃତ ପ୍ରକୃତ ।୧୧୮।
ମୁହିଂ ଅବା ତୋତେ ଦ୍ରୋହ କଲାଇଂ ଅଗ୍ୟାନେ
ଯେତେକଇଂ କ୍ରୋଧ ସ୍ୱାମୀ ଧଇଲୁ କେସନେ ।୧୧୯।
ସ୍ୱାମୀ ପଣ୍ଡିତ ଶବ୍ଦ ହୋଉ ବାଞ୍ଛନ୍ତି ସୁଜନେ
ତଉର୍ଯ୍ୟଂକୁ ଅପ୍ରାଧ ନ ବହନ୍ତି ପଣ୍ଡିତ ଜନମାନେ ।୧୨୦।
ମୂର୍ଖ ଅପରାଧୀ ଲୋକଂକୁ କୋପ ନ କରନ୍ତି କାଶୀ
ମହାପ୍ରଭୁ ହୋଇ ପରକଇଂ ଆକ୍ରୋଷି ।୧୨୧।
ଭଗତଜନ ବତ୍ସଳ ତୁ ଯେ ଶରଣକଇଂ ରକ୍ଷା
ମର୍ଜିଲୁ ଦର୍ପ ମୋର ତୁହାଇଲୁ କଇଛା ।୧୨୨।
ଅନେକ ସ୍ତୁତି କରି ରାଜା ବୋବଇ ବକଲେ
ଶତେସହସ୍ର ଦଣ୍ଡ ପ୍ରଲମ୍ବିତ ହୋଇ ସେ ଭୀମସେନର ପାଦତଳେ ।୧୨୩।
ରାଜାର ବଚନେ ଶାନ୍ତ ହୃଡମ୍ବିକା ବଲ୍ଲଭ
କ୍ଷତ୍ରୀବର ପ୍ରତଗ୍ୟାଂ ସେ ଅଟଇ ଦୁଲଭ ।୧୨୪।

---

୧୧୨।୨ ପିତାମହ—ମାନ୍ୟାର୍ଥରେ, ମାନ୍ୟ ପୁରୁଷ, ପିତୃ ପିତା – ପିତାମହ ।
୧୧୫।୧ ଶ୍ରେଷ୍ଠ—ଶ୍ରେଷ୍ଠ ।

ଦସ୍ଥା ବସିଲେକ ଚହୁଂ ପାଣ୍ଡବ ପଞ୍ଚାଳ
ଆହେ। ଦୁଷ୍ଟପଣେ ନାଶଗଲୁ ହୋ ମହୀପାଳ ।୧୨୫।
ଅକ୍ଷତଗୁଆ ତାକୁ ଶ୍ରୀକରେ ଦେଲେକ ପାବେନ
ରାଜସୂୟ ଆଠକୁ ଯାଅ ତୋହୋର ଥାଠସନ୍ୟ ଘେନ ।୧୨୬।
ଶ୍ରୀଅଙ୍ଗେ ଚନ୍ଦନ ଚନ୍ଦ୍ରସମ କସ୍ତୁରୀ
ଦେବାଙ୍ଗ ବସନ ଭୀମ ଶ୍ରୀହସ୍ତେ ଦେଲେ ଶାଢୀ ।୧୨୭।
ଅନେକ ଭଗତି ଭାବେ ସେ ବୀରବାହୁ ନୃପମଣି
ସମଦଣ୍ଡ ଘେନ ଆସ୍ଥାନେ ପଚୋଆର ଦେଲ ପୁଣି ।୧୨୮।
ଆଲଟ ଚାମର ଆଣି ଧରନ୍ତ ଅପ୍ରମିତେ
ଆପଣେ ବୀରବାହୁ ଛାମୁରେ ଧରନ୍ତି ପାଟଛତେ ।୧୨୯।
ବଜାୟେ ମାରୁଭ ଯେ ଆସ୍ଥାନ ଉପରେ
ଖଟନ୍ତ ବଲ୍ଲୁଣୀଏ ଭରହରଷେ ଛାମୁରେ ।୧୩୦।
କଂକର ପ୍ରାୟେ ହୋଇ ପଚାରଇ ବୀରବାହୁ ନୃପତି
ସ୍ୱାମୀ ଆଜକ ମୋହୋର ପୁରେ ରହିବା ଦେବାରତି ।୧୩୧।
ଆହେ। ବୀରବାହୁ ଧ୍ୱଂସିଲ ଯେ ତୋହୋର ନିଜ ରାଜ୍ୟ
ଅନେକ ସନ୍ୟ ନାଶଗଲ ପାଇଲୁ ଅକାର୍ଯ୍ୟ ।୧୩୨।
ଯେ ତୋହୋର ରାଜ୍ୟ ଆମ୍ଭେ ରହିବୁ କେମନ୍ତେ
ରାଜାନ୍ତ ନିମନ୍ତିବ ମୁଂ ପଶ୍ଚିମ ଦିଗ ପ୍ରଶସ୍ତେ ।୧୩୩।
ଆସ୍ଥାନୁଂ ଓହ୍ଲାଇ ବୀରବାହୁଙ୍କୁ ସଂବୋଧି
ଅମାତ୍ୟମାନନ୍ତ ଶାଢୀ ଦେଇ ପ୍ରବୋଧି ।୧୩୪।
ବୀରବାହୁ ବୋଇଲ ସ୍ୱାମୀ ତୋହୋର ସଙ୍ଗେ ଥିବ
ତୋହୋର ପ୍ରାୟେ ସ୍ୱାମୀକି ଛାଡି କାହିଂ ଆବର ଯିବ ।୧୩୫।
ଭୀମସେନ ବୋଇଲ ସଙ୍ଗେ ଥିବାକୁ ଯେବେ ତୋହୋର ଇଚ୍ଛା
ଯେବେ ରାଜସୂୟ ଯାଗରେ ଯାଅ ଯା ତୋହୋର
ପୂରବ ମନବାଞ୍ଛା ।୧୩୬।
ବାହୁଡଇ ବୀରବାହୁ ଭୀମସେନର ସତ୍ୟବଚନ ଶୁଣି
ସମ୍ଭବ କର କଲ ରାଜା ଥାଠସନ୍ୟ ପଲଣି ।୧୩୭—୨୫୬୫।

— —·—

## କାଶୀରାଜାଙ୍କୁ ନିମନ୍ତ୍ରଣ ଓ ପଞ୍ଚଧାରା ତୀର୍ଥର ମାହାତ୍ମ୍ୟ

ଦଣ୍ଡଧେନ ଚଳଇ ତହୁଂ ପାଣ୍ଡବ ମାରୁତି
ବହୁତ ହୁଲା ଲଗାଇ ଚଳଇ ନିଶାରାତି ।୧।
ମହାସମୃଦ୍ଧେ ଥାଟ ଚଳାଇ ଭୀମସେନ
କାଶୀନଦୀ ତୀରେ ପ୍ରବେଶ ହରି ଉଦ୍ୟାନ ନାମେ ବନ ।୨।
ସେ ନଦୀର ତୀରେ କାଶୀଦେଶ ଯେ ବସଇ
କାଶୀଶ୍ୱର ବୋଲି ରାଜା ପଶ୍ଚିମ କୋଶଳଇ ।୩।
ବଡ଼ାଇ ପ୍ରତାପୀ ସେ କାଶୀ ବିଶ୍ୱନାଥଙ୍କଇଂ ସେବି
ଧାର୍ମିକ ବିବେକ ରାଜା ପରମ ବଇଷ୍ଣବୀ ।୪।
ମାଥେଣ ଜଟା ଭୁଜେ ରୁଦ୍ର କଂକଣ ଚିହ୍ନ
କରେ ତ୍ରିଶୂଳ ଧରି ସେ ବଇଲ ବାହନ ।୫।
ଚଉଦକୋଟି ଗଣନାୟକ ତାର ଭୁଲେ
ଯେତେ ଭୁବି ଭୁବନେ କେହି ତାହାକୁ ସରିନାହିଁ
                                    ସାଂଗ୍ରାମ ଖେଳି କଲେ ।୬।
ମହାବଳବନ୍ତା ସେ ସଦାଶିବ ପ୍ରସାଦେ
ଦଇତ ଦାନବ କେହି ସରି ନାହିଂ ତାହାକୁ ଯୁଦ୍ଧେ ।୭।
ଭୀମସେନ ପ୍ରବେଶ ହୋଇଲା ତାର ରାଜ୍ୟେ
ଅନେକ ବୀରତୂର ଦାଉଣ୍ଡି ଢୋଲ ଚମକ ଘୋର ବାଜେ ।୮।
ମୁନେହି ଜଣାଇଲେ ସେ କାଶୀଶ୍ୱର ନୃପତି
ପଶ୍ଚିମ ଦିଗବିଜେ ପାଣ୍ଡବ ମାରୁତି ।୯।
ବୀରବାହୁ ରାଜ୍ୟେ ପଶିଲା ଧ୍ୱଂସିଲେ ତାର ସଇନ୍ୟ
ବୀରବାହୁ ରକ୍ଷାଗଲା କରଣ ଦଇନ୍ୟ ।୧୦।
ରାଜାନ୍ତ ନିମନ୍ତ୍ରଣ କରି ଆସଇ ରାଜସୂୟ ଯାଗ ଅର୍ଥେ
ବହୁରାଜ୍ୟ ଧ୍ୱଂସ ନ କରଇ ଅନର୍ଥେ ।୧୧।
ବିଚାରି କାର୍ଯ୍ୟ କରିବା କାଶୀଶ୍ୱର ରାଜ୍ୟେ
ସାଂଗ୍ରାମ କଲେ ଯୁଦ୍ଧେ ଅଛଇ ଅପଚୟେ ।୧୨।
ରାଜା ହୋଇକରି ଯେବେ ପଶଇ ଶରଣ
ଭଗତ ଉଦ୍ଧାରଣ ସେ କରଇ କାରଣ ।୧୩।



ଦେଶାନ୍ତର ମୁଖୁଂ ଯେସନେକ ବାକ୍ୟ ଶୁଣି
ଦଣ୍ଡସାଜ ବୋଲି ଆଜ୍ଞା ଦେଲା କାଶୀଶ୍ୱର ନୃପମଣି ।୧୪।
ହାଥେ ଶୂଳେ ଶୂଳେ ଯେତେଣ ଯୋଦ୍ଧାମାନେ
ସମସ୍ତେ ସଜ ହୋଇଲେ ବଇଲ ବାହାନେ ।୧୫।
ଯେକହାଥେ ତ୍ରିଶୂଳ ଆରେକ ହାଥେ ଡମ୍ବରୁ
ହୃଦେ ଭୂଷଣ ଉଡଙ୍ଗ ସର୍ପ ଫେରୁ ।୧୬।
କଷା ବସନ ପଚହରଣ ଶିରେ ତାମ୍ରଫେଣୀ
ଡବ ଡବ ଡମ୍ବରୁ ଶବଦେ କ ସୁମରଇ ଶୂଳପାଣି ।୧୭।
ଭୀମସେନେ ବଜେ କରଛନ୍ତି କାଶୀନଦୀ ତଟରେ
ତ୍ରିପୁରାନ୍ତକ ପର୍ବତ ରୁଦ୍ରବଟର ତଳେ ।୧୮।
ଦୂରହୁଂ ଦେଖିଣ ସେ କାଶୀଶ୍ୱର ନୃପତି
ସେ ଦେଖିଲା ଭୀମସେନର ଭଇରୋବ ମୂରତି ।୧୯।
ଗିରିବର ସମାନେ କାଳେବର ଗଦା ହାଥେ
ଦେଖିଣ ଶଂକଲା ସେ କାଶୀଶ୍ୱର ନୃପତ୍ୟେ ।୨୦।
ଚରଗଣେ ଜଣାଇଲେ ଶୁଣିମା ଦେବ ଭୀମ
ରୁଦ୍ରବର ରାଜ୍ୟ ଯେ ସମସ୍ତେହେଂ ଜଙ୍ଗମ ।୨୧।
ଭୀମସେନ ରୂପ ଦେଖି କାଶୀଶ୍ୱର ହାସି
ବଇଲ ପିଠିରୁ ଓହ୍ଲାରି ଅର୍ଘ୍ୟଥାଳୀ ଘେନି ଆସି ।୨୨।
କାଶୀଶ୍ୱର ନୃପତି ଭୀମସେନକୁ ଦେଲା ନେଇ ପାଦାଅର୍ଘ୍ୟ
କୋଇନ୍ତାଂକର ନନ୍ଦନ ତୁ ଠାକୁର ମଧ୍ୟସ୍ୱର୍ଗ ।୨୩।
ସଂସାର ଜନହିତେ ସ୍ୱାମୀ ଜରାସନ୍ଧ ବଧି
ଶିବପୁର ରକ୍ଷା ନିମନ୍ତେ ଚଣ୍ଡାଳ ବଳ ନିଶୋଧି ।୨୪।
ନ ଜାଣି ଦୁଷ୍ଟ ରାଜାଯେ ହୋଇଛନ୍ତି ବଣା
ତୁ ସେ ପରମ ପଣ୍ଡିତ ସ୍ୱାମୀ ପବନ ନନ୍ଦଣା ।୨୫।
କୁମ୍ଭେକ ବଦାରଣ ସ୍ୱାମୀ କପିଳାସ ସ୍ୱର୍ଗ ରକ୍ଷା
ଶତଶିଙ୍ଗ ଦର୍ପ ଧ୍ୱଂସା ତୁ କାଳ ଗରଳ ଭକ୍ଷା ।୨୬।
ସନ୍ଥ ପ୍ରତିପାଳନ ତୁ ଦୁଷ୍ଟ ଦର୍ପ ରାହୁ
ନ ଜାଣିମା ପଣେ ନାଶ ଯାଉଥିଲୁ ବୀରବାହୁ ।୨୭।

ଅନେକ ସ୍ତୁତି କରି ଯେ କାଶୀଶ୍ୱର ସ୍ୱାମୀ
ଦୂରହୁଁ ନିଉଛାଳି ସେ ଶତସହସ୍ର ଦଣ୍ଡ ପରଣାମି ।୨୮।
ଚରଜଣେ ଆସି କାଶୀଶ୍ୱରଂକୁ କହିଲା
ଉଠ ହୋ ନୃପତି ତୋତେ ଠାକୁରଂକ ଆଗ୍ୟାଂ ହୋଇଲା ।୨୯।
ଭୀମସେନ କୋଳକରି ଧଇଲେ କାଶୀଶ୍ୱର ରାଜାକୁ
ଅକ୍ଷତଗୁଆ ଦେଇ ନିମନ୍ତ୍ରଣ କଲେକ ତାହାକୁ ।୩୦।
ଆହୋ କାଶୀଶ୍ୱର ରାଜା ରାଜୁସି ଯାଗ କରିବେ ଯୁଦ୍ଧେଷ୍ଟି
ବ୍ରହ୍ମହତ୍ୟା ଦୋଷ ପଣ୍ଡୁର ଖଣ୍ଡିବେ ଅରଷ୍ଟି ।୩୧।
ଲକ୍ଷେକ ନୃପତି ତହ୍ନିଂ ହୋଇବାକୁ ମେଳ
ଯନ୍ତିମହାଗ ବରଣେ ମୋତେ ପେଷିଲେ ବନମାଳୀ ।୩୨।

ଯେତେକ ଅଛନ୍ତି ତୋହୋର ଥାଟ ସଇନ
ଇନ୍ଦ୍ରପ୍ରସ୍ତକୁ ଯାଅ ଯା ଦେଖା ଦରଶନ ଧନ ଘେନ ।୩୩।
ଅନେକ ବିନୋସ୍ତି ସେ ରାଜା କାଶୀଶ୍ୱର
ସ୍ୱାମୀ ଆଜକ ରହି ମୁଣୋହିଂ କରିବା ସ୍ତେ ମୋହୋର ରାଜ୍ୟର ।୩୪।
ଭଗତିଭାବ ଦେଖି ପାଣ୍ଡବ କଲକ ସନମତ
କାଶୀଶ୍ୱର ଦେଶେ ପ୍ରବେଶ ଅର୍ଜୁନ ଜ୍ୟେଷ୍ଟଭ୍ରାଥ ।୩୫।
ବେନି ଅଶ୍ୱଗ୍ରୀତ ସୂପକାର ସଙ୍ଗେ ଥାଇ
ଭୀମସେନର ଭୁଲେ ସେ ଅଛନ୍ତି ଗୋଡାଇ ।୩୬।
ବୋଲନ୍ତି ସୂପକାରେ ଶୁଣ ହୋ କାଶୀଶ୍ୱର
ଠାକୁରଂକ ମୁଣୋହିକ ଦେଇ ପାରିବୁ କା ଯୋଗାଡ ।୩୭।
ଆହୋ କାଶୀଶ୍ୱର ସେ ସାଂଗ୍ରାମେ ଅନିପୁତି ଭୋଜନେ ଅନିପୁତି
ଶୃଙ୍ଗାରେ ଅନିପୁତି ସେ ଶୟନେ ଅନିପୁତି ।୩୮।
ବିଳମ୍ବ ନ ସହଇ ସ୍ତେହିକ୍ଷଣି ଦ୍ରବ୍ୟ ଆଣ
ତିନିଶ ଷାଠିସ୍ତେ ପଉଟି ବେଳକୁ ଅଣ୍ଟଇ ଜାଣ ।୩୯।
ମେଞ୍ଜନ ଯୋଗାଡ ତୁ ଯେତେକ ଦେଇପାରୁ
କାଶୀଶ୍ୱର ବୋଇଲା ତୁ ସଂଅପି କଂପା ପଚୁରୁ ।୪୦।
ଯେତେକ ଅଣ୍ଟଇ ମୁହିଂ ଦେବଇଂ ତୋତେ ଜାଣ
ବେଗକରି ପାକ ତୁମ୍ଭେ କରସି ପଚନ ।୪୧।

ଲକ୍ଷେକ ହାଣ୍ଡି ହଲା ଯେ ନିବଧି ଭିଆଣେ
ସ୍ନାହାନ ସାରି ରନ୍ଧଣାରେ ପଶିଲେ ବ୍ରାହ୍ମଣେ ।୪୨।
ହୋହରି ପ୍ରସନ୍ନେ ଯେ ହୋଇଲା ଅମୃତ ପାକ ରସ
ସ୍ନାହାନ ମାଜଣା ସାରିଲେ ପବନର ଶିଷ ।୪୩।
ଭୀମସେନ ଠାକୁରଂକର ନିଦ୍ରା ନାହିଂ ଭୋଜନେ ନାହିଂ ଇଚ୍ଛା
ରାଜାମାନନ୍ତ କେମନ୍ତ ସାଧିବ ତହିଂକ ମନବାଞ୍ଛା ।୪୪।
ଭୀମସେନ ଠାକୁରେ ସ୍ନାହାନ ତର୍ପଣ ସାରି
ମୁଣୋହିରେ ବିଜେକଲେ କାଳଦଣ୍ଡଧାରୀ ।୪୫।
ଅନେକ ମେଞ୍ଜନ ଯେ ପରଶନ୍ତି ଦ୍ୱିଜେ
ଭୋଜନ ସାରି ଆଂଚେବନ କଲେ ପବନ ଆତ୍ମଜେ ।୪୬।
ତାମ୍ବୋଳ ଭୁଞ୍ଜିଣ ଯେ ହୋଇଲେ ହିବ୍ୟବେଶ
ଦଣ୍ଡସାଜ ବୋଲକରି ହିଲେକ ଆଦେଶ ।୪୭।
ଘୁମୁରେ କାଶୀଶ୍ୱର ରାଜା ଓଲଗ ମେଲାଇ
ଦଣ୍ଡସାଜ ବାହାର ହୋଇଲା ପବନ ତନୟି ।୪୮।
ଜୟଶଙ୍ଖ ବୀରତୂର ବଜାଇ ବୀର ଭୀମସେନ
ଉତ୍ତର ଦେଶକଇଂ ତହୁଂ କରଇ ପୟାଣ ।୪୯।
ଆହେ। ରାଜନ ଧନୁମାସ ଶୁକଳପକ୍ଷ ଚଉଠୀ ହିବସେ
ଚଳନ୍ତି ପ୍ରତଗ୍ୟାଂପ୍ୟେ ବଳ ହୋଇଣ ହରଷେ ।୫୦।
ପଞ୍ଚଧାର ବୋଲକରି ସେକଇ ନହୀଟୋଟି
ପଞ୍ଚଶିଖ ପର୍ବତରୁ ସେ ଆସୁଅଛି ଫୁଟି ।୫୧।
ସେ ନହୀରେ ପଶି ଧନୁମାସେ ସ୍ନାହାନ କଲେ
ପଞ୍ଚ ମହାପାତକ ଯେ ନାଶ ଯାଏ୍ୟେ ଭଲେ ।୫୨।
ଗୋହତ୍ୟା ବ୍ରହ୍ମହତ୍ୟା ସ୍ତ୍ରୀହତ୍ୟା ସୁରାପାନ ବିଷୁଳୀପତ୍ତ
ସେ ନହୀରେ ସ୍ନାନ କଲେ ଯେ୍ୟେ ସକଳ ପାପ ବିନଶ୍ୟନ୍ତ ।୫୩।
ସେ ପଞ୍ଚବେଣୀ ସଙ୍ଗମେ ଅଛିଟି ସ୍ଫଟିକର ଲିଙ୍ଗ
ସେ ଲିଙ୍ଗ ବିଦାର କରି ଫୁଟଇ ନିଭଙ୍ଗ ।୫୪।
ସେ ଲିଙ୍ଗ ବିଜେ କରିଛନ୍ତି ଅଶିତାଳ ଗଭୀରରେ
ସ୍ନାହାନ କରି ଗୃହିଂଲେ ହିଶଇ ସଦାଶିବ ପଞ୍ଚୁଶିରେ ।୫୫।

କାଳଧ୍ୱଂସନ ତଗର ଆସି ଭୀମସେନକଇଂ କହିଲ
ସ୍ୱାମୀ ତୋହୋର ପ୍ରସନ୍ନେ ଆମ୍ଭର ସକଳ ପାପ ନାଶଗଲ ।୫୬।
ଯେବେ ମହାତୀର୍ଥ ଦେଖିବାକଇଂ କେହୁ ସାମରଥ
ଯେଥେ ବଜେ କରଥିଲ ସେ ଅନେକ ନାମେ ଦୈତ୍ୟ ।୫୭।
ଷାଠିଯେ ସହସ୍ର ବରଷ ପର୍ଯ୍ୟନ୍ତେ ହୋଇଲ ମହାଯୁଦ୍ଧ
ତ୍ରିସ୍ୱନେକନାଥ ତାହାକୁ ସାଂଗ୍ରାମେ କଲେ ବଧ ।୫୮।
ତହୁଂ ଯେ ମହାତୀର୍ଥ ହୋଇଲ ନିର୍ମଳ
ସଂସାର ପାତକ ଯେ ହରନ୍ତା ସର୍ବକାଳ ।୫୯।
ଭୀମସେନ ବଜେକଲେ ପଞ୍ଚଧାର ତୀର୍ଥେ
ଶଉଚବନ୍ତ ହୋଇ ଜଳେ ପଶିଲେ ଯେକଚତ୍ତେ ।୬୦।
ଦେଖିଲେ ସରୂପେ ପରମ ଯୋଗୀ ଯେ ଧୂର୍ଜଟି
ଅଶୀତାଳ ଗମ୍ଭୀରୁଂ ସେ ତେଜ ବିକାଶଇ ଫୁଟି ।୬୧।
କରପଦ୍ମ ଯୋଡ଼ଣ ସେ ବୀରବର୍ଯ୍ୟ ନାଡ
ସେ ଯୋଗେଶ୍ୱରକଇଂ ଭୀମସେନ କରଇ ଅନେକ ଯେ ସ୍ତୁତି ।୬୨।
ନମସ୍ତେ ନମସ୍ତେ ଦେବ ଅଭଯେ ବରୂପା
ନମସ୍ତେ ନମସ୍ତେ ଦେବ ଶରଣ ସତ୍ୟପା ।୬୩।
ନମସ୍ତେ ନମସ୍ତେ ଦେବ ଅପିତା ଅମାତା
ନମସ୍ତେ ନମସ୍ତେ ପ୍ରସନ୍ନ ବରଦାତା ।୬୪।
ନମସ୍ତେ ନମସ୍ତେ ଦେବ ପରଦୁଖେ ଦୁଖୀ
ନମସ୍ତେ ନମସ୍ତେ ଦେବ ପଞ୍ଚଦଶ ଯାହାର ଆଖି ।୬୫।
ନମସ୍ତେ ନମସ୍ତେ ଦେବ କାଳଗରଳ ଭୁ ଭକ୍ଷ
ନମସ୍ତେ ନମସ୍ତେ ଦେବ ବଦାରଳ ଦକ୍ଷ ।୬୬।
ନମସ୍ତେ ନମସ୍ତେ ଦେବ ତାଣ୍ଡବ ରସ ଖେଳ
ନମସ୍ତେ ନମସ୍ତେ ନାଥ ସିଂଘନାଦ ରଙ୍ଗ ।୬୭।
ନମସ୍ତେ ନମସ୍ତେ ନାଥ ଜୟ ତ୍ରିପୁରାରି
ନମସ୍ତେ ନମସ୍ତେ ଦେବ ଜୟ ଅନଙ୍ଗାରି ।୬୮।

---

୬୪।୧ ନମସ୍ତେ ନମସ୍ତେ ଦେବ ସର୍ବ ପିତାମାତା । (ଙ୍କ,ଠ)

ନମସ୍ତେ ନମସ୍ତେ ଦେବ ମର୍ତ୍ତ୍ୟସ୍ୱର୍ଗ ମଣ୍ଡି
ନମସ୍ତେ ନମସ୍ତେ ଦେବ ହତ୍ୟାଦୋଷ ଖଣ୍ଡି ।୬୯।
ନମସ୍ତେ ନମସ୍ତେ ଦେବ ପଞ୍ଚଶିଖ ମଉଳ
ନମସ୍ତେ ନମସ୍ତେ ଦେବ ଅନାଦ୍ୟ ସିଦ୍ଧଶୂଳୀ ।୭୦।
ନମସ୍ତେ ନମସ୍ତେ ଦେବ ଆସନ ବୃଷଭ
ନମସ୍ତେ ନମସ୍ତେ ଦେବ ଅନାଦ୍ୟ ସଦାଶିବ ।୭୧।
ନମସ୍ତେ ନମସ୍ତେ ଦେବ ଅଟୁ ତୁ ସର୍ବସିଦ୍ଧା
ନମସ୍ତେ ନମସ୍ତେ ଦେବ ଯମକୁ ନିରୋଧା ।୭୨।
ନମସ୍ତେ ନମସ୍ତେ ଦେବ ଅବକ୍ଷଣେ ପଞ୍ଚଧାତୁ
ନମସ୍ତେ ନମସ୍ତେ ଦେବ ସଂସାର ହିତେ ତୁ ।୭୩।
ନମସ୍ତେ ନମସ୍ତେ ଦେବ ନାଶକର ଦର୍ପଭଞ୍ଜା
ନମସ୍ତେ ନମସ୍ତେ ଦେବ ପ୍ରସନ୍ନେ ଲିଙ୍ଗରାଜା ।୭୪।
ନମସ୍ତେ ନମସ୍ତେ ଦେବ ନୀଳକଣ୍ଠ ନାମ
ଶୂଦ୍ରମୁନି ସାରଳା ଦାସ ଶତସହସ୍ର ଦଣ୍ଡ ପରଣାମ ।୭୫।
ଶୁଣ ହୋ ବଇବସୁତ ମନୁ ବଦପୂନ୍ତ ଅଗସ୍ତି
ପଶ୍ଚିମ ଦ୍ୱାର କଥା ଯେ ସଭାପର୍ବ ଗୀତ ।୭୬।
ତୃତୀୟଖଣ୍ଡ ମହାଭାରତ ଯେ ବିଷ୍ଣୁ ପୁରାଣ
ହେ ପଣ୍ଡିତ ଜନମାନେ ଯେହୁ ସାବଧାନେ ଶୁଣ ।୭୭।
ପଶ୍ଚିମଦ୍ୱାର ବାରତା ଯେ ପଞ୍ଚୁତୀର୍ଥର କଥା
ଶୁଣନ୍ତେ ମୋଚନ ହୋଇବ ଗୋହତ୍ୟା ବ୍ରହ୍ମହତ୍ୟା ।୭୮।
ଯୋଷଇ ଭାସଇ ଯେ ହୃଦେ ଭାବଇଂ ନିତ୍ୟେ
ମହାସମ୍ପଦ ପ୍ରାପତ ହୋଅଇ ବାଞ୍ଛା ସମାପତେ ।୭୯।
ଯେ ସେ ପଣ୍ଡିତ ହୋ ଭଗ୍ୟଂବନ୍ତ ପ୍ରାଣୀ
ବିଷ୍ଣୁକଳା ଯେକଣ ଯେହୁ ଉପୁଜନ୍ତି ଧରଣୀ ।୮୦।
ତାହାକଇଂ ପ୍ରାପତ ହୋଅଇ ଶୁଣିତ କରଇ ଯେକଲ୍ୟେ
ଯମଦଣ୍ଡ ଦୋଷରୁ ସେ ହୋଅଇ ନିର୍ଭୟେ ।୮୧।
ଧର୍ମ ଅର୍ଥ କାମ ମୋକ୍ଷ ଅଛି ଯେଉଣହିଂ ଶାସ୍ତ୍ରେ
ଗ୍ୟାନ ଥିଲ ପ୍ରାଣୀ ତାହା ମୁଞ୍ଚିବେ କେମନ୍ତେ ।୮୨।

ଜଳକଇଁ ନାବ ଯେ୍ସ ସ୍ଥଳକଇଁ ଅଟଇ ନିଧି
ଅପଣ୍ଡିତ ଲୋକଙ୍କୁ ଦେଖାଇଲ ସଦବୁଦ୍ଧି ।୮୩।
ସଞ୍ଚିତ ଦ୍ରବ୍ୟ ଯେ୍ସ ଜଗନ୍ନାଥ ନାମଗୋଟି
ଯେଉଁଣ ସ୍ଥାନେ ପଡ଼ଇ ସେ ହୁଅଇ ଅମୃତ ବୃଷ୍ଟି ।୮୪।
ଇହଲୋକକଇଁ ପରଲୋକକଇଁ ସଙ୍ଘାତ
ବୁଡନ୍ତେ ଅଗାଧ ଜଳୁଁ ଉଦ୍ଧରନ୍ତ ଜଗନ୍ନାଥ ।୮୫।
ରାଗ ମୋହ ଅପବାଦ ଅହଂକାର ହିଂସା
ସମସ୍ତ ତେଜ୍ୟା କର ଶ୍ରୀମହାଭାରଥକୁ ବଳାଅ ମନୀଷା ।୮୬।
କୁଟୁମ୍ବ ଦେଖି ମାୟାମୋହେ ଭୁଲି ନ ମର ରେ ବାବୁ
ଅନିତ୍ୟ ସଂସାର ଗୋଟି ଜଗନ୍ନାଥ ମୋହିଅଛୁ ସବୁ ।୮୭।
ମୁକତିକଇଁ କାରଣ ଯେ୍ସ ଯେ୍ସଥେ ବଳାଅଛି ମନୀଷା
ଅବଶ୍ୟ ପ୍ରାପତ ହୋଇବ ଯେ ଯାହାର ମନବାଞ୍ଛା ।୮୮।
ଶରୀରକୁ ଧାରଣ ଯେ୍ସ ବେଦିଶ୍ରବଣ
ଯେ୍ସକଲଯେ୍ସ କର ଶ୍ରୀମହାଭାରଥ କଥା ଶୁଣ ।୮୯।
ଅମିତ ସଂସାରକଇଁ ଯେ୍ସ ସେ କରଇ ଗତି
ଧନ ସନ୍ତାନ ବର୍ଦ୍ଧିତ ହୋଇବ ଯମଦଣ୍ଡେ ହୋଅଇ ନିଭ୍ରାନ୍ତ ।୯୦।
ସଂସାର ପଟଳରୁ ତରିବାକୁ ଯାହାର ଅଛି ଇଚ୍ଛା
ଇତିଶ୍ରୀ ମହାଭାରଥ ହୃଦଗତେ କର ବାଞ୍ଛା ।୯୧।

ଯେ୍ସ ଶରୀର ଲଭିଲ ଅଛି ଅନେକ ପୁଣ୍ୟମାନେ
ପଞ୍ଚଭୂତ ଆତ୍ମା ଯେ୍ସଥେକୁ ଅଟଇ ପରମବ୍ରହ୍ମ ଗ୍ୟାନେ ।୯୨।
ଅମୃତରେ ବିଷ ନ ସମ୍ଭାଇ କେଉଁଣସି କାଳେ
ସଂସାର ସାଗରୁ ନରେ ତରିବ ଧର୍ମବଳେ ।୯୩।
କାୟାଗୋଟି ଅଭୁଟ ହୋଇବ ଅମୃତ ଭକ୍ଷିଲେ
ନାଶକର କିସ କରଇ ନାରାୟଣ ରଖିଲେ ।୯୪।

ଶ୍ରୀଜଗନ୍ନାଥଙ୍କ ସୃଜିଲ ଯେ୍ସ ଶ୍ରୀମହାଭାରଥ
ଶ୍ରୀଭଣ୍ଡାର ବଢ଼ସିବାକୁ ମୁଂ ହୋଇଲ ସାମରଥ ।୯୫।
ଗ୍ୟାନଥିଲ ପ୍ରାଣୀ ନାଶ ନ ଯାଇ କଦାଶ୍ଚିତେ
ମୁହିଂ ଯେ୍ସହା ବଞ୍ଚାଇଲ ସଂସାର ଜନ ହିତେ ।୯୬।

ପାଇବ ବଇକୁଣ୍ଠ ନରେ ଶ୍ରୀ ମହାଭାରଥ ଶୁଣିଲେ
ମୁକତି ବାଟକଇଂ ବାଟ ସ୍ୱେ ଶୂଦ୍ରମୁନି ସାରଳା ଦାସ
ବୋଇଲେ ।୯୬—୨୬୬୨।

———

## ବିରାଟ ରାଜାଙ୍କ ନିକଟକୁ ଭୀମସେନଙ୍କର ପତ୍ର ପ୍ରେରଣ

ଆହୋ ବଇବସୁତ ମନୁ ଶୁଣ ବଦୟନ୍ତି ଅଗସ୍ତି
ପଞ୍ଚବେଣୀ ତୀର୍ଥକଇଂ ଭୀମସେନେ କଲେକ ଅନେକ ଭୁସ୍ତି ।୧।
ସ୍ନାହାନ କରନ୍ତେ ଦେଖିଲ ଶ୍ରୀ ଯୋଗେଶ୍ୱର ମୂର୍ତ୍ତି
ଶତ୍ରୁଙ୍କ ହତ୍ୟା ପାତକମାନ ଛାଡ଼ିଣ ଗଲେ ନିଭ୍ରାନ୍ତି ।୨।
ଆହୋ ଯେତେକ ହତ୍ୟା କରଥାନ୍ତି ଗ୍ୟାନେ ଅଗ୍ୟାନେ
ବେନି କନ୍ଧେ ଆବୋରି ଥାଆନ୍ତି ସେହି ଜୀବମାନେ ।୩।
ସେ ପଞ୍ଚୁବେଣୀ ତୀର୍ଥେ ଯେ କରଇ ସ୍ନାହାନ
ପ୍ରତକ୍ଷେଣ ଛାଡ଼ଇ ସେ ହତ୍ୟାଦୋଷମାନ ।୪।
ଆହୋ ଯେହୁ ହତ୍ୟାଦୋଷ କରଥାନ୍ତି ଅଗ୍ୟାନ ଦୋଷେ
ସେହି ସେ କାଳ ହୁଅଇ ଗୋଡାଇଥାଇ ପାଶେ ।୫।
ସେ ନାଶଗଲ ପ୍ରାଣୀଂକ ପ୍ରମାଦ କରୁଥାନ୍ତି
ଅପାର କାଳେ ପୁଣି ସେହି ଘେନିଯାନ୍ତି ।୬।
ଯେ ଯାହାକୁ ନାଶ ଅବା କରଇ ଅଦୋଷେ
କାଳପୁରୁଷ ହୋଇ ନାଶ କରଇ ଅବଶ୍ୟେ ।୭।
ଆହୋ ବାଳୀକି ବିନାଶ କଲେ ଶ୍ରୀରାମଚନ୍ଦ୍ରେ
ତେତେବଡ ପ୍ରଭୁଂକୁ ନାଶକଲ ବିରାତ ଦୁଷ୍ଟମନ୍ଦେ ।୮।
ହେ ପଣ୍ଡିତଜନ ଯେ ଅଟଇ ମହତ
ଆହୋ କଦାଚିତେହେଂ ନ କରିବ ଜୀବଘାତ ।୯।
ହତ୍ୟାଥିଲେ କାଳେ କାଳେ ଫଳଇ ଅବଶ୍ୟ
କାଳେହେଂ ପାର ନ ଯାଇଟି ହତ୍ୟା ପାତକ ମନ୍ଦଦୋଷ ।୧୦।
ସ୍ୱେହୋ ବିଚାରି ହୋ ପଣ୍ଡିତ ସୁଭଗ୍ୟଂ ଜନେ
ଅଗସ୍ତି କହିଲେ ମହାଭାରଥ ଶ୍ରୀ ବିଷ୍ଣୁ ପୁରାଣେ ।୧୧।

ଅନେକ ହସ୍ତୀ ଯେ କରିଣ ଥିଲେ ବୃକୋଦର
ସ୍ନାନ କରୁଂ ସେ ହସ୍ତୀମାନ ଶରୀରୁଂ ହୋଇଗଲ ବାହାର ।୧୨।
ଅଗାଧ ଜଳ ଭିତରେ ହୋଇଲେ ସର୍ବେ ଭାସି
ତତ୍କ୍ଷଣ ବୃକୋଦର ବଜ୍ରେକର ଆସି ।୧୩।
ଦଣ୍ଡ ଘେନି ଭୀମସେନ ବଜେ ପଞ୍ଚ ଧାରା ପରବତେ
ଦେଶାନ୍ତରେ ପଚାରିଲେ ଯେଉଁଣେ ରାଜ୍ୟ ଅଛି କେତେ ।୧୪।
ମୁନୀନ୍ଦ୍ର ଜଣାଇଲେ ଦେବ ଉତ୍ତର ପଶ୍ଚିମ କୋଣେ
ମଧଦେଶ ମତ୍ସ୍ୟଦେଶ ଦୁଇରାଜ୍ୟ ଅଛି ଯେଉଁଣେ ।୧୫।
ଦେବ କୀଚକ ଜିଣିଲା ଯେ ନିଗର୍ତ୍ତିର ଥାଠ
ମଧ ମତ୍ସ୍ୟଦେଶ ଭୋଗ କରଇ ବିରାଟ ।୧୬।
ସଂକୋଚନ ରାଜାର ଦୁହିତା ଅଟଇ ସୁଦେଷ୍ଣା
ତାହାକୁ ପ୍ରଦାନ ହୋଇଲା ବିରାଟ ମହାତମା ।୧୭।
କୀଚକର ମୂଳେ ସେ ସଂକୋଚନ ରାଜାର ଶତବଳା
ଶତସିଦ୍ଧି ପ୍ରାକ୍ରମ ସେ ବିରାଟ ରାଜାର ଶଳା ।୧୮।
ଉତ୍ତର ପଶ୍ଚିମ ଦୁଇ ଦ୍ୱାରର ମଧ୍ୟସ୍ଥାନେ
ବନସ୍ତେ ବନସ୍ତେ ଯାଇ ସେ ପନ୍ଦର ଶତ ଯୋଜନେ ।୧୯।
ଦେବ ଘରଗ୍ରାମ ରାଜ୍ୟ ନାହିଂ କିଛି ପାଶ
ତାହାର ବ୍ରତ ହେତୁ ଯେ ବଣିକଙ୍କୁଂ ଗୋରସ ।୨୦।
ଦୁହାଂଲ ଦୁଇପଦ୍ମ ବରଡଆ ବାରଲକ୍ଷ ଗାଈ
ସାତଲକ୍ଷ ଅଣ୍ଡିର ପଞ୍ଚବଂଶ ମଣ୍ଡିତ ବସ୍ତ୍ରାମାଈ ।୨୧।
ସ୍ୱାମୀ ମହାମତ୍ତ କୀଚକ ଅବଳ ମହାବଳୀ
ସାଂଗ୍ରାମେ ତାହାକୁ ସମାନ ନାହିଂ ମହୀଆଳ ।୨୨।
ମୁନୀନ୍ଦ୍ର ବଚନେ ସେ କୋଇଲ୍ତା ଦେବାର ଗୃହ
ବୋଇଲେ ମତ୍ସ୍ୟଦେଶକଇଂ କତାଅ ବେଗେ ବାଟ ।୨୩।
ଭୀମସେନ ସଙ୍ଗରେ ଅଛି ପାବ ଧୂର୍ମାକ୍ଷତ
ସେ ପାବ ଜଣାଇଲ ରାଜ୍ୟକୁ ପଥ ଦୂର ବହୁତ ।୨୪।
ଶ୍ରୀମୁଖ ଦେଇଣ ଯେ ବରଗିବା ଦୂତ
ଶ୍ରୀମୁଖ ଶୁଣି ବିରାଟ ଯାଉ ଇନ୍ଦ୍ର ଯେ ପ୍ରଶସ୍ତ ।୨୫।

*

ଯଦ୍ୟପି ଉପଦ୍ରବ ସେ ମଣିବ ମହ୍ରୀ ଆଧିପତ୍ତି
ପଶ୍ଚିମ ରାଜାନ୍ତ ଘେନି ଆସିବା ସେହ୍ନିକନ୍ତି ।୨୬।
ପାଣ୍ଡବ ବଚନେ ଭୀମସେନ ଚୋଷଚଉ
ବରାଷ୍ଟକଇଂ ଶ୍ରୀମୁଖ ବେଗେ କରପି ନିର୍ମିତି ।୨୭।
ଆଜ୍ଞାଂ ପ୍ରମାଣେ ଛନ୍ଦଂ ଶ୍ରୀମୁଖ ନିବାଣି
ଯେସନେକ ପ୍ରଚଣ୍ଡାଂମାନ ଶାହାସ୍ତ୍ର ମୁଖେ ଶୁଣି ।୨୮।
ତାଳପତ୍ର ଧରଣ ବସିଲେ ଲେଖନ କର
ମହାପ୍ରଚଣ୍ଡ ସେ ଆଗ୍ୟାଂଘ୍ୟେ ଅବଧାର ।୨୯।
ବୀରାଧି ବୀରବର ବୃକୋଦର ମଉନ୍ତମଣି
ଶ୍ରୀମୁଖ ଲେଖନ କରନ୍ତ ମନ୍ତ୍ରୀ ଚୂଡ଼ାମଣି ।୩୦।
ଶ୍ରୀ ଅନାଦ୍ଧ ଦେବଂକର ଶ୍ରୀଚରଣେ ଶରଣ
ଯେ ସେ ହୋଇ ସୋମବଂଶ କୁଳର ମଣ୍ଡନ ।୩୧।—୨୬୯୩ ।

---

## ଶ୍ରୀମୁଖ ଲେଖନ

ଶ୍ରୀ ଶ୍ରୀ ଦେବଗଣେ ଶରଣ,
ଶ୍ରୀ ଶ୍ରୀ ଅନାଦ୍ଧ ଦେବଙ୍କ ଶ୍ରୀଚରଣେ ଶରଣ ।

ସୋମପାଳ ବୁଧଗୁରୁ ଶମ୍ଭୂରଣ କୁଳ ମଣ୍ଡଣ
ଯଯାତି ଦେବ ରାଜ୍ୟ ରକ୍ଷା ପାଳନ ।୧।
ଜାହ୍ନବୀସୁତ ରକ୍ଷଣ
ସୋମବଂଶ କୁଳ ମଣ୍ଡଣ ।୨।
ଶାନ୍ତନୁ କୁଳ ଉଦ୍ଧାରଣ
ନୃପତି ବଂଶ ଧାରଣ ।୩।
ସର୍ବ ରାଜାମାନ ମର୍ଦ୍ଦନ
ଜାନୁଖଣ୍ଡ ହସିଦ୍ଧନ ।୪।
ବିଚିତ୍ରବୀର୍ଯ୍ୟ କୁଳ ନନ୍ଦନ
କୁମ୍ଭକ ଦାନବ ବିଦାରଣ ।୫।

ପାଣ୍ଡବାସୁର ଦର୍ପ ଚୂରଣ
କପିଳାସ ସ୍ୱର୍ଗ ଉଦ୍ଧାରଣ ।୭।
କାଶୀଭୁବନ ରକ୍ଷା ପାଳନ
ଦ୍ୱାରକାପୁର ବିମଣ୍ଡନ ।୭।
କୁରୁବଂଶ ଉଦ୍ଧାରଣ
ଶତଧନୁ ଶରଣ ପଞ୍ଜର, କଉଶିକ ରକ୍ଷାପାଳଣ ।୮।
ଅଇରିକୁଳ ଧୂମକେତୁ
ବିଷଲଡୁ କପଟେ ଭକ୍ଷଣ, ନାଗେଣୀ ଦର୍ପ ଗଞ୍ଜନ ।୯।
ବନ୍ଧ୍ୟାବଳୀ ପ୍ରାଣଗୁରୁ
ଶବରୀ ଭୁବନ ରକ୍ଷାପାଳନ, ଶିବରାଜା ମାନ ମର୍ଦ୍ଦନ ।୧୦।
ବେଲାବଳୀ ସ୍ୱର୍ଗ ଉଦ୍ଧାରଣ
ଜରାସନ୍ଧ ନିଶୋଧନ, ଛୟାଣୋଇ ସସ୍ର ରାଜାନ୍ତ ବନ୍ଦୀ ମୋକ୍ଷଣ ।୧୧।
ଇନ୍ଦ୍ରପ୍ରଶସ୍ତ, ଯମପ୍ରଶସ୍ତ ବାରୁଣାବନ୍ତ
ହସ୍ତିନାପୁର ଜୟନ୍ତାପୁର ପଞ୍ଚୁରାଜ୍ୟ ରକ୍ଷାପାଳନ ସମର୍ଥ ।୧୨।
କୁଣ୍ଡଳଋଷିର ମାନ ରକ୍ଷଣ
ଶତଶୃଙ୍ଗ ପର୍ବତ ଚୂରଣ ।୧୩।
ଦୋହୋରା ଦେବ ପ୍ରସନ୍ନ, ଶହାଙ୍ଗଦ ପର୍ବତ ମୁଥେ ଚୂରଣ
ଜାତୁରଗୃହ ଭସ୍ମାନ୍ତକ, କର୍ମୀଖିଦତ ବଦାରକ
ଜଳପଥ ମୁକ୍ତ କାରଣ ।୧୪।
ମଧୁବନେ କନ୍ନାସୀ ପ୍ରାଣ ହରଣ
ଶିବପୁର ଉଦ୍ଧାରଣ ଗୃଣ୍ଡାଳ ବଳ ନିଶୋଧନ ।୧୫।
ଏକଚକ୍ରା ନଗର ମଣ୍ଡଣ, ବକାସୁର ମାନ ମର୍ଦ୍ଦନ
ଶଉନକ ଦର୍ପ ଧ୍ୱଂସନ, ହିଡମ୍ବକ ନିସୂଦନ ।୧୬।
ହିଡମ୍ବିଙ୍କର ପ୍ରାଣଗୁରୁ, ଦ୍ରୁପଦପୁର ମଣ୍ଡନ
ଲକ୍ଷେ ରାଜାଗଣ ମଉଡମଣି, ପଞ୍ଚାଳୀ ମାନ ହରଣ ।୧୭।
କାଳ କୃତାନ୍ତକ, କାଳଦଣ୍ଡ ପାଣି ଯମଦର୍ପ ନିଶୋଧନ
ଭୀଷ୍ମ ଦ୍ରୋଣ କୃପ କର୍ଣ୍ଣ ଶଲ୍ୟ ଶକୁନି ଦର୍ପ ଧ୍ୱଂସନ ।୧୮।
ଶ୍ରୀ ଜଗନ୍ନାଥଂକ ପ୍ରାଣବଲ୍ଲଭ ଅଭୟ ସୋମବଂଶ ମାନ ପୂରଣ
କରୁଣ ଗନ୍ଧର୍ବ ଶରଣ ଉଦ୍ଧାରଣ ।୧୯।

ଧୃତରାଷ୍ଟ୍ର ଭରଣଲ ମାନଗୋବନ୍ଦ ଦର୍ପମର୍ଦ୍ଦନ
ଶରଣପଞ୍ଜର କଇଛା ଜଗଜ୍ଜେଠୀ ବାଞ୍ଛା ସମାପନ ।୨୦।
ଯୋଗୀ ଜନମାନ ବନସ୍ୟ ଶରଣ
ଦୁଷ୍ଟ କାଳ କୃତାନ୍ତକ ସଜ୍ଜନ ରକ୍ଷାପାଳନ ।୨୧।
ମହିମାଂ ମତ୍ତଗଜ ଦାରଣ କେଶରୀ କାମିନୀ ମନସିଜ
ମହାସ୍ଥଳୀ ରାଜାଗଣ ଭୂଜଙ୍ଗ ।୨୨।
ଶମ୍ଭୂଳ ରାଜାଗଣନ୍ତ ବରପ୍ରସାଦ
ମନ୍ତ୍ର ସାଧକ ନିର୍ମଳ ଶାସ୍ତ୍ରବେତ୍ତା ଯଜୁର୍ବେଦାନ୍ତ ।୨୩।
ବହୁ ବେଦମନ୍ତ୍ର ବୋଧନ
ବଳରାମ ଭରଣଲ ଯୋଗୀଜନ ବହୁ ମଣ୍ଡନ ।୨୪।
ତପୋବନ ରକ୍ଷାପାଳନ, ଋଷି ବିପ୍ର ଚରଣ ବନ୍ଦନ
ଗୁରୁ ପିତୃଗଣ ଭକ୍ତ ଭାଜନ, ରାକ୍ଷସ ବଳ ନିଶୋଧନ ।୨୫।
କେଶରୀ ସହସ୍ର ପଞ୍ଚାଣ, ଉତ୍ତଙ୍ଗବଳ
ଶ୍ରୀ ପୁରୁଷୋତ୍ତମ ଚରଣେ ଶରଣ, କରୁଣାକର ରାଜ ରାଜେଶ୍ୱର ।୨୬।
କାଳାନ୍ତକ କାଳେବର, ଯମଉପର ଦ୍ୱିତୀୟମ
କାଳଦଣ୍ଡ ଧାକ୍ଷାଗୁରୁ, କାଳ ବିକାଳ ଭୂଜ ବନ୍ଧନ ।୨୭।
ଚିନ୍ତାଗୁପ୍ତ ପାଦାସନ, ଲୌହଦଣ୍ଡ ରଥ ମଣ୍ଡନ
ଶାର୍ଦ୍ଦୂଳ କେତନ ବର୍ଣ୍ଣ ଚିହ୍ନ ।୨୮।
ମୁକୁଟବନ୍ଧା ଯୋଦ୍ଧୃଗଣ ଶିର ଶେଖର ମଣି
ପବନ ଦେବତାନ୍ତ ଶମ୍ଭୂଳ ସଦାରେକ ବୀରାଧି ବୀରବର
ମଉତ୍ତମଣି ।୨୯।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ
ଚତୁର୍ଦ୍ଦିଗ ରାଜାଂକ ଉପରେ ଭୂଜଙ୍ଗ ।୩୦।
ମସ୍ତକ ଚୂଡ଼ାମଣି ସର୍ବନୃପ ଦେବ
ଶ୍ରୀ ଶ୍ରୀ ଶ୍ରୀ ଭୀମ ଅର୍ଗ୍ଗଳ ପାଣ୍ଡବ ।୩୧।
ପଶ୍ଚିମ ଦଗପତି ଭୀମ
ଶ୍ରୀ ବୀର ବୃକୋଦର ଜେନାଂକର ଅଭୟ ପାଦପଦ୍ମେ
ବନସ୍ୟେ ନମଃ ।୩୨।

ମଘଦେଶ ମହାଦେଶ ରାଜ୍ୟଦ୍ୱୟ ମନ୍ତ୍ରିପାରିଦଣ୍ଡ
ବିରାଟଙ୍କୁ ଯେବେ ଅଟଇ ଶ୍ରୀମୁଖ ପ୍ରସାଦ ଖଣ୍ଡ ।୩୩।
ଆହୋ ବିରାଟ ତୋହୋର ଥାଟସେନ୍ୟ ଯେତେକ ଥିବ
ଦେଖା ଦରଶନ ଧନ ଘେନି ରାଜସୂୟ ଯଜ୍ଞାଂସଭାରେ ଇନ୍ଦ୍ରପ୍ରସ୍ଥ
ରାଜ୍ୟକୁ ଉଠି ଆସିବ ।୩୪।
ଶ୍ରୀ ଗଦାଧର ଚୂଡ଼ାମଣି
ଭୀମସେନ ଠାକୁରଙ୍କ ସନ୍ତକ ମଣି ।୩୫।
ଶ୍ରୀ ରାଷ୍ଟ୍ରପତି ମଣ୍ଡଳାଧିପତି
ମଙ୍ଗଳ ମୂର୍ଦ୍ଧନା, ଶ୍ରୀ ବୃକୋଦର ଠାକୁରଙ୍କ ପ୍ରଶସ୍ତ ସନମତି ।୩୬।
ଶୁଭଙ୍ଗ ଶୂଦ୍ରମୁନି ସାରଳା ଦାସ
ଭୁଜ୍ଞସାର ଚରଣେ ଶତ ସହସ୍ର ପରଣାମ ସଦାଇ ଭାବରେ
ଶ୍ରୀ ହିଙ୍ଗୁଳା ଚରଣେ କରଇ ସେବା ଅଭ୍ୟାସା । ଇତି ।୩୭।
ଶ୍ରୀମୁଖ ଲେଖନ କଲା ପାଦ ଧୂମକ୍ଷେତ୍ର
କାଳୀଞ୍ଜନ ପଡ଼ିହାରୀ କ ଲଧ୍ୱଂସନ ବେନି ଦୂତ ।୩୮।
ଦେନି ବିମାନ ଆରୋହି ବେନି ସେନାପତି
ଶତେକ ଗୁରସଙ୍ଗେ ଘେନିଣ ସେ ଚଳିଲେ ତତକ୍ଷଣାନ୍ତ ।୩୯।
ଶ୍ରୀମୁଦ ସନ୍ତକ ଗଦାମୁଦ ଭୀମସେନ ଅଧିକାରୀ
ଶ୍ରୀବୃକୋଦର ଜେନାଙ୍କ ବଚନ ସେ କରି ।୪୦।
କାଳୀଞ୍ଜନ ପଡ଼ିହାରୀ କାଳଧ୍ୱଂସନ ଡଗର ବେନି
ବାୟୁବ୍ୟକୋଣେ ଗଲେ ଭୀମସେନର ସନ୍ତକକୁ ଘେନି ।୪୧।
ଉଡ଼ନ୍ତ ବିମାନେ ଯେ ପବନୁ ଆପାତେ
ହୃଦେ ଶ୍ରୀମୁଖ ଲଗାଇ ଚଳିଲେ ବେନିଦୂତେ । ୪୨।—୨୭୩୫।

---

## ମଦନସେନ ରାଜାଙ୍କୁ ନିମନ୍ତ୍ରଣ, କନ୍ଦର୍ପସେନ ସହିତ ଯୁଦ୍ଧ ଓ ତାହାର ମୃତ୍ୟୁ

ଦୂତ ପଠିଆଇଣ ଯେତେଣେ ଚଳିଲେ ପାଣ୍ଡବେ
ସଉରାଷ୍ଟ୍ର ମଣ୍ଡଳେ ଧ୍ୱଜପ୍ୟେ ସୈନ୍ୟ ଘେନି ।୧।
ପଶ୍ଚିମ ସଉରାଷ୍ଟ୍ର ବନ ଗହନ ଯେ ଦେଶ
ତହିଁ ଯାଇଁ ଭୀମସେନ ହୋଇଲା ପ୍ରବେଶ ।୨।
ବାଜଇ ମହୁରି ଯେ ଶରଗୁଣା ଅଧାଟି
କୁତୂହଳେ ରାଜ୍ୟେ ପଶନ୍ତେ ଅପସରା ସମ୍ମୁଖରେ ଖଟି ।୩।
ମେନକା ମଦନିକା କାମସେଣା ମୋହିନୀ
ଆକାଶୁଂ ଅପସରୀ ପଠାଇଲେ ସସ୍ତ୍ରଯୋନି ।୪।
ସଉରାଷ୍ଟ୍ର ମଣ୍ଡଳରେ ପଶିବାର ବେଳେ
ଖଟନ୍ତି ଉରହରଷେ ସୁନ୍ଦରୀ ତାଣ୍ଡବ କୁତୂହଳେ ।୫।
ପଞ୍ଚମସ୍ୱର ବୀଣା ବାଜେ ମଧୁର ଶବଦେ
ନଗ୍ରେ ପଶନ୍ତେ ଶୁଭିଲା ହୁଳହୁଳୀ ନାଦେ ।୬।
ରାଜାର ସମ୍ମୁଖରେ ଯାଇଂ ଜଣାଇଲେ ଦେଶାଉର
ଅବଧାନ ହେବା ଦେବ ମଦନ ମହାଦେବ ଠାକୁର ।୭।
ସ୍ୱାମୀ ଜରାସନ୍ଧ ନିବାରଣ ରାଜାନ୍ତ ଉଦ୍ଧାରଣ
ଶ୍ରୀ ଯୁଧିଷ୍ଠିର ଦେବଂକର ଅନୁଜ ପଶ୍ଚିମ ଦିଗକଇଂ ବରଣ ।୮।
ରାଜାନ୍ତ ନିମନ୍ତ୍ରିବେ ରାଜସୂୟ ଯାଗ ଅର୍ଥେ
ଦୁଷ୍ଟ ନିଶୋଧନ କାଳଦଣ୍ଡ ଧରି ହାଥେ ।୯।
ରାଜ୍ୟେ ପ୍ରବେଶ ଆସି ହୋଇଲେକି ମାରୁତି
କେଉଂଣ ଉପାୟ କରିବା ମଦନ ମହାଦେବ ଚକ୍ରବର୍ତ୍ତି ।୧୦।
ଚରଗଣ ବଚନେ ଯେ ସାନନ୍ଦ ମଦନ ମହାଦେବ
ବୋଇଲା ମୋହୋର ରାଜ୍ୟରେ କରଅ ରେ ଉତ୍ସବ ।୧୧।
ରାଜାର ବଚନେ ଯେ ଧାଇଂଲେ ଚରଗଣେ
ରାଜ୍ୟେ ଉଚ୍ଛବ ସେ କରାଇଲେ ତତକ୍ଷଣେ ।୧୨।

ସୁବର୍ଣ୍ଣର କଳଶ ପାଟଙ୍ଗ ନେତର ବର୍ଣ୍ଣ ଚନ୍ଦ୍ର
ଖଞ୍ଜିତ ମଣିମାଣିକ୍ୟ ଯେ ମୁକୁତା ଅଷ୍ଟରତ୍ନ ।୧୩।
ସ୍ୱେ ରାଜ୍ୟରେ ପ୍ରବେଶ ଆସି ହୋଇଲେ ମାରୁତି
ଆସ୍ଥାନ ତେଜ ଅଇଲ ସେ ମଦନ ଚନ୍ଦ୍ରଗୁପ୍ତି ।୧୪।
ଦ୍ରୁପଦର ଶ୍ୱଶୁର ସେ ଦ୍ରୋପଦୀର ଅଟଇ ଅଜା
ପାତ୍ର ଅମାତ୍ୟ ଘେନି ପାଦଗତି ଆସଇ ମହାରାଜା ।୧୫।
ବେଢାକରେ ରାଜା ବେନି ଗୁମରନ୍ତ ଘେନି
ଭୀମସେନ ଛାମୁରେ ଯାଇଁ କଲେକ ଦଇନି ।୧୬।
ଜୟ ତୁ ପାବେନି ହୋ ପବନର ବର୍ଷି
ଜରାସନ୍ଧ ନିବାରଣ ତୁ କାଳ ଗରଳ ଭକ୍ଷି ।୧୭।
ମମ ପାତକ ଧ୍ୱଂସିଲା ନାଥ ତୋହୋର ଦରଶନେ
ପାଇଲି ପରମଗତି ତବ ପରସନ୍ନେ ।୧୮।
ଆହୋ ମଦର୍ନ ମହାଦେବ ଅନେକ ସ୍ତୁତି ବୋଲି
ସନ୍ନିଧେ ନିଉଛାଳି କରି ଶୁଭିଲା ଗଡଧାଳି ।୧୯।
ଆଜ୍ଞାଂ ହୋଇଲା ଉଠ ଉଠ ହୋ ମଦନ ମହାଦେବ
କୁଶଳେ ତୁ ବ୍ରତଅଛୁ କ୍ଷେମ ଟିକ ସର୍ବ ।୨୦।
କୁଶଳରେ ବ୍ରତନ୍ତିଟି ନା ତୋହୋର ରାଜ୍ୟ ନର
ସମସ୍ତ ସୁବଧାନେ ଅଛୁ, ନାହିଂନା ଅନ୍ତର ।୨୧।
ମଦନ ମହାଦେବ ବୋଇଲା ପରମେଷ୍ଟି
ତବ ପରସନ୍ନେ ସ୍ୱାମୀ ମୋତେ ନାହିଂନା ଅରିଷ୍ଟି ।୨୨।
ପ୍ରଶୁରାମ ଆଜ୍ଞାଂ ଯେହ୍ନେ ମେଷ୍ଣାନ୍ତା ପୁଣ ନାହିଂ
ସ୍ୱେ ପଶ୍ଚିମ ରାଜ୍ୟ ଚେମନ୍ତ ହୋଇଛୁ ଗୋସାଇଁ ।୨୩।
ନରେନ୍ଦ୍ରଣ ବଜପ୍ୱେ ଯାଇଁ କଲେକ ପାବେନି
ଶତେ ସହସ୍ର ଦଣ୍ଡ ପ୍ରଣପତ୍ୟ କଲେକ ମଦନ ମହାଦେବର ସଇନ ।୨୪।
ଅନେକ ବନୋସ୍ପୀ ଯେ ଖଟନ୍ତ ସର୍ବଲୋକେ
ଦଶନହ ମୁଖେ ଭରି ଶରଣ ପୁକାରନ୍ତ ଥୋକେ ।୨୫।
ଅଳକାର ନାଥ ଅବା ଆସି ବଜପ୍ୱେ କଲେ ଭୂମି
ସେହି ସରୂପେ ଦଶଇ ପାଣ୍ଡବ କୁଳ ସ୍ୱାମୀ ।୨୬।

ସମସ୍ତ କୁଶଳ ପୁଚ୍ଛଇ ମଦନ ମହାଦେବ
ଭୀମସେନ ବୋଇଲେ ତାତ କୁଶଳ ମୋର ସର୍ବ ।୨୭।
ଅନେକ ଶୁଭ ଯେ ହୋଇଲା ମୋହୋର ରାଜ୍ୟେ
ପ୍ରତକ୍ଷେ ମୋହୋର ପୁରେ ବିଜୟେ ଦେବରାଜେ ।୨୮।
ଦୁଷ୍ଟ ନିରଞ୍ଜନ ମୁଂ ଦେଖିଲି ବେନିଡୋଳେ
ଅନାଦି ମହେଶ୍ୱର ବିଜୟେ କଲେ ମୋହୋର ରାଷ୍ଟ୍ରମଣ୍ଡଳେ ।୨୯।
ଆଜ୍ୟୁଂ ସେ ସୁଫଳ ହୋଇଲା ମୋହୋର ଜୀବନ
ଆଜ ସେ ସୁଫଳ ହୋଇଲା ମୋର ରାଜ୍ୟ ସୁବିଧାନ ।୩୦।
ସୂପକାରେ ହକାରି ଆଗ୍ୟାଂ ଦିଲାକ ମହାରାୟେ
ମତଫୁଲ ରନ୍ଧଣା ଯୋଗାଡ଼ କରାୟେ ।୩୧।
ଅନେକ ଯୋଗାଡ଼ମାନ ରାଜା କଲାକ ସମ୍ଭରେ
ଆହ୍ୱାନିକ ସାରିଣ ଭୀମସେନ ବିଜୟେ ମୁଣୋହିରେ ।୩୨।
ଭୋଜନେ ଅନିପୁତ୍ତ ଯାହାର ପୂରଇ ମନୀଷା
ତ୍ରଇଲୋକ୍ୟ ମଧରେ କେ ପୂରାଇବ ତାହାର ଆଶା ।୩୩।
ଭୁଞ୍ଜିଣ ଆଚୈବନ କଲାକ ବୀରମଣି
ତାମ୍ବୋଳ ଯୋଗାଡ଼ନ୍ତିଂ ଦିଲାକ ନୃପମଣି ।୩୪।
ଶତେ ପୁତ୍ରନ୍ତ ଘେନିଣ ରାଜା ମଦନ ମହାଦେବ
ଆଲଟ ଚ୍ୱମର ଘେନି ଖଟନ୍ତି ସନ୍ନିଧେ ସଦ୍ଭାବ ।୩୫।
ସ୍ତ୍ରୀହସ୍ତେ ଶାଢୀ ଦିଲେ କାଳେବର ହାଥ
ନ ଜାଣୁକ ରାଜନ ହୋ ରାଜସୂ ଯାଗର ବାରତ ।୩୬।
ସ୍ୱେବେ ଯେତେକ ଅଛନ୍ତି ତୋର ଥାଠ ଯେ ସଇନି
ସ୍ୱେହ୍ୱକ୍ଷଣି ଅନକୂଳ କରଯାଅ ଦେଖା ଦରଶନି ଧନ ଘେନି ।୩୭।

---

୩୨।୧ "ଅନେକ ଯୋଗାଡ଼ମାନ ରାଜା କଲାକ ସମ୍ଭରେ" ପରେ 'କ'
ପୋଥିରେ ଅଧିକା ପାଠ—
ଅଦ୍ଭୁତେକ ସୂପକାରେ ରାନ୍ଧନ୍ତି ରୋଷୁଅ ଘରେ ।
ପହରେକ ଅନ୍ତରେ ପାକ ହୋଇଲାକ ପଚନ
ଆହ୍ୱାନିକ ସାରି ମୁଣୋହିରେ ବସେ ପବନ ନନ୍ଦନ ।

ଆଗ୍ୟାଂ ପରମାଣେ ସେ ମଦନ ମହାଦେବ
ପଞ୍ଚାଶ ସହସ୍ର ରଥେ ରାଜା ପୂରେଇଲା ପାଣିଦ୍ରବ୍ୟ ।୩୮।
ସୈନ୍ଧବ ତୁରଙ୍ଗମ ପବନ୍ତୁଂ ବେଗେ ତେଜ
ରଥ ଗଜ ସୈନ୍ୟ ରାଜା ସମ୍ଭବ କରି ସାଜ ।୩୯।
ଭୀମସେନ ଦେଖନ୍ତେ ବାହାର ହେଲେ ରାଜାର ସୈନ୍ୟବଳ
ଅଇଶାନ୍ୟ ମୂରତି ହୋଇ ରାଜା କଲାକ ଅନୁକୂଳ ।୪୦।
ସଉରାଷ୍ଟ୍ର ରାଜ୍ୟ ତେଜି ଚଳିଯାଇ ଭୀମସେନ
କଉଶିକ ଦେଶେ ଯାଇଂ ପ୍ରବେଶ ପବନର ନାନ ।୪୧।
ବିଜୟା ନଦୀର ତୀରେ କଉଶିକ ନଗ୍ର ବସଇ
କନ୍ଦର୍ପସେନ ନୃପତି ମାଧବସେନର ଶିଷ୍ୟଇଂ ।୪୨।
ଦଶମର୍ବ୍ବୁଦ ରଥ ଅଶି ମର୍ବ୍ବୁଦ ହାଥୀ
ବିଶାଶତେ ଖର୍ବ ଅଶ୍ୱ ଚଉଦ କ୍ଷଉଣୀ ପାଦାନ୍ତ ।୪୩।
ବେନିଶତ ପାରଦଣ୍ଡ ଖଟଇ ସେ ନୃପତି
ବେନିଶତ ଯୋଜନରେ ସେ ଅଟଇ ଆଧିପତି ।୪୪।
ଭୀମସେନ ବିଜେକଲେ ସେ ରାଜାର ରାଜ୍ୟେ
ଉଦଣ୍ଡ ବୀରତୂର ଟମକ ନିଶାଣ ଯେ ବାଜେ ।୪୫।
ଧାମନ୍ତ ଯୋଦ୍ଧାଯେ ଯେ ମହା ମହା ମଲ୍ଲ
ଉଲୁକାପାତ ପ୍ରାୟେ ବସୁନ୍ଧରା ଦଲ ଦଲ ।୪୬।
ବହଉନ୍ତ ରାଉତେ ଯେ ସୈନ୍ଧବ ତୁରଙ୍ଗମ ପରେ ଚଢି
ମହାଗହଳ ଶବଦ ଶୁଭଇ ସିଂଘରଡ ।୪୭।
କଉଶିକ ପର୍ବତେ ପାରଦଣ୍ଡ ରାଜାମାନେ ଥିଲେ
କାବେରୀ ନଦୀତୀରେ ଆସି ଭୀମସେନକୁ ଓଗାଳିଲେ ।୪୮।
ଆରେ ରହ ରହ ବୋଲଣ ସେ ଓଗାଳିଲେ ଥାଟ
ମହାନାଗ ଆରୋହଣ ନିରୋଧ କଲେ ବାଟ ।୪୯।
ଆହୋ ନାମ ସଂକେତ ନାହିଂ ତୁ ଅଟୁ କେଉଂଣ ଦେଶୀ
କେଉଂଣ କାରଣେ ତୁହି ଆମ୍ଭର ରାଜ୍ୟେ ପଶି ।୫୦।
ନ ଜାଣୁ ନୃପତି   ର୍ପସେନ ବୋଲ
ଯମର ଅର୍ଗଳ ଭାଙ୍ଗି କେ ପଶି ପାରଇ ପେଲ ।୫୧।



ପ୍ରତଗ୍ୟାଂ ସ୍ୱାମରଥ ଯେ ପଶ୍ଚିମ ପ୍ରଦେଶେ
ଯୁଦ୍ଧେଣ ବିଧ୍ୱଂସିଲା ଯେହୁ କନାଉଜ ଦେଶେ ।୫୨।
ଭଙ୍ଗିଣ ଚୂରକଲା ଯେ ଯେ ଅନୁପାମ ଗିର
ସାଂଗ୍ରାମରେ ଅଙ୍ଗାରପର୍ଣ୍ଣଙ୍କ ଯାହାକଇଂ ଗଲା ହାର ।୫୩।
ଆହୋ ଜରାସନ୍ଧ ରାଜା ଯାହାକଇଂ ନୁଆରିଲା ସାଧି
ତାହାର ସ୍ତୁମୁରେ ତୁରେ କି ସମାନ ଯୋଧୀ ।୫୪।
ଲୋହାର ଧନୁ ଧରଇ ଗୁଳଣି ସହସ୍ର ବଳ
ନାଗଜ ବନ୍ଧନ୍ତେ ଯାହାର ଫୁଟଇ ଅଚଳ ।୫୫।
କାମିନୀ କନ୍ଦର୍ପ ବୋଲି ତୋହୋର ଶୁଣିଲା କି ନାହିଁ
ଅପକ୍ଷରୀ ତଳନ୍ତୁ ଯାହାର ମୁଖ ଚାହିଁ ।୫୬।
ଯେବେ ତୁ ରାଜା ଆସିଅଛୁ ରାଜ୍ୟକୁ ବନ୍ଧୁ ପଣେ
ଯେତେ ରହିଥାଅ ଆମ୍ଭେ ଜଣାଇ ଆସୁଂ ସେହିକ୍ଷଣେ ।୫୭।
ଶତ୍ରୁତା ପଣେ ଯେବେ ପଶୁ ଆମ୍ଭର ରାଜ୍ୟ
ନିଶ୍ଚେ ନାଶକର ପାଞ୍ଚି ପୋଚ୍ଛିଲା ତୋର ଆଜ ।୫୮।
ଅନେକ ପ୍ରତଗ୍ୟାଂ କରନ୍ତି ପୁଣ ପୁଣ
ପରର ପ୍ରତଗ୍ୟାଂ କି ସହଇ ଭୀମସେନ ରାଣ ।୫୯।
ସନ୍ୟ ବଳମାନେ ତାର ଆସୁଛନ୍ତି ମାଡ଼
ଧାଇଂଲା ମାରୁତି ଯେ ମନୁଂ ଉପ୍ରୋଧ ଭାବ ଗୁଡ଼ ।୬୦।
ମୁଦ୍ଗରେକ ତୁଳଇ ଭୀମସେନ ପଶିଲା ସମରେ
ଦରାଣ୍ଡି ପିଟିଲା ନେଇ ବଜ୍ର ଯେ ମୁଦ୍ଗରେ ।୬୧।
ଯେକୁ ଯେକ ପ୍ରହାରକେ ଯେ ପଡ଼ଲେ ଗଜ ଯୋଧୀ
ଧାଇଂଣ ସଇନ ଯେ ଆକ୍ଷୌଣି ଶର ବନ୍ଧ ।୬୨।
ଯୋଦ୍ଧାଯେ ପଡ଼ଲେ ମତ୍ତଗଜ ପରେ ଢୁମାଇଂ
ଗଡ଼ଲେ ସନ୍ୟମାନେ ଭୂମିରେଣ ନିମଜ୍ଜାଇ ।୬୩।
ନିଶରେ ହାଥ ଭରି ଯେ ପ୍ରତଗ୍ୟାଂ ଗଳଗାଜ
ପାତ୍ରଦଣ୍ଡମାନେ ପଳାଇଲେ ସର୍ବେ ଭାଙ୍ଗି ।୬୪।
ଦଣ୍ଡଭଗ୍ନ ଦେଖିଣ ତାର ଶରଦସେନ ମନ୍ତ୍ରୀ
ତନିଲକ୍ଷ ମୁକୁଟ ବନ୍ଧା ଯୋଦ୍ଧା ଘେନି ଉଠିଲା ତତକ୍ଷଣାନ୍ତ ।୬୫।

ଆକାଶ ଘୋଟିଲା ତାର ବାଣ ଜ୍ୱାଳାବଳୀ
ଆଦିତ୍ୟ ଗୋପ୍ୟାନ ହୋଇଲେ ସଇନ ଚରଣ ଧୂଳି ।୬୬।
ରଗ ସାଞ୍ଜୁ ଟୋପର ତାଟଡଣୀ ବଜ୍ର ସେନ୍ଧା
ସାସମଲ୍ଲ ପରଡ଼ା ନାସ୍ୱେକ ବଡଜେନା ।୬୭।
ସୁବର୍ଣ୍ଣର ବନ୍ଧା କୁନ୍ତ ଅଷ୍ଟରନ୍ଧ୍ରେ ଖଞ୍ଜି
ଜଳଧର ମେଘେ ଯେହ୍ନେ ସୁରଗିରି ସାଜ ।୬୮।
ଅନୁବ୍ରତେ ତାର ଥାଠ ସାଜଣ ରଥେ ଧାଏଂ
ସାଂଗ୍ରାମେ ଜଗକ୍ଷିତା ସେ କନ୍ଦର୍ପସେନ ରଥେ ।୬୯।
ଅନୁବ୍ରତେ ଦ୍ୱନ୍ଦୀ ରଜା କଣଇ ପରବଷ୍ଟ
ଖରି ବରଷା ଶୀତେ ତାର ଅନୁବ୍ରତେ ସାଜଥାଇ ଥାଠ ।୭୦।
ଅନେକ ଯୁଦ୍ଧେ ତେଣେ ପଡଲେନ୍ତି ସନ୍ୟ
ତରେଣ ମନ୍ତ୍ରୀସ୍ୱେ ନ କହଇ ସ୍ୱେସନେକ ବଧାନ ।୭୧।
ବଡ଼ାଇ ଗରୁହଂସୀ ସେ କନ୍ଦର୍ପସେନ ବୀର
ଶୂରବନ୍ତ ପଣ୍ଡିତ ସେ ସାଂଗ୍ରାମେ ଅଟଇ ଧୀର ।୭୨।
ସାଂଗ୍ରାମେଣ ସଇନ ତାର ଯେ କେହ୍ୱତ ନ ଘୁଞ୍ଚି
ଭୀମସେନ ବଧାତରେ ଅନେକ ସଇନ ପଡୁଅଛି ।୭୩।
ଯେବଣ ଭୀମସେନ ସାଂଗ୍ରାମେ ନିର୍ଭୟ
ଶରଣ ନ ରଖଇ ସେ ଦୃଢ଼ରେ ନିର୍ଦ୍ଦୟ ।୭୪।
ପଳାବନ୍ତ ସଇନ ଯେହ୍ନେ ବାସଭଗ୍ନ ପକ୍ଷୀ
ବୃକୋଦର ମୂରତ ତାହାର କେ ପାରବ ଦେଖି ।୭୫।
ଶତଶିଂଗ ପ୍ରସନ୍ନେଣ ବଜ୍ର ଯାହାର ଅଙ୍ଗ
ସମରେ ଅନିବାରଣ ସେ ରଣେ ନୋହୋଇ ଭଙ୍ଗ ।୭୬।
ଯେସନେକେ ମତ୍ତଗଜ ଧାମଇଂ ମୁକୁଳା
ଥାଠକୁ ମନ୍ଥନ କରଇ ତେହ୍ନେ ପବନର ବଳା ।୭୭।
ରମ୍ଭାବନ ଭଗ୍ନ ଯେହ୍ନେ ବାତ ପରଚଣ୍ଡା
ମନ୍ଥିଲା ସଇନ ବଳ ତେହ୍ନେ ପାଣ୍ଡବ କୁଳଷଣ୍ଢା ।୭୮।

---

୬୮।୨ ସୁରଗିର କ୍ଷୀର ଯେନ୍‌ହେ ଜଳଧରେ ପଡ଼ । (ନ,ଗ୍ର)

ରଥଗଜ ଅଶ୍ୱ ସଇନ୍ୟ ଯେ ପଡ଼ିଲେ କୋଟି କୋଟି
ରକତ ମାଂସେ କର୍ଦ୍ଦମ ହୋଇଲାକ ସୃଷ୍ଟି ।୭୯।
ସାତଲକ୍ଷ ରଥ ବତିଶ ଲକ୍ଷ ହାତୀ
ପାଞ୍ଚକୋଟି ଅଶ୍ୱ ଅଗଣିତା ଯେ ପାଦାନ୍ତି ।୮୦।

ପ୍ରତେକ ସନ୍ୟ ଗୋଡ଼ାଇ ପିଟିଲା ବୀର ଭୀମ
ତଥାପି ତାହାର କୋପ ନୋହିଲାକ ଶମ ।୮୧।

ଯୋଦ୍ଧାପ୍ରେ ପଳାଇଲେ ସମର ଉପେକ୍ଷି
ବିଶ୍ରାମ ନ କରି ଗଲେ ରାଜାର ଛାମୁଂକ ।୮୨।

ଅବଧାନ କରିବା ଦେବ ଶୁଣିମା କନ୍ଦର୍ପସେନ ଚଣ୍ଡବୃତ୍ତି
ସମଦଣ୍ଡ ସନ୍ୟ ତୋହୋର ହୋଇଲେ ବିନଶ୍ୟନ୍ତି ।୮୩।

କାହୁଂ ରଥୀପ୍ରେକ ଦେବ ଅଇଲା ଅଦଭୂତେ
ବହୁତ ସଇନ୍ୟ ତୋର ମାଇଲା ଅପ୍ରମିତେ ।୮୪।

ଶୁଣିଣ କୋପାନଳ ନୃପତି କନ୍ଦର୍ପଦେବ
ରେ ରେ କାର କରି ରାଜା ଉଠିଲା ମତ୍ତଗର୍ବ ।୮୫।

କୁଠାର ଆୟୁଧ ଘେନି ସେ କନ୍ଦର୍ପସେନ ରାୟେ
ଅଶ୍ୱେକ ଚଢ଼ିଲା ରାଜା ଉଚ୍ଚୈଃଶ୍ରବା ପ୍ରାୟେ ।୮୬।
ବାମ ଡାହାଣରେ ତାର ଲାଗିଛନ୍ତି ପଞ୍ଚମଭୂତି ରଥୀ
ବିଦ୍ୟାଧରବୃନ୍ଦ ପ୍ରାୟେ ସମସ୍ତେ ଦିଶନ୍ତି ।୮୭।

ବିରାଜନ୍ତି ମୁକୁଟ ଯେ ଝଲକନ୍ତି ଅସିବରେ
ଡାକନ୍ତି ହାକନ୍ତି ସେ ଶବଦ ରେ ରେ କାରେ ।୮୮।

ଧୂରୁଂ ଦେଖିଲା ସେ ପ୍ରତାପୀ ବୃକୋଦର
ରଥ ଛାଡ଼ି ଡେଇଁ ପଡ଼ିଲା ଭୂମିର ।୮୯।

କାଳଚଣ୍ଡ ପ୍ରାୟେକ ବୁଲାଇ ବେନି ଆଖି
ଶାମଳ ଦେଖି ଯେହ୍ନେ ଧାମଇ ବକପକ୍ଷୀ ।୯୦।

ସମସ୍ୟା ନାହିଂ ସେ ଯେ ଗଦା ବୁଲାଇ ପିଟି
ପଡ଼ନ୍ତେ ଗଣ୍ଡସ୍ଥଳେ ଗଜେ ଯାଆନ୍ତି ଧୂଳି ଉଠି ।୯୧।

ବାଲମିକ ବୋଲି କନ୍ଦର୍ପର ସେନାପତି
ଆଗିଆଣି ହୋଇଥିଲା ସଙ୍ଗେ ପଞ୍ଚ ଅକ୍ଷୁବ୍ଧ ହାଥୀ ।୯୨।
ପ୍ରଥମେ ଭେଟିଲା ତାହାକଇଂ ବୃକୋଦର ଜେନା
ଗଦାବର ଘଦ୍ଧାତେ ସେ ହୋଇଗଲା ଚୂନା ।୯୩।
ଅସ୍ଥି ମାଂସ କଚୁମ୍ବଂ ନ ରହିଲା ପ୍ରହାରେ
ଦେଖିଣ ଧାଇଂଲା ସେ କନ୍ଦର୍ପସେନ ନୃପବରେ ।୯୪।
ରାଜାର ଧାମନ୍ତେ ସେ ଉଠିଲେ ସର୍ବଯୋଧୀ
ଆକର୍ଣ୍ଣ ପୂରେଇ ଅନିବାରଣ ଶରବନ୍ଧି ।୯୫।
ସାଂଗ୍ରାମ ଦେଖି ଯାହାର ଦୁଗୁଣ ଉଷତ
ଦୁସହ ସାଂଗ୍ରାମେ ଯେତୁ ଅଟଇ ନିଶ୍ଚିତ ।୯୬।
ସିଂଘରଡ଼ ଦେଇ ଭୀମସେନ କୋପେ ଉଠି
କନ୍ଦର୍ପସେନ ସଇନ୍ୟକ ଗଦାଘାତେ ପିଟି ।୯୭।
ଯେସନେକେ ଆହୋଷି ଧାମଇଂ ମତ୍ତବ୍ୟାଘ୍ର
ଦେଖିଣ ସଇନ୍ୟେ ହୋଇଲେ ବେନିଭାଗ ।୯୮।
ପ୍ରହାର କରଇ ବୀର ବାମ ଦକ୍ଷିଣେ ଖେଦି
ପଡ଼ିଲେ ଅନେକ ବଳ ବହଇ ରକତ ନଦୀ ।୯୯।
ରୋଧିରେ ବୁଡ଼ିଲା ସେ ଆପଣାର ଶରୀର
ମନ୍ଦାର ପୁଷ୍ପ ପ୍ରାୟେକ ଦିଶଇ ବୃକୋଦର ।୧୦୦।
ସଇନ ଭାଜିଲେ ସେ ବୁଲିବନ୍ତେ କାଳଦଣ୍ଡ
କନ୍ଦର୍ପସେନ ଉପରେ ଗଦା ପ୍ରହାର କଲାକ ପାଣ୍ଡବ ପ୍ରଚଣ୍ଡ ।୧୦୧।
ଭୀମସେନ ଗଦା ପଡ଼ି ତାହାର ଚୂରଗଲା ରଥ
ଧାଇଂଲା ପାଦଗତି ସେ ପ୍ରତାପ୍ୟାଂ ସାମରଥ ।୧୦୨।
ବେନି ମାତଙ୍ଗ ଯେହ୍ନେ ସାଂଗ୍ରାମେ ନ ଭୁଞ୍ଜି
ଚତୁର୍ଦ୍ଦିଗନ୍ତ ଲଗନ୍ତେ ଯେହ୍ନେ ଘୋର ଶବଦ ଶୁଭୁଅଛି ।୧୦୩।
ବେନି ପଡ଼ିତାଳ ଯେହ୍ନେ ଓହୋଇବଲ ମହାଯୁଦ୍ଧେ
କନ୍ଦର୍ପସେନ ପିଟିଲା ଭୀମସେନକୁ କୋଠାର ଆୟୁଧେ ।୧୦୪।

---

୯୨।୧ ବର୍ଣ୍ଣାନିକ ବୋଲି କାମଦେବର ସେନାପତି । (କ,ଙ,ଚ)
୯୨।୨ ଆଗିଆଣି ଥାଠେ ବୁଲଇ ଗଦା ଘେନି ପିଟି । (ଙ,ଛ)

ବାମଅଙ୍ଗ ପାଡଲା ସେ ପାଣ୍ଡବସୁନ୍ଦର
ଅଙ୍ଗେ ଘଡ ଚୂର ହୋଇଲା ସେ ବଜ୍ର ଯେ କୋଠାର ।୧୦୫।
ଆୟୁଧ ଭଜନ୍ତେ କନ୍ଦର୍ପସେନ ହୋଇଲା ଶୂନ୍ୟହାଥ
ଭୀମସେନକଇଂ ଆକ୍ଷୋଷି ଧଇଲା ଅଭୟେ ବଳବନ୍ତ ।୧୦୬।
ଭୀମସେନକଇଂ କୋଳକରି ଧଇଲା ବେଳାଭୁଜେ
ଆକ୍ଷୋଷି ବଜ୍ରମୁଥେ ମାଇଲା ପବନ ଆତ୍ମଜେ ।୧୦୭।
ଭୀମସେନର ମୁଥଘାତ ପଡଲା ତାର ଶିରେ
ମୂର୍ଚ୍ଛାଗତ ହୋଇ ରାଜା ପଡଲା ଭୂମିରେ ।୧୦୮।
ରାଗେଣ ଗଦା ବୀର ପ୍ରହାର କଲା ତୋଳ
କନ୍ଦର୍ପସେନର ଅସ୍ଥି ମାଂସ ହୋଇଲାକ ସବୁ ଧୂଳ ।୧୦୯।
ରାଜାର ପଡନ୍ତେ ପଳାଇଲେ ସମସ୍ତ ପାରିଦଣ୍ଡେ
କନ୍ଦର୍ପସେନ ରାଜାର ପୁତ୍ର ହାଦେ ଚଣ୍ଡ ଯେ ପ୍ରଚଣ୍ଡେ ।୧୧୦।
ବେଳାପୁତ୍ରେ ଧାଇଂଲେ ମହାନାଗନ୍ତ ଆରୋହୀ
ଭୀମସେନ ଗ୍ଭମୁଂରେ ଶହସ୍ର ପୂରୋଇଛନ୍ତି ରହି ।୧୧୧।
ବନ୍ଧନ୍ତ ନାରାଜ ଯେ ଲୋହଶର ତୀକ୍ଷମୁନା
ଗର୍ଜିଣ ଧାମଇଂ ସେ ବୀର ବ୍ରିକୋଦର ଜେନା ।୧୧୨।
ବେନି ଗଦା ବୁଲାଇ ପିଟିଲା ସେ ହାଥୀର କୁମ୍ଭସ୍ଥଳେ
ଦୁଇ ମହାନାଗେ ସେ ପଡଲେ ଯେକାବେଳେ ।୧୧୩।
କୋପେ କୋପାନଳ ଭୀମ ଅଧରେ ଦନ୍ତ ଚପି
ବେନି କୁମରଂକ କେଶ ଧଇଲା ମହାକୋପୀ ।୧୧୪।
ତୋଳିଣ କଗଡନ୍ତେ ସେହି ବେନି କୁମାରନ୍ତ
ମରୁତ ସାରଥି ଧଇଲା ଭୀମସେନ ହାଥ ।୧୧୫।
କୋପ ଶାନ୍ତକର ବାବୁ ପାଣ୍ଡବ ପଞ୍ଚାଣ
ବାଳୁତ କୁମାର ଯେହାନ୍ତ ତୁ ନ ମାର ଯେ ରଣ ।୧୧୬।
ପିତାକୁ ଯେହାର ନାଶକଲୁ ରଣେ ମଧ୍ୟେ
ଯେହାକଇଂ ରାଜା କରିବା ଯେହି ରାଜ୍ୟ ସଧେ ।୧୧୭।
ସାରଥି ବଚନେ ସେ ଛାଡଲା କୁମାରଂକ ବାଳ
ସେ ଚଣ୍ଡ ପ୍ରଚଣ୍ଡ ପଡଲେ ଭୀମସେନର ପାଦତଳ ।୧୧୮।

ଗଳାରେ କୋଠାର ଦେଇ ଦନ୍ତେ ତୃଣ ଧେନି
ସ୍ୱାମୀ ଶରଣ ଉଦ୍ଧାରଣ ତୁ ପାଣ୍ଡବ ପାବେନି ।୧୧୯।
ଦୁଖୀଜନ ନିସ୍ତାରଣ ତୁ ଶରଣ ରଖନ୍ତା
ଦ୍ରଶନେ ମୁକତ ସ୍ୱାମୀ ପ୍ରସନ୍ନେ ବରଦ୍ୟନ୍ତା ।୧୨୦।
ନ ଜାଣି ଦୁଷ୍ଟବୁଦ୍ଧି କଲା ମୋର ପିତାମହ
ଜଗବନ୍ଧନ ସ୍ୱାମୀକ ସେ ଚନ୍ତଲକ ଦ୍ରୋହ ।୧୨୧।
ସ୍ୱାମୀ ଆପଣାର କଲା କଥା କରମ ସିନା ବୋଲି
ପ୍ରତକ୍ଷେ ଶ୍ରୀନାରାୟଣ ବର୍ଣ୍ଣି ଚନ୍ହ ତୋହୋରେ ଦେଖିଲ ।୧୨୨।
ଅକାରଣକଇଁ କାରଣ ନାଥ ଦୁଖୀଜନଂକୁ କଲୁ ରକ୍ଷା
ଭଗତଜନ ମଙ୍ଗଳ ତୁ ପୂରାଅ ମନବାଞ୍ଛା ।୧୨୩।
ଅନେକ ସ୍ତୁତି କରନ୍ତି କନ୍ଦର୍ପସେନ ବେନିପୁତ୍ର
ଅରୁଣ ଉଲ୍ଲୋଳ ପ୍ରାୟେ ବହଇ ବେନିନେତ୍ର ।୧୨୪।
କଷ୍ଟ ଦେଖି ଦୟାକଲା ପାଣ୍ଡବ ପାବେନି
କୋଳେ ବସାଇଲା ନେଇ କନ୍ଦର୍ପସେନର ପୁତ୍ର ବେନି ।୧୨୫।
ଶୋକ ଗୁଡରେ ବାବୁ ନାଶଗଲା ତୁମ୍ଭ ପିତା
ମୁହିଂ ସେ ତୁମ୍ଭନ୍ତ ରେ ରଖନ୍ତା ଉଦ୍ଧାରନ୍ତା ।୧୨୬।
ସ୍ୱେହ୍ନ ରାଜ୍ୟ ରାଜାପଣ ହାଦେ ଦେବଇଂ ମୁହିଂ ତୋତେ
ସମସ୍ତ ନୃପତି ତୋତେ ଖଟିବେ ବଶ୍ୟାବୃତେ ।୧୨୭।
ରତ୍ନମଣି ମୁକୁଟ କୁଣ୍ଡଳ ଝମ୍ପା ତାଡ ତୋଡର ସରଳ ଜଗଦଳା
କଣ୍ଠେଣ ମାରୁତି ଲମ୍ବାଇଲା ରତ୍ନମାଳା ।୧୨୮।
ପାତ୍ର ଅମନାତ୍ୟନ୍ତ ସନ୍ନିଧେ ହକାରି
ଶ୍ରୀହସ୍ତେ ମାରୁତି ଯେ ଆପଣେ ଦେଲା ଶାଢ଼ୀ ।୧୨୯।
ଆହୋ ଯେମନ୍ତ ହୋଇ ଖଟିଥିଲ କନ୍ଦର୍ପସେନ ନୃପତି
ସ୍ୱେ ଚଣ୍ଡ ପ୍ରଚଣ୍ଡସେନଙ୍କୁ ସେହ୍ବମତ ହୋଇଥିବ ଭଗତି ।୧୩୦।
ଯେ ଅବା ସ୍ୱେହାକୁହିଂ ମନେ କରିବ ବକ୍ରୁତି
ନିଚୟେଂ ପ୍ରାଣେ ତାକୁ ମାରିବ ସ୍ୱେ ମୋହୋର ସତ୍ୟ ସତ୍ୟ ।୧୩୧।
ପିତାର ପ୍ରେତକାର୍ଯ୍ୟ ସାରି ସ୍ୱେହାକୁ ଘେନିଯାଅ ଇନ୍ଦ୍ରପ୍ରସ୍ତେ
ଥାଠ ସନ୍ୟ ଘେନିଣ ଯାଅ ଯୋଦ୍ଧା ପାତ୍ର ଅମନାତ୍ୟଂକ ସହିତେ ।

——— ।୧୩୨—୨୮୬୭।

# ଭୀମଙ୍କର ସୁଜାଣେଶ୍ୱର ରାଜାଙ୍କୁ ନିମନ୍ତ୍ରଣ
# ଓ
# ଅଶ୍ୱିନୀକୁମାରଙ୍କ ଜନ୍ମ

ଚଣ୍ଡସେନକଇଂ ଚହ୍ନିଂ କଲେକ ନିମନ୍ତ୍ରଣ
ଚତୁରଂଗ ଦଣ୍ଡ ଘେନିଣ ବଜସ୍ତେ ପ୍ରଚଗ୍ୟାଂ ଭୀମସେନ ।୧।
ଡାହାଳ ଦେଶରେ ଯାଇଂ ପ୍ରବେଶ ହୋଇଲେ ମାରୁତି
ସେ ରାଜ୍ୟରେ ଠାକୁର ସୁଜାଣେଶ୍ୱର ଚନ୍ଦ୍ରଗ୍ରାତ ।୨।
ଜାନକୀ ନାମେ ସେକ ନଦୀ ଯେ ଗୋଟିଏ
ଆକାଶ ବାହିନୀ ସେ ହୋଇ କ୍ଷୀରବର୍ଣ୍ଣ ପ୍ରାପ୍ତେ ।୩।
ସେ ନଦୀର ତୀରେ ଡାହାଳ ଦେଶ ଯେ ବସଇ
ରଥ ଗଜ ନାହିଂ ରାଜାର ଅଶ୍ୱ ପଞ୍ଚାଶ ମର୍ଦ୍ଦ୍ଦିଇ ।୪।
ପାଦାନ୍ତ ଆଦିକର ସମସ୍ତେହେଂ ଅଶ୍ୱ ଚଢ଼ି
ଧାନୁକୀ ଚନ୍ଦ୍ର ଚୂଡ଼ାମଣି ସେ ତୀର କମାଯେଣ ଧରି ।୫।
ସତ୍ୟଯୁଗେ ବିରଞ୍ଚି ସ୍ୱର୍ଗ୍ୟାଂରେ ଇତି ସଞ୍ଚି
ତେଣୁକରି ସେ ରାଜ୍ୟରେ ଅଶ୍ୱେ ଉପୁଜନ୍ତି ।୬।
ବଢ଼ାଇ ସମ୍ପଦ ରସ୍ତେ ବିଶାଶତେ ପାରିଦଣ୍ଡ
ସାଂଗ୍ରାମେଣ ସେ ନୃପତି ଅଗ୍ରର୍ଗଳ ଦର୍ପଷଣ୍ଡ ।୭।
ସଜାଡ଼ି ଉଡ଼ାଉଳ ବୀରତୂର ଝମକ ନିଶାଣ ବାଜେ
ଦଣ୍ଡ ଘେନି ମାରୁତି ପ୍ରବେଶ ଡାହାଳ ଦେଶ ରାଜ୍ୟେ ।୮।
ଡଗର ବାରତା କଲା ଶୁଣିମା ସୁଜାଣ ଚନ୍ଦ୍ରଗ୍ରାତ
ସ୍ୱାମୀ ରାଜ୍ୟରେ ପଶୁଛି ଦେବ କେଉଂଣ ଦେଶର ନୃପତି ।୯।
ବହୁତ ପ୍ରଚଗ୍ୟାଂ ଦେବ ଅଗ୍ରର୍ଗଳା ମହାରଥୀ
ପଚ୍ଛିମ ହିଗେ ଚମକ ପଡ଼ଇ ତାର କଥା ।୧୦।
ସ୍ୱାମୀ କନ୍ଦର୍ପସେନକଇଂ ରାଜା କଲକ କଉଶିକ ଦେଶେ ପଶି
ଯେବେ ଆମ୍ଭର ରାଜ୍ୟେ ପ୍ରବେଶିଲୁ ସେତୁ ଆସି ।୧୧।
ସହସ୍ରେକ ରଥ ଭୁଲେ ଦୁଇ ସହସ୍ର ମାତଙ୍ଗ
ପାଞ୍ଚସହସ୍ର ଅଶ୍ୱ ଯେ ରେଖାର ତୁରଙ୍ଗ ।୧୨।

ଦଶ ଅନ୍ୱବ୍ରତ ପାଦାନ୍ତ ବେନି ଅନ୍ୱବ୍ରତ ପାଠଛଅ
ଅନ୍ୱବ୍ରତେକ ବୀରତୂର ପଡଇ ଶବଦ ଅପ୍ରମିତ ।୧୩।
ରାଜ୍ୟରେ ପଶିଲ୍ଲ ଦେବ ଯେସନକ ସମ୍ପଦେ
ଭୂବ ଭୁବନ କମ୍ପଇ ଦେବ ଟମକ ନିଶାଣର ନାଦେ ।୧୪।
ଚରଗଣ ଅଭିମୁଖେ ସନ୍ଦେଶ ବାରତା ପାଇ
ଆଗ୍ୟାଂଦିଲ୍ଲ ନୃପତି ପାତ୍ରଗଣନ୍ତ ହକରାଇ ।୧୫।
ଆଗିଆଣି ଥାଠ ତାର ସାଂଗ୍ରାମେଣ ବଜାଯେ
ତାହାକଇଂ ରାଇ ଆଗ୍ୟାଂ ଦିଲ୍ଲ ସୁଜାଣେଶ୍ୱର ରାଯେ ।୧୬।
ରାଜାର ବଚନେ ତହୁଂ ଚଳିଲେ ସଇନ
ବଜଘୋଷ ଦାଉଣ୍ଡି ଶୁଭଇ ମଧୁର ଘୋଷଧୁନି ।୧୭।
ମତୁଆଲ ବାଦ୍ୟ ଯେ ବାଜଇ ମହୁରୀ ରାମତାଳି
ଚଳନ୍ତ ଖୁରୁଷାଣୀ ଦିଅନ୍ତ ହୁଲହୁଳ । ୮।
କଳକଳା ନାଦକର କୋଠାର ଆୟୁଧ କରେ
ଆସି ଓଗାଳିଲେ ସଇନ ନଗର ବାହାର ଦ୍ୱାରେ ।୧୯।
କୋନ୍ତ ବୁଲାଇ ବହଉନ୍ତ ଭୀମସେନ ରାଉତେ
ଗଜନ୍ତ ଦେଖାଇ କରି ଧୁଆନ୍ତ ମାହୁନ୍ତେ ।୨୦।
ସେନ୍ଦା ଟୋପରମାନ ଯେ ଅଭେଦ ତାଡେଣୀ
ଝଲକନ୍ତ ଲଂକଆ ଯେ ବିଜୁଳୀ ନାସ ଜାଣି ।୨୧।
ରଣେ ଅନିବାରଣ ଯେ ପାଣ୍ଡବ ମହାବୀର
ପୃଥୀ ଦେବୀ ନ ସହଇ ଯାହାର ପାଦଭାର ।୨୨।
ଦୟା କରାଇ ନସହୁ ଶରଣ ବୋଇଲେ
ପ୍ରାଣେ ନ ଥୁଅଇ ସେ ଉଚବାଚ ହୋଇଲେ ।୨୩।
ମାରରେ ବୋଲଣ ସେ ଭୀମସେନ ଦିଲ୍ଲ ଆଗ୍ୟାଂ
ମୋହୋର ସମ୍ମୁରେ ଯେହୁ ଯେତେକ ପ୍ରତଗ୍ୟାଂ ।୨୪।

---

୨୩।୧ ଦୟା କରଇ ସେ ମହନ୍ତ ଗୁଣନ୍ତୁଂ ଦେଖିଲେ । (କ,ଘ)
୨୩। ଦୟା ନ କରଇ ସେହୁ ଶରଣ ବୋଇଲେ
ସେ କି ଭୂମି ହୋଅଇ ସେ ଉଚବାଚ କଲେ । (ଙ୍କ,ନ)



ସିଂଘ ଯେ ଅଟଇ ବସନ୍ତର ଆଧିପତି
ମୂର୍ଦ୍ଧ୍ନଂ ସେ ପଶ୍ଚିମ ଦିଗ ଠାକୁର ଅଟଇ ସ୍ୱେକଛନ୍ଦୀ ।୨୫।
ଯଦ୍ୟପି ମତ୍ତଗଜ ରେ ହୋଇବେ କୋପକାଶ୍ୱ
ତାହାନ୍ତ ଗଣଇ କରେ ବଙ୍କମକେଶଶ୍ୱ ।୨୬।
କାଳଚକ୍ର ପ୍ରାୟେକ ବିକାଶଇ ବେନିଦୃଷ୍ଟି
ରଣରଙ୍ଗ ସୋହନ୍ତି ସେ ସାଂଗ୍ରାମେଣ ଯାଇଂ ଉଠି ।୨୭।
କରପଦ୍ମ ଯୋଡଣ ସେ ବୋଲନ୍ତି କାଳକୁତାନ୍ତକ ସେନାପତି
ଆମ୍ଭର ଥାଆନ୍ତେ କିଂପେ ସାଂଗ୍ରାମକୁ ପଶ ଧାତି ।୨୮।
ଭୀମସେନ ବୋଇଲା ବାବୁ ମୋହୋର ଅଳପ ସଇନ
ପଞ୍ଚାଶ ସହସ୍ର ରଜାନ୍ତ ସାଧି ବରିବ ତୁମ୍ଭନ୍ତ ଯେନ ।୨୯।
ବାହୁଡାଇ ଥାଠ ଯେବେ ନଅଇ ଅକ୍ଷୋଭେ
ତେବେ ସେ ସୁଦଶା ମୋତେ କରିବେ ଶ୍ରୀ ବାସୁଦେବେ ।୩୦।
ଯେଥୁ ଯେବେ ଗୋଟିଏ ହୋଇବେ ପରମାଦ
ସମସ୍ତ କାର୍ଯ୍ୟ ମୋର ହୋଇବ ଅସାଧି ।୩୧।
ଗୃରିଦଗକୁ ଯେତେ ବରଣ ସହଦେବର ପାଞ୍ଜି
ତହୁଂ ଗୋଟିଏ କ୍ଷୟ ହୋଇଲେ ସଭାରେ ହୋଇବା ଅପଗଞ୍ଜି ।୩୨।
ଆହେ ମେରୁକୁ ଆଶ୍ରେ ହୋଇଲ ତୁମ୍ଭେମାନେ
ଅନେକ ଝର୍ଥିକର ନେମଇଂ ହସ୍ତିନା ଭୁବନେ ।୩୩।

ସମସ୍ତ ସଇନ ବୋଇଲେ ତୁମ୍ଭର ଜୀବନ ସାଧୁ ସାଧୁ
ସ୍ୱାମୀ ଆମ୍ଭର ଆୟୁଷ ଯେନ ବ୍ରତ ଲକ୍ଷ୍ମୀ ନ ଛାଡୁ ତୋର କନ୍ଧୁ ।୩୪।
ଭୀମଂକ ପ୍ରତିଗ୍ୟାଂ ଶୁଣି ଉଠିଲେ ସଇନ
ବାହାନାଦ ଶବଦରେ କମ୍ପିଲା ମେଦିନୀ ।୩୫।
ଥାଠକଇଂ ପିଠି ରକ୍ଷା ହୋଇଲେକ ବୀର ଭୀମ
ଧାଇଂଲେ ମଣ୍ଡର ବଳ ପଶିଲେ ସାଂଗ୍ରାମ ।୩୬।
ଅସୁରନ୍ତ ଦେଖି ଯେନ୍‌ହେ ଧାଆନ୍ତି ଯୋଗୀମାନେ
ତେସନେକ ସରୂପ ଦିଶନ୍ତ ଭୀମସେନର ସଇନ୍ୟ ।୩୭।
ଦୁସହ ସାଂଗ୍ରାମେ ବୀରେ ପଶିଲେକ ବେଗେ ଯାଇଂ
ତର୍ଜନ୍ତି ଗର୍ଜନ୍ତି ସଇନ୍ୟ ମୁଖରବ ଦେଇ ।୩୮।

ଦେଖିଣ ହାସିଲେ ଡାହାଳ ଦେଶର ସଇନ
ଭୟେଣ ଭଙ୍ଗ ପଳାବନ୍ତି ଯେ ଯାହା ପ୍ରାଣ ଘେନି ।୩୯।
ସମରେ ପଶିଲ୍ଲ କାଳଦଣ୍ଡ ସାକ୍ଷାଗୁରୁ
ରଣେ ଅଭୟା ସେ ସୋହନ୍ତ ସୁନ୍ଦର ମହାମେରୁ ।୪୦।
ଡାହାଳ ଦେଶର ସଇନଯେ ହାସେଣ ପଳାବନ୍ତି
ପାଣ୍ଡବ ବଳ ସଇନ ଗୋଡ଼ାଇ ପିଟୁଛନ୍ତି ।୪୧।
ତିନି ଯୋଜନ ପରଯନ୍ତେ ପଡ଼ିଲ୍ଲ ପୟେତ
ଭିତର କଟକେ ଯାଇଂ ପ୍ରବେଶ ବୃକୋଦର ।୪୨।
ସଇନ ପଳାବନ୍ତେ ସେ ସୁଜାଣେଶ୍ୱର ନୃପତି
ଜଗତର ଉପରୁ ରାଜା ଡେଇଂ ପଡ଼ିଲ୍ଲକ ଧାତି ।୪୩।
ଆରେ ରହ ରହ ବୋଲ ସେ ସବୁନ୍ତ ପ୍ରବୋଧି
ମହାବାରୁୟେକ ଚଢ଼ି ସେ କ୍ଷେପଇ ମହାଯୋଧୀ ।୪୪।
କରେଣ ଶୋଭିବନ ତାର ଖର କମାୟେଣ
ଓହୋମୁଖେ ଭେଟିଲ୍ଲ ସେ ନୃପତି ସୁଜାଣ ।୪୫।
ରଥ ଚଢ଼ି ଭୀମସେନ ଅଛଇ ଉଭାହୋଇ
ସମ୍ମୁଖରେ ମହାରାଜା ମିଳିଲ୍ଲ ତାର ଯାଇଂ ।୪୬।
ଆହୋ ମାହାତ୍ମା କ୍ୱେ କେଉଂଣ ଦେଶର ରଥୀ
ୟେ ମୋହୋର ଥାଟ କିଂପେ ମାଇଲୁ ଅନମିତି ।୪୭।
ତୋହୋର ମୋହୋର ତ ବିବାଦ ନାହିଂ ପୂର୍ବେ
ଅନମିତେ ସଇନ ମୋହୋର ନାଶିଲୁ ଅଭାବେ ।୪୮।
ମହାର ଜାଣି ତତୁଲ୍ୟ ତୋହୋର ଯେ କାୟେ
ପ୍ରତକ୍ଷେ ଦିଶୁଅଛୁ ବାବୁ ଅନଙ୍ଗ ରୂପ ପ୍ରାୟେ ।୪୯।
କି ଅବା ଆକାଶ ତେଜି ଅଇଲେ ଆଖଣ୍ଡଳ
ମାନବ ହୋଇ ବାବୁ ତୋହୋର ଜୀବନ ସୁଫଳ ।୫୦।
ସମସ୍ତ ରାଜାଂକର ମୁଂ ଅଟଇ ଗଉରୋବ
ଅଶ୍ୱ ବଣିଜାର ଯେତେ ଲୋଡ଼ୁ ତେତେକେ ତୋତେ ଦେବ ।୫୧।
ତିନିଶତ ଯୋଜନ ୟେ ମୋହୋର ମନୋହର ବନ
ଅଶ୍ୱିନୀକୁମାରଂକର ୟେ ଅଟଇ ଜନ୍ମ ।୫୨।

ଆକାଶ ବାହ୍ନଣୀ ଯେହ୍ନେ ନଦୀ ଧବଳାଙ୍ଗୀ
ସରସ୍ୱତୀ ଧାର ଯେହ୍ନେ ଗଙ୍ଗା ଯମୁନା ମଧ୍ୟସଙ୍ଗୀ ।୫୩।
ଆକାଶ ବାହ୍ନଣୀ ଯେହ୍ନେ ବହଇ ମେରୁ ମେଖଳ
ଦବାପାଶେ ବହୁଥାଇ କ୍ଷୀରବର୍ଣ୍ଣ ଜଳ ।୫୪।
ସତ୍ୟଯୁଗେ ସଂଜ୍ଞାଂ ଭୁଲେ ଆଦିତ୍ୟ ପିରତି
ସଂଜ୍ଞାଂ ସହି ନୁଆରିଲା ଅନନ୍ତ ଆଦିତ୍ୟର ମୂରତି ।୫୫।
ମହାରଶ୍ମି ସହି ନୁଆରିଲା ମହାମାୟା
ଶରୀରୁଂ ଜାତକଲା ସେ ଦେବୀ ସରୂପେଣ ଛାୟା ।୫୬।
ସଂଜ୍ଞାଂର ସରୂପ ସେ ଦଶଇ ଅପୂର୍ଣ୍ଣୀ
ସଂଜ୍ଞାଂର ଶରୀରୁ ଜାତକଲା ତାର ରୂପ ସିନା ।୫୭।
ଆଦିତ୍ୟେ ସମର୍ପିଲା ସେ ଛାୟାକନ୍ୟାକୁ
ହାସେଣ ଗଲା ଦେବୀ ମେରୁ ପଶ୍ଚିମ ପାରୁଶକୁ ।୫୮।
ଯେଉଂଣ ଠାବକୁ ତେଜ ନ ଲଗଇ ଅଂଶୁମାଳୀ
ତହିଂ ଯାଇଂ ଗୋପ୍ୟାନ ହୋଇଲା ମେରୁମେଖଳୀ ।୫୯।
ଛାୟା ଖଟିଲା ସେ ଆଦିତ୍ୟର ପ୍ରକୃତି
ସଂଜ୍ଞାଂହୁଂ ଅନେକ ଖଟିଲେ ଦବାଗ୍ରତି ।୬୦।
ଛାୟାଯେ ଭାବ ସ୍ୱାମୀଂକର ବଢିଲା ଅପ୍ରମିତେ
ଛାୟା ଖଟି ମନାଇଲା ତନୟମନୁ ପରିଯନ୍ତେ ।୬୧।
ବରଞ୍ଚନାରାପୁଣ ତାହା ନୁଆରିଲେ ଜାଣି
ସଂଜ୍ଞାଂଙ୍କ ଅନେକ ଭଗତେ ସେ ଖଟଇ ରମଣୀ ।୬୨।
ଯମ ଶନିଶ୍ଚର ଯେ ଆଦିତ୍ୟଂକ ପୁତ୍ର ବେନି
ଦନେକ ଖେଳୁଥିଲା ଯମ ତମିର ବଦାରଣ ମଣି ଯେନି ।୬୩।
ଦେଖିଣ କୋପ ଜାତ ତାକୁ କଲେ ଦେବୀ ଛାୟା
ଭୃତ୍ଛନା ବୋଲ ମଣି ଉଚ୍ଛୃତ ଯେନିଲେ ମହାମାୟା ।୬୪।
ଅଞ୍ଚଳ ଧରିଣ ଯମ ଯାଇଂ ଓଗାଳିଲା ଆଗେ
ଛାୟାକଇଂ ବାମପାଦ ମାଇଲା ଯାଇଂ ବେଗେ ରାଗେ ।୬୫।
ମୂର୍ଚ୍ଛାଗତ ପ୍ରାୟେ ହୋଇ ପଡିଲେ ଦେବୀ ଛାୟା
ଆରେ ପୁତ୍ର ହୋଇକରି ତୋର ହିଆ ଯେତେକ ନିର୍ଦ୍ଦୟା ।୬୬।

ମୁହିଂ ତୋର ପରମଗୁରୁ ତୁ ମୋତେ ଯେଉଂଣ ପାଦେ ବଧି
ସେହି ପାଦେ ହୋଉ ତୋର ଗଳୁତ କୁଷ୍ଟ ବ୍ୟାଧି ।୬୭।
ସେ ଅପର୍ତ୍ତୀ ଶାପ ହାତେ ଯାଇ କ ମେଣ୍ଟଣ
ସେ ଯମର ପାଦେ କୁଷ୍ଟ ବ୍ୟାଧି ହୋଇଲା ତତକ୍ଷଣ ।୬୮।
ଗଳଇ ପାଦରୁ ଯେ ରକତ ପୂଜ ଫୁଟି
କାନ୍ଦଇ ନାଶକର ଯେ ଭୂମିରେଣ ଲୋଟି ।୬୯।
ହେନେକ ପ୍ରଦକ୍ଷିଣ କରି ଅଇଲେ ଅଂଶୁମାଳୀ
ହିରଣ୍ୟଗର୍ଭ ପୁରୁଷ ଅଇଲେ ଦେବ ଚଳି ।୭୦।
ସନ୍ନିଧେ ପ୍ରବେଶ ହୋଇଲେ ଦେବ ନିଜ ଭୁବନେ
ଯମର କ୍ରୋଧ ଦେଖି ପଚ୍ଚରନ୍ତି ସୁବଧାନେ ।୭୧।
କୋଳେଣ ଧଇଲେ ଦେବ ତ୍ରଇଲୋକ୍ୟର ନିଧି
ଦେଖିଲେ ଯମର ପାଦେ ଗଳୁତ କୁଷ୍ଟ ବ୍ୟାଧି ।୭୨।
ଦୁର୍ଗନ୍ଧ ଗନ୍ଧାଇ ବହୁତ ବହୁଅଛୁ ଶ୍ରୋଣିତ
ଆରେ ମହାତେଜ ପୁତ୍ର ଗୋଟିକ ମୋର କେ କଲା ଯେମନ୍ତ ।୭୩।
ପିତାର ଶ୍ରୀମୁଖରେ କହିଲେ ଯମ ଦଇବତେ
ସ୍ୱାମୀ ମାତାୟେ କୋପକରି ଶାପ ଦେଲେ ମୋତେ ।୭୪।
ଶୁଣିଣ ଆଶ୍ରିଜ ହୋଇଲେ କମଳଲୋଚନ
ମାତାଂକର ପୁତ୍ରଠାରେ କେହ୍ନେ ହୋଇଲା କୋପମନ ।୭୫।
ବାଳୁତ ନନ୍ଦନ ଯେ ଦୁଷ୍ଟପ୍ରକୃତ କୋପ ମୂର୍ଖ
ଖେଳନ୍ତା ନନ୍ଦନ ଯେ ମାତାଂକୁ ଦିଅନ୍ତି ଅନେକ ଦୁଖ ।୭୬।
ବହୁତ ବିମୁଖେ ଗାଳି ଦିଅନ୍ତି ଯେ ମାୟେ
କେହୁଣସି କାଳେ ପୁତ୍ରଂକୁ ନ ପଡ଼ଇଟି ଅପଚୟେ ।୭୭।
ମାତାଂକର ଶାପ ଯେବେ ପଡ଼ଇ ପୁଅକୁ
ଆଉର କି ବାଟ ଅଛି ପୁତ୍ର ବ୍ରତବାକୁ ।୭୮।
ମନେ ମନେ ବିଚାରନ୍ତି ଯେ ଗଗନବିହାରୀ
ୟେ ଅବା ପୁତ୍ରଂକର ନୋହୋଇ ଗର୍ଭଧାରୀ ।୭୯।

---

୭୦।୨ ହିରଣ୍ୟଗର୍ଭ ପୁରୁଂ ଅଇଲେ ଦେବ ଚଳି । (ଙ,ଡ)
୭୫।୨ ପତ୍ନୀଂକଠାରେ ହୋଇଲେ ବହୁତ କୋପମନ । (ଛ,ନ)

ଗର୍ଭଧାରୀ ମାତାର ଶାପ କି ହୋଇବ ଯେମନ୍ତ
ମନରେ ପରମ ଶାନ୍ତ ସ୍ୱାମୀ ଚିନ୍ତିଲେ ଅନନ୍ତ ।୮୦।
ଧ୍ୟାନେଣ ଜାଣିଲେ ପ୍ରଭୁ ଦୀନଙ୍କର ବନ୍ଧୁ
ବିଗୃରଣ ବୋଇଲେ ସ୍ରଷ୍ଟା ଜୀବନ ତୋର ସାଧୁ ।୮୧।
ସଗ୍ୟାଂ ସହ୍ୱ ନୁଆରିଲା ମୋହୋର ଯେ ଜ୍ୟୋତି
ଗ୍ରିମନୁ ପରଯନ୍ତେ ତୁ ଖଟିଲୁ ମୋହୋର ପ୍ରକୃତି ।୮୨।
ଦେବସ୍ତ୍ରିଙ୍କର କୁଳକୁ ଯେ ତୋ ମହ୍ୱମାଂ ଦୁଲଭ
ମନୁକଳ୍ପ ପରଯନ୍ତେ ମୁଂ ସ୍ରଷ୍ଟାର ବଲ୍ଲଭ ।୮୩।
ଧ୍ୟାୟେଣ ଚିନ୍ତିଲେ ସ୍ୱାମୀ ଅର୍କଦତ୍ୟ ନିବାରଣ
ଦେଖିଲେ ସଗ୍ୟାଂ ଲୁଚିଅଛି ମେରୁର କୋଣେଣ ।୮୪।
ନିଜରୂପ ଗୁପ୍ତି ଦେବ ଧଇଲେ ଅନ୍ୟରୂପ
ଅଶ୍ୱିନୀ ରୂପରେ ସଗ୍ୟାଂ ଯେ ହୋଇଅଛି ଗୋପ୍ୟ ।୮୫।
ଯେହେନେକ ସରୂପ ସ୍ୱାମୀ ଦେଖିଲେ ମନଧ୍ୟାୟେ
ଆପଣେ ହୋଇଲେ ସ୍ୱାମୀ ଅଶ୍ୱ ପୁରୁଷ ଗୋଟିୟେ ।୮୬।
ମେରୁ ମେଖଳରେ ଦେବ ପଶିଲେ ବିରଞ୍ଚି
ହେଷ୍ରାରବ କଲେ ଯେନେହେ ଅଶ୍ୱଙ୍କର ଭାବ ଇଚ୍ଛି ।୮୭।
ଅଶ୍ୱମାନଂକ ଲକ୍ଷଣ ଯେସନ ପ୍ରକୃତି
ସଗ୍ୟାଂହ୍ୱଂ ଶବଦକଲେ ଶୁଣି ତତକ୍ଷଣାନ୍ତି ।୮୮।
ସେ ଶବଦକଇଂ ଗୋଡ଼ାଇ ସ୍ୱାମୀ କରତାର
ଶୀଘ୍ରେଣ ମାଡ଼ପଡ଼ିଲେ ଦେବ ଅଶ୍ୱିନୀ ଉପର ।୮୯।
ଦିଗମ୍ବର ପୁରୁଷ ସେ ବୋଇଲେ ମନେ ଭାଳି
ଅସ୍ପୃକାର ପୁରୁଷ ବୋଇଲେ ତୋହୋର ନାମ ଅଂଶୁମାଳୀ ।୯୦।
ସଗ୍ୟାଂର ଭୁଲେ ସ୍ୱାମୀ ଶୃଙ୍ଗାର କୁତୂହଳେ
ଚଳିଲାକ ମହାରସ କାମ ଆରତ ବେଳେ ।୯୧।
ଘୋରରୂପ ବୀର୍ଯ୍ୟ ପଡ଼ିଲା ସହୁଂ ଊର୍ଦ୍ଧ୍ୱରେତା
ମୋହେଣ ଚଳିଲା ସେ ଅଶ୍ୱିନୀ ବନିତା ।୯୨।

---

୮୦।୨ ମୁଖେ କହୁ କହନ୍ତି ହୃଦରେ ଦୟାଚିତ୍ତ । (ଖ)

ଅମୋଘ ରେତ ସ୍ୱାମୀର ପଡ଼ିଲା ଅବଚ୍ଛନ୍ନେ
ତନ୍ମନ୍ଦା ଧାତୁ ପଡ଼ିଲା ଗିରିବର ଉଦ୍ୟାନେ ।୯୩।
ଅର୍ଦ୍ଧ ଧାତୁ ମନ୍ଦାକ ଦେବୀ ଫନ୍ଦଶରଲେ ଗର୍ଭେ
ସଇନ୍ଦୁ ଜାତ ହୋଇଲେ ଅଶ୍ୱିନୀ ମହାଦେବେ ।୯୪।
ମନୁଷ୍ୟ ଶରୀର ଅଶ୍ୱ ସୁଲକ୍ଷଣ ମୁଣ୍ଡଗୋଟି
ମହାମନ୍ତ୍ର ମଉଷଧି ଯାହାର ଅମୃତ ଦୃଷ୍ଟି ।୯୫।
ଜାତହୋଇ ନୟନେ ଯେ ଶ୍ରୁହିଂଲ୍ଲ କୁମାର
ତାହାର ଦୃଷ୍ଟି ପଡ଼ିଲା ଯେତେକ ବୃକ୍ଷର ଉପର ।୯୬।
ସେହି ସବୁ ବୃକ୍ଷମାନେ ହୋଇଲେ ଅଉଷଧି
ତାହାନ୍ତ ଲେପନେ ଶାନ୍ତ ହୋଯେ ସର୍ବ ବ୍ୟାଧି ।୯୭।
କହଇ ସୁଜାଣେଶ୍ୱର ଚନ୍ଦ୍ରବୃତ୍ତ ଚୂଡ଼ାମଣି
କୋପଗୃଢ଼ ଶାନ୍ତ ଭଜଲେ ଭୀମସେନ ଠାକୁରେ ତାହା ଶୁଣି ।୯୮।
ତନ୍ମନ୍ଦା ଧାତୁ ପଡ଼ିଲା ଯେ ମେରୁ ମେଖଳେ
ତଳ ମିଶ୍ରିତ ହୋଇଲା ଆସି ସରସ୍ୱତୀ ନଦୀଜଳେ ।୯୯।
ସେ ମହାରସ ବୀର୍ଯ୍ୟ ଯେ ମିଶ୍ରିତ କରି ହେଲା
ବହିଲା ସରସ୍ୱତୀ ଯେ ଈଶାନ୍ୟ ବାହିନୀ ।୧୦୦।
ଆଦିତ୍ୟ ଫଗ୍ୟାଂର ମନୋହର ରମଣେ
ମନୋହର ବନ ନାମ ହୋଇଲାକ ତେଣେ ।୧୦୧।
ଯେ ବନଜୀବେ ନଦୀରେ କଲେ ଜଳ ଆପ୍ୟାନ
ସର୍ବେ ଗର୍ଭବାସ ହୋଇଲେ ସେହିଦନ ।୧୦୨।
ଯେତେ ଜୀବେ ପିଇଲେ ଆଦିତ୍ୟ ରେତପାଣି
ସବୁଂକର ତହୁଂ ଉପୁଜଲେ ଅଶ୍ୱ-ଯେ ଅଶ୍ୱିନୀ ।୧୦୩।
ଯେ ଜଳ ଭକ୍ଷନ୍ତ ଯେତେକ ଜୀବଜନ୍ତୁମାନ
ତହିଂରୁ ଉତପତ୍ତି ହୋଇଲେ ଅଶ୍ୱମାନ ।୧୦୪।
ଅଶ୍ୱନ୍ତ ସମ୍ଭାଳ ମୁହିଂ ଥାଇଂ ଯେ ଯତନେ
ଧନ ହେଳ କରଣେ ଆସକ୍ତ ରାଜାମାନେ ।୧୦୫।

---

୧୦୫।୨ କରଣେ—ହୀଣ—ହୀଣାତ—କାରଣିବାକୁ—କାରଣ—କାରଣ
—(ବ:) କାରଣେ ।

ଯେବଣ ଅଶ୍ବ ହୁଅନ୍ତ ଯେବଣ ହାଦେ ମୂଳ
ଅର୍ଦ୍ଧଧନ ଘେନାକର ବାଣ୍ଟ ହଅଇ ଭଲ ।୧୦୬।
ମୋହୋର ଚତୁଂ ଯେ ଅଶ୍ୱମାନନ୍ତ କରଣ କର ନାଅନ୍ତ
ଚେଣୁକର ନାମ ମୋହୋର ଯେ ଅଟେ ଅଶ୍ବପତ୍ତ ।୧୦୭।
ଯୁଡେ ବଡ ରାଜ୍ୟ ମୋର ସଂସାର ଉପକାରୀ
କେମନ୍ତେ ସତ ବଳଲ୍ମ ମୋର ରାଜ୍ୟ ଧ୍ୱଂସନ କର ।୧୦୮।
ପରଲୋକ ହିତରେ ମୁଂ ବ୍ରତଇ ସର୍ବଦା
ଗୁଣବନ୍ତ ଲୋକଙ୍କଇଂ ଭଗତ୍ତ ମୋର ସଦା ।୧୦୯।
ଭୀମସେନ ବୋଇଲେ ହୋ କହିଲୁ ଅପାର ସନ୍ଦେହ
ତୋତେ ଲଗିଲା ମୋତେ ଅନେକ ସେନେହ ।୧୧୦।
ତୁହି ନ ଜାଣୁ କି ଆମ୍ଭର ରାଜସୂୟଯାଗ ହେବ ବୋଲି
ପଞ୍ଚିମଦଗ ରାଜାନ୍ତ ମୁଂ ନିମନ୍ତି ଅଇଲି ।୧୧୧।
ମୁହିଂ ହେ ଭୀମସେନ ପାଣ୍ଡବ କୁଳ ଶ୍ରେଷ୍ଠ
ଯେଥିରେ ନିମନ୍ତେ କର ଜରାସନ୍ଧକୁ କଲୁ ପ୍ରାଣେ ନଷ୍ଟ ।୧୧୨।
ଭୀମସେନର ମୁଖୁଂ ଯେସେନେକ ତଥ୍ୟ କଥା ଶୁଣି
ଅଶ୍ୱ ଉପରକୁ ଯେ ଡେଇଂ ପଡଲା ନୃପମଣି ।୧୧୩।
ବୃକୋଦର ପଦ୍ମପାଦେ ନୃପତ୍ତ ହୋଇଲା ପରଣାମି
ଦଶଦୋଷ ଅପ୍ରାଧ ମୋ କ୍ଷମା କରିବାକ ସ୍ୱାମୀ ।୧୧୪।
ମୁହିଂ ବନଚର ଦେବ ମୋହୋର କସ ବୁଦ୍ଧି
ପାଣ୍ଡବ ଦ୍ରଶନେ ମୋର ସକଳ କାର୍ଯ୍ୟ ସିଦ୍ଧି ।୧୧୫।
ଅନେକ ହରଷ ମନେ ହୋଇଲା ହସ ହସ
ରାଜ୍ୟରେ ଉତ୍ସବ ସେ କରାଇଲା ମନ ତୋଷ ।୧୧୬।

---

୧୧୦। ଭୀମସେନ ବୋଇଲେ ବହୁତ କହିଲୁ ସନ୍ଦେଶ
ତୋର ବାରତା ଶୁଣି ମୋରେ ଲଗିଲା ମୁହାଂସ । (ଙ,ଛ)

୧୧୬। ଅନେକ ହରଷ ମନେ ହୋଇଲା ସାନନ୍ଦ
ଗଡଧାଇଲା ପଡଇ ସେ ଭୀମସେନ ପାଦ । (ଘ,ଞ୍ଜ,ନ)

ଜଗତ୍ରି ଉପର ପର୍ଯ୍ୟନ୍ତେ ପାଣ୍ଡବଙ୍କ ପାପ୍ରେଣ୍ଡା
ଶ୍ରୀଚରଣେ ବିଜେକଲେ ଭୀମସେନ ବୀର ।୧୧୭।
ଡାହାଳ ଦେଶେ ବିଜେ କଲେକ ବୀରମଣି
ବେଢିଣ ଦେଖନ୍ତି ଜନେ ଗନ୍ଧର୍ବ ବିଜେ ଜାଣି ।୧୧୮।
ଅନେକ ସମ୍ଭବେ ରାଜ୍ୟେ ଯୋଗାଡ଼ ଆଣି ଦେଲା
ରହିଣ ପାଣ୍ଡବ ସେ ମୁଦ୍ରଣାହିଂ ଚହିଂ କଲା ।୧୧୯।
ଶ୍ବେତଶାର ତୁରଙ୍ଗମ ପବନହୁଂ ବେଗ ତେଜ
ମହାବଳବନ୍ତା ବାରୁସ ଦେଲା ରାଜ ଅହ୍ଵତ୍ର ବାଜୀ ।୧୨୦।
ଧବଳ କମଳ ଯେ ଚଉରଣି ଲକ୍ଷଣ
ଆନନ୍ଦଚେ ଅଶ୍ୱ ଆଣି ଦେଲାକ ରୁମୁଚରେଣ ।୧୨୧।
ଲକ୍ଷେକ ଭାରହିଂ ପୁଣି ପାଣିଦ୍ରବ୍ୟ ଘେନି
ଭୀମସେନ ଠାକୁରଂକୁ ଦେଲା ଦେଖା ଦରଶନି ।୧୨୨।
ଅକ୍ଷତ ଗୁଆ ଦେଇ ନିମନ୍ତ୍ରଣ କଲାକ ବୃକୋଦରେ
ଏମାନ ନେଇ ସମର୍ପଣ କର ତୁ ସାତ୍ତ୍ୱକୀ ଗୋଚରେ ।୧୨୩।
ମୋହୋର ଯେତେକ ଧନ ଦେଖା ଦରଶନି
ସାତ୍ତ୍ୱକୀ ସମ୍ଭାଳିଣ ଥିବ ଭଣ୍ଡାରେଣ ଘେନି ।୧୨୪।
ସମଦଣ୍ଡ ଘେନି ତୋହୋର ପୁତ୍ର ଭାର୍ଯ୍ୟା ସହିତ
ଏହିକ୍ଷଣି ଅନକୂଳ କର ଇନ୍ଦ୍ର ଯେ ପ୍ରଶସ୍ତେ ।୧୨୫।
ଅଶ୍ୱପତି ବୋଇଲା ସ୍ୱାମୀ ଯେନେ୍ହେ ତୋହୋର ନିରାଧାର ଆଗ୍ୟାଂ
କାହାର ବେଳେ ହୋ ତାହା କର ହୋଇବ ଅବଗ୍ୟାଂ ।୧୨୬।
ସମଦଣ୍ଡ ସନ୍ୟ ଘେନି ରାଜା ଶୁଭ ଅନକୂଳେ
ଅନେକ ସମ୍ଭରେ ସନ୍ୟ ଘେନି ଚଳିଲେ ସୁମରଣ ସର୍ବମଙ୍ଗଳେ ।୧୨୭।
ଭୀମସେନ ବୋଲଇ ଶୁଣ ସୁଜାଣେଶ୍ୱର ଚକ୍ରବର୍ତ୍ତି
ପ୍ରବେଶ ହୋଇବୁଟି ଯାଇଂ ଧନୁ ପୂର୍ଣ୍ଣିମୀର ତିଥି ।୧୨୮।

---

୧୧୭। ଜଗତ୍ରି ଉପର ପର୍ଯ୍ୟନ୍ତେ ରାଜା ପାପ୍ରେଣ୍ଡା କଲା ଶେଯ୍ୟା
ଶ୍ରୀଚରଣେ ସେବା ସେ କରଇ ମହାରାଜା । (ଘ,ଞ୍ଜ,ଠ,ନ)
୧୨୪।୨ ସାତ୍ତ୍ୱକୀ ସ୍ଥାନରେ ମାଧେବ ଶବ୍ଦର ପ୍ରୟୋଗ କେତେକ ପୋଥିରେ ଦେଖାଯାଏ ।

❋

ବିଶ୍ରାମ ନ କର ରାଜା ସିଦ୍ଧି ହବାଭାବେ
ଯେମନ୍ତେ ଜଗନ୍ନାଥ ବାଚ୍ୟ ନ କରନ୍ତୁ ଜାଣ ମୋତେ ।୧୨୯।
ଚଳଇ ଜାହାଳେଶ୍ୱର ଓଳଗ ମେଲ୍ଲଇ
ସେ ରାଜ୍ୟରୁ ମାରୁତ ଚଳଇ ବେଗ ହୋଇ ।୧୩୦—୨୯୯୭।

—— —

## ବିରାଟ ରାଜ୍ୟରେ ଭୀମଙ୍କ ଦୂତର ଅପମାନ

ଆହୋ ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଂଙ୍କ
ଭୀମସେନ ଶ୍ରୀମୁଖ ଲେଖନ ଗଲା ଯେ ବିରାଟର ତହିଂକ । ୧ ।
ଶୁଣିବାକୁ ସୁରସ ଯେ ବଡ଼ାଇ କୁତୂହଳ
ଶୁଣନ୍ତେ ଲଭିବ ଯେ କୋଟିଏ ତୀର୍ଥର ଫଳ । ୨ ।
ଅଗସ୍ତି କହିଲେ ଯେ ମନୁପୁରୁଷଂକୁ
କାଳଞ୍ଜନ ତଗର ଗଲା ଯେ ମତ୍ସ୍ୟଦେଶ ରାଜ୍ୟକୁ । ୩ ।
ଶତେକ ଦୂତ ତାହାର ଭୁଲେଣ ଚୋଷକାରୀ
ବିମାନ ଆରୋହି ଗଲା କାଳଞ୍ଜନ ପଡ଼ିହାରୀ । ୪ ।
ଖାଚକ ବଜେ କରଅଚ୍ଛି ଯେ ବାହାର ଜଗତୀ
ସହସ୍ରେକ ବଳାସୁଣୀଏ ଯେ ଗ୍ରୀମୁରେ ଚାମର ଢାଳନ୍ତି । ୫ ।
ବିଜଯେ ମଣି ମୁକୁଟ ଶୋଭଇ ଲଲାଟେ
କି ଅବା ସୁରେଶ୍ୱର ବିଜୟେ ବଇରାଷ୍ଟେ । ୬ ।
ବଡ଼ାଇ ଆଡ଼ମ୍ବର ଦେଖି ସେ କାଳଞ୍ଜନ ପଡ଼ିହାରୀ
ସ୍ନେହି ସେ ହୋଇବ ନାମ ମତ୍ସ୍ୟ ଦେଶର ଅଧିକାରୀ । ୭ ।
ହୃଦେ ଶ୍ରୀମୁଖ ଲଇ ହାକଇ କାଳଞ୍ଜନ
ଆହୋ ବିରାଟ ଜଗତୀରୁ ଆସସି ବହନ । ୮ ।

---

୨।୨ ଆମ୍ଭାକଇଂ ଅମୃତ ଯେ ପ୍ରାଣକୁ ଶୀତଳ । (ଥ,ଛ)
୨।୨ କହସି ମୁନି ହେ ପବିତ୍ର ପୁଣ୍ୟଫଳ । (ଙ,ଘ)
୪।୨ ପ୍ରତ୍ୟେକ ବିମାନ ଆରୋହି ଗଲା କାଳଞ୍ଜନ ପଡ଼ିହାରୀ ।
(ଛ,ଙ,ଥ,କ)

ଯାଜ୍ଞସେନୀ ପାଡ ଯେ ଶ୍ରୀମୁଖ ଘେନସି ହୋ ରାସ୍ତେ
କେଉଁଣ ଦର୍ପେ ତୁ ହୋ ସ୍ୟେନ୍ତେକ ନିର୍ଭୟେ । ୯ ।
କୀଚକ ବୋଇଲା ତୁ ହୋ ଅଟୁ କାହାର କନ୍ତ
ଦୂତକାଖି ହୋଇ କଂପା ସ୍ୟେନ୍ତେକ ନିର୍ଭ୍ରାନ୍ତ । ୧୦ ।
କେ ରେ ମୋତେ ଶ୍ରୀମୁଖ ଦେଇତେ ସାମରଥା
ନ ଜାଣୁ କି ସଂଗ୍ରାମେ ମୁଂ ଅଭୟେ ବଳବନ୍ତା । ୧୧ ।
ଶରଣ ସୋଦର ମୁହିଂ ଦୁଖୀ ଲୋକକଇଂ ବନ୍ଧୁ
ନିଚୟେ ଶିର ଯେ ଆଜ ଛିଡ଼ଲା ତୋହୋର କନ୍ଧୁଂ । ୧୨ ।
ପ୍ରତଶ୍ୟାଂ କରଣ ଯହୁଂ କୀଚକହିଂ ବୋଇଲା
ଶୁଣି କାଳଞ୍ଜନ ପତିହାରି ମହାକୋପ କଲା । ୧୩ ।
ଯମ ଦର୍ପଭଞ୍ଜା ବ୍ରିକୋଦର ସେନାପତି
ଭ୍ରସନା ବଚନ ସହି ନୁଆରନ୍ତି ମାରୁତି । ୧୪ ।
ପ୍ରତଶ୍ୟାଂ କରଣ ସେ ବୋଇଲା କାଳଞ୍ଜନ
ନ ଜାଣୁ କି ବିରାଟ ରେ ପାଣ୍ଡବ ଭୀମସେନ । ୧୫ ।
ହିଡ଼ମ୍ବକ ରାକ୍ଷସ ଯେ ବିଦାରିଲା ରଣେ
ଲକ୍ଷେକ ନୃପତିଂକ ସ୍ୱୟମ୍ବରେ ଜିଣିଲା ସ୍ୟେକାଜଣେ । ୧୬ ।
ବକାସୁର ଦର୍ପ ମର୍ଦ୍ଦନ ଓଡ଼ାଢ ଶିବପୁର ନଗ୍ର ଭଞ୍ଜା
ପ୍ରତଶ୍ୟାଂ ସାର୍ଥେ ସେହି ଯୁଧିଷ୍ଠି ଦେବଙ୍କଂ ସାନୁଜା । ୧୭ ।
ଆହୋ ବିରାଟ କାହ୍ନୁ ସନିକ୍ଷେଣ କଂପନ୍ତି ଯାହାର ନାମ୍ୟେଂ
ଜରାସନ୍ଧକୁ ଯେହୁ ନିବାରିଲା ସ୍ୟେକା ମୁଥଘାସ୍ତେ । ୧୮ ।
ଆହୋ ବୀରବର ସୋହୋଡ଼ ସେ ପାଣ୍ଡବ ପଞ୍ଚାଣ
ରାଜସୂ ଯାଗ ନିମନ୍ତେ ସେ ପଶ୍ଚିମଦ୍ୱାର ବରଣ । ୧୯ ।
ଦୁଷ୍ଟ ଦର୍ପ ନିଶୋଧନ ସେ କଇଛା ଜଗଜେଠୀ
ହଇଲୋକ୍ୟେ ଚମକ ପଡ଼ଇ ବ୍ରିକୋଦର ନାମଗୋଟି । ୨୦ ।
ଯାଜ୍ଞସେନୀ ପାଡ ଶ୍ରୀମୁଖ ଘେନ ହୋ ବିରାଟ
ଠାକୁରେ ବିଜେ କରିଅଛନ୍ତି ପଶ୍ଚିମ ସଉରାଷ୍ଟ୍ର । ୨୧ ।
କୀଚକକଇଂ ନ ଚହ୍ନିଲା କାଳଞ୍ଜନ ପତିହାରି
ବିରାଟ ପରାସ୍ତେ ମଣି ତାକୁ ଗାଡ଼େଣ ଉତ୍ତର କରି । ୨୨ ।

ବିରାଟ ଅଭିମାନ ଯେ କୀଚକ ନ ସହଇ
ଭୁକାର ବଚନ କରି କାଳଞ୍ଜନ ଅନେକ କହଇ । ୨୩ ।
ବେଳୁ ବେଳୁ ପ୍ରତଗ୍ୟାଂ ସହିତ ନୁଆରଇ
କୋପଭର ହୋଇ କାଳଞ୍ଜନକୁ ଅନାଇ । ୨୪ ।
ରାଗେଣ ବୋଇଲା ଯେହାକୁ ନିଅ ବାଳ ଧରି
ବେଗକରି ନିଅରେ ନ ଥାଉ ଯେ ଆମ୍ଭ ପୁରୀ । ୨୫ ।
ଜଗଣର ତଳେ ଥିଲେ କୀଚକର ଅନେଶ୍ୱତ ଭ୍ରାଥ
କୀଚକର ଆଗ୍ୟାଂରେ ସେ ଧାଇଂଲେ ଅମନାଡ୍ୟ । ୨୬ ।
ପରଶୁ ଫଂାଶୀ ଗଦା ମୁଦୁଗରନ୍ତ ବୁଲାଇ
କାଳଞ୍ଜନ ପଡିହାରିକ ବେଢି ଧଇଲେକ ବେଂଗ ଯାଇଂ । ୨୭ ।
କେ ତାହାର ଦରଣ୍ଡି ଧଇଲେକ ବାଳ
ଅନ୍ତରୀକ୍ଷେ ଆଣନ୍ତେ ଚରଣ ନ ପଡଇ ତଳ । ୨୮ ।
ଶ୍ରୀମୁଖ ଉଚ୍ଚୁଡଣ ଘେନିଲେକ ତାର ତହୁଂ
ଆରେ ମାନବ ଜନ୍ମ ହୋଇ ତୁ ଯେତେକ ଗର୍ବ ବହୁ । ୨୯ ।
ଶିରଚ୍ଛେଦ ବୋଲକରି ସହୁଂ ମନ୍ତ୍ରୀ ଆଗ୍ୟାଂ ଦିଲା
ଯାଚକେଶ୍ୱର ମନ୍ତ୍ରୀ ସମ୍ଭାଳି ବିରାଟକୁ କହିଲା । ୩୦ ।
ସ୍ୱାମୀ ଭୀମସେନ ବୋଲି ଇନ୍ଦ୍ରପ୍ରସ୍ଥ ରାଜ୍ୟର
ଜାରାସନ୍ଧକଇଂ ସଂଗ୍ରାମେ କଲାକ ଅପହାର । ୩୧ ।
ଯୁଧିଷ୍ଠିର ଦେବଂକର ରାଜୁସି ଯାଗ କାର୍ଯ୍ୟେ
ସମଦଣ୍ଡ ଘେନି ମାରୁତ ପଶ୍ଚିମ ଦିଗବିଜେ । ୩୨ ।
ଅନେକ ରାଜ୍ୟ ସାଧି ବିଜେ କରିଛନ୍ତି ପଞ୍ଚୁଧାରି ପର୍ବତେ
ଶ୍ରୀମୁଖ ଗୋଟିଯେ ସ୍ୱାମୀ ଦେଇଛନ୍ତି ତୋତେ । ୩୩ ।
କୀଚକ ଧରି ତାହାନ୍ତ କରୁଅଛୁ ନିଧନ
ଶୁଣିଣ ମହେଶ୍ୱର ଯେ ଧାମଇଂ ବହନ । ୩୪ ।
କୀଚକର ଭାଇ ତାହାକଇଂ ନେଉଛନ୍ତି ହାଣି
ରହ ରହ ବୋଲି ଦୂରୁଂ ଡାକଇ ନୃପମଣି । ୩୫ ।
ରାଜାର ବଚନେଣ ସମସ୍ତେ ହୋଇଲେକ ଶାନ୍ତ
କାଳଞ୍ଜନ ପଡିହାରିକ କୋଳକରି ଧଇଲା ମହୀପତି । ୩୬ ।

ବନ୍ଧନୁଂ ଫେଡ଼ି ତାହାକଇଂ ବସାଇଲ କୋଳେ
କନେକ ସ୍ନାହାନ କରାଇଲ ମହା ମହୀପାଳେ । ୩୭ ।
କୀଚକ ଭ୍ରାଥାମାନନ୍ତ ରାଗେ ଧଲ ଗାଳି
ସେଡ଼ୁଂଣ ସ୍ୱାମୀକି ଜଗନ୍ନାଥେ ଖଟନ୍ତି ମନର ହ୍ୱିଆଳି । ୩୮ ।
ଯେ ସନେକ ଅଗ୍ୟାନ ତୁମ୍ଭେ ରେ ପାମର ଦୁଷ୍ଟ ମନ୍ଦ
ଦୁଣ୍ଡି ନିରଞ୍ଜନର ଶ୍ରୀମୁଖ କଂପାଇଂ ତୁମ୍ଭେ ନିନ୍ଦ । ୩୯ ।
ଅନେକ ବିନସ୍ତ ଭାବେ କହଇ ମନର ହ୍ୱିଆଳି
ଶ୍ରୀମୁଖ ଦେଖିଲ ସେ ରାଜା କରି ନିଉଗୁଳି । ୪୦ ।
ଶତେ ସହସ୍ର ଦଣ୍ଡଲଇ ଶୁଣ୍ଡିଲ ପରଣାମି
ଶ୍ରୀମୁଖ ମଥାରେ ଲଗାଇ ଉଭା ମହାଧିପ ସ୍ୱାମୀ । ୪୧ ।
କାଳଞ୍ଜନକଇଂ ଅନେକ ଗଉରେବ କରାଇ
ଆସ୍ତାନେ ବରାଟ ତାକୁ ବସାଇଲ ନେଇ । ୪୨ ।
ଶତେଭାର ସୁବର୍ଣ୍ଣେ ସେ କଲାକ ପାଦପୂଜା
ଶ୍ରୀମୁଖ ମୁଦ ଭଞ୍ଜାଇଲ ମହାଦେଶର ରାଜା । ୪୩ ।
ଯାଚକେଶ୍ୱର ମନ୍ତ୍ରୀ ପଢ଼ିଲ ସମସ୍ତ ତରଜା
ଶୁଣିଣ ଶଂକଲ ସେ ବରରାଷ୍ଟ୍ର ଆତ୍ମଜା । ୪୪ ।
ବହୁତ ଯତ୍ନୁଂ ଶୁଣିଲ ବଡ଼ମା
ଦୁସହ କାଳେବରର ଅନେକ ମହିମାଂ । ୪୫ ।
ମନେ ବହୁ ତ୍ରାସ କଲ ଯେ ରାଜା ମହେଶ୍ୱର
ବୋଇଲ ନିଚଯେ ନାଶଗଲ ଯେ ରାଜ୍ୟ ମୋହୋର । ୪୬ ।
ଦୂତକଇଂ ହିଂସାସିଲ କୀଚକ ମହାବୀର
ସଂଚଯେ ଶିରୀ ଆୟୁଷ ତୁଟିଲ ମୋହୋର । ୪୭ ।
ଅନେକ ବିନୋସ୍ତି ହୋଇ କହିଲ କାଳଞ୍ଜନକୁ
ତୋହୋର ଦୟା କଲେ ମୋହୋର ବୁଦ୍ଧି ଅଛଇ ବ୍ରଡ଼ବାକୁ ।୩୮।

---

୪୪।୧ ଯାଚକେଶ୍ୱର ମନ୍ତ୍ରୀ ପଢ଼ିଲ ସମସ୍ତ ପରଜା । (ଝ,ଙ,ନ)
୪୪।୧ ତରଜା—ଲିଖିତ ପ୍ରସ୍ତାବ ।
୪୪।୨ ଶୁଣିଣ ନିସ୍ତରିଲ ସେ ମଙ୍ଗଳସେନର ଆତ୍ମଜା । (ଥ,ଝ,କ)
(ପରଜା = ପରଷ୍କାର)

କୀଚକର କଲ୍ଲ ଦୋଷ ଯେବେ କରପାରୁ କ୍ଷମା
ଧର୍ମଜ୍ଞବନ୍ତ ମୋତେ ହୋଇବ ତୁ ମୋତେ ରକ୍ଷାକଲେ ମହାତମା ।୪୯।
କାଳଞ୍ଜନ ବୋଇଲ୍ଲ ତୁ ଶୁଣ ହୋ ମତ୍ସ୍ୟପତି
ମୁହିଂ ତୋହୋର ଅପରାଧ କଲ୍ଲଇଂନ ଶାନ୍ତି । ୫୦ ।
ସହଦେବ ବୋଲଣ ଯେ ଯୁଧିଷ୍ଠିଂକର ମନ୍ତ୍ରୀ
ଭୂତ ଭବିଷ୍ୟ ଯେ ଗତ ଆଗତ ଆପଣେହେଂ ଜାଣନ୍ତି । ୫୧ ।
ଉତ୍ପତ୍ତି ପ୍ରଳୟ ଯାହାଂଙ୍କୁ ହୋଅଇଟି ଦୃଶ୍ୟ
ସେ ମନ୍ତ୍ରୀ ଥିବ ଯେ ଯୁଧିଷ୍ଠିଂକ ପାଶ । ୫୨ ।
ଅବଶ୍ୟ ରାଜସୂୟଯାଗ ସଭାସ୍ଥେ ସମସ୍ତ ରାଜାଂକର ବାରତା ପଡିବ
କୀଚକର ଦୋଷ ସହଦେବ ଭୀମସେନ ଠାକୁରଂଙ୍କୁ କହିବ । ୫୩ ।
ସେ କଥା ବଞ୍ଚାଣ ଯେ ନ ଯାଇ କଦାଚତେ
ଅବଶ୍ୟ କୀଚକ ବଧ ହୋଇବ ଭୀମସେନ ଠାକୁରଂକ ହାଥେ ।୫୪।
ସମଦଣ୍ଡ ଘେନି ତୁ ଇନ୍ଦ୍ରପ୍ରସ୍ଥ ରାଜସୂୟ ଯାଗକଇଂ ଯିବୁ
ତୋହୋର କୀଚକକୁ ବାବୁ ସଙ୍ଗତେ କେବେହେଂ ନ ନେବୁ ।୫୫।
ମୁହିଂ ଯାବତ କାଳେଣ ଧର୍ମଦୂତ ପେଷକାରୀ
ମୂର୍ଖପଣେ କୀଚକ ହୋ ଅପାର ଦୋଷକରି । ୫୬ ।
ମଧ୍ୟସ୍ଥ ହୋଇଣ ଯେବେ କହିବ ତା ଆଗେ
ଅବଶ୍ୟ ଦ୍ୱନ୍ଦ ହୋଇବ ଓହୋବଳ ଭାଗେ । ୫୭ ।
ଦ୍ୱନ୍ଦ ହୋଇଲେ ପୁଣ ପଡ଼ଇ ଅନେକ ହତ୍ୟା
ତହ ଦୋଷେ ବଢାଇ ଶାସ୍ତି ଯେ ଦିଅଇ ଯମ ଦେବତା । ୫୮ ।
ଯଦ୍ୟପି କୀଚକ ତୋହୋର ହୋଇଲ୍ଲ ଅପରାଧୀ
ସ୍ନେହ ମୋହୋର ସତ୍ୟ ସତ୍ୟ ଠାକୁରଂକ ଶ୍ରୀମୁଖରେ ନ କହିବ ଅବଧି ।୫୯
ଅନେକ ଯୋଗାଡ଼ ଦିଲ୍ଲ ମତ୍ସ୍ୟାଧି ରାଜନ
ନିବୃତ୍ତ ହୋଇଣ ଭୋଜନ କରଇ କାଳଞ୍ଜନ । ୬୦ ।
ବିରାଟ ରାଜାକୁ ଦିଲ୍ଲ ସେ ଅକ୍ଷତ ଗୁଆ
ଉଠି ମଥାରେ ଘେନଲ୍ଲକ ସୁଦେଷ୍ଣା ପ୍ରାଣନାହା । ୬୧ ।
କାଳଞ୍ଜନ ବୋଇଲ୍ଲ ତୋହୋର ଯେତେକ ଥାଠସୈନ୍ୟ
ତାହାନ୍ତ ଘେନି ଇନ୍ଦ୍ରପ୍ରସ୍ଥେ ଚଳସି ବହନ । ୬୨ ।

ପାଣିଦ୍ରବ୍ୟ ଶତେଭାର ଦଲକ ମହାପାଳ
ଭୀମସେନ ଠାକୁରଂକର ଶ୍ରୀମୁଖ ସମ୍ଭାଳ । ୬୩ ।
କାଳଞ୍ଜନ ବୋଇଲା ସ୍ନେହାନ୍ତ ଘେନିଯାଅ ଭୁଞ୍ଜ
ରାଜସୂ ଯାଗଠାରେ ଦେବୁସି ମୁକୁଳଂ । ୬୪ ।
ସ୍ନେହନେକ ଆଗ୍ୟାଂ ଦେଇ ବାହୁଡ଼ଇ ଦୂତ
ଆସନ୍ତ ଅନ୍ତରୀକ୍ଷେ ପବନୁଂ ଆପାତ । ୬୫—୩୦୭୨ ।

---

## ଚନ୍ଦ୍ରସେନ ରାଜାଙ୍କ ଆମନ୍ତ୍ରଣ ଜଣଯ୍ୱବନ୍ଦୁ ରାଜାଙ୍କର ସୂର୍ଯ୍ୟଙ୍କ ପ୍ରତି ସ୍ତବ ଓ ଲଗ୍ନାଜିତ ରାଜାଙ୍କୁ ଆମନ୍ତ୍ରଣ

ଡାହାଳ ଦେଶକୁ ଜିଣି ଚଳଇ ମାରୁତ
ବେଲାଲ ଦେଶେ ପ୍ରବେଶ ପଞ୍ଚଦିନ ରାତ । ୧ ।
ଦୂତେ ଭେଟିଲେ ଯାଇଂ ପବନ ନନ୍ଦନ
ପ୍ରଣମ୍ୟ କରି କାଳଞ୍ଜନ କହିଲା ସକଳ ବିଧାନ । ୨ ।
ବରିଷ ଅପାର ମାନ୍ୟକଲା ଶ୍ରୀମୁଖକୁ
ଦେଖା ଦରଶନ ଧନ ଘେନି ଚଳିଲା ହସ୍ତିନାକୁ । ୩ ।
ଶୁଣି ଭୀମସେନ ହୋଇଲା ସନ୍ତୋଷ
ପ୍ରବେଶ ହୋଇଲେ ଯାଇଂ ବେଲଜଲ ଦେଶ । ୪ ।
ଚନ୍ଦ୍ରସେନ ବୋଲି ଯେ ବେଲାଲ ଦେଶ ରାଜନ
ତାହାର ରାଜ୍ୟେ ଯାଇଂ ପ୍ରବେଶ ଭୀମସେନ । ୫ ।
ଭାଗ୍ୟବର ବୋଲିକରି ତାହାର ଯେ ମନ୍ତ୍ରୀ
ସେ ଯାଇଂ ଜଣାଇଲା ଚନ୍ଦ୍ରସେନ ନରପତି । ୬ ।
ସ୍ୱାମୀ ତୋହୋର ପିତାକୁ ମାଇଲା ଯେଉଂଣ ଜରାସନ୍ଧ
ଯେଉଂଣ ପାଣ୍ଡବ ତାହାକଇଂ ସଂଗ୍ରାମେ କଲା ବଧ । ୭ ।
ପଶ୍ଚିମ ଦିଗ ବରଣେ ସେ ବୃକୋଦର ଜେନା
ରାଜ୍ୟେ ପ୍ରବେଶ ହୋଇଲେ ତାହାନ୍ତ ଦ୍ରଶନ କରୁ କନା । ୮ ।

ବହୁତ ରାଜ୍ୟ ସେ ଆସୁଅଛୁ ଉଜାଡ଼
ସଜ୍ଜନ ରକ୍ଷାପାଳକ ଦୁର୍ଜନ ଜନଙ୍କଇଂ ନିବାର । ୯ ।
ସହସ୍ରେକ ଭାର ଘେନି ପାଣିଦ୍ରବ୍ୟ ଧନ
ସହସ୍ରେକ ଅଶ୍ୱ ଅଷ୍ଟରତ୍ନେ ଖଞ୍ଜିଲା ବିମାନ । ୧୦ ।
ସହସ୍ରେ ପାଟଛତ୍ର ସହସ୍ରେ ବନିତା
ସହସ୍ରେକ ଭାର ବଡ଼ ସୁବାଟୁଳ ମୁକୁତା । ୧୧ ।
ଧନେଣ କୁବେରଙ୍କୁ ସେ ସମାନ ନୃପମଣି
ଅନେକ ରତ୍ନ ଘେନି ବିଜୟେ ତତକ୍ଷଣି । ୧୨ ।
ଭୀମସେନ ଦୂତମାନେ କରନ୍ତି ବାରତା
ସ୍ୱାମୀ ଦର୍ଶନ କରି ଆସ୍ୟେ ଗାଳମାଧବର ସୁତ । ୧୩ ।
ଅନେକ ସମ୍ଭବେ ଦର୍ଶନ କଲକ କୁମାର
ସ୍ୱାମୀ ପିତାଶତ୍ରୁ ଧ୍ୱଂସନ୍ତା ତୁ ଅଭୟେ ବୃକୋଦର । ୧୪ ।
ଅଭୟେ ସୋମବଂଶୀ ଜୀବନ ଚୋର ସାଧୁ
ଶରଣ ରକ୍ଷଣ ତୁ ନିରେଖ ଜନ ବନ୍ଧୁ । ୧୫ ।
ଗଳାରେ କୋଠାର ଲାଇ ଦନ୍ତରେ ତିରଣ
ଶରଣ ପୁକାରଇ ତୁ ଜଗତ ଉଦ୍ଧାରଣ । ୧୬ ।
ବାଳୁତ ବିନୟ ଦେଖି ଦୟା କଲକ ମାରୁତି
ଦଣ୍ଡ ସନ୍ୟ ଘେନି ରାଜୁସିପାରକୁ ଚଳ ଯା ଦ୍ୱାରାବତି । ୧୭ ।
ବେଲ୍ଲଳ ଦେଶ ନୃପତି ପୁଣ ପୁଣ କରଇ ସେବା
କ୍ଷଣେକ ବିଶ୍ରାମି ଦେବ ମୁଣୋହ୍ନି କରିବା । ୧୮ ।
ଭୀମସେନ ବୋଇଲା ମୋତେ ପ୍ରେତେକ ସୁଷ୍ଟ କାହ୍ନିଂ
ରାଜାନ୍ତି ବେଗେ ନିମନ୍ତ୍ରିବ ମୁଂ ପ୍ରେଥେ ରହିଣ ନୁଆରଇ । ୧୯ ।
ଚନ୍ଦ୍ରସେନଙ୍କଇଂ ଚଳାଇ ତହୁଂ ଚଳଇ ବୀରମଣି
କୋଶଳ ଦେଶେ ଯାଇଂ ପ୍ରବେଶ ହୋଇଲେ ଗଦାପାଣି । ୨୦ ।
ଗନ୍ଧନଦୀ ବୋଲିକରି ପ୍ରେକଇଂ ନଦୀଗୋଟି
କଣ୍ୱଋଷିର କର୍ଣ୍ଣରୁ ସେ ଆସୁଅଛୁ ଫୁଟି । ୨୧ ।
ମନ୍ଦର ଅନୁଜ ଶୃଙ୍ଗପୀତ ପରବତ
ମେଘଂକର ଜନ୍ମଭୂମି ତହିଂ ମେଘେ ଥାନ୍ତି ଅନୁବ୍ରତ । ୨୨ ।

ସେ ପର୍ବତ ଉପରେ ଯାଇଂ ଭୀମସେନ ଉଠି
ଦେଖିଲା କୋଶଳ ଦେଶ ସବୁହିଂ କଣପୁ ସୃଷ୍ଟି । ୨୩ ।
ସୁବର୍ଣ୍ଣର ଘର କାନ୍ଥ ସୁବର୍ଣ୍ଣର ରୁଅଶେଣୀ
ସୁବର୍ଣ୍ଣର ଖମ୍ବ ତହିଂ କନେକ ଗୁମ୍ଫେଣି । ୨୪ ।
ସୁବର୍ଣ୍ଣର କଳଶମାନ ବସନ୍ତି ଉପରେ
ଅଳକା ଭୁବନ ଜାଣି ଦିଶଇ ମହାସଞ୍ଚ ନଗରେ । ୨୫ ।
ସେ ନଗ୍ର ଆୟୁତନ ଚଉବିଂଶ ଯୋଜନ ସ୍ଥଳୀ
ସୁବର୍ଣ୍ଣର ପର୍ବତ ବେଢ଼ି ବସଇ ଦ୍ୱାଦଶ ଅର୍ଗଳ । ୨୬ ।
ପର୍ବତେ ଥାଇ ପ୍ରଶଂସା କରଇ ପବନ ଆତ୍ମଜା
କେବଣ ପୁଣ୍ୟବନ୍ତ ପ୍ରାଣୀ ଯେଥେ ଅଛଇ ମହାରାଜା । ୨୭ ।
ପୂର୍ବେ ଯେ ସଞ୍ଚିତ ଥିଲା ଜୀବନ ତାର ଧନ
ଦେଖି ପୁଣ ପୁଣ ପ୍ରଶଂସା କରଇ ପାବେନ । ୨୮ ।
ହିରଜ ବୋଲଣ ଯେକଇ ବେଣ୍ଟକାର
ସେ ରାଜ୍ୟକୁ ଯାଉଅଛି ଘେନିଣ ଗଣ୍ଡାଭାର । ୨୯ ।
ଭୀମସେନ ବୋଇଲା ରେ ରହ ରହ ବେଣ୍ଟକାର
କେବଣ ରାଜ୍ୟହିଂ କେବଣହିଂ ରାଜା ଭୋଗ କରଇ ଯେହାର । ୩୦ ।
କରାତ ବୋଇଲା ସ୍ୱାମୀ ତୁମ୍ଭେ ବହୁତ ଦୂରଦେଶୀ
ଗଣ୍ଡାଭାର ଓହ୍ଲାଇଣ କଡରେ ଯାଇଂ ବସି । ୩୧ ।
ସ୍ୱାମୀ ହରିହର ବଂଶେଣ କଣଯୁବନ୍ଧୁ ବୋଲି ରାଯେ
କଉଶଲ୍ୟା ବୋଲଣ ତାହାର ଉପୁଜିଲା ଯେକଇ ଦୁହିତାଯେ ।୩୨।
ବଡ଼ାଇ ଧାର୍ମିକ ରାଜା ଦାନେଣ ଶୂରବନ୍ତା
ପରଦୁଖେ ଦୁଖୀ ସେ ମାଗନ୍ତାକୁ ଦିଅନ୍ତା । ୩୩ ।
ଅତଅନ୍ତ ଦାନ ଦିଅନ୍ତେ ସେ ଯହୁଂ ହୋଇଲା ଦରିଦ୍ରବାସୀ
ପରଜା ଉପୁଜାଇଲେ ତହୁଂ ନିଅନ୍ତି ଦୁଇରାଶି । ୩୪ ।
କଣକଲ୍ପ କର ନ ଘେନଇ ସଞ୍ଚା
କୃଷିକର ବଞ୍ଚନ୍ତି ତାହାର ଜନପ୍ରଜା । ୩୫ ।

---

୨୬।୧ ସୁବର୍ଣ୍ଣ ପର୍ବତ ବେଢ଼ ଦଶ ଯୋଜନ ଉଗୁଳ । (ଝ,ପ)
❋

କେଉଁଠାଣେ ଅଭିଶାପ ଅଛୁଟି ତାହାର ପୂର୍ବେ
ସେହିତେମାନେ ଦରିଦ୍ରବାସୀ ତାହାର ରାଜ୍ୟେ ପ୍ରଜା ସର୍ବେ । ୩୬ ।
ସଂସାରର ଦୁଃଖ ଦେଖିଣ ସେ କଣସ୍ୱ ନୃପତ୍ୱେ
କରତାରଙ୍କୁ ସେବା କରଇ ଅର୍କନାମେ ଚ୍ଛାର୍ଥେ । ୩୭ ।
ଅଜପା ମନ୍ତ୍ରେଣ ସେ ଆକାଶ ଲିଙ୍ଗ ସେବି
ଅନ୍ନ ପାଣି ତେଜ୍ୟାକଲା ସେ ମହା ବଇଷ୍ଣବୀ । ୩୮ ।
ନିରାହାର କରି ସେ ବସିଲା ରାଜ୍ୟର ଅର୍ଥେ
ବରଞ୍ଚିକ ସେବାକଲା ସେ ପଞ୍ଚଦଶ ବର୍ଷ ପର୍ଯ୍ୟନ୍ତେ । ୩୯ ।
ଅନେକ ଭୁସ୍ତି ସେ ଯେ କରଇ କରତାର
ତମିର ବିଦାରଣ ନାଥ ଜୟତୁ ଭାସ୍କର । ୪୦ ।
ଶୂନ୍ୟ ଭୁବନ ଭେଦ ସ୍ୱାମୀ ଅଣାକାର ନାଥ
ଦିବାରବେ ଦୁଃଖିତ ତୁ ସଂସାର ଜନହିତ । ୪୧ ।
ଅଣାକାର ପୁରୁଷ ତୁ ଚନ୍ଦ୍ରଲୁ ମନଧ୍ୟାୟେ
ମହାପ୍ରଳୟ ବଞ୍ଚିଲୁ ଅଜପା ଯୋଗଲୟେ । ୪୨ ।
କଳ୍ପକେ ଦେଖିଲୁ ତୁ ଅଣାକାର ମୂରତି
ଲଗିଲା ନୟନେ ଦେବ ବିକାଶିଲା ତୋହୋର ଜ୍ୟୋତି । ୪୩ ।
ଅଦଭୁତେ ଗମି ଅଇଲୁ ଦେବ କାହିଁ
ସେ ସଂସାର ପ୍ରଳୟଗଲା ତୋହୋର ନ ଗୃହିଁ । ୪୪ ।
ସ୍ୱାମୀ ମନୁକଳ୍ପ ଅନ୍ତରେ ତୋତେ ସେକଇ ଦିବସ
ବସିଲୁ ନିଚନ୍ତେ ତୁ ନିଦ୍ରାର ଆଳସ । ୪୫ ।
ନିଦ୍ରାକଇଁ ଇଚ୍ଛା ତୁ କଲୁ ଯେତେବେଳେ
ଅରୁଣର ରଶ୍ମି ବିକାଶିଲା ତେତେବେଳେ । ୪୬ ।
ଯେତେବେଳେ ପର୍ଯ୍ୟନ୍ତେ ଥିଲୁ ତୁ ଚଆଇଂ
ସକଳ ଆତଜାତ ହୋଉଥିଲେ ସେ ଯାହା ଠାବେ ରହି । ୪୭ ।
ଚନ୍ତା ଗୁଡ଼ ଦେବ ତୁ ବସିଲୁ ଯୋଗଲୟେ
ସମୋଦ୍ର ଘୋଟିଲା ଦେବ ହୋଇଲା ମହାପ୍ରଳୟେ । ୪୮ ।
ସେକ ରାଜକେ ଦେବ ତୋତେ ହେଲା କଳପେ
ଚଆଇଂ ଉଠିଲୁ ଦେବ ଚନ୍ଦ୍ରଲୁ ଜଳଜପେ । ୪୯ ।

ଶରୀର ମଧ୍ୟୁଂ କାଢ଼ି ପକାଇଲୁ ପଞ୍ଚଧାତୁ
ପଞ୍ଚମୂର୍ତ୍ତିଷେ ଉପୁଜଲେ ଦେବ ତୋହୋର ବ୍ରତ ହେତୁ । ୫୦ ।
ଋଦ୍ଧି ବୁଦ୍ଧି ସିଦ୍ଧି ସନକ ସନାତନ
ପଞ୍ଚପୁରୁଷଙ୍କୁ ନାଥ ପ୍ରଥମେ କଲୁ ଜନ୍ମ । ୫୧ ।
ଏହି ପାଞ୍ଚଙ୍କର ତହୁଂ ଦେବ କାଢ଼ିଲୁ ପଞ୍ଚ ଆତ୍ମା
ଏକ ମୂର୍ତ୍ତି ହୋଇଲା ସେ ପଞ୍ଚ ବ୍ରହ୍ମ ବ୍ରହ୍ମା । ୫୨ ।
ସତ୍ୟ ଆଚରି କରି ପ୍ରଥମେ ଦେବ ସଞ୍ଚ
ଧାତା ବ୍ରହ୍ମ ପୁରୁଷ ଅନନ୍ତ ବିରଞ୍ଚି । ୫୩ ।
ଆଜ୍ଞାଂ ଦେଲୁ ସେ ଦେବ ପୁରୁଷକଇଂ ରାଇ
ଅଣାକାର ଦ୍ରୁଶନ କରି ସୃଷ୍ଟି ନ୍ତ ଭିଆଇ । ୫୪ ।
ତୋହୋର ଆଜ୍ଞାଂଏ ସେ ସଞ୍ଚିଲା ସଚରାଚର
ଚଉରାଶି ଚଉରାଶି ଲକ୍ଷ ଜୀବଜନ୍ତୁ ସେ ଭିନ୍ନ ଭିନ୍ନ ପ୍ରକାର । ୫୫ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏହି ତିନି ତ୍ରଇଲୋକ୍ୟ
ଅନନ୍ତମୂର୍ତ୍ତି ଗୋଟିଏ ପାଇଲୁ ଦେବ ଏକ । ୫୬ ।
ଦଇବତ ପୁରୁଷଙ୍କର ସ୍ୱାମୀ ତୁହି ସେ ଦିବ୍ୟ ଚକ୍ଷୁ
ଯେ ଯାହା କରୁଅଛି ତାହା ତୁ ପ୍ରତକ୍ଷେ ଦେଖୁଅଛୁ । ୫୭ ।
ଦେଖିଣ ଶାସ୍ତି ଯେ ବନ୍ଧୁ ଏହି ସଂସାରେ
କରତା ଉଦ୍ଧାରନ୍ତା ନାଥ ନାମ ତୋ କରତାରେ । ୫୮ ।
ଜାତ ଅନ୍ତ ମଧ୍ୟ ଦେବ ଆଦ୍ୟସ୍ଥାନ ତୁହି
ପ୍ରଜାପତି ପୁରୁଷ ତୁ ତୋ ତହୁଂ ଆନ ନାହିଂ କେହି । ୫୯ ।
ଜାତ ଅନ୍ତକଇଂ ତୁହି ସେ କରତା
ତୋହୋର ତହୁଂ ଜାତ ହୋଇଲା ନାଶକର ଦେବତା । ୬୦ ।
ତାହାକଇଂ ହକରାଇ ଆଜ୍ଞାଂ ଦେଲୁ ଦେବ
ତୁ ସେ ପାପ ପୁଣ୍ୟ ବୁଝି ବିଗ୍ରହ ନାଶ କରିବୁ ସର୍ବ । ୬୧ ।
ସ୍ୱାମୀ ଆଦ ଅବତାରେଣ ତୋହୋର କୋଟିଏ କରଣ ରଣି
ସଂଗ୍ରାମଂ ସହି ନୁଆରିଲେ ସେ ପରମ ବଇଷ୍ଣବୀ । ୬୨ ।
ଭଏ କରି ଦେବୀ ସନ୍ତୁଂ ହୋଇଲେ ଅନ୍ତର
ସଂଗ୍ରାମଂର ନିମନ୍ତେ ବସିଲୁ ଅଚଳ ଶିଖର । ୬୩ ।

ନବ ଲକ୍ଷ ନଉ ସହସ୍ର ଯେ ତୋହହାର କରଣ
ସ୍ୱେତେକ ଛୁଁନାଇଲୁ ଦେବ ବସିଣ କୁନ୍ଦେଣ । ୬୪ ।
ସ୍ୱାମୀଙ୍କ ଦେଖି ସଂଗ୍ୟାଂ ଦେବୀ କୋଳକଲା
ସହସ୍ରେ କରଣ ଦେବୀ ତୋହୋର ସହିଲା । ୬୫ ।
ସେ ସେ ପରମ ସାଧବୀ ଦେବୀ ଅପର୍ଣ୍ଣା ଆଦ୍ୟ ସଂଗ୍ୟାଂ
ଛଟିଶକୁଳେ ଉପୁଜଲା ସେ ରୁହାଇଲା ସୀମା । ୬୬ ।
ସ୍ୱାମୀ ଦକ୍ଷର ନନ୍ଦମା ଯେ ଅଟଇ ସଂସାର ହିତକାରୀ
ବୋଇଲା ମୁହିଂ ଯେବେ ତେଜ ସ୍ୱେହାର ସହିତ ନୁଆରି । ୬୭ ।
ସ୍ୱେ କଳିଯୁଗର ଲୋକ ସହିବେ କେମନ୍ତେ
ସକଳ ଦହନ ହୋଇବ ନାଶ ଯିବେ ସ୍ୱେ ବନପର୍ବତେ । ୬୮ ।
ସଂସାର ହିତେ ଦେବୀ ଗଲେକ ଅପସରି
ତହୁଂ ସେ ସହସ୍ରେ କରଣ ହୋଇଲେ ଗଗନ ବିହାରୀ । ୬୯ ।
କୋଟିସ୍ୱେ କରଣ ଆଦିତ୍ୟର ଯେବେ ଥାନ୍ତା
ଜନ ଜନ୍ତୁ ବୃକ୍ଷ ପର୍ବତ କୀଟ ପତଙ୍ଗ ସବୁ ଦହନ ହୁଅନ୍ତା । ୭୦ ।
ପର ଦୁଖେଣ କାତର ପରଲୋକେ ଚିନ୍ତା
ପରମାନନ୍ଦ ସ୍ୱାମୀ ତୁମ୍ଭେ ସେ ବରଦାତା । ୭୧ ।
ସ୍ୱାମୀ ତୁ ଦେବ ବିବୁଧାଦ୍ୟ ଦେବଂକ ଅନାଦ୍ୟ
ଯୋଗୀଜନଂକର ହୃଦରେ ତୁ ଚଳସ୍ୱେ ସମ୍ବାଦ । ୭୨ ।
ଉଦୟଗିରି ପ୍ରଦକ୍ଷିଣ କରୁ ତୁ ନିତ୍ୟପ୍ରତି
ତବ ଦରଶନେ ପ୍ରାପତ ନାଥ ଭକତି ମୁକତି । ୭୩ ।
ଗୁପ୍ତାର ବଲ୍ଲଭ ନାଥ ସପତଅଶ୍ୱ ଶାହୀ
ନିର୍ମଳ ମୂରତି ତୋର ଦେଖନ୍ତା କେହି ନାହିଂ । ୭୪ ।
ସ୍ୱାମୀ ଅନିତ୍ୟ ସଂସାର ସ୍ୱେ ଅଥଳ ସାଗର
ରାଗ ମୋହ ହିଂସାକଇଂ ଲଗିଲା ବଡଭାର । ୭୫ ।
ଅପଣ୍ଡିତ ଅଗ୍ୟାନ ବୁଦ୍ଧି ମୋହୋର କସ
ଶ୍ରୀ ଗିରିଜାର ପ୍ରସନ୍ନେ ମୋତେ କଣକଲୁ ହୋଇଲକ ଦୃଶ୍ୟ । ୭୬ ।
ସ୍ୱାମୀ ବିରଞ୍ଚି ନାରାୟଣଂକର ଚରଣେ ଦଇନି
ହୃଦଗତେ ଚିନ୍ତଇ ସାରଳା ଦାସ ଶୂଦ୍ରମୁନି । ୭୭ ।

ଆହୋ ବଇବସୁତ ମନୁ ବରଞ୍ଚ ନାରାୟଣଂକୁ ସ୍ନେକଧ୍ୟାୟେ
ଅନେକ ଭୁସ୍ତି କଲା ସେ କଣୟବନ୍ଦ୍ର ସ୍ୱୟେ । ୭୮ ।
ପ୍ରସନ୍ନ ହୋଇଲେ ସ୍ୱାମୀ ଅଭୟେ କରତାର
ବୋଇଲେ କଣୟକେଶରୀ ମାଗ ଭୁହ୍ନିଂବର । ୭୯ ।
ସେସନେକ ପ୍ରସନ୍ନ ସହୁଂ ହୋଇଲେକ ବରଞ୍ଚ
ଅର୍କଦଇତ୍ୟ ବୋଲି ସେ ଚନ୍ଦ୍ରଭାଗା ତୀର୍ଥେ ଅଛୁ । ୮୦ ।
କଣୟ ଭୁସ୍ତି ଦେଖି ଭାଳଇ ଅର୍କ ଅଇର
ସେହ୍ନକ୍ଷଣି ବରଦେବ ଗଗନ ବହାର । ୮୧ ।
ନ ପୁଣ ମାଗଇ ସେ ମୋହୋର ମଣ୍ଡଳ
ଲୋହାର ଲଉଡ଼ଯେ ଘେନି ଧାମଇଂ ଗୃଣ୍ଡାଳ । ୮୨ ।
ବରଞ୍ଚିକ ସୁତକରି ସେ ପ୍ରଣପତ୍ୟ ରାଜା
ଲୁହାର ଲଉଡ଼ ଘେନି ପିଟି ଲୋଡ଼ଇ ଦନୁଜା । ୮୩ ।
ଲକ୍ଷେକ ଯୋଜନେ ଥାଇଂ ଦେଖିଲେ ଦେବରାଜ
କର ବଢ଼ାଇଣ ଧଇଲେ ଅର୍କଦଇତ୍ୟ ଭୁଜ । ୮୪ ।
ଦେଖ ହୋ ମହିମାଂ ଯେ ବରଞ୍ଚ ନାରାୟଣ
ଆକାଶୁଂ ଭୁଜ ବଢ଼ାଇଲେ ଲକ୍ଷେକ ଯୋଜନ । ୮୫ ।
କୋପେ ହାକନ୍ଦିଲେ ସେ ଗଗନ ବିହାରୀ
ଆରେ ଆରେ ଦାନବ ତୁ ସେତେ ତପୀନ୍ତ ନାଶକରି । ୮୬ ।
ବରଞ୍ଚ ବୋଇଲେ ରେ ତୀର୍ଥ ନାଶ କରୁଛୁ ମୋହୋର
ଅର୍କ ଦଇତକୁ ଧରି କଗୃଡ଼ଲେ କରତାର । ୮୭ ।
ସୂର୍ଯ୍ୟାସ୍ତ୍ରତେକ ଚକ୍ର ମାଇଲେ ଅଂଶୁମାଳୀ
ଅର୍କଦଇତର ଭଙ୍ଗ ନୋହିଲା ରୋମାବଳୀ । ୮୮ ।
ଆକାଶେ ଥାଇଂ ଡାକ ଦଅନ୍ତି ଦୃଢାଅର୍କେ
ସ୍ୱାମୀ ଅର୍କଦଇତ୍ୟକୁ ଛାଡ଼ିଲେ ମରିବୁଂ ଦେବଲୋକେ । ୮୯ ।
ଦେବତାଂକର ଅନେକ ବିନୟ ବଚନେ
କୋଣାଅର୍କେ ମାଡ଼ ବସିଲେ ଉତ୍ତର ସିନ୍ଧୁ କୂଳେ । ୯୦ ।
ପୃଥୀର ଅଗ୍ନିକୋଣେ ଚନ୍ଦ୍ରଭାଗା ପଶ୍ଚିମ ପ୍ରଶସ୍ତେ
କୋଣାଅର୍କ ବୋଲି ଧାତା ନାମ ଦିଲା ଶାହାସ୍ତ୍ର ସଙ୍ଗତେ । ୯୧ ।

ଅର୍କଦତ୍ୟଙ୍କୁ ମାତ୍ରବସି ଦେବ ହୋଇଲେ ପ୍ରସନ୍ନ
ବର ମାଗରେ କଣପୁକେଶରୀ ଯେ ତୋହୋର ମନ । ୯୨ ।
ସ୍ୱାମୀ ଦିନକର ନାଥ ପ୍ରସନ୍ନ ହୋଇଲୁ ଯେବେ ମୋତେ
ମୋହୋର ରାଜ୍ୟେ କଣପୁ ବୃଷ୍ଟି କରବୁ ସପତ ଦିବସ
ପରଯନ୍ତେ । ୯୩ ।
ଜନ ପ୍ରଜାମାନେ ମୋର ହୋଇବେ ସର୍ବେ ସୁଖୀ
ସଦା ସମ୍ପଦ ହୋଇବ ନୋହିବେ କେହି ଦୁଖୀ । ୯୪ ।
ଆଦିତ୍ୟ ବୋଇଲେ ସପତଦିନ କଣପୁ ବୃଷ୍ଟି କଲେ
ଶସ୍ୟ କେହ୍ନେ ଉପୁଜିବ ପୃଥିବୀ ନ ଥିଲେ । ୯୫ ।
କଣପୁବନ୍ଧୁ ବୋଇଲେ ନୋହିଲେ ବରଷିବୁ ସାତଘଡି
କରତାର ବୋଇଲେ ତେମନ୍ତେ ପୋତା ହେବ ବସୁନ୍ଧରୀ । ୯୬ ।
ସାତଘଡି ଗୁଡି ସାତଦଣ୍ଡ ପରଯନ୍ତେ ବରିଷିଲେ କଣପୁ
ରାଜ୍ୟଯାକ ତାର ହାଦେ ହୋଇଲା କଣପୁମୟୁ । ୯୭ ।
ବିରାଜ ଶବର କହଇ ଭୀମସେନ ଅଗ୍ରତେ
ରାଜ୍ୟେଣ କଣପୁ ବୃଷ୍ଟି ହେଲା ସାତଦଣ୍ଡ ପରଯନ୍ତେ । ୯୮ ।
କଣପୁବନ୍ଧୁର ରାଜ୍ୟ ଯେ ଅଛଇ ସତ୍ୟଯୁଗେ
ଦ୍ୱାପରେ କୋଶଳ ଦେଶ ଅଛଇ ହାଦେ ଯେୂବେ । ୯୯ ।
କିରାତ ବୋଇଲା ସ୍ୱାମୀ ପୂର୍ବେଣ ଯେୂ ଗିରି ନିର୍ମିତ
ତ୍ରେତୟା ଯୁଗେ ଯେୂ ନଗ୍ର ସଞ୍ଚିଲା ଯେୂଥେ କଣପୁବନ୍ଧୁ ନୃପତ।୧୦୦।
କଉଶଲ୍ୟାଂକ ପିଅର ଶ୍ରୀରାମ ଯାହାର ନାତି
ହଇହୟୁ ବଂଶେଣ ରାଜା ଜଗତେ ବିଖ୍ୟାତି । ୧୦୧ ।
କଣପୁବନ୍ଧୁର ପୁତ୍ର ହୋଇଲା ସରଜାତି
ତ୍ରେତୟାଯୁଗେ ସେ ଅନେକ ହୋଇଲା ବିଖ୍ୟାତି । ୧୦୨ ।
ତାହାର ପୁତ୍ର ଦେବ ହୋଇଲା ଲଗ୍ନାଜିତ
ଲକ୍ଷଣା ବୋଲି ତାହାର ଦୋହିତାଏ ସମ୍ଭୂତ । ୧୦୩ ।
ସପ୍ତମେ ପ୍ରଦାନ ତାଙ୍କୁ ହୋଇଲେ ବାସୁଦେବ
ସେ କନ୍ୟାର ତହୁଂ ଉପୁଜିଲେ ବସନ୍ତ ଆଉ ସଦାଶିବ । ୧୦୪ ।

ବିରାଜ ଶବର କହଇ ତୁମ୍ଭେ ଶୁଣସି ନୃପତି
ଯେ କୋଶଳ ଦେଶର ରାଜା ଯେବେ ଲଗ୍ନାଜିତ ଚନ୍ଦ୍ରରାଷ୍ଠ । ୧୦୫ ।
ଭୀମସେନ ବୋଇଲା ରେ ଚଳାଅ ବେଗେ ବଳ
ପରି ରେ ରାଜ୍ୟେ ବୋଇଲେ ଷତ୍ରିୟୂଂ ଅଗର୍ଗଳ । ୧୦୬ ।
ମରୁତ ସାରଥି ବୋଇଲା ତୁ ଶୁଣସି ହୋ ବିରାଜ
ବାରତା କର ନେଇ ତୋର କୋଶଳ ମହାରାଜ । ୧୦୭ ।
ବୋଲିବୁ ଜାରି ନିବାରଣ ପାଣ୍ଡବ ସୋହଢ ସୁନ୍ଦର
ପଶ୍ଚିମ ଦିଗ ବରଣେ ଭୀମସେନ ଠାକୁର । ୧୦୮ ।
ରାଜସୂୟ ଯାଗ କରିବେ ଯୁଧିଷ୍ଠି ରାଜଦେବ
ପଶ୍ଚିମ ଦିଗ ରାଜାମାନେ ତୁମ୍ଭେ ସମସ୍ତେହେଂ ଯିବ । ୧୦୯ ।
ମରୁତ ସାରଥି ବଚନେ ଚଳଇ ବିରାଜ
ଲଗ୍ନାଜିତ ଗ୍ରୁମୁରେ ପ୍ରବେଶ ଶବର ରାଜ । ୧୧୦ ।
ସ୍ୱାମୀ ଅବଧାରି ହୋଇବା କୋଶଳ ଦେଶ ଅଧିକାରୀ
ପାଣ୍ଡବ ଭୀମସେନ ଯେ ଜରାସନ୍ଧ ନିବାରି । ୧୧୧ ।
ରାଜସୂୟ ଯାଗ କରିବେ ଯୁଧିଷ୍ଠି ପଣ୍ଡୁଙ୍କ ନିମନ୍ତେ
ପଶ୍ଚିମ ଦିଗ ବରଣ ପାଣ୍ଡବ ପ୍ରଶସ୍ତେ । ୧୧୨ ।
ସମସ୍ତ ନୃପତିମାନେ ଯାଉଛନ୍ତି ଶରଧେ
ଯେ ଗରିମା କହଇ ତାହାକରିଂ ନାଶ କରଇ ଯୁଦ୍ଧେ । ୧୧୩ ।
ଗ୍ୟାନସେନ ମନ୍ତ୍ରୀ ଜଣାଇଲ୍କ ଅନେକ ବିନୋସ୍ତୀ
ପାଣ୍ଡବ ବାସୁଦେବ ଅଭିନ୍ନ ନୋହେ କେହ୍ନି । ୧୧୪ ।
ସନ୍ୟ ଘେନିଣ ପାଶ୍ରେଟି ହୋ ଯିବା ଗୃଲ ବେଗ
ଶୁଣିଣ ସାନନ୍ଦ ରାଜା ଉଛୁକ ଉଦବେଗ । ୧୧୫ ।
ପାଯେଣ୍ଡା ପଡିଲା ସେହି ରାଜ୍ୟର ଭିତରେ
ସୁବର୍ଣ୍ଣର ବନ୍ଧା ଗୃମର ରାଜା ଧରିଅଛି କରେ । ୧୧୬ ।
କଟକ ଭିତରେ ପଶି ଆସଇ ପାବେନି
ମତ୍ତଭୋଳ ଯୋଦ୍ଧାଏ ପଶନ୍ତି ଶସ୍ତ୍ର ଘେନି । ୧୧୭ ।
ଭୀମସେନ ଠାକୁରେ ବିଜେ କରିଛନ୍ତି ରଥେ
ଗ୍ରୁମୁରେ ବେନି ଗୃମର ଘେନି ପ୍ରଣପତ୍ୟ ଲଗ୍ନାଜିତେ । ୧୧୮ ।

---

୧୧୭।୨ ଉଗ୍ରହେଲା ଯୋଦ୍ଧାଏ ପଶନ୍ତି ଶସ୍ତ୍ର ଘେନି । (ଥ,ଝ)

ଅନେକ ବନୋୟୀ ଲଗ୍ନାଜିତ କହଇ ପରଣାମି
କ୍ଷର୍ଣୀବର ସୋହନ୍ତ ସୁନ୍ଦର ନାଥ ମୋତେ ରକ୍ଷାକର ସ୍ୱାମୀ ।୧୧୯।
ରଥରୁ ଓହ୍ଲାଇ ଯୁଝେଷ୍ଟି ଦେବଂକ ଅନୁଜ
ଉଠ ଉଠ ନରେନ୍ଦ୍ର ବୋଲି ଧଇଲେ ତାର ବେନିଭୁଜ । ୧୨୦ ।
ତୁ ପୁଣି ଶ୍ରୀଜଗନ୍ନାଥ ଦେବଂକର ଶ୍ୱଶୁର ଅଟୁ
ତୁ ମୋହୋର ପିତାର ସମାନ ଚରଣେ କଂପେ ଖଟୁ । ୧୨୧ ।
କରପଦ ଯୋଡଣ ଯେ ଲଗ୍ନାଜିତ ପଗୃର
ପଞ୍ଚଜଗତ ଠାକୁର ତୁ ହଇଲେକ ଅଧିକାରୀ । ୧୨୨ ।
ଦାସୀ ଠାକୁରାଣୀ ଯେବେ ପ୍ରେକଯୋଗ ହୋଇ
ଦୁହେଂ ସମାନ ହୋଇବେ କ ଲଗ୍ନାଜିତ କହି । ୧୨୩ ।
ବେନିଭୁଜେ ଗୃମର ଯେ ତାଳଇ ଲଗ୍ନାଜିତ ନରପତି
ଅନେକ ପାଠଛନ୍ଦ ଉଦ୍ଦଣ୍ଡ ପ୍ରେକଲକ୍ଷୀ ବାରଛନ୍ଦୀ । ୧୨୪ ।
ନଗ୍ରଯାକ ରାଜ ପାଯ୍ୟୋଡା ଅଚ୍ଛି ପାଡ
ଚଳଇ ପାଣ୍ଡବ ସୁନ୍ଦର ଜାଣି ବହ୍ନମକେଶରୀ । ୧୨୫ ।
କୋଶଳ ରାଜ୍ୟ ଶୋହିଲା ଯେ ଭୀମସେନ ପଶନ୍ତେ
ଜନ ଗହଳେ ଦେଖନ୍ତି ପୁରୁ ଅପ୍ରମିତେ । ୧୨୬ ।
ବାହାର ଗଡ ଜିଣିଣ ଆସ୍ଥାନ ଜଗତ୍ତି
ତହିଂ ଯାଇ ବଜେକଲା ପାଣ୍ଡବ ତୋଷମନ୍ତି । ୧୨୭ ।
ଅନେକ ସାନନ୍ଦେ ରାଜା ଉତ୍ସବ କରାଇ
ବହୁତ ବାଧି ରାଜା ସାନନ୍ଦେ ବଅଇ ବଧାଇ । ୧୨୮ ।
ଘୋଷଣ ଶବଦେଣ ଆନନ୍ଦ ନଗ୍ରନାରୀ
ଇନ୍ଦ୍ର ବଜେକଲେ ଯେହ୍ନେ ଆନନ୍ଦ ମଞ୍ଚପୁରୀ । ୧୨୯ ।

---

୧୨୯।୨ "ଇନ୍ଦ୍ର ବଜେକଲେ ଯେହ୍ନେ ଆନନ୍ଦ ମଞ୍ଚପୁରୀ" ପରେ 'କ'ରେ ଅଧିକା ପାଠ—

ଆସ୍ଥାନ ଉପରେ ବଜେସ୍ତେ ଭୀମସେନ
ତଳେ ପଟୋଆଣୀ ଅଛନ୍ତି ଲଗ୍ନାଜିତର ସନ୍ୟ ।
କରପତ୍ର ଯୋଡି ଲଗ୍ନାଜିତ ବୋଲଇ
ହେ ଦେବ ମୋହୋର ପୁରେ କରବାକ ଆଜ ମୁଣୋହି ।
ସାନନ୍ଦେ ଭୀମସେନ ବୋଲଇ ବଚନ
ବେଗକର ମୁଣୋହି କର ହୋ ପଞ୍ଚାଣ ।

ସୂପକାରମାନନ୍ତ ରାଇ ଆଗ୍ୟାଂ ଦେଲକ ନୃପତି
ବେଗେ ଯୋଗାଡ଼ କର ହୋ ଗଉଗ୍ରା ଶଉଗ୍ରା ନଳବିଧି ଭିନ୍ନ ପ୍ରତି ।୧୩୦।
ବେନି ଅଶ୍ବିବ୍ରତେକ ଯେ ସୂପକାରମାନେ
ଲାଗିଲେ ସେ ଅମୃତରସ ରାନ୍ଧଣା ବିଧାନେ ।୧୩୧।
ନିତ୍ୟାପ୍ରତି ବିଧାନ ଷାଠିପ୍ରେ ପଉଟି ଅନ୍ନ
ସୂପକାରମାନେ ବେଢି ସର୍ବେ କରନ୍ତି ପଚନ ।୧୩୨।
ଆହାର୍ତ୍ତିକ ସାରି ଭୀମସେନ ମୁଣୋହ୍ବରେ ବିଜେ
ଶଙ୍ଖଧ୍ବନି ଶବଦ ଯେ ସପୋଡ଼ଶେ ବାଜେ ।୧୩୩।
ମୁଣୋହ୍ବ ସାରଣ ଶାର ଯେ କରନ୍ତି ଆଞ୍ଚୋବନ
ବିଜୟେ ମାରୁତି ଯେ ଚନ୍ଦ୍ରଶାଳା ଭୁବନ ।୧୩୪।
ତାମ୍ବୁଲ ଭୁଞ୍ଜିଣ ଚଉସମ କାୟେ ଲେପନ
ଦିବ୍ୟ ଅବତାର ସେହି ପାଣ୍ଡୁର ନନ୍ଦନ ।୧୩୫।
ଆହୋ ଲଗାଜତ ରାଜାକଇଂ କଲେକ ନିମନ୍ତ୍ରଣ
ସମଦଣ୍ଡ ଘେନି ଇନ୍ଦ୍ରପ୍ରଶସ୍ତକୁ ଚଳ ହୋ ସ୍ବେହ୍ବକ୍ଷଣ ।୧୩୬।
ଯେତେକ ଅଛଇ ତୋହୋର ପାରିଦଣ୍ଡ ସଇନ
ସ୍ବେହ୍ବକ୍ଷଣି ବାହାର ହୋଅସି ଅନକୂଳ ଘେନି ।୧୩୭।
ସ୍ବେତେ କହି ବୃକୋଦର ଉଠିଲେ ତଉତି
ବିଜେକଲେ ଯାଇଂ ବହନ ରଥକତି ।୧୩୮।
ଥୋକାଏକ ଦୂର ରାଜା ଗୋଡ଼ାଇ ଯାଉଛନ୍ତି
ବାହୁଡ଼ାଇ ଭୀମସେନ ଚଳାଇଲା ଆଠଗୋଟି ।୧୩୯।
କୋଶଳ ଦେଶରୁ ଯେ ଚଳଇ ଲଗ୍ନାଜତ
ହସ୍ତିନା ଭୁବନକଇଂ ସେ ଚଳଇ ତୁରିତ । ୧୪୦।

---

୧୩୦।୧ ଖଣ୍ଡିଆମାନନ୍ତ ଆଗ୍ୟାଂ ଦେଲକ ନରପତି । (ତ୍ତ,ନ)

୧୩୫।୨ "ଦିବ୍ୟ ଅବତାର ସେହି ପାଣ୍ଡୁର ନନ୍ଦନ" ପରେ 'ଠ' ପୋଥିରେ ଅଧିକା ପାଠ—

ଭୁଞ୍ଜିଣ ନୃପତି ହେଲେ ସକଳ ସଇନ
ସ୍ବେ ସମସ୍ତେ ଲଗ୍ନାଜତେ ଡକାଇ ପାବେନ ।
ଅକ୍ଷତ ଗୁଆ ଦେଇଣ କଲେ ନିମନ୍ତ୍ରଣ
ଆଠ ଘେନି ଚଳ ଇନ୍ଦ୍ରପ୍ରସ୍ତେ ସ୍ବେହ୍ବକ୍ଷଣ ।



ଜମ୍ବୁକୁ ଜାନକୀର ପତି ଶ୍ରୀ ରାମଚନ୍ଦ୍ର
ବାଲୀକି ମାରି କିଷ୍କିନ୍ଧ୍ୟାରେ ସୁଗ୍ରୀକି ଦେଲୁ ରାଜପଦ ।୧୪୧।
ସିନ୍ଧୁରେ ସେତୁବନ୍ଧ ବାନ୍ଧିଲୁ ଦେବ ହେଲେ
ସୁବଲସ୍ଥାରେ ବିଶ୍ରାମ କଲୁ ଭୁଜବଳେ ।୧୪୨।
ସେ ସ୍ଥାନେ କଟକ କଲେ ସୀତାସ୍ୱାମୀ ରମଣ
ତରେ ପାଦେ ଶରଣ ପଶିଲୁ ବିଭୀଷଣ ।୧୪୩।
ରାବଣକୁ ବଧକଲେ ସୀତାସ୍ୱାର ପାଇଂ
ଲଂକାରେ ରାଜପଦ ବିଭୀଷଣକଇଂ ଦେଇ ।୧୪୪।
ଜାନକୀ ଘେନିଣ ଅଇଲେ ନିଜ ପୁର
ନିଯୋଗୀ ଲୋକମାନନ୍ତ ଘେନିଣ ସଙ୍ଗତର ।୧୪୫।
ସେ ଦାଶରଥିଂକ ଚରଣ ଅରବିନ୍ଦେ ଶରଣ
ଶୂଦ୍ରମୁନି ସାରଳା ଦାସ ମାଗଇ ଅନୁକ୍ଷଣ ।୧୪୬—୩୨୦୮।

———

## କର୍ଣ୍ଣକେଶରୀ ଓ ରାମଚନ୍ଦ୍ର ରାଜାଙ୍କ ନିମନ୍ତ୍ରଣ

କୋଶଳ ଦେଶୁଂ ଭୀମସେନ ଥାଟକୁ ଚଳାଇ
କନେକ ଦେଶରେ ବୀର ପ୍ରବେଶ ହେଲା ଯାଇଂ ।୧।
ମଳୟ ବସନ୍ତ ବୋଲି ଯେଉଁକଇ ପର୍ବତେ
ଦଣ୍ଡ ଘେନି ପ୍ରବେଶ ଯେ ପବନର ସୁତେ ।୨।
ବୀରତୂର ବଜ୍ରଘୋଷ ଢୋଲ ବୀର କାହାଳୀ
ଘୋର ଶବଦ ବାଦ୍ୟେ ବ୍ରହ୍ମାଣ୍ଡ ଉଛୁଳ ।୩।
କଣସୁଭାଗୀ ବୋଲି ସେ ଯେଉଁକଇ ନଦୀଗୋଟି
ସୁବର୍ଣ୍ଣଭଦ୍ରାଡଂ ସେ ବହି ଆସଇ ଫୁଟି ।୪।
ସେ ନଦୀର ଉତ୍ତର ଭାଗେ କର୍ଣ୍ଣଦେଶ ବସଇ
କର୍ଣ୍ଣକେଶରୀ ବୋଲି ସେ ରାଜାର ନାମ ଅଟଇ ।୫।
ବଡାଇ ପ୍ରତାପୀ ରାଜା ସେ କର୍ଣ୍ଣକେଶରୀ
ଶୃଙ୍ଗଶତ ପାରଦଣ୍ଡ ଉପରେ ଅଧିକାରୀ ।୬।

ଚଉଦ କ୍ଷଉଣୀ ବଳ ତାହାକଇଂ ଖଟଇ
ଅନୁବ୍ରତେ ରାଜା ବଳ ସାଜଥାଇ ପରରାଷ୍ଟ୍ର ପାଇଂ ।୭।
ଗହଳ ନିଶାଣ ଟମକ ମହୁରି ବାଜେ
ବଜାଏ ବ୍ରୃକୋଦର ଯାଇଂ ସେ କର୍ଣ୍ଣକେଶରୀ ରାଜ୍ୟେ ।୮।
ସମଦଣ୍ଡ ଘେନି ରାଜା ପଶିଅଛୁ ବେଣ୍ଟ ବନୋଦେ
ଚରଗଣକଇଂ ରାଇ ପଚ୍ଛରଇ ରାଜା କାହ୍ନିଂର ବାଦ୍ୟ ଶବଦେ ।୯।
କରପଦ ଯୋଡ଼ି ତାକୁ କହିଲେ ମୁନେହି
ସ୍ୱାମୀ କେଉଂଣ ଦେଶର ରାଜା ଆସୁଛୁ ଦଣ୍ଡ ବାହି ।୧୦।
ରଥ ଗଜ ଅଶ୍ୱଆଦି ସଇନ ପାଦାନ୍ତ
ବହୁତ ଦୂରର ସେ ଅଟଇ ମହାରଥୀ ।୧୧।
ମହାପ୍ରତାପ ତାହାର ବହୁତ ପ୍ରତଗ୍ୟାଂ
ପଛିମ କୋଶଳ ରାଜା ତାହାନ୍ତ ନୋହନ୍ତ ଅବଗ୍ୟାଂ ।୧୨।
ବହୁତ ରାଜ୍ୟ ଦେବ ଆସୁଛୁ ସାଧିକରି
ଯୋଂଉଂ ରାଜା ଗାଡ କରଇ ତାହାର ରାଜ୍ୟ ହୁଅଇ ଉଜାଡ଼ ।୧୩।
ଶୁଣିକରି କୋପକଲା ସେ କର୍ଣ୍ଣକେଶରୀ
ଯୋଦ୍ଧାନ୍ତ ରାଇ ଆଗ୍ୟାଂ ହେଲା ତାହାକଇଂ ଆଗ ଧରି ।୧୪।
ରାଜାର ଆଗ୍ୟାଂଏ ସେହୁ ଶୂରସେନ ମନ୍ତ୍ରୀ
ସାଜିଲା ଦଣ୍ଡଯାକ ତାହାର ବତିଶଲକ୍ଷ ରଥୀ ।୧୫।
ମହାମତ୍ତ ଦନ୍ତା ସେ ପାଞ୍ଚଗୋଟି ମହାନାଗ
ଚଉଖର୍ବ ରେଖାର ସେ ସାଜିଲା ତୁରଙ୍ଗ ।୧୬।
ବଶାଶତେ ଖର୍ବ ତାହାର ସାଜଲେ ସଇନ
ବାହାରଲେ ଶୂରସେନ ରାଜାର ଆଗ୍ୟାଂ ଘେନି ।୧୭।
ଭୀମସେନ ରହିଅଛନ୍ତି ମଳୟବସନ୍ତ ପର୍ବତେ
ଦଣ୍ଡ ଘେନି ଶୂରସେନ ଆସି ଭେଟିଲା ତୁରିତେ ।୧୮।
ଗିରିବର ଶିଖକୁ ଉଠନ୍ତେ ବେଗେ ଧାଇଂ
କରରେ କୁନ୍ତ ଖଡଗ ଯେ ମୁଷଳ ବୁଲାଇ ।୧୯।
ଡାକ ହାକେ କମ୍ପଇ ଯେ ବନସ୍ତ ମହାଘୋର
ରେ ରେ କାର ଶବଦେ ଡାକନ୍ତ ବହାର ।୨୦।

ପର୍ବତେ ଘୋଟିଲେ ସେ ଯେ ମହାମତ୍ତ ହାଥୀ
ପ୍ରତଗ୍ୟାଂ କରି ଯୋଦ୍ଧାଯେ ପର୍ବତକଇଂ ଉଠି ।୨୧।
କେବଣ ଦେଶର ତୁ ଅଟୁସି ହୋ ରାଯେ
ସଂହାଥେ ଲେଉଟିଲୁ କର୍ମେ ମରଣ ଉପାଯେ ।୨୨।
ବନା ବାରତାଯେ କଂପେ ପଶିଲୁ ରାଜ୍ୟେ ବାହ୍ନି
କର୍ଣ୍ଣକେଶରୀ ରାଜା ବୋଲି ତୋର ଶୁଣିଲୁ କ ନାହ୍ନିଂ ।୨୩।
ରାଜାଧି ରାଜେଶ୍ୱର ସେ କଇଛା ଜଗଜ୍ଜେଠୀ
ପଛିମ ଦିଗେ ଚମକ ପଡଇ ଯାହାର ନାମଗୋଟି ।୨୪।
ଦେଶାଉରେ ବାଳତ କ ନ କହିଲେ ତୁକୁ
ମଗଧେଶ୍ୱର ପଶି ନୁଆରିଲା ଯେ କର୍ଣ୍ଣିକା ଦେଶକୁ ।୨୫।
କେବଣ ସାହସେ ତୁ ପଶିଲୁ ଝଂସାଇ
ଶୃଗାଳ ସିଂହକୁ ତୁ ରୁନ୍ଧୁ କମ୍ପାଇଂ ।୨୬।
ପ୍ରାଣେ କାର୍ଯ୍ୟ ଥିଲେ ଆସି ପଶ ହୋ ଶରଣ
ନୋହିଲେ ନିଚଯେ ତୋର ହୋଇଲା ମରଣ ।୨୭।
ସମରକଇଂ ଇଚ୍ଛା ଯେବେ ଅଛଇ ତୋର ମନେ
କଣକଲୁ ସଇନ ଘେନି ପରବାସ୍ଟକୁ ଅଇଲୁ କେସନେ ।୨୮।
ରଥ ଗଜ ଅଶ୍ୱ ନାହ୍ନିଂ ଅଳପ ପାଦାନ୍ତ
ଯେତେକା ଯୋଦ୍ଧାଯେ ତୋହୋର ସବୁନ୍ତ ଯେ ନାଶ କରଣ ପାରନ୍ତି।୨୯।
ପୁଣ ପୁଣ ପ୍ରତଗ୍ୟାଂ କରନ୍ତି ଧର୍ମ ଗ୍ରୁଡ
ବ୍ରହ୍ମାଣ୍ଡ ଉଚ୍ଛୁଳୁ ଅଛୁ ହାଥୀଂକ ଘଣ୍ଟାରବ ରଡ ।୩୦।
ଅନେକ ପ୍ରତଗ୍ୟାଂ ଶୁଣିଲେ ଯହୁଂ କଥା
ପାଣ୍ଡବ ବଳ ସଇନ ହୋଇଅଛନ୍ତି ମଯେମତ୍ତ ।୩୧।
କାଳକୃତାନ୍ତକ ବୋଲି ଭିମସେନର ବେନି ସେନାପତି
ଗିରିବର ଉପରୁ ସେ ଡେଇଂ ପଡଲେକ ଝାନ୍ତି ।୩୨।
କନ୍ୟକା ଦେଶ ସଇନ ରେ ରେ କାର କରି ଉଠି
ଦେଖି କର୍ଣ୍ଣକେଶରୀ ସନ୍ୟ କଲେକ ଶରବୃଷ୍ଟି ।୩୩।

୨୭।୨ ସଞ୍ଚଯେ ପାଞ୍ଚି ତୋର ପୋଛିଲେ ଯମକରଣ । (ଘ)

ଯେହେନେକ ଜଳବୃଷ୍ଟି ହୋଅଇ ଗଗନେ
ପର୍ବତ ଉପରୁ ତେହ୍ନେ ପଡ଼ନ୍ତେ ଶରମାନେ ।୩୪।
କୁହୁକା ଶର ମାଇଲା କର୍ଣ୍ଣକେଶରୀ ସେନାପତି
ଦିବସେ ଘୋର ଅନ୍ଧାର ଯେ ଦିଶିଲାକ ପୃଥ୍ୱୀ ।୩୫।
କୂଟଯୁଦ୍ଧ ଦେଖିଣ ସେ ପବନର ବାଳ
ଗିରିବର ଉପରୁ ଡେଇଁ ପଡ଼ିଲା ରଣ ମନ୍ଥନ ମହାବୀର ।୩୬।
ସାଂଗ୍ରାମ ଦେଖିଲେ ସେ ମଣଇ ଅମୃତ ଆସ୍ୟାନ ପ୍ରାୟେ
ରଣେ ଅନିବାରଣ ସେ ଗିରିବର ତୁଲ କାୟେ ।୩୭।
ସୋହୋତ୍ତ ସୁନ୍ଦର ସେ ଯେ ପାଣ୍ଡବ ବଳବନ୍ତା
ଓହୋବଳ ସାଗ୍ରାମେ ତାହାକଇଂ ନାହିଂ କେ ଜିଣନ୍ତା ।୩୮।
ପିଙ୍ଗଳ ବଦନ କାଳଚକ୍ର ପ୍ରାୟେ ବୁଲାଇଣ ବେନିଆଖି
କେଶରୀ ଉଠିଲାକ ମତ୍ତଗଜ ପଲ ଦେଖି ।୩୯।
ଫେରୁ ବିସ୍ତାର କରି ଯେହ୍ନେ ଗର୍ଜଇ ଉଡଙ୍ଗ
ଖଗେଶ୍ୱର ଦେଖି ଯେହ୍ନେ ପଶନ୍ତି ବମ୍ବର ମାର୍ଗ ।୪୦।
ତେସନେକେ ପାଣ୍ଡବ ଉଠିଲା ଗଳଗାଜ
ପଳାବନ୍ତି କର୍ଣ୍ଣକେଶରୀ ବଳ ବିକଳେଣ ଭଜ ।୪୧।
କାଳଦଣ୍ଡ ଘେନି ଯେହ୍ନେ ବିଜୟେ ନାଶକର
ସେହି ରୂପେ ଭୀମସେନର ତେଜ ପରଖର ।୪୨।
ଗଦା ବୁଲାବନ୍ତେ ପୃଥିବୀ ଉଲୁକାପାତ ପ୍ରାୟେ
ଦେଖିଣ ଭଜିଲେ ଯେ ସମସ୍ତ ପାରିଦାନ୍ତ ଭୟେ ।୪୩।
ପଳାବନ୍ତେ ଭୀମସେନ ଗୋଡ଼ାଇଣ ଗଦା ଘେନି ପ୍ରହାରି
ରଥଗଜ ଅଶ୍ୱ ପାଦାନ୍ତି ହୋଉଛନ୍ତି ସର୍ବଚୂର ।୪୪।
ରଣମନ୍ଥାନ ସୋହୋତ୍ତ ପାଣ୍ଡବ ବୀର ସ୍ୱେକା
ପଶିଲା ସାଂଗ୍ରାମେ ବେଗେ ହୋଇଣ ନିଶଂକା ।୪୫।
ଲେଉଟି ଯୋଦ୍ଧାୟେ ଯେ ପ୍ରହାରନ୍ତି ଶର
ଶ୍ରାବଣ ମାସରେ ଯେହ୍ନେ ବରଷଇ ଜଳଧାର ।୪୬।
ବାମଅଙ୍ଗ ପାତିଲା ଯେ ପାଣ୍ଡବ ମହାବଳୀ
ଯୋଦ୍ଧାଂକ ଶସ୍ତ୍ରମାନ ପଡ଼ି ହୁଅନ୍ତି ଧୂଳି ।୪୭।

ଧାଇଂଣ ବ୍ରିକୋଦର ଯେ ମାଇଲା ବଜ୍ରମୁଠେ
ପଡ଼ିଲେକ ସଇନ ଯେ ବୃଷର ଦଣ୍ଡଘାତେ ।୪୮।
ଶହସ୍ରମାନ ଭେଦନ୍ତା ନୋହୋଇ ଯାହାର କାଏ୍ୟ
ଯାହାର କୋପିଲେ କୃତାନ୍ତେକ କରଇ ଭଏ୍ୟ ।୪୯।
ମାନବ ମାତ୍ରକ ତାହା ର ସ୍ତମୁରେ କେହ୍ନୁ ରହୁ
କାଲାନ୍ତେକ ମୂରତ୍ତି ଦେଖି କେ ତାହା ସହୁ ।୫୦।
ଜାତ ଅନଳ ପ୍ରାଏ୍ୟ ଦିକାଶଇ ତାର ତେଜ
ବ୍ରିକୋଦର ମୂରତ୍ତି ଦେଖି ଯୋଦ୍ଧାଏ୍ୟ ହୋଇଲେ ଦହ୍ନିଜ ।୫୧।
ସମୁଦ୍ର ଗଣ୍ଡୂଷ ଯେହ୍ନେ କଲେକ ଅଗସ୍ତି
ସାଂଗ୍ରାମେ ପ୍ରତଗ୍ୟାଂ ଯାର ଅନୁବ୍ରତେ ନୋହୋଇ ଶାନ୍ତ ।୫୨।
ଅନେକ ସଇନ ତାର ପ୍ରହାର କଲକ ଗୋଡ଼ାଇ
ବେନି ଯୋଜନ ପରଯନ୍ତେ ବିଶ୍ରାମିତେ ଠାବ ନାହିଂ ।୫୩।
ଲକ୍ଷେକ ରଥବର ଯେ ଦୁଇଲକ୍ଷ ହାଥୀ
ଗୃରଲକ୍ଷ ଅଶ୍ୱ ତିନି ମେବଚ୍ଛ ପାଦାନ୍ତ ।୫୪।
ଏ୍ୟତେକ ସନ୍ୟ ଘେନି ଅଇଲା ପାପ ଜୟସେନ
ମହାଯୁଦ୍ଧ କରି ସମସ୍ତେ ହୋଇଲେ ନିଧନ ।୫୫।
ସନ୍ୟଭଗ୍ନ ଦେଖି ତାର ବିଗୃରଇ ମହାମନ୍ତ୍ରୀ
ଦଶନହ ମୁଖେ ଭରି ଶରଣ ଫୁକାରଇ ତତକ୍ଷଣାନ୍ତ ।୫୬।
ଶରଣ ଶରଣ ବୋଲି ଯେ ଫୁକାରଇ ନିସତେ
ଧାଇଂଣ ବ୍ରିକୋଦର ତାର କେଶ ଧଇଲା ବାମହାଥେ ।୫୭।
ଦକ୍ଷିଣ ହାଥେ ବୀର ଗୃପୋଡ଼େକ ମାରି
ପଡ଼ିଲା ଯେ ମନ୍ତ୍ରୀବର ରୋଧିର ଉଦୁଗାରି ।୫୮।
ରାଜାର ସ୍ତମୁରେ ଯାଇ କହନ୍ତ ଗୃରଗଣେ
ସ୍ୱାମୀ ଦଣ୍ଡ ଘେନି ମନ୍ତ୍ରୀ ତୋର ପଡ଼ିଲାକ ରଣେ ।୫୯।
ଶୁଣି ବିରସ ଯେ କର୍ଣ୍ଣକେଶସ୍ତୀ ନୃପତି
ହା ହା ମନ୍ତ୍ରୀ ବୋଲି ରାଜା ପଡ଼ିଲାକ କ୍ଷିତି ।୬୦।

---

୫୧।୨ ବ୍ରିକୋଦର ମୂର୍ତ୍ତି ଦେଖି ସମସ୍ତେ ହୋଇଲେ ଆଗ୍ରିକ । (ଙ୍,ଞ୍ଜ)

ରାଜାର କ୍ରୋଧ ଦେଖି ତାହାର ନନ୍ଦନ
ଜ୍ୟେଷ୍ଠପୁତ୍ର ନାମଗୋଟି ଅଟଇ ଋତୁପର୍ଣ୍ଣ ।୬୧।
ରାଜାକଇଂ ସମାର୍ଜି ଚଳଇ ପ୍ରତାପ୍ୟାଂ କରି ବାଳ
ମୋହୋର ଥାଆନ୍ତେ ପିତା କାହିଂକ ତୁମ୍ଭେ ଚାଳ ।୬୨।
ଯେତେକା ରଥୀକେ ଜାଣକଲ୍ଲ ତୋହୋର ଯେ ଥାଠ
ମରାଇଲୁ ସମଦଣ୍ଡ ନ ଜାଣିଲୁ ଯୁଦ୍ଧବାଟ ।୬୩।
ସାଷ୍ଟାମ ହୋଇଣ ଯେତେବେ ବସ ହୋ ନୃପମଣି
ଆଗ୍ୟାଂ ଦେବାକ ମୋତେ ପରଥାଠ ଆସଇ ହାଦେ ଜଣି ।୬୪।
ଅନେକ ପ୍ରତାପ୍ୟାଂ କରି ସେ କୁମର ଋତୁପର୍ଣ୍ଣ
ଆଗ୍ୟାଂହେଲ୍ଲ ମୋହୋର ବେଗେ ସାଜରେ ସଇନ ।୬୫।
ସମଦଣ୍ଡ ସାଜଇ କର୍ଣ୍ଣକେଶରର ଗୃହ
ରେ ରେ କାର କରଣ ପଶିଲ୍ଲ ଭୀମସେନର ଥାଠ ।୬୬।
ରାଜାର ସଇନ୍ୟ ବେଗେ ହୋଇଲେ ବାହାର
ଓହୋବଳ ଭେଟାଭେଟି ହେଲେ କଟେକ ଭିତର ।୬୭।
କୃତାନ୍ତେକ ମନ୍ତ୍ରୀ ଯେ ପଚ୍ଚରଇ କୁମାରକୁ
ଯେତେ ଥାଠ ମରାଇ ଆପଣେ ଆସୁଛୁ ମରିବାକୁ ।୬୮।
ଦେଶାନ୍ତରେ ବାରତ କ ନ କହିଲେ ତୋତେ
ଭୀମସେନ ଠାକୁରେ ପଶ୍ଚିମ ହାରବାଜେ ରାଜସୂ ଯାଗ ଅର୍ଥେ ।୬୯।
ଜରାସନ୍ଧ ବିଧ୍ୱଂସ କଲ ଯେ ମାଲଯୁଦ୍ଧ ସାଂଗ୍ରାମେ
ଯମର ଉପରେ ଯେ ବୋଲାଇ ଦୁଷ୍ଟଯମେ ।୭୦।
ଦୁଷ୍ଟ ନିସୂଦନ ଯେହୁ ଶରଣ କଇଛା ସାଧୁ
ଭଗତଜନ ମଙ୍ଗଳ ସେ ସଂସାର ଜନ ବନ୍ଧୁ ।୭୧।
ଗ୍ୟାନ ଥାଉଂ ଥାଉଂ ନାଶ ରେ ଯିବୁଟି କେମନ୍ତେ
ବାହୁଡଣ କହ ଯାଇଂ ତୋହୋର ପିଅର ଅଗ୍ରତେ ।୭୨।
କୃତାନ୍ତକ ମୁଖୁଂ ଯେତେହେନେକ ବାକ୍ୟ ଶୁଣି
ସୁବେଳେ ମଣିଲ୍ଲ ସେ ଅମୃତ ରସ ବାଣୀ ।୭୩।
ରଥ ତେଜ ପାଦେ ଗୃଳ ଆସଇ କୁମରମଣି
ଦନ୍ତରେ ତୃଣ ଗଳାରେ କୋଠାର ଲଇ ଲମ୍ବିତ ପୂଣ ପୁଣି ।୭୪।

ଭୀମସେନ ଠାକୁରେ ରଥେ କରିଛନ୍ତି ବିଜେ
କୁମର ପ୍ରଣିପତ୍ୟ ହୋଇଲା ଭୀମସେନଂକର ପାଦ ପଂକଜେ ।୭୫।
ବିନୟ ଦେଖିଣ ଶାନ୍ତ ହୋଇଲା ମାରୁତି
କୋଳରେ ବସାଇଲା କୁମରକୁ ତୋଷମତି ।୭୬।
ପିତାକଇଂ ତୋହୋର ବଧ କରିବଇଂ ରଣେ
ଏହୁ ରାଜ୍ୟେ ତୋତେ ଥାପିବ ମୁଂ ଠାକୁରପଣେ ।୭୭।
ଏହୁ ପଶ୍ଚିମ କୋଶଳେ ତୁ ହୋଇବୁ ମଣ୍ଡଳମଣି
କୁମରକଇଂ ସମାର୍ଜି ଥାଠ ଚଳାଇଲା ପୁଣି ।୭୮।
ମହା ବିଶ୍ୱରୂପ କୁମାର ପରିଣାମି
ମୋହୋର ଭଗତେ ପିତାର ଦୋଷ କ୍ଷମା କରିବାକ ଦେବସ୍ୱାମୀ ।୭୯।
ପିତାର ଛାମୁକୁ ମୁଂ ଯିବଇଂ ଏହୁକ୍ଷଣି
ଆଗ୍ୟାଂ ପ୍ରମାଣେ ପିତାକୁ ହକାରି ଆଣଇ ପୁଣି ।୮୦।
ଭୀମସେନକଇଂ ସମାର୍ଜିଣି ସେ ଚଳଇ ରିତୁପର୍ଣ୍ଣ
ପିତାର ଛାମୁରେ ଯାଇଂ କଲାକ ଦରଶନ ।୮୧।
ଆସ୍ତାନ ତେଜ୍ୟାକର ହେ କର୍ଣ୍ଣକେଶରୀ
ଭୀମସେନ ଠାକୁରଂକୁ ଚାଲ ଯିବା ଦରଶନ କରି ।୮୨।
ଜରାସନ୍ଧକଇଂ ବଧକଲେ ଯେ ସଂସାର ଜନ ହିତେ
ଏମ୍ଭବେ ପଶ୍ଚିମ ହଗବଜେ କଲେ ସେ ରାଜସୂ ଯାଗ ଅର୍ଥେ ।୮୩।
ଭଗତ ଜନ ମଙ୍ଗଳ ଶରଣପଞ୍ଜର ନାହା
କାଳଦଣ୍ଡ ଧାରଣ ଦେବ ଜଗନ୍ନାଥ ଯାହାକଇଂ ସାହା ।୮୪।
ଚାଳିଶସହସ୍ର ରାଜା ଆସିଲେଣି ସାଧି
ପାଣ୍ଡବଂକ ତୁଲେ ଆମ୍ଭେ କିଂପେ ହୋଇବା ବିରୋଧି ।୮୫।
ପଶ୍ଚିମ କୋଶଳେ ଜରାସନ୍ଧହୁଂ ନାହିଂ ବଳବନ୍ତ
ଯେ ତାହାକଇଂ ବଧକଲା କେ ତାହାକୁ ଅଛଇ ଶକତି ।୮୬।
ବାରାନିଧି ସମାନେ ଯାହାର ବିକ୍ରମାପଣ
ବନ୍ଧୁବର୍ଗ ଘେନି ଚାଲ ପଶିବା ଶରଣ ।୮୭।
ପୁତ୍ରର ବଚନ ଶୁଣି ସେ ରାଜା କର୍ଣ୍ଣକେଶରୀ
ଆସ୍ତାନ ତେଜ୍ୟାକରି ଆସଇ ଦଣ୍ଡଧାରୀ ।୮୮।

ସଙ୍ଗତେ ଘେନିଅଛଇ ଚାର ପଚାଶ ଭାରଯା
ଶରଣ ଶରଣ ବୋଲି ଫୁକାରି ସେ ଆସଇ ମହାରାଜା ।୮୯।
ଗଳାରେ କୋଠାରି ଲାଇ ଦନ୍ତେ ଘେନିଣ ତୃଣ
ଜନ୍ମେ ଜନ୍ମେ ସ୍ୱାମୀ ମୁହିଂ ଅଟଇ ତୋହୋରେ ଶରଣ ।୯୦।
ମୁହିଂ ଅଗ୍ୟାନ ଦେବ ବୁଦ୍ଧି ମୋହୋର କସ
ଭଗତ ମଙ୍ଗଳ ନାଥ ନ ଧରିବା ମୋର ଦୋଷ ।୯୧।
ଅଗ୍ୟାନେଣ ଦୋଷ ଯେ କଲଇଂ ମୁହିଂ ଅବା
ଅନେକ ଦୋଷ ମୋହୋର କ୍ଷମା ଯେ କରିବା ।୯୨।
ଆନନ୍ଦେ ଅଶ୍ରୁଜଳ ରାଜାର ବହଇ ବେନିନେତ୍ର
ପୁଣ ପୁଣ ପ୍ରଲମ୍ବିତ ଭୀମସେନର ପାଦାଗ୍ରତ ।୯୩।
ମରୁତ ସାରଥି ତହୁଂ ଭୀମସେନକୁ କହଇ ବାରତ
ବାବୁ ପଶ୍ଚିମ ଦିଗ ରାଜା ମଧ୍ୟରେ ଶ୍ରେଷ୍ଠ ସେ ଅଟଇ ମହତ ।୯୪।
ମନ୍ତହୀନ ବାକ୍ୟହୀନ କ୍ରିୟାହୀନ ପ୍ରତଗ୍ୟାଂ
କିଞ୍ଚିତ ଦୋଷେ ବହୁତ କରନ୍ତି ଅବଗ୍ୟାଂ ।୯୫।
ପଣ୍ଡିତ ଜନେ ଶ୍ରେଷ୍ଠମାନ୍ତ କରନ୍ତି ଉପେକ୍ଷା
କାର୍ଯ୍ୟର କାରଣେ ଶ୍ରେଷ୍ଠଙ୍କୁ କରିବୁ ନା ରକ୍ଷା ।୯୬।
ମରୁତ ସାରଥି ବଚନେ ଭୀମସେନ ହୋଇଲା ପରମ ଶାନ୍ତ
ଉଠ ହୋ କର୍ଣ୍ଣକେଶରୀ ତୋର ଫିଟିଲା ମନ ଭ୍ରାନ୍ତ ।୯୭।
ଆଗ୍ୟାଂ ପ୍ରମାଣେ ସେ ଉଠିଲା ନୃପମଣି
ସନ୍ନିଧେ ଭୀମସେନ ଆଶ୍ୱାସି ତାହାକଇଂ ହକାରିଣ ଆଣି ।୯୮।
ଅକ୍ଷତ ଗୁଆ ଯେ ତାକୁ ଦିଲେକ ବୃକୋଦର
ସନ୍ୟ ଘେନି ଶ୍ରେଷ୍ଠକ୍ଷଣି ହୁଅସି ବାହାର ।୯୯।
ରାଜସୂୟ ଯାଗକଇଂ ଅଇଲୁ ରାଜାନ୍ତ ନିମନ୍ତ୍ରିବାକୁ
ଆଠ ସନ୍ୟ ଘେନି ଯାଅ ତୁ ଇନ୍ଦ୍ରପ୍ରସ୍ଥକୁ ।୧୦୦।
ଆଗ୍ୟାଂ ପ୍ରମାଣେ ସେ ଚଳଇ ନୃପତ
ଦେଖା ଦରଶନି ଧନ ଘେନି ବଜେ ତତକ୍ଷଣାନ୍ତ ।୧୦୧।
ତହୁଂ ଚଳଇ ସେ ଯେ ପାଣ୍ଡବ ପଞ୍ଚାଣ
ସନ୍ୟ ଘେନି ଚଳେ ସେ କର୍ଣ୍ଣାଟ ଦେଶେଣ ।୧୦୨।



ସେ ଦେଶର ରାଜା ରାମଚନ୍ଦ୍ର ଚନ୍ଦ୍ରବଂଶ
ବଡ଼ାଇ ପ୍ରତାପୀ ରାଜା ସେ ବସ୍ତ୍ରୁବଂଶେ ଆଧିପତ୍ତି ।୧୦୩।
ମାନସୀ ନଦୀତଟରେ କଟକ ତାହାର
ବଡ଼ାଇ ସମ୍ପଦ ରାଜା ସେ ପଶ୍ଚିମେ ବୀରବର ।୧୦୪।
ତିନିଶତ ନୃପତି ତାକୁ ଖଟନ୍ତି ପାରଦଣ୍ଡ
ବେନିଶତ ଯୋଜନ ମାତ୍ତ ତାହାର ରାଜ୍ୟଖଣ୍ଡ ।୧୦୫।
ଭୀମସେନ ବିଜେକଲେ ମାନସୀ ନଦୀକୂଳେ
ସେ ନଦୀରେ ସ୍ନାହାନ କରନ୍ତି ଆହାର୍ଣ୍ଣିକ ବେଳେ ।୧୦୬।
ଶବଦ ଯେ ବାଜଇ ବିଜଘୋଷ ମର୍ଦ୍ଦଳ ବୀରତୂର
ମେଦିନୀ ଉଛୁଳଇ ଯେ ବ୍ରହ୍ମାଣ୍ଡ ଦୁରୁଦୁର ।୧୦୭।
ସମଦଣ୍ଡ ଘେନି ରାଜା ଆସ୍ଥାନେ କରଅଛୁ ବିଜେ
ମନ୍ତ୍ରୀକି ପଚାରଇ ରାଜା କିସ ଶବଦ ବାଜେ ।୧୦୮।
ମନ୍ତ୍ରୀ କହଇ ରାଜା ଶୁଣ ଦେବ ଶ୍ରୀରାମ
ଛତ୍ରୀବର ଯୋହୋଡ଼ା ସୁନ୍ଦର ସେ ପାଣ୍ଡବ ବୀର ଭୀମ ।୧୦୯।
ଜରାସନ୍ଧ ରାଜାକୁ ସଂଗ୍ରାମେ ଯେ କଲେକ ନିବାରଣ
ରାଜସୂୟଯାଗ ନିମନ୍ତେ ପଶ୍ଚିମ ଦିଗ ବରଣ ।୧୧୦।
ମହାସଭା ହୋଇବ ଦେବ ମିଳିବେ ଲକ୍ଷେ ରାଜା
ଅମରଗଣ ଘେନିଆସି ବିଜେ କରିବେ ବିଡ଼ୌଜା ।୧୧୧।
ଅନେକ ମହିମା ଉପୁଜିବ ଯେ ବହୁତ ଅପୂରୁବ
ସାତବଂଶ ଘେନି ବିଜେ କରିବେ ବାସୁଦେବ ।୧୧୨।
ସୁପଣ୍ଡିତ ମନ୍ତ୍ରୀ କହିଲା ସୁବାଣୀ
ବଚନେଣ ବୋଧ ହୋଇଲେ ଶ୍ରୀରାମ ନୃପମଣି ।୧୧୩।
ଆସ୍ଥାନୁ ଓହ୍ଲାଇ ଅଭିନବ ଚନ୍ଦ୍ରବଂଶର ବଳା
ରୂପେଣ ସୁନ୍ଦର ଯେ ବସ୍ତ୍ରୁବଂଶେ କଳା ।୧୧୪।
ମନ୍ତ୍ରୀ ଅମାତ୍ୟଗଣ ସଙ୍ଗେ ଘେନିଣ ନୃପତି
କଟକରେ ପାଯୋଡ଼ା ରାଜା ପାଡ଼ିଲା ତତକ୍ଷଣାନ୍ତି ।୧୧୫।
ମୋତି ମଣ୍ଡୋପ ଯେ ଜଗଣ୍ଡ ଅଟାଳୀ
ସୁବର୍ଣ୍ଣେ ବଜାର ଲକ୍ଷେକ ପୁରଶାଳୀ ।୧୧୬।

ବହୁତ ଉଛବ କରାଇଲା ନୃପମଣି
ଭୁଚଲେ ଯେଣିକି ରାଜା ମିଳା କମଳା ବେଣୀରାଣୀ ।୧୧୭।
ହାଥେ ଗୃମରେ ଗୃମରେ ଯେଣି ବେଣୀ ଭାରଯା
ଆପଣେ ପାଠଛନ୍ତ ଯେଣି ଆସଇ ଶ୍ରୀରାମଚନ୍ଦ୍ର ରାଜା ।୧୧୮।
ଆହାର୍ଣ୍ଣିକ ସାର କଟକେ ବଳପ୍ୟେ ମାରୁତି
ସନ୍ନିଧେ ଭେଟିଲା ଯାଇଂ ଶ୍ରୀରାମ ଚକ୍ରବର୍ତ୍ତୀ ।୧୧୯।
ଭୀମସେନ ରଥ ଦିଶିଲା ଯେତେ ଦୂରୁଂ
ଶରୀରୁ ଧୂମ ଗଳଇ ରାଜା ନିଉଗ୍ଭିଲ କରୁ କରୁ ।୧୨୦।
ବିନୟ୍ସ ଭାବ ହୋଇ ରାଜା ଅନେକ ସ୍ତୁତି ବୋଲି
ଶତେ ସହସ୍ର ଦଣ୍ଡଲାଇ ଶୁଣିଲା ଗଣ୍ଡିଯାଲ ।୧୨୧।
ସୋମବଂଶ ମଣ୍ଡଣମଣି ଦେବ ଦୁଷ୍ଟ ନିବାରଣ
ଅଭୟ୍ସେ ବରଦାତା ତୁ ଶରଣ ରକ୍ଷଣ ।୧୨୨।
ପାପ୍ୟେ ଆସି ନିଉଗ୍ଭିଲ କରଇ ନୃପମଣି
ଶ୍ରୀକରେ ଗୃମର ତାଳନ୍ତି ରାଜାର ବେଣୀରାଣୀ ।୧୨୩।
ଆପଣେ ପାଠଛନ୍ତ ଧରଣ ସନ୍ନିଧେଣ
କିଂକର ପ୍ରାପ୍ୟେ ରାଜା ବିନୟ୍ସେ ଭୀମସେନ ।୧୨୪।
ଶ୍ରୀରାମଚନ୍ଦ୍ର ରାଜାର ବହୁତ ବିନୟ୍ସ ଶୁଣି
ଦୟା ବସିଲାକ ଯେ କାଳଦଣ୍ଡ ପାଣି ।୧୨୫।
ଭୀମସେନ ପ୍ରଶଂସଇ ମହିମା ତୋହୋର ଧନି
ଦିଗମ୍ବର ରାଜା ହୋଇ ପାରିଲୁ ଆମ୍ଭନ୍ତ ଚହ୍ନି ।୧୨୬।
ନ ଜାଣି ନାଶଗଲେ ଅନେକ ନୃପତି
କେହ୍ନେ ନିର୍ଭୟେ ତ ହୋଇଲୁ ସ୍ୱେଡେକ ନିଭ୍ରାନ୍ତି ।୧୨୭।
ସ୍ୱାମୀ ଜରାସନ୍ଧ ଆମ୍ଭନ୍ତ ସବୁନ୍ତ ନେଲା ବାନ୍ଧି
ନିଅଳ ପିନ୍ଧାଇ ଦେଇ ପଞ୍ଚତିରିଶ ବରଷ ପରିଯନ୍ତେ କରିଥିଲା ବନ୍ଦୀ ।୧୨୮।
ସ୍ୱାମୀ ସଂସାର ଜନ ହିତେ ଜାରା ଦର୍ପ ଧ୍ୱଂସି
ତୁ ସେ ସର୍ବ ଉଦ୍ଧାରଣ ମୁକତି ଗତି ଦେସି ।୧୨୯।
ସ୍ୱାମୀ ଅଶ୍ୱମେଧ ଯାଗ ଯେ କରିଥିଲୁ ଆମ୍ଭେ ପୂର୍ବେ
ତୋହୋର ପାଦରଜ ଆସି ପଡ଼ିଲା ଆମ୍ଭ ରାଜ୍ୟେ ।୧୩୦।

ରାଜ୍ୟର ଦୁଷ୍କୃତ ଆମ୍ଭର କଲ୍ମଷ ଧ୍ୱଂସନ
ନୟନେ ଦେଖିଲୁଂ ସ୍ୱାମୀ ଦୁଷ୍ଟ ନିରଞ୍ଜନ ।୧୩୧।
ଭୀମସେନେ ବିଜେକଲେ କର୍ଣ୍ଣାଟ ମଣ୍ଡଳେ
ଶ୍ରୀ ରାମେଶ୍ୱର ଲିଙ୍ଗ ଦେଖିଲେ ମାନିମା ନଦୀଘାଟରେ ।୧୩୨।
କରପଦ ଯୋଡ଼ି କହଇ ଶ୍ରୀରାମ ଚନ୍ଦ୍ରବୃଷ୍ଣି
ଦେବ ତ୍ରେତୟା ଯୁଗେ ସୀତାୟାଂକର ମାନ ଫିଟିଲାକ ଯେଣୁ ।୧୩୩।
ମୁଣୋହ୍ୱର ସଜ୍ଜା କରାଇଲା ନୃପମଣି
ଅନେକ ଯୋଗାଡ଼ ରାଜା ଭୂମିରେ ଦିଲେ ଆଣି ।୧୩୪।
ଅହ୍ୱବ୍ରତେକ ସୂପକାର ଥାଇ ଭୀମସେନର ଭୁଲେ
ରୋଷାଇ ନବରେ ପଶି ମୁଣୋହ୍ୱ ନିବାଣିଲେ ।୧୩୫।
ଦୋହରା ପ୍ରସନ୍ନ ହୋଇଅଛନ୍ତି ଯାହାକୁ
ନିମିଷକେ ମଧ୍ୟେ ମୁଣୋହ୍ୱ ହୋଇଲା ପଂକ୍ତି ।୧୩୬।
ମୁଣୋହ୍ୱରେ ବିଜେ ଶୂରବର ସୋଦରା
ମୁଣୋହ୍ୱ ସମାପତେ ସେ କାଳଦଣ୍ଡ ମହାବୀର ।୧୩୭।
ନିତ୍ତ ଷାଠିଯେ ପଜଟି ଅନ୍ନ ଯେ ବେଞ୍ଜନମାନ
ବିପୁତ୍ତ ହୋଇଣ ଭୋଜନ କରଇ ଭୀମସେନ ।୧୩୮।
ମୁଣୋହ୍ୱ ସାରି ସେ ଅଂଚୋବନେ ବିଜେ
ସମସ୍ତ ସନ୍ୟଂକୁ ବିପୁତ୍ତ ଭୋଜନ ଦିଜେ ।୧୩୯।
ବାଜିଲା ଟମକ ସଜାଡ଼ି ନିଶାଣ
ଶ୍ରୀ ରାମଚନ୍ଦ୍ର ରାଜାଂକୁ ଭୀମସେନ କଲେ ନିମନ୍ତ୍ରଣ ।୧୪୦।
ଯେତେ ଅଛନ୍ତି ରାଜା ତୋର ପାରିଦଣ୍ଡ ସଇନ
ଇନ୍ଦ୍ରପ୍ରସ୍ଥକୁ ଯାଅ ଦେଖା ଦରଶନ ଧନ ଘେନି।୧୪୧—୩୩୪୭।

———

## ଭୀମଙ୍କର କଉତ ଓ କାମପାଳ ସଙ୍ଗେ ଯୁଦ୍ଧ ଏବଂ ଜୟଲାଭ ଓ ନିମନ୍ତ୍ରଣ

ନିମନ୍ତ୍ରଣ କରି ତହୁଁ ଚଳଇ ଭୀମସେନ
ଦଣ୍ଡ ଦେଲା ପଶିଲେ ଯାଇଂ ବସ୍ତ୍ରୁ ବାଢ ବନ ।୧।
ସେ ରାଜ୍ୟରେ ରାଜା ଯେ କରାତସେନ ଚଣ୍ଡବୃତ୍ତି
ଭୀମସେନ ଯାନ୍ତେ ସେ ଓଗାଳିଲା କୋପମୂର୍ତ୍ତି ।୨।
କାହାର ଯୁଝିତେ ଦର୍ପ ରେ ବସ୍ତ୍ରୁ ବାଢ ବନେ ପଶୁ
ମାନବ ଜନମ ହୋଇ ରେ ଯୁଝିବାକ ଭରସୁ ।୩।
ମରଣକୁ ଇଚ୍ଛାକଲୁ କି କେବଣ ପ୍ରାଣୀ
ଅଭୟେ ବନ ଭିତରେ କମ୍ପେ ପଶିଲୁ ନ ଜାଣି ।୪।
ମାର ମାର ଶବଦେ ଓଗାଳିଲେ ସଇନ
ବାଜନ୍ତି ନାରାଜ ଯେ ଶହସ୍ରନ୍ତ ଦେଲା ।୫।
ଆଦିତ୍ୟ ଅସ୍ତ ହୁଅନ୍ତେ ହୋଇଲା ନିଶାରାତ୍ର
ଯୁଗତେ କରାତ ରାଜା ବସ୍ତ୍ରୁ ବନେ ଅଧିପତ୍ର ।୬।
ବିଶେଷେ ସେ ବନଚର ଆବର ପରଦେଶୀ
ପବନ୍ତୁଂ ବେଗେ ବାଜନ୍ତି ପାଡନ୍ତି କୂଟପାଶୀ ।୭।
ଗିରିବର ଉପରେ ସେ ଉଠିଲେ କରାତସେନ ଦେବ
ବାଜନ୍ତି ନାରାଜ ଯେ ସ୍ଥାନର ସୁଲଭ ।୮।
ରଣରଙ୍ଗ ଧନ୍ଦୋଳ କଲାକ ଶବର
ଅନେକ ସୈନ୍ୟ ଭୀମସେନର ହୋଇଲେ ଅପହାର ।୯।
ନିଶାକାଳେ ସଂଗ୍ରାମ ନ ପାରିଲେ ଠାବକରି
ଭୀମସେନର ସଇନ ଆସନ୍ତି ଅପସରି ।୧୦।
ବନସ୍ତ ଭିତରେ ସୈନ୍ୟ ପଳାଇଲେ ଯହୁଁ ଭାଙ୍ଗି
ରାଗେଣ ମାରୁତି ଯେ ଉଠିଲା ଗଳଗାଜି ।୧୧।
ମରୁତ ସାରଥିକ ବୋଇଲା ବୃକୋଦର ନାହା
ଯେ ପିତାମହ ମୋର ରଥ ବେଗକରି ବାହା ।୧୨।
ଭୀମସେନକୁ ବୁଝାଇ ସେ ମରୁତ ସାରଥି
ଯୁଗତେ ଧନୁ କୃଷ୍ଟି ଅମାବଇ ନିଶାରାତି ।୧୩।

ସେ ବନଚର ନୃପତି ଅଟଇ ସଂଦେଶୀ
ଅନ୍ଧାର ବେଳେ ତାହାକଇଂ ଆମ୍ଭେ ପାଇବା କାହିଂ ପଶି ।୧୪।
ଥିର ହୋଇ ରହିଥିବା ଯେହ୍ନେ ପରବତେ
ରଜୁଣୀ ପ୍ରଭାତ ଯେ ହୋଇବା ପରଯନ୍ତେ ।୧୫।
ସାରଥି ବଚନେ ଭୀମ ହୋଇଲେକ ଶାନ୍ତ
କୂଟଗିରି ପର୍ବତେ ଯେ ରହିଲେ ନିଶାଗତ ।୧୬।
କରାତସେନ ରାଜା ବେଢିଲା ସେ ପର୍ବତଗୋଟି
ପର୍ବତ ଉପରେ ଉଠି ନାରାଜ କଲା ବୃଷ୍ଟି ।୧୭।
ଗିରିବର ଉପରୁ ପଡଇ ଅବକ୍ଷଣେ ବାଣ
ବଜ୍ରୁଳ ହାସ ପ୍ରାୟେ ଦିଶନ୍ତି ପଯ୍ୟାଣ ।୧୮।
ଭୀମସେନର ସଇନ ଘାୟେଣ ଅସାଷ୍ଟମ
ଶରଘାତେ ସଇନଂକ ଯେ ଲଗିଲା ମହାଶ୍ରମ ।୧୯।
ରୋଧିର ଅବଚ୍ଛନ୍ନେ ବହିଲା ସବୁଂକର କାୟେ
ସଇନଂକ ଶରୀର ଦିଶଇ ମନ୍ଦାର ପୁଷ୍ପ ପ୍ରାୟେ ।୨୦।
ପଳାଇବାକୁ ବାଟ ନାହିଂ ଅନେକ ପାଇଲେ ବିମୁଖ
ଯେହ୍ନେକା ରାହକ ଯୁଗ ପ୍ରାପ୍ତି ମଣିଲେ ମହାଦୁଖ ।୨୧।
ହେ ସ୍ୱାମୀ ମାରୁତି ରକ୍ଷାକର ବୀର ଭୀମ
ବୀରବର ପ୍ରତାପ୍ୟାଂ ବୃକୋଦର ଦୁଷ୍ଟକାମ ।୨୨।
ସ୍ୱାମୀ ମେରୁ ଆଶ୍ରେକରି ପାଇଲୁ ଅନେକ କଷ୍ଟ
ବନାଯୁଦ୍ଧେ ନାଶକରଇ ଯେ କେବଣ ପାପିଷ୍ଟ ।୨୩।
ସନ୍ୟର ବିକଳ ଦେଖି ମରୁତ ସାରଥି
ତିମିର ବିଦାରଣ ମଣି କାଢିଲା ତତକ୍ଷଣାନ୍ତି ।୨୪।
ଭୀମସେନର ହୃଦେ ଅଳଂକାର ନେଇ ଗୁପି
ତିମିରଦର୍ପ ଚଂପିଲା ସେ ମଣିର ତେଜ ବ୍ୟାପି ।୨୫।
ବନସ୍ତପାକ ସବୁ ଦିଶଇ ଆଲୋମୟେ
ଦିଶନ୍ତି କରାତସେନର ସଇନ ଦିବସର ପ୍ରାୟେ ।୨୬।
କରାତର.ଥାଠ ଦେଖିଲା ବୀରବର ବୃକୋଦର
ପର୍ବତୁଂ ଡେଇଂପଡିଲା କରେ ଘେନିଣ ଗଦାବର ।୨୭।

୧୮।୨ ବଜ୍ରୁଳ ତ୍ରାସ ପ୍ରାୟେ ଦିଶଇ ଗଗନ । (ଙ,ଥ,ଝ)

ବୃକୋଦର ମୂରଛି ଯେ ବକାଣିଲା ତାର କାଯେ
କଇତର ସଇନ ଦଶିଲେ ଗ୍ରଗଲ ଯୂଥ ପ୍ରାଯେ ।୨୮।
ଗଦା ବୁଲାଇଣ ଭୀମସେନ ନେଇ ପିଟି
ବନଚର ସଇନ ଯେ ପଡ଼ଲେ ମହୀଲୋଟି ।୨୯।
କଣପ୍ନ ପର୍ବତ ଜାଣି ଦଶଇ ଭୀମସେନ ଅଙ୍ଗ
ରପୂଣୀ କାଳେ ଯେହ୍ନେ ଦଶଇ ଶଶାଂକ ।୩୦।
ଗଗନ ମଣ୍ଡଳେ ଲଗଇ ଯାହାର ବେନିବାହୁ
ରୋହିଣୀ ବଲ୍ଲଭ ଦେଖି ଯେହ୍ନେ ଗରାସଇ ରାହୁ ।୩୧।
କାରାତ ସଇନ୍ୟଂକ ବୀର ଉଠିଲା ଗଲଗାଜ
କାରାତ ସଇନ ସର୍ବେ ପଳାଇଲେ ଘାଂଜ ।୩୨।
ରାଗେଣ ବୁଲାଇଲା ବାଆନ ବାଆନ ଭାର ବେନିଗଦା ଘେନି
ଗଦା ବଯାତେ ଉଡ଼ିଲେ କାରାତ ସଇନ ।୩୩।
ଯେସ୍ନନେକେ ଶେଣାପକ୍ଷୀ ଉଡ଼ନ୍ତି ଗଗନେ
ପଡ଼ିଲେ ସଇନ ଯାଇଂ ଅନେକ ଯୋଜନେ ।୩୪।
ଲକ୍ଷେକ ହାଥୀ ଯୋଦ୍ଧା ଘେନି ନୃପତି କାରାତ
ଲୋହଶାର ଧନୁ ଘେନି କରେ ଭୀମକୁ କଲା ଶରଘାତ ।୩୫।
ଲୋହାର ନାରାଜ କଂକପତ୍ରୀ ତୀକ୍ଷ୍ଣମୁନା
ପଡ଼ି ନିକଳିଲା ଅଭେଦ ବଜ୍ର ସେନ୍ହା ।୩୬।
ଯେବେକା ପାଣ୍ଡବକେ ଯେ କଲା ରଣରଙ୍ଗ
ରକତେ କର୍ଦ୍ଦମ ହୋଇଲା କରାତ ସଇନ ସର୍ବାଙ୍ଗ ।୩୭।
ସମରେ ନିର୍ଭୟା ସେ ପାଣ୍ଡବ ବୀରମଣି
ଗଜନ୍ତ କଟ୍ଟଉଇ ଯେହ୍ନେ ମୃଗ ଯୂଥ ଜାଣି ।୩୮।
କଣ୍ଠ ଗର୍ଜନ ଦେଇଣ ସେ ପଡ଼ନ୍ତି ମହାନାଦେ
ଗ୍ରଡ଼ିଲା ଜରପ୍ରାଧ ସେ ସଂଗ୍ରାମ ବଇରାଗେ ।୩୯।
ଯେବେକା ଜଣକରେ ମର୍ଦ୍ଦିଲା କରାତ ରାଜାର ସଇନ
ପଳାଇ ବନ ନୃପତି ଯେ ସହସ୍ରେ ଯୋଧା ଘେନି ।୪୦।

---

୩୦।୧ କଣସ୍ପ ଶୋଭବନ ଭୀମସେନର ଅଙ୍ଗ । (ଙ,ଞ,ଛ)

କରାତ ସନ୍ୟକୁ ଭୀମ ଗୋଡ଼ାଇଲା ଗଳଗାଜ
କୋପେ ବନ ପର୍ବତ ବାର ପକାଇଲା ଭାଞ୍ଜି ।୪୧।
ରଥ ଗଜ ଅଶ୍ୱ ପାଦାନ୍ତ କେହ୍ବ ନାହ୍ବିଂ ସାହା
ସ୍ୱେକସରେ ଖେଦଇ ସେ ହିଡମ୍ବିକାର ପ୍ରାଣନାହା ।୪୨।
ସହସ୍ରେ ଯୋଦ୍ଧା ଘେନଣ ପଳାଇ କରାତ
କାଉଂସା ଦେଶେ ଯାଇ ପ୍ରବେଶ ବନଚର ନାଥ ।୪୩।
କାଉଂସା ଦେଶର ରାଜା ଅଟଇ କାମପାଳ
କରାତ ରାଜା ଶରଣ ମାଗଇ କାଉଂସା ଆଖଣ୍ଡଳ ।୪୪।
ଆହେ। କାଉଂସାପାଳ ନୃପତି ତୁ ରକ୍ଷାକର ମୋତେ
ଦଣ୍ଡଭଗ୍ନ ହୋଇ ପଳାଇ ଅଇଲ ନାଶଗଲେ ସମସ୍ତେ ।୪୫।
ଦଶଲକ୍ଷ ରଥ ପଞ୍ଚାଶ ଲକ୍ଷ ମତ୍ତନାଗ
ନବକ୍ଷଉଣୀ ପାଦାନ୍ତ ନବମର୍ଭୁତ ତୁରଙ୍ଗ ।୪୬।
ସ୍ୱେତେ ବଡ ସଇନ ଯେ ମରାଇଲ ଅକାରଣେ
କାହ୍ବିଂର ଯୋଦ୍ଧାସ୍ୱେ ସେ ନାଶକଲା ସ୍ୱେକାଜଣେ ।୪୭।
ଅନମିତେ ଅକାଗେ ଅଇଲା କେଉଂଣ ଦେଶୁଂ
ସ୍ୱେତେ ବଡ ସନ୍ୟ ମୋର ମାରି କଲା ଧୂଳି ପାଂଶୁ ।୪୮।
ତୁ ଶରଣ ପଞ୍ଜର ରାଜା ଅଟୁ ନୃପତି କାମପାଳେ
ଶରଣ ପଞ୍ଜର ବାରଧୂ ତୋହୋର ଅଟଇ ସର୍ବକାଳେ ।୪୯।
କାମପାଳ ବୋଇଲା ତୁ ଥାଅସି ନିଚନ୍ତେ
କେ ତୋହୋର ଶତ୍ରୁ ମୁଂ ତାକୁ ଦେଖଇଂ ବେନିନେତ୍ରେ ।୫୦।
ସ୍ୱେଥୁ ଅନନ୍ତରେ ସେହୁ କାଳଦଣ୍ଡ ପାଣି
କାଉଂସା ଦେଶେ ପଶିଲା ସେ କ୍ଷତ୍ରିୟ ଚୂଡାମଣି ।୫୧।
ରଥ ଗଜ ଅଶ୍ୱ ଯେ ପାଦାନ୍ତ ନାହ୍ବିଂ ସାଖା
ମନ୍ଦର ଗିରି ସମାନେ ଦିଶଇ ସେ ଭୀମସେନର ଶିଖା ।୫୨।
କୃତାନ୍ତକ ରୂପେ ସେ ଅଭଯ୍ୱେ ବଜ୍ରସେନ୍ହା
ନାଶକର ପ୍ରାୟେ ଦିଶଇ ସେ ବୃକୋଦର ଜେନା ।୫୩।

---

୪୮।୨ ଶରୀରେ ନ ଫୁଟଇ ତାର ଅନେକ ବାଣ ବରଷୁ । (ଙ,ଡ)
୪୯।୨ ସ୍ୱେ ବିପତ୍ତି କାଳେ ମୋତେ ରକ୍ଷାକର ବେଳେ । (ଞ,ନ)

ଧାଇଁଣ କଟକେ ଛାର ପଶିଲା ଯୂକସରେ
କାଳଚକ୍ର ପ୍ରାୟେ ନୟନ ଦେଖି ଲୋକେ ପଳାବନ୍ତ ଡରେ ।୫୪।
ଧାଇଂ ଯାଇଂ ଡଗରେ କହିଲେ ନୃପତି କାମପାଳ
ସ୍ୱାମୀ ଯମଦେବତା ବିଜେ କଲନି ରାଜ୍ୟ ତୋହୋର ସମ୍ଭାଳ ।୫୫।
ଦେଶାନ୍ତର ମୂର୍ଖୁଂ ରାଜା ପାଇଣ ବାରତା
କାମପାଳ ନୃପତି ଆରୋହିଲା ଲୋହମୟେ ରଥ ।୫୬।
ସହସ୍ରେକ ଶାର୍ଦ୍ଦୋଳ ତାର ରଥରେ ଯୋଚିଅଛି
ନାରାୟଣଂକୁ ଘେନି ଯେହ୍ନେ ଉଡଇ ଖଗେଶ୍ୱର ପକ୍ଷୀ ।୫୭।
ତେତେହେନେକ ଶୋଭିବନ କାମପାଳ ନୃପତି
ବିଜେକଲା ରାଜା ସଙ୍ଗେ ବେନି ମର୍ଦ୍ଦିତ ହାଥୀ ।୫୮।
ସବୁଂକର ରଥେ ଯୋଚିଲା ଅଛି ଶାର୍ଦ୍ଦୋଳ
ଯୂକମୁଖ ହୋଇଣ ଉଠିଲେ ସର୍ବବଳ ।୫୯।
ସହସ୍ରେ [illegible] ଆରୋହି ମତ୍ତହାଥୀ
କରତିସେନ ରାଜା ଅଛଇ କାମପାଳର ପଛକତି ।୬୦।
ଗୃରଶତ ପାଶଦଣ୍ଡ ରାଜା କାମପାଳର ଭୁଲେ
ଦ୍ୱାଦଶ କ୍ଷଉଣୀବଳ ଘେନି ଭୀମସେନକୁ ଓଗାଳିଲେ ।୬୧।
ବନସ୍ତ ଭିତରେ ଯେହ୍ନେ ଅନେକ ଶଇଳ
ତାହାଂକରେ ଶ୍ରେଷ୍ଠ ଯେହ୍ନେ ଅଟଇ ବଂଦ୍ଧମାଳ ।୬୨।
କାମପାଳର ସଇନ ଯେ ବେଢିଲେ ଭୀମସେନକୁ
ନିରଖି ସନ୍ୟ ଯେ ନାରାଚ ବିନ୍ଧିଲେ ଭୀମସେନ ଅଙ୍ଗକୁ ।୬୩।
କେ ସହସ୍ରେ କେ ଦୁଇ ସହସ୍ର ମାରି ବାଣ
ଘୋର ଜ୍ୱାଳାବଳୀରେ ଘୋଟିଲା ମହାରଣ ।୬୪।
ଗୁରୁତର ସମର ଦେଖି ପାଣ୍ଡବ ପଞ୍ଚାଣ
ସୁମରଇ ତୁଳସୀର ବଲ୍ଲଭ ନାରାୟଣ ।୬୫।
ତୁ ଦେବ ଯେତେକ ଆଗ୍ୟାଂ ଦେଲୁ ରାଇ
ମୁହିଂ ଭ୍ରଷ୍ଟ କରୁଅଛୁଟି ମୋହୋର ଦୋଷ ନାହିଂ ।୬୬।

---

୫୭।୨ ନାଗବଳକୁ ଦେଖି ଯେହ୍ନେ ଧାମଇଂ ଗରୁଡ ପକ୍ଷୀ । (ଙ)



ରାଜସୂୟ ଯାଗ ପଛେ ନ କରନ୍ତୁ ଯୁଧିଷ୍ଠିର ଦେବ ଠାକୁର
ପାଣ୍ଡୁର ବ୍ରହ୍ମହତ୍ୟା ପଛେ ନ ଯାଉ କନା ପାର ।୬୭।
ମାରିବ ରାଜାମାନଙ୍କ ନ ଥୋଇବ ଜୀବନ୍ତେ
ଆଦ୍ୟ ଅନ୍ତ ମଧ୍ୟେ ସାକ୍ଷୀ ତୁହି ସେ ଜଗନ୍ନାଥେ ।୬୮।
ନାରାୟଣକଇଂ ସାକ୍ଷୀକରି କାଳରୁଦ୍ର ଭୀମେ
ରେ ରେ କାର କରି ଭୀମ ପଶିଲା ସଂଗ୍ରାମେ ।୬୯।
ବୃକୋଦର ମୂରତି ଧରି ପାଣ୍ଡବ ବଳବନ୍ତ।
ଗଗନ ଶିଖରେ ଯାଇ ଲାଗିଲା ତାର ମଥା ।୭୦।
ପ୍ରତକ୍ଷେ ଅମୋଘ ରେତ ପ୍ରଚଣ୍ଡ ପବନର ବେଟା।
ଶତଶିଂଗ ପର୍ବତ କୋଳରେ ଯାର ବଳ ଦୃଷ୍ଟା ।୭୧।
ଶୂଳ ବହ୍ନ ରୁଦ୍ର ବଜ୍ର ଶକତିରେ ତାହାର ନାହିଂ ଭୟେ
ବଜ୍ରେଣ ନିର୍ବାଣ ଯେ ଅଟଇ ଯାହାର କାୟେ ।୭୨।
ଶତଶିଂଗ ମାଡି ବସିଲେ ଯାହାର ଅଙ୍ଗେ
ଅଭୟେ ମହାବୀର ସେ ଅଟଇ ଅଭଙ୍ଗେ ।୭୩।
ବାମଅଙ୍ଗ ଆଉଂଶିଲେ କାଳକୃତାନ୍ତେକ ପତନ
ବୋଇଲେ ବାମଅଙ୍ଗ ଗୋଟି ବଜ୍ର ହୋଉ ତୋହୋର ଭୀମସେନ ।୭୪।
ଯଦ୍ୟପି ମନ୍ଦର ଗିରି ପଡିବ ବାମଅଙ୍ଗ
ଚନହିଂ ପଡିଲେ ଅଙ୍ଗ ନୋହିବାକ ଭଙ୍ଗ ।୭୫।
ପିତାର ବରରେ ସେହି ସଂଗ୍ରାମେ ଅଭୟେ
ଶରଣପଞ୍ଜର ସେ ପାଣ୍ଡବ ନିର୍ଭୟେ ।୭୬।
ସଂଗ୍ରାମ ଦେଖିଲେ ନାହିଂ ନିଦ୍ରା ମଇଥୁନ
ରଣେ ଅର୍ଗଳ ସେ ପବନ ନନ୍ଦନ ।୭୭।
କଳିକାଳ କୃତାନ୍ତେକ ମହିମାଂ ଯାହାର ବରିଧୂ
କଳହ ମାତାଙ୍ଗୀ ନ ଛୁଡଇ ଯାହାର କନ୍ଧୁ ।୭୮।
ଯେହି ମହୀଭାର ନିବାରଣ କରିବା ନିମନ୍ତେ
ପଞ୍ଚ ମୂରତି ସଞ୍ଚିଲା ପିତାମହ ଦଇବତେ ।୭୯।
ଯେସନେକ ମହିମାଂ ଯାହାର କହିତେ ନ ସରି
ରଣମନ୍ଥନ କରଇ ସେ ଭୀମସେନ କରେଣ ଗଦା ଧରି ।୮୦।

ସଂଗ୍ରାମ ଦେଖିଲେ ଉଲ୍ଲସଇ ଯାର ମନ
ରଣରଂକା ଖରଧୂ ଯାହାର ଥାଠ ଯେ ମନ୍ଥାନ ।୮୧।
କ୍ଷେପନ୍ତେ ଯାହାର ପାଦ ପବନୁଂ ଚଞ୍ଚଳା
ରୋଧିର ଭ୍ରଣନେ ଯେହ୍ନେ ଖେପନ୍ତି ମହାଖଳା ।୮୨।
ଗଦାବର ବୁଲାଇ ଯେ ପଶିଲା ବୀର ଧାଇଂ
ରଣ ଧନ୍ଦୋଳ କଲା ମଧୁର ଗୀତ ଗାଇ ।୮୩।
ବାଜନ୍ତି ବଜ୍ରଘୋଷ ବୀର ଭୂର ଦାଉଣ୍ଡି
ଦ୍ରବେଶୀ ଯୋଦ୍ଧାନ୍ତ ଖଡାଇ ଖେମଟା ନାଟଖଣ୍ଡି ।୮୪।
ହୃଡମ୍ବିକାର ବଲ୍ଲଭ ସଂଗ୍ରାମେ ରଣରଂକା
ମାଇଲା କାଉଂଶ ବଳ ସେ ହୋଇଣ ନିଶଂକା ।୮୫।
ରାଜାର ଆଗ୍ୟାଂସ୍ତେ ସେ ନ ଭଜନ୍ତି ସଇନି
ଯେତେକ ପଡନ୍ତେ ଆରେକ ଧାମନ୍ତି ଶସ୍ତ୍ର ଘେନି ।୮୬।
ଭୀମସେନ ପ୍ରହାରନ୍ତେ ସେ ହୋଉଛନ୍ତି ଚୂର
ହାଥୀ ମାଡ ପଡନ୍ତି ଯେ ଯୋଦ୍ଧାଂକ ଉପର ।୮୭।
ମହାବାତେ ଯେହ୍ନେ ଭଜ ପଡନ୍ତି ବୃକ୍ଷେ
ତେସନେକ ସଇନି ମାଇଲା ପବନର ବକ୍ଷେ ।୮୮।
ପକ୍ଷ ଥିଲା ପର୍ବତ ଯେସନେ ଆସନ୍ତି ଧାଇଂ
ଯେବେଣ ଠାବରେ ପଡନ୍ତି ଯେ ସମସ୍ତେ ଚୂର ଯାଇ ।୮୯।
ପ ଦଗଡକର ଡେଇଂ ପଡଇ ଯେଉଣଠାରେ
ରଥ ଗଜ ଅଶ୍ୱ ଚୂର ହୋଅନ୍ତି ପାଦଭରେ ।୯୦।
ଅସୁର ଦେଖି ଯେହ୍ନେ ଧାମନ୍ତି ଗୃମଣ୍ଡା
କାଉଂଶ ବଳ ଧ୍ୱଂସିଲା ସେ ଦୁର୍ଭର ପରଚଣ୍ଡା ।୯୧।
ଶହସ୍ର ନ ଭେଦଇ ଭୀମସେନ ଶରୀରେ
ରଣେ ବମୁଖ ପାଇଲେ କାଉଂଶର ସର୍ବାରେ ।୯୨।

---

୮୨।୨ ମହରା ଭ୍ରଣନେ ଯେନ୍‌ହେ କ୍ଷେପନ୍ତି ମହାଖଳା । (ଛ, ଧ)
୮୩।୨ ରଣମନ୍ଥନ କଲା ସେ ବଡିମାପଣ ପାଇ । (ନ, ଘ)
୮୨।୨ ମହାଖଳା = ମହାକାଳ ।

ସଇନ୍ୟ ଅସାଷ୍ଟମ ଯେ ଅପାର ହତ ଦେଖି
କାମପାଳ ରାଜା ପଳାଇଲା ସମର ଉପେକ୍ଷି ।୯୩।
ଶୁଣ ହୋ ବଇବସୁତ ମନୁ ବଦନ୍ତି ବ୍ରହ୍ମବେତ୍ତା
କାମାକ୍ଷୀ ବୋଲିକର ତଦ୍ବଂ ଦେବୀଙ୍କୁ ସେ ଅଟଇ ମହାଗମ୍ୟାଂତା ।୯୪।
ପ୍ରତକ୍ଷେ ମାତାଙ୍ଗୀ ସେ ଧରଇ ତିନିମୂର୍ତ୍ତି
ପ୍ରତକାଳେ କୁମାରୀ ସେ ମଧ୍ୟକାଳେ ବୃଦ୍ଧା ରୂପ ବିରାଜନ୍ତି ।୯୫।
ସନ୍ଧ୍ୟା କାଳେଣ ସେ କାଉଂରୀ କାମସେଣା
ପ୍ରହରକ ମଧ୍ୟେ ସେ ମୋହିନୀ ସର୍ବଜଣା ।୯୬।
ମହାନିଶାୟେ ବିକାଶଇ ସେ ଚମୁଣ୍ଡା ମାହେଶ୍ବରୀ
ସଂସାର ବଶ୍ୟକରଇ ସେ ମୋହିନୀରୂପ ଧରି ।୯୭।
କାଳାନ୍ତକ ଯୁଗାନ୍ତକ ଜାଣଇ ସର୍ବବିଦ୍ୟା
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ଗୋଟିକ ଅଞ୍ଜନ ଉଲୁକ
ମନ୍ତ୍ରସିଦ୍ଧା ।୯୮।

ଧରଣ ଧାରଣ ଯେ ମାରଣ ଗୁପତ
ମାୟାମୋହିନୀ ଦେବୀ ସେ ଜାଣଇ ସମସ୍ତ ।୯୯।
କାଉଂରୀ କାମାକ୍ଷୀ ସେ ଅଟଇ ଭଇରବୀ
କାମପାଳ ନୃପତି ଯାଇଂ ସେ ଦେବୀର ଚରଣ ତଳେ ସେବି ।୧୦୦।
ମାଗୋ ଅନାଦି ମାହେଶ୍ବରୀ ତୁ ଅଭୟେ କାମସେଣା
କାଉଂରୀମଣ୍ଡଳ ମଣ୍ଡଣୀ ତୁ ପ୍ରିୟମଦାର ଦୁଲଣା ।୧୦୧।
ଶିରେ ସିତାଂଶୁ ମଣ୍ଡଳ ତୁ ଅଭୟେ ମାତାଙ୍ଗୀ
ବେଦ ମନ୍ତ୍ର ସାଧନୀ ମାଗୋ ପ୍ରସନ୍ନେ ସୁଭାଗୀ ।୧୦୨।
ସତ୍ୟ ତେତାୟା ଦ୍ବାପର କଳି ଚତୁରଯୁଗେ ସର୍ବସିଦ୍ଧି
ମୃତ୍ତିକା ପାଷାଣେ ତୁ ପ୍ରାପତ କରୁ ଋଦ୍ଧି ସିଦ୍ଧି ।୧୦୩।
ଜଳେ ସ୍ଥଳେ ଅନଳେ ତୋହୋର ତେଜ ବିକାଶି
ଗୁଣବନ୍ତ ପୁରୁଷ ତୁ ମୋହିଲୁ ବିଶ୍ବବାସୀ ।୧୦୪।
ବାଳୁତ ରୂପେ ଦେବୀ ଖେଳିବା କୁତୂହଳେ
ମୋହିଲୁ ବାଲଖିଲ୍ୟାନ୍ତ ତୁ ନୃତ୍ୟରସ ଭୋଳେ ।୧୦୫।

---

୧୦୫।୨ ବାଲଖିଲ୍ୟା—ବାଳକ ଶିଷ୍ୟ ।

ଅଭୟେ ମାହେଶ୍ୱରୀ ଗୋ ପ୍ରସନ୍ନ ସାନନ୍ଦେ
ତବ ଚରଣେ ଶରଣ ମାଗୋ ମୋତେ ତୁ ଅବସ୍ଥା ନ ଦେ ।୧୦୬।
ପରଦୁଃଖେ କାତର ଗୋ ଅଭୟେ ଅନ୍ନପୂର୍ଣ୍ଣା
ଯେ ସଂସାର ଅନ୍ଧପଟଳ ଗୋ ଅଦଉଡରେ ବନ୍ଧନ ଦିନା ।୧୦୭।
କଳିକାଳରେ ଅକାରଣେ ଅଦୋଷେଣ ବନ୍ଦୀ
ଯେ ମୋହଜଳ ସାଗରୁ ମୋତେ ଉଦ୍ଧର ମାତାଙ୍ଗୀ ।୧୦୮।
ମୋହଜଳେ ପଡ଼ିଲି ମାଗୋ ଅଗ୍ୟାନୀ ଅଜ୍ଞିୟା
ତୁ ସର୍ବ ସାଧବୀ ମାଗୋ ମୋହିନୀ ଶତଶ୍ରିୟା ।୧୦୯।
ଅଣାକାର ପୁରୁଷକୁ ତୁ କଲୁ ଯେ ଆକାର
ହେମ ଶିଖରେ ବସାଇଲୁ ଗୋ ମାତା ପୃଥିବୀର ଭାର ।୧୧୦।
ସତ୍ତ୍ୱ ରଜ ତମ କାଳ କାମ ନିଦ୍ରା
କାମସେଣୀର ପ୍ରସାଦେ ମୋହୋର ସିଦ୍ଧ ହୋଉ ସର୍ବମୁଦ୍ରା ।୧୧୧।
ଭୂତ ଭବିଷ୍ୟ ବର୍ତ୍ତମାନ ଗୋ ଯେ ଗ୍ୟାନକୁ ତିନିକୋଟି
ଦୁରପଦ ମନ୍ତ୍ର ମାଗୋ ତୋହୋର କାମାକ୍ଷୀ ନାମଗୋଟି ।୧୧୨।
ମହା ଯୋଗବଳେ ମାଗୋ ତୁ କାମ ଭଣ୍ଡାର ଖଞ୍ଜି
ଉଜାଣି ହେଠାଇଲୁ ମାଗୋ କଳିକାଳ ଦର୍ପ ଗଞ୍ଜି ।୧୧୩।
ନିରାକାର ମାତାଙ୍ଗୀ ତୁ ପ୍ରସନେ ନିରଞ୍ଜନୀ
କୃତାନ୍ତେକ ଦର୍ପ ଧ୍ୱଂସିବାକୁ ଗୋ କାମାକ୍ଷୀ ରୂପ ଘେନି ।୧୧୪।
ଶ୍ରିୟା ସର୍ବାଣୀ ତୁ କାମଗ୍ନି କାମସେଣା
ନାଶକର ଦଣ୍ଡରୁ ମାଗୋ ଅଭୟେ ମୋତେ ଜଣା ।୧୧୫।
ଶ୍ରୀ କାମେଶ୍ୱରୀ କାମସେଣା ଦେବୀ ଯେ କାମାକ୍ଷୀ
ଶୂଦ୍ରମୁନି ସାରଳା ଦାସକଇଂ ତୁହ୍ମି ସେ ସର୍ବଦା ସାକ୍ଷୀ ।୧୧୬।
ବଦନ୍ତ ଅଗସ୍ତି ଶୁଣ ବଇବସ୍ୱତ ମନୁ
ସେ କାମପାଳ ରାଜା ରାଜ୍ୟ କରଇ ଯେ କାମାକ୍ଷୀ ପ୍ରସନ୍ନୁ ।୧୧୭।
ରଣଭଗ୍ନ ହୋଇଣ ସେ ପଳାଇଣ ରାୟେ
କ୍ରୋଧେଣ କାମାକ୍ଷୀଙ୍କ କରଇ ବହୁତ ବିନୟେ ।୧୧୮।
ରାଜାର କଷ୍ଟ ଦେଖି ବିଜୟେ କଲେ କାମାକ୍ଷୀ କାଳରାତ୍ରି
କି ନିମନ୍ତେ ବିନୟେ ତୁ ହୋଉଛୁ ନୃପତି ।୧୧୯।

ମାଗୋ ତୋହୋର ପ୍ରସାଦେ ମୋର ଯମକୁ ନାହିଁ ତ୍ରାସ
ଦୋଷୀ ପ୍ରାଣୀକ ଶାସ୍ତି ଦେଇ ନୁଆରଇ ଜଗୁଈଶ ।୧୨୦।
ତୋହୋର ପ୍ରସନ୍ନେ ମୋତେ ଯମଦଣ୍ଡେ ନାହିଁ ଭୟେ
ତୋହୋର ପ୍ରସନ୍ନେ ମୋର ଗଡ ଯେ ଅଜୟେ ।୧୨୧।
ତୁ ଅଭୟେ ହିଙ୍ଗୁଳା ପ୍ରସନ୍ନେ ମାତାଙ୍ଗୀ
ତୋହୋର ପ୍ରସାଦେ ମୋତେ ମଞ୍ଜପୁର ରାଜାୟେ ନୁଆରନ୍ତି
ଲଂଘି ।୧୨୨।

ଅନୁବ୍ରତେ କାଳଚକ୍ର ଯେତେ ବୁଲଇ ପ୍ରଚଣ୍ଡ
ମାତ୍ର ତରଣ ପଡନ୍ତେ ତହିଁ ସେ ହୋଇ ଶତେଖଣ୍ଡ ।୧୨୩।
ମାଗୋ କେତେଂଣ ରାଜା ଯେ ରାଜ୍ୟେ ପଶିଲ ଅଦଭୁତେ
ସଂଗ୍ରାମେ ଜଣନ୍ତା ନାହିଁ ତାହାକୁ ଅନେକ ମତେ ।୧୨୪।
ତୁ ଗୋ ପ୍ରସନ୍ନେ ଯୋଗେଶ୍ୱରୀ ଅଭୟେ କାମାକ୍ଷୀ
ତୋହୋର ଥାଆନ୍ତେ ମାତା ଗୋ ହୋଇଲ ନରମାଖୀ ।୧୨୫।
ସଞ୍ଚୟେ ଯେତେକାଳେ ଦୟା ମୋତେ ଗ୍ଛଡିଲ ଗୋସାମଣି
କ୍ରୋଧ ସମ୍ଭାଳି ନୁଆରି ରାଜା ରୋବଇ ଉଚ୍ଚବାଣୀ ।୧୨୬।
ରାଜାର ବଚନ ଯେ ଦେଖିଣ ବଦନ୍ତି ଶାକାମ୍ଭରୀ
ସଂଗ୍ରାମେ ପଶିଲୁ କମ୍ପେ ରାଜା ମୋତେ ନ ପଗୃର ।୧୨୭।
ପଶ୍ଚିମ ଦିଗବଳେ ପାଣ୍ଡବ ଭୀମସେନ
ନିମନ୍ତ୍ରିଣ ନେମ ଦୁଇଗୁଣା ପଞ୍ଚାଶ ରାଜନ ।୧୨୮।
ଲକ୍ଷେ ନରପତି ଯାହାର ଚରଣ ତଳେ ବନ୍ଦୀ
ଅଗ୍ୟାନେ କମ୍ପା ତାହାର ଭୁଲେ ହୋଇଲୁ ଦ୍ୱନ୍ଦୀ ।୧୨୯।
ଈଶ୍ୱର ଦେବତା ଭୟେ କରନ୍ତି ଯାହାର କୋପକୁ
ବଳରାମ କମ୍ପଇ ଯାହାର ନାମ ମାତ୍ରକୁ ।୧୩୦।
ଜଗନ୍ନାଥେ ଭୀମର ଅଟନ୍ତି କଳା ବୁଳୁ
ଭଲେଣ ପ୍ରାଣନାଶ ନ କଲା ବାବୁ ଭୁକୁ ।୧୩୧।
କାମପାଳ ବୋଇଲା ହେ ମାତ ମୋତେ ପଡିଲା ଅପଚୟେ
କେବଣ ବୁଦ୍ଧିରେ ଯେବେ ରକ୍ଷା ଯିବ ଗୋ ମାୟେ ।୧୩୨।

---

୧୨୧। ତୋହୋର ପ୍ରସନ୍ନେ ମୋହୋର ସମସ୍ତ ପାପ କ୍ଷୟେ ।
(ଟ, ଚ, ଛ)

ତୁହି ଗୋ ମାତା ମୋତେ ରକ୍ଷାକର ସର୍ବକାଳେ
ମମ ଚିନ୍ତା ମାହେଶ୍ୱରୀ ଗୋ ଗୁଡ଼ିଲୁ ସେତେବେଳେ ।୧୩୩।

ରାଜାର ବଚନ ଦେଖି ବିଜେକଲେ କାମାକ୍ଷୀ
ଅକାରଣେ କ୍ରୋଧେ କଂପା ହୋଇଛନ୍ତି ନିରମାଖୀ ।୧୩୪।

ତୋତେ କି ବାରତ ନ ବୋଇଲେ ଚରଗଣେ
ଭୀମସେନ ବିଜେକଲେ ପଶ୍ଚିମ ଦିଗ ବରଣେ ।୧୩୫।

ପଞ୍ଚାଶ ସହସ୍ର ରାଜା ନେମାକ ନମନ୍ତି
ଅଜ୍ଞାନେ ତାହାର ଭୁଲେ ଯେ ହୋଇଲୁ ଅପ୍ରୀତି ।୧୩୬।

ଯେବେ ଚାଲ ରାଜା ତୋତେ ତାକୁ ସମର୍ପିଇ ନେଇ
ସହାୟ କରୁ ତୋତେ ଅର୍ଜୁନର ଜ୍ୟେଷ୍ଠ ଭାଇ ।୧୩୭।

ଯାହାକଇଂ ବିନୟ ହୋଇଛନ୍ତି ନାରାୟଣ
ଭାରତେ ଭରେଇ ମଲ୍ଲ ପ୍ରତାପୀଂ ଭୀମସେନ ।୧୩୮।

କାମପାଳ ରାଜାକଇଂ ଘେନିଣ ମାହେଶ୍ୱରୀ
ବିଜୟେ ଗୋସାମଣି ବାହନ କେଶରୀ ।୧୩୯।

କାମପାଳ ରାଜାକୁ ଘେନିଣ କାମାକ୍ଷୀ ମହାମାୟେ
ବାଟସେଣ ଚାଲି ନୁଆରଇ ରାଜା ଭୀମସେନକଇଂ ମହାଭୟେ ।୧୪୦।

ଶରଣ ଉଦ୍ଧାରଣୀ ଭଗତ ମଙ୍ଗଳୀ ଗୋ ମାୟେ
ମୁହିଂ ତୋହୋରେ ଶରଣ ଅଟଇ ସର୍ବଦାୟେ ।୧୪୧।

ରାଜାର ବଚନ ଶୁଣି ବୋଲନ୍ତି ଭଗବତୀ
ନିଚନ୍ତେ ଆସ ରାଜା ନ କର ତୁ ଭୀତି ।୧୪୨।

ସିଂହ ପିଠିରେ ବିଜେକଲେ ଅନାଦି ଶକତି
ଭୀମସେନ ଛାମୁରେ ଯାଇଂ ମିଳିଲେକ ଝାଟି ।୧୪୩।

କାମସେଣା ମୂର୍ତ୍ତି ଦେଖି ପାଣ୍ଡବ ବୃକୋଦର
ଗଦାବର ଛାଡ଼ିଣ ପ୍ରଣିପତ୍ୟ ମହାବୀର ।୧୪୪।

ଜୟ ତୁ ମାତାଙ୍ଗୀ ଗୋ ପ୍ରସନ୍ନେ ଅଭୟେ
ଶରଣ ଉଦ୍ଧାରଣୀ ଭଗତ ମଙ୍ଗଳୀ ଗୋ ମହାମାୟେ ।୧୪୫।

ପଶ୍ଚିମ ଦିଗେ ଅଇଲୁ ରାଜାଙ୍କ ନିମନ୍ତଣେ
ଯେ ତୋହୋର ମୂରତି ନ ଦେଖିଲ କେଉଂଣସି ଭୁବନେ ।୧୪୬।
ହସିଣ ବଚନ ବୋଲନ୍ତି କାମାକ୍ଷୀ ମହାମ୍ହାଣୀ
ବାବୁ କାଉଂଶ୍ର ଦେଶ ଯେ ବଡ ନିପ୍ରେହ୍ମ ଭୂମି ।୧୪୭।
ପଶ୍ଚିମ କୋଣଲେ ଯେ କାଉଂଶ୍ର ବୋଲି ଦେଶ
ଯେଥେଂ କାମଦେବକୁ ଭେଟି ପିତାମହ କହିଲେ ବିଶ୍ବାସ ।୧୪୮।
ପିତାମହର ବଚନେ କାମଦେବ ଗ୍ରୁଡଲ କାମଚନ୍ତା
ଉପେକ୍ଷା କଲାକ ଯେଥେ ମଯୂଣ ପଞ୍ଚୁ ଯେ ବନିତା ।୧୪୯।
ସ୍ବାମୀର ଅଭାବେ ସେ ପ୍ରିୟବଣ୍ଟ ରତି
ମଳୟା ଚଞ୍ଚଳା ବସନ୍ତା ଯେ କାମଦେବର ପଞ୍ଚ ଯୁବଣ୍ଟ ।୧୫୦।
ସେ ପଞ୍ଚୁ କନ୍ୟାଯେ ବସି ଯେଥୁ ଦୁର୍ଗାନ୍ତ କଲେ ସାକ୍ଷୀ
ଯେକସ୍ତ୍ରଶ ଗଣ୍ଡାଯୁଗେ ମୁଂ ତାହାନ୍ତ ପ୍ରସନ୍ନ ହୋଇଲି କାମାକ୍ଷୀ ।୧୫୧।
ଯେଣୁ ସେ କାଉଂଶ୍ର ଦେଶ ହୋଇଲା ଶୁଣ ଭୀମ
ତାହାଂକ ତହୁଂ ଉପୁଜିଲା ଯେ ନୃପତି କାମ ।୧୫୨।
ବାବୁ ଯେ ରାଜାର ବଂଶଯାକ ମୋହୋର ଚରଣ ତଳେ ସେବ
ସର୍ବଦା ପ୍ରସନ୍ନ ମୁହିଂ ଯେହାନ୍ତ ହୁଅଇ କାମାକ୍ଷୀ ଭଇରବୀ ।୧୫୩।
ମୋହୋର ପ୍ରସନ୍ନେ ଯେହାନ୍ତ କେହୁ ନାହିଂ ଲଂଘନ୍ତା
ମୁହିଂ ସେ ପରବ୍ରହ୍ମ ଥାଠ ନିବର୍ତ୍ତି କରଇ ସର୍ବଥା ।୧୫୪।
ମୋହୋର ପ୍ରସନ୍ନେ ଯେହାନ୍ତ କାହାରେ ନାହିଂ ଭୟେ
ଯମ କାଳଦଣ୍ଡେ ଯେ ନୁହନ୍ତି ଅପଚୟେ ।୧୫୫।
ଅଷ୍ଟ ଉତ୍ତର ଶତେ ବରଷ ପ୍ରାଣୀଂକର ଆୟୁ
କାଳ ପୂରିଲେ ସେ ପ୍ରାଣୀଯେ ହୁଅନ୍ତି ନାଶ ।୧୫୬।
ତୁହି ମୋହୋର ପୁତ୍ର ଯେ ମୋହୋର ବାଳ
ଆରେ ଭୀମସେନର ପାଦତଳେ ପ୍ରଣିପତ୍ୟ ହୁଅରେ କାମପାଳ ।୧୫୭।

---

୧୪୬। ଯେ ତୋହୋର ରାଜ୍ୟ ପ୍ରାୟେ ନ ଦେଖିଲି କେଣେ ।
(ଛ, ଝ, ପ)

୧୪୭। ବାବୁ କାଢ଼ଂଶ୍ର ଦେଶ ଯେ ବଡ ପ୍ରୋକ୍ଷଣ ଭୂମି । (ଛ)

୧୪୭। ବାବୁ କାଢ଼ଂଶ୍ର ଦେଶ ଯେ ବଡ ବିଗ୍ରହ ଭୂମି ।
(ଘ, ଙ, ଝ, ଖ, ଥ, ନ)

ମାତାର ବଚନେ ସେ କାମେଶ୍ୱ ଦେଶର ରାଜା
ମାରୁତି ପାଦତଳେ ନୃପତି କଲା ପୂଜା ।୧୫୮।
ରାଜ୍ୟଭ୍ରଷ୍ଟ ହୋଇଥିଲା ଯେ କର୍ବତେଶ୍ୱର ନୃପତି
କାମପାଳ ଭୁଲେ ସେ ବିନସ୍ତ ଭଗତି ।୧୫୯।
ବେନି ନୃପତି ଭୀମସେନ ଚରଣେ ପ୍ରଣାମି
ଅନାଥର ଠାକୁର ତୁ ସୋମବଂଶ ସ୍ୱାମୀ ।୧୬୦।
ଭୀମସେନଙ୍କୁ କୋଳରେ ବସାଇଣ କାମେଶ୍ୱ କାମସେଣା
କାମପାଳ ରାଜାକଇଂ ସମର୍ପି ଦିଲେ ହେମବନ୍ତର ଦୁଲଣା ।୧୬୧।
ଯେହ୍ନାକଇଂ ଦୟା ବାବୁ କରିଥିବା ସର୍ବଥା
ଯାବତ କାଳେ ହୋଇଥିବ ସେ ତୋହୋରେ ଭଗତା ।୧୬୨।
ଭୀମସେନ ଗୋଚରରେ ସମର୍ପି ଦୁଇ ନୃପମଣି
ଭୀମସେନ ବୋଇଲେ ଯେ ତୋହୋର ଆଜ୍ଞାଂ ଗୋସାମଣି ।୧୬୩।
କାମେଶ୍ୱ ମଣ୍ଡଳେ ତୁ ଗୋ ମଣ୍ତଣି ମହାମାୟେ
ତୁ ଯାହାକଇଂ ପ୍ରସନ୍ନ ହୋଉ ସେ ସଂଗ୍ରାମେ ନିର୍ଭୟେ ।୧୬୪।
ଭୀମସେନର ବଚନେ ସନ୍ତୁଷ୍ଟ ହୋଇଲେ ଜଗତମାତ
ପ୍ରସନ୍ନ ହୋଇ ଭୀମକଇଂ ଦିଲେ କାମ୍ୟେକ ନାମେଣ ଶସ୍ତ୍ର ।୧୬୫।
ଯଦ୍ୟପି ହରିହର ବ୍ରହ୍ମା ଇନ୍ଦ୍ର ଆଦିକର
ସେ ଶସ୍ତ୍ର ଥିଲେ ସଂଗ୍ରାମେ ତୋତେ କେହ୍ନ ନୋହିବେଟି ସର ।୧୬୬।
ପ୍ରସନ୍ନ ବିନୟଭାବେ ହରିଡମ୍ବିଙ୍କର ପ୍ରାଣନାହା
ତ୍ରୈଲୋକ୍ୟ କେ ଜିଣି ତୁ ଯାହାକଇଂ ହେଉ ସାହା ।୧୬୭।
କାମପାଳଙ୍କୁ ବୃକୋଦର କଲେକ ଅନେକ ଗଉରେବ
କର୍ବତସେନଙ୍କୁ ଅନୁଗ୍ରହ କଲେ କାମପାଳର ବିନୟଭାବ ।୧୬୮।
ସମଦଣ୍ଡ ଘେନି ଦୁହେଂ ଚଳ ସେହିକ୍ଷଣି
ଯେ ଯାହାର ସନ୍ୟ ନିଅ ପାରିଦଣ୍ଡ ପଲ୍ଲିଣି ।୧୬୯।
ଅକ୍ଷତ ଗୁଆ ଦିଲେ ଭୀମ ସେ ଦୁଇ ରାଜାଂଙ୍କୁ
ରାଜ ଦିବସେ ଚଳ ଯାଅସି ଇନ୍ଦ୍ରପ୍ରସ୍ଥକୁ ।୧୭୦।
ଆଜ୍ଞାଂ ଦିଲେ ତାଙ୍କୁ ତ୍ରୈଲୋକ୍ୟ ମୋହିନୀ
ଚଳ ବେନିରାଜ ଭୀମସେନ ଆଜ୍ଞାଂ ଘେନି ।୧୭୧।



ଦେଖା ଦରଶନ ଧନ ଦେବ ଯୁଧିଷ୍ଠି ଦେବଂକୁ
ଯେତେକ ନେଇ ବହନେ ଚଳ ଇନ୍ଦ୍ରପ୍ରସ୍ଥକୁ ।୧୭୨।
କରପତ୍ର ଯୋଡ଼ି ବୋଲଇ କାମପାଳ ଚନ୍ଦ୍ରଭ୍ରଷ୍ଟ
ସ୍ୱାମୀ ମୋହୋର ରାଜ୍ୟ ମୁଣ୍ଡୋହ୍ୱ କରିବା ମୋହୋର ଚିତ୍ତୁ
ମନୋଭ୍ରାନ୍ତ ।୧୭୩।
କାମପାଳର ବଚନେ ରନ୍ଧିଲେ ଭୀମସେନ
ଆପଣେ ଗୋସାମଣି କରନ୍ତ ଅମୃତ ପାକ ପଚନ ।୧୭୪।
ଯେକା ରନ୍ଧଣା କରନ୍ତ କାମେଶ୍ୱ କାମସେଣା
ସ୍ତ୍ରାନ ସାର ମୁଣ୍ଡୋହ୍ୱରେ ବିଜେକଲ୍ଲ କୋଇନ୍ତାଂକର ଦୁଲଣା ।୧୭୫।
ଦିବ୍ୟବେଶ ହୋଇଣ ଦେବୀ ତ୍ରଇଲୋକ୍ୟ ମୋହ୍ୱମା
ବାବୁ ବୃକୋଦର ବସ ତୋହୋର ଭୁଲେ ଯେତେକ ସଇନ ।୧୭୬।
ଭୀମସେନ ବୋଇଲ୍ଲ ତୁ ଗୋ ରାନ୍ଧିଲୁ ଜଗତମାୟେ
ଯେକ ଜଣକେ ରାନ୍ଧିଲୁ ଅନ୍ନ କୁଡ଼ୁଆ ଗୋଟିୟେ ।୧୭୭।
ଅଲ୍ପ ଅନ୍ନେ କାହ୍ନିଂ ବହୁତ ଜନ ବସାଇ
ଅତିଥି ଅନିପୂର୍ତ୍ତ ହେଲେ ଗୋ ଧର୍ମକୁ ନୁଆସଇ ।୧୭୮।
ବୋଲନ୍ତ କାମାକ୍ଷୀ ଦେବୀ ବାବୁ ମାତାର ପରଶିଲେ
ପୋୟେ ନିପୂର୍ତ୍ତ ହୁଅନ୍ତ ମାତାର ଅନ୍ନ ଦିଲେ ।୧୭୯।
ଗୋସାମଣିର ବଚନେ ଭୀମସେନ ମୁଣ୍ଡୋହ୍ୱରେ ବିଜୟେ
ଆପଣେ ଗୋସାମଣି ସବ୍ରନ୍ତ ଅନ୍ନ ଦିୟେ ।୧୮୦।
ଅକ୍ଷୌହିଣୀ ଏକ ରଥୀ ଦୁଇ ଅକ୍ଷୌହିଣୀ ହାଥୀ
ଗୃଶ ଅକ୍ଷୌହିଣୀ ଅଶ୍ୱ ତିନିଲକ୍ଷ ପାଦାନ୍ତ ।୧୮୧।
ଯେତେକ ସୈନ୍ୟକୁ କାମାକ୍ଷୀ ପରଶନ୍ତ ଅନ୍ନ
ଅନେକ ନିପୂର୍ତ୍ତ ହୋଇ ଜନେ କରନ୍ତ ଭୋଜନ ।୧୮୨।
ଯେକ କୁଡ଼ାଇରୁ ଅନ୍ନ ପରଶନ୍ତ ଗୋସାମଣି
ଯେକ କୁଡ଼ାଇରୁ ବ୍ୟଞ୍ଜନ ଦିଅନ୍ତ ସେହୁ ଆଣି ।୧୮୩।
ଅମୃତ ରସ ପ୍ରାୟେକ ଭୁଞ୍ଜନ୍ତ ସର୍ବ ସଇନ
ମନେ ଉଲ୍ଲାସ ଦେବୀ ସିଦ୍ଧ ଯେ ଭବାନୀ ।୧୮୪।

---

୧୭୨।' ରତ୍ନ ଦିବସେ ଚଳ ହୋ ଇନ୍ଦ୍ରପ୍ରସ୍ଥକୁ ।
(ଡ, ଥ, [illegible], [illegible], କ, ଛ, ଭ)

ଅନେକ ଗୋରସ ପାକ ପିଠା ଅଗଣିତ
ଭୋଜନେ ନିପୁଣ ହୋଇଲେ ପବନର ସୁତ ।୧୮୫।
ସୁପଂକୁ ଅନ୍ନ ମେଞ୍ଜନ ଆହାର ଭୋଜନ
ଭୁଞ୍ଜିଣ ଗ୍ରାସ ଯେ ନ ଭାଞ୍ଜଇ ମନ ।୧୮୬।
ମହାମାୟା ପରଶନ୍ତି ପରମ ସାନନ୍ଦେ
ଭୁଞ୍ଜନ୍ତି ସକଳ ସଇନବଳ ମନର ଆନନ୍ଦେ ।୧୮୭।
ବିଶେଷେଣ କାମାକ୍ଷୀ ଯେ ଜଗତ ମୋହିନୀ
ସୁଶୀତଳ ବଚନ କହନ୍ତି ଅମ୍ବିର କୋକିଳ ବାଣୀ ।୧୮୮।
ଭୋଜନ କରନ୍ତେ ଯେ ଅଡ଼ାଇ ପ୍ରହର ରାତ୍ର
ଭୁଞ୍ଜିଣ ସର୍ବଜନେ ହୋଇଲେ ନିପୃତ୍ତ ।୧୮୯।
ଖଣ୍ଡ କ୍ଷିର ଅମୃତ ପାଣି କଦଳୀ ପଇଡ଼ ଗଙ୍ଗବାଣ
ସୁସ୍ୱାଦ ପଂକୁ ଆମ୍ବଫଳ ଦେବୀ ପୃଷ୍ୟ ମାସେଣ ।୧୯୦।
ଯେବଣ ପଦାର୍ଥକୁ ନ ପାଇ ଅବସନ୍ତେ
ତାହା ଆଣି ପରଶନ୍ତି ଦେବୀ କଉତୁକ ଚିତ୍ତେ ।୧୯୧।
ଭୁଞ୍ଜରେ ବାବୁ ତୁମ୍ଭେ ଯେ ଯାହାର ମନଇଚ୍ଛା
ଯହିଂକ ଯାହାର ସ୍ୱାଗ ମାଗିବ ଯେ ଯାହାର ବାଞ୍ଛା ।୧୯୨।
ଭୋଜନ ସରନ୍ତେ ତହିଂ ଫସର ହୋଇଲାକ ରାତ୍ର
ଫୁଟିଲା ଶଙ୍ଖଧ୍ୱନି ତାମ୍ରଚୂଡ଼େ ରଡ଼ନ୍ତି ।୧୯୩।
ଭୋଜନ ସରିଲା ହୋଇଲା ଅରୁଣ ପ୍ରକାଶ
ଆଂଚେଇବନେ ବିଜେକଲେ ପବନର ଶିଷ ।୧୯୪।
କର୍ପୂର ମିଶ୍ରିତ ବାସ ସୁସଞ୍ଚ ପନର ପାଣି
ଆପଣେ ନିଯୋଗୀ ଦ୍ୟନ୍ତି ଦେବୀ ଗୋସାମଣି ।୧୯୫।
ଆଂଚେଇବନ ସାରି ଭୀମ ବିଜୟେ ଆସ୍ଥାନେ
କର୍ପୂର ତାମ୍ବୁଲ ବିଡ଼ଆ ଭୁଞ୍ଜନ୍ତି ଭୀମସେନେ ।୧୯୬।
କାମାକ୍ଷୀ ଦେବୀଙ୍କ ଭୀମସେନ କରଇ ଅନେକ ପୂଜା
ବଡ଼ାଇ ଦୁର୍ଲଭ କଥା ମାଗୋ କହିବା ଗିରିଜା ।୧୯୭।
ଏମନ୍ତ କୁଡ଼ୋଇକ ଅନ୍ନ ଏମନ୍ତ କୁଡ଼ୋଇକ ବ୍ୟଞ୍ଜନ
ସମସ୍ତ ସନ୍ୟକଇଂ ଅଣ୍ଟିଲା ଏଥିର ଚରିତ କେସନ ।୧୯୮।

ଯେ ବେଲଗୋଟି ହାଣ୍ଡି ଯେ ଅନେକ ମେଞ୍ଜନ ହୋଇବ
ବଢ଼ାଇ ଆଣି ଜ ମାଗୋ ଅଶକ୍ୟ ଦୁର୍ଲ୍ଲଭ ।୧୯୯।
ଶୁଣସି ହୋ ବୃକୋଦର ଆମ୍ଭେ ହିଙ୍ଗୋଳାର ଦୁହିତା
ସକଳ ବିଦ୍ୟାଯେ ଆମ୍ଭେ ଅଟୁ ସେ ନିର୍ଜିତା ।୨୦୦।
ଅମୃତ ରସ ଯୋଗାଡ଼ ଆମ୍ଭଂକୁ କହିଲେ ଜଗତମାତ
ହିଙ୍ଗୁଳା ପ୍ରସନ୍ନେ ରାନ୍ଧଣା ଯୋଗାଡ଼ ଆମ୍ଭଂକୁ ସମସ୍ତ ହୋଇଲା
ପ୍ରାପତ ।୨୦୧।
ଆହୋ ଭୀମସେନ ଲକ୍ଷେ ରାଜାଂକର ଯେତେକ ଥାଠ ସଇନ
ସମସ୍ତଂକୁ ନିପୁଣ୍ଡ କରିବ ଯେକା କୁଣ୍ଡୋଇକର ଅନ୍ନ ଘେନ ।୨୦୨।
ସ୍ତ୍ରିୟାକୁଳେ ସାଧେବୀ ଅଛନ୍ତି ପୁଣ ଯେତେ
ଅନ୍ନ ମେଞ୍ଜନ ନ ସରଇ ତାହାଂକର ଅନ୍ନ ସଂପାଦନ୍ତେ ।୨୦୩।
ଯେକ ମାତାଯେ ଯେକ ପିତାଯେ ଜାତ ଯେଉଂଣ ଦୋହିତା
ଯେକ ଭ୍ରଥାକେ ଯାହାର ଚିତ୍ତ ସେ ନିବର୍ତ୍ତା ।୨୦୪।
ତାହାଂକର ଶରୀରେ ବିଜେକରୁ ସର୍ବଦା
ଅନୁଗ୍ରହ କାନ୍ତାମା ଆମ୍ଭେ ବାଞ୍ଛା ସର୍ବସିଦ୍ଧା ।୨୦୫।
ଭୀମସେନକଇଂ ଅନୁଗ୍ରହ କଲେକ କାମଟସେଣା
କହିଲେକ ମହାବିଦ୍ୟା ଦେବୀ ଅଭୁଟ ରାନ୍ଧଣା ।୨୦୬।
ଯେମନ୍ତ ବିଦ୍ୟା ବାବୁ ଶରୀରେ ଥିବୁ ଘେନ
ଯେକା ଯୋଗାଡ଼କେ ହୋଇବ ଗଉଣୀ ଶଉଣୀ ନଳବିଧି ଭିନ ।୨୦୭।
ରାଜୁସି ଯାଗରେ ହୋ କରସି ପଚନ
ଯେକା ପଚନେ ଭୋଜନ ସମସ୍ତ ରାଜନ ।୨୦୮।
ତୁ ମାସ ଛତ୍ରଶାଳେ ଦେଉଥିବୁଟି ଯୋଗାଡ଼
ହବାରବେ ଭୁଞ୍ଜିବେ ଯେ ଯେତେ ଇଚ୍ଛାକରି ।୨୦୯।
ରାନ୍ଧିବାକୁ ଅଳପ ପରଶିତେ ଅନେକ
ଯେ ରାନ୍ଧଣା ଅକ୍ଷୟେ ଦେବସ୍ତ୍ରିମାନଂକୁହିଂ ଅଶକ୍ୟ ।୨୧୦।
ପ୍ରସନ୍ନ ଗୋସାମଣି ଭୀମକୁ ଅନେକ ବିଦ୍ୟା ଦିଲେ
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ଗୁଟିକାଞ୍ଜନ ଉଲ୍ଲୁକ ବିଦ୍ୟା
ଶିଖାଇଲେ ।୨୧୧।

ଯନ୍ତ୍ରଂ ସେ କଟାଳ ବାକୁ ତୋତେ ପଡଇ ବୃକୋଦର
ମୁକ୍ତଂ ଅନୁବ୍ରତେ ବଜେ କରଥିବ ତୋ ବାମ କନ୍ଧର ।୨୧୨।
ଅନୁଗ୍ରହ କଲେ ଭୀମସେନକୁ ମହାମାୟେ
ଅନୁଗ୍ରହ ପ୍ରସନ୍ନେ ଦେବୀ ବୋଇଲେ ଅଭୟେ ।୨୧୩।
ତହୁଂ ମାରୁତି ଉଠିଲା କରଣ ଜୟେ ଜୟେ ।୨୧୪।
କାମାକ୍ଷୀ ଦେବୀଂକ ନିମନ୍ତ୍ରଣ କରଇ ବୃକୋଦର
ଅକ୍ଷତ ଗୁଆ ଦେଲା ସେ ଦେବୀଂକ ପୟର ।୨୧୫।
ରାଜସୂୟ ଯାଗ କରବେ ଯୁଧିଷ୍ଠିର ମହାରାୟେ
ତାହାଂକ ବଜେ ତୁମ୍ଭେ କରବଟି ଗୋ ମାୟେ ।୨୧୬।
କାଉଂରୀ ଆଜ୍ଞାଂ ହେଲେ ଭୀମସେନକଇଂ ରାଇ
ରାଜସୂୟ ଯାଗକୁ ଯିବୁ ତୁ ଯାଅସି ବେଗ ହୋଇ ।୨୧୭—୩୫୬୩।

---

## ଶିବ ରାଜା ଓ ଅମ୍ବର ରାଜାଙ୍କୁ ନିମନ୍ତ୍ରଣ

କାମରୀ ଦେଶରୁ ଯେ ଚଳଇ ବୃକୋଦର
କାମପାଳ ନୃପତି ଇନ୍ଦ୍ରପ୍ରସ୍ଥକୁ ହୋଇଲା ବାହାର ।୧।
ଜୟଶଙ୍ଖ ଶବଦ ଯେ ଗହଳ ବାଜଇ
ମାନସୀ ନଦୀକୂଳେ ଆଠ ଅଛନ୍ତି ଚଳାଇ ।୨।
ଦଣ୍ଡ ଦେଲା ଭୀମସେନ ପଶ୍ଚିମ ମୂରତି
ବନ ପର୍ବତ ଜିଣି ଯେ ଚଳଇ ମାରୁତି ।୩।
ବହନ୍ତନ୍ତି ସଇନେ ଅନେକନ୍ତଂ ହରଷେ
ବଜାୟେ ବୃକୋଦର ବୀର ଯାଇଂ ମହାରାଷ୍ଟ୍ର ଦେଶେ ।୪।
ସେ ରାଜ୍ୟର ରାଜା ଯେ ଶିବ ନାମେଣ ନୃପତି
ଶ୍ୱେତଅଶ୍ୱ ପଞ୍ଚାଶସହସ୍ର ଯାହାକୁ ଖଟନ୍ତି ।୫।
ପଶ୍ଚିମ କୋଶଳରେ ଯେତେକ ନୃପମଣି
ଅଭିଷେକ କାଳେ ତା ତହୁଂ ସର୍ବେ ପାଟଅଶ୍ୱ ଆଣି ।୬।
ସମସ୍ତ ରାଜାଂକର ସେ କୁଳଶ୍ରେଷ୍ଠ ଗୁରୁ
ତ୍ରେତାଯୁଗ ରାଜା ମହେଶ୍ୱର ରୂପେ ଅବତରୁଂ ।୭।

ଭୀମସେନ ପ୍ରବେଶ ହୋଇଲେ ତାର ରାଜ୍ୟେ
ନଗ୍ରରେ ପଶନ୍ତେ ଉତାହୁଳ ଶବଦ ବାଜେ ।୮।
ସମଦଣ୍ଡ ହେନ ରାଜା ବଜଯ୍ରେ ଆସ୍ଥାନେ
ବାମଦେବ ମନ୍ତ୍ରୀ ତାର ଅଛଇ ସନ୍ନିଧାନେ ।୯।
ମହାସମ୍ଭବେ ରାଜାର ନିଚଳ ଆସ୍ଥାନର ବେଳେ
ଦେଶାନ୍ତର ବାରତା କହିଲ ଜଗଣ୍ଣିର ଛଳେ ।୧୦।
ଶୁଣ ଦେବ ସାବଧାନେ ପରରାଷ୍ଟ୍ରର ବାରତା
ଯୋଧାଯ୍ରେ ରାଜ୍ୟେ ପଶିଲ ଯେ ବଡ଼ାଇ ବଳବନ୍ତା ।୧୧।
ସମସ୍ତ ଦେଶ ରାଜ୍ୟ, ଦେବ ସେ ଆସୁଅଛି ଭାଙ୍ଗି
ମହାବଳବନ୍ତା ଯୋଦ୍ଧା ସେ ପଶଇ ଗଳଗାଜ ।୧୨।
ଯେହ୍ନେକ୍ଷଣି ନଗ୍ର ତୋର ସ୍ୱାମୀ ହୋଇବ ଯେ ଜୂର
ପୃଥୀ ହେଲ ଯେନଇ ଦେବ ତାହାର ଶୁଳନ୍ତେ ଦୂରୁଦୂର ।୧୩।
ମହାପଣ୍ଡିତ ତୁ ରାଜାଧିରାଜେଶ୍ୱର
ଶତ୍ରୁ ଉପଗତ ଦେବ ବିଚାର କାର୍ଯ୍ୟକର ।୧୪।
ଦେଶାନ୍ତର ମୁଖରୁ ପାଇଣ ଯେହ୍ନେସନକ ବାରତ
ମନ୍ତ୍ରୀର ମୁଖକୁ ସେ ଚାହିଁଲ ନରନାଥ ।୧୫।
ମନ୍ତ୍ରୀବର ବୋଇଲ ଶୁଣିମା ନୃପତି
ଭୀମସେନ ଆସନ୍ତି ପଶ୍ଚିମ ରାଜାନ୍ତ ନିମନ୍ତ ।୧୬।
ଯୁଧିଷ୍ଠିର ଦେବ କରିବେ ରାଜସୂୟ ଯାଗ ସଭା
ସେ ସଭାକୁ ବିଜେକରିବେ ସମସ୍ତ ରାଜଦେବା ।୧୭।
ଅନେକ ଦେଶର ରାଜା ଅଇଲେନି ସାଧି
ହେ ଦେବ ନୃପବର ନ କର ଖେଦବୁଦ୍ଧି ।୧୮।
ଦେଖା ଦରଶନ ଧନ ଘେନି ଚଳ ଭୀମସେନ ପାଶ
ଶୁଣିଣ ନୃପତି ମନେ ଅତ୍ୟନ୍ତ ହରଷ ।୧୯।
ଦେଖା ଦରଶନ ଧନ ଶତେଭାର ଘେନି
ବିଜେ କାଷ ପର୍ବତେ ଯାଇଂ ଭେଟିଲ୍ଲ ପାବେନି ।୨୦।

---

୧୩। ୨ ପୃଥୀ ହେଲ ଯେନଇ ବାଦ୍ୟନାଦେ ତାର । (ଘ,ଖ,ନ,ଠ)

ଭୀମସେନ ବିଜୟେ ବଡୋଲାକ୍ଷ ପର୍ବତେ
ତନାଗରାଜ୍ୟର ବାରତା ନେଇ ଜଣାଇଲେ ଦୂତେ ।୨୧।
ଶୁଣିମା ସାବଧାନେ ଭୁ କ୍ଷତ୍ରିୟ ଚୂଡ଼ାମଣି
ନଇର୍ଋତ କୋଣେ ଅଛୁ ରାଜା ଯେତେକ ପୁଣ୍ଡ୍ରଶାକ ଚକ୍ରପାଣି ।୨୨।
କରବୀର ଦେଶର ସେ ଅଟଇ ଆଧିପତି
ବୋଲାଇ ପ୍ରତାପୀ ରାଜା ଅଟଇ ଚକ୍ରବର୍ତ୍ତୀ ।୨୩।
ସୁବର୍ଣ୍ଣର ଶଗଡ଼ରେ କରଣ ନିର୍ମିତ
କାଠର ଗରୁଡ଼େ ଦେବ ସାଜଥାଇ ଅନୁବ୍ରତ ।୨୪।
ଦ୍ୱାରଦ୍ୱାରେ କରଇ କାଠ ଗରୁଡ଼େକ ଚଢ଼ିକରି
କାଠର ବେନିଭୁଜ ଲଗାଇଥାଏ ଶଙ୍ଖ ଚକ୍ର ଗଦା ଧରି ।୨୫।
ଗାଣ୍ଡିମ ସାର୍ଙ୍ଗିଶେ ଧନୁଟେକ ଧରିଥାଇ କରେ
ବାସୁଦେବଙ୍କଇଂ ନିନ୍ଦଇ ସେ ଦୁଷ୍ଟ ପ୍ରକୃତିରେ ।୨୬।
ଦୁଷ୍ଟକୃଷ୍ଣ ରୂପ ଧରି ଦ୍ୱାରଦ୍ୱାରେ କରଇ ସେ ପ୍ରିତୀ
ବୋଲାଇ ଅର୍ଗଳ ସେ ପଶ୍ଚିମ ଚକ୍ରବର୍ତ୍ତୀ ।୨୭।
ଦୁଷ୍ଟର ରାଇକେଶ୍ୱର ସେ ଅଟଇ ଦୁଷ୍ଟ ବୀର
ରାଜାଂକର ମଧ୍ୟେ ସେ ଅଟଇ ବଳବନ୍ତ ଅନର୍ଗଳ ।୨୮।
ଜରାସନ୍ଧ ପୁତ୍ରକଇଂ ସେ ଦେଇଛୁ ଦୁହିତା
ତେଣୁକରି ସାଂଗ୍ରାମେ ସେ କାହାକଇଂ ନ କରଇ ଗଣିତା ।୨୯।
ତାହା ଶୁଣି ମାରୁତି ଯେ ମନେ କଲା ରୋଷ
ନାଶମୋଡ଼ ଗଦା ଉଆଂଇଲା ପବନର ଶିଷ ।୩୦।
ବର୍ଣ୍ଣ ଚିହ୍ନ ସେହୁ ବହଇ ସ୍ୱାମୀର ମୋହୋର
ଶଙ୍ଖ ଚକ୍ର ଗଦା ଗାଣ୍ଡିମ ଯେ ବହେ ତସ୍କର ।୩୧।
ଦେଖିବା କେମନ୍ତେ ସେହୁ କେତେ ସାମରଥ
ସାରଥିକ ବୋଇଲା ଭୁ ବେଗେ ବାହା ମୋର ରଥ ।୩୨।
ମରୁତ ସାରଥି ତାର ବଚନ ଅବଧାରି
ଯେବେ ଶିବପୁର ରାଜାକଇଂ ଯିବା ନିମନ୍ତ୍ରଣ କରି ।୩୩।
ବଡୋଲାକ୍ଷ ପର୍ବତୁଂ ଓହ୍ଲାଇଲା ମାରୁତି
ଅଶ୍ମକ ଦେଶେ ପ୍ରବେଶ ହୋଇଲା ନିଶାରାତି ।୩୪।

---

୩୪।୨ ଅମ୍ବୋଦେଶେ ପ୍ରବେଶ ହୋଇଲା ନିଶାରାତି । (କ,ଭ,ଟ)

ଦେଶାଉରଗଣ ଯାଇଂ କହିଲେ ଶିବରାଜାର ଅଗ୍ରତେ
ସ୍ୱାମୀ ଭୀମସେନ ଠାକୁରେ ପଶିଲେ ତୋର ରାଜ୍ୟ ସୂକ ରଥେ ।୩୫।
ଶୁଣିଣ ସାନନ୍ଦ ଯେ ଅଶ୍ୱଦେଶ ଅଧିକାରୀ
ପାଟ୍ଟୁଡ଼ା ପାଡ ବୋଲିଣ ବୋଇଲା ଆଗ୍ୟାଂ ଅବଧାରି ।୩୬।
ରାଜାର ଆଗ୍ୟାଂୟେ ସେ ଧାଇଂଲେ ପାତ୍ରମନ୍ତ୍ରୀ
ଅନେକ ବିହୁଡ଼ି ତୁଳା ଯେ ଲଗାଇ ନିଶାରାତ୍ରି ।୩୭।
ଦେବାଙ୍ଗ ବସନ ନେଇ ପାଟ୍ଟୁଡ଼ା ପାଡିଲେକ ଭୂମି
ବେନିହାଥେ ଚାମର ଧରିଣ ପାଦେ ଚାଳଇ ଶିବରାଜା ସ୍ୱାମୀ ।୩୮।
ମଲୟା ବସନ୍ତା ବୋଲି ତାହାର ବେନି ଯେ ଭାରିଯା
ସହସ୍ରେକ ଭାର ପାଣିଦ୍ରବ୍ୟ ଘେନି ଆସଇ ମହାରାଜା ।୩୯।
ପବନର ନନ୍ଦନ ଯେ ଅବକାଶେ ବିଜୟେ
ତିନି ଅହ୍ୱବ୍ରତ ତୁଳା ଜଳଇ ଦିବସର ପ୍ରାୟେ ।୪୦।
ଶିବ ନୃପତି ତାହାକଇଂ ଦେଖିଲେକ ଦୂରୁଂ
ବିପଣ୍ଡ ଝାଳ ଗଳଇ ରାଜାର ନିଉଚ୍ଛୁଳ କରୁ କରୁ ।୪୧।
ସନିଧରେ ପ୍ରବେଶ ଯାଇଂ ହୋଇଲା ରାଜେଶ୍ୱର
ଉଠ ଉଠ ହୋ ମହାରାଜା ବୋଲି ବୋଇଲେ ବୃକୋଦର ।୪୨।
ଦେଖା ଦରଶନ ଧନ ଦିଲା ଚାରି ଅହ୍ୱବ୍ରତେକ ବାଣ୍ଟି
ଶୁଦ୍ଧ ସୁବର୍ଣ୍ଣ ସ୍ଫଟିକ ପ୍ରାୟେ ସବୁ ଦିଶନ୍ତି ପବନୁଂ ବେଗ ତେଜ ।୪୩।
ଚାରି ଅହ୍ୱବ୍ରତେକ ଭାର ଥୋଇଲା ପାଣିଦ୍ରବ୍ୟ
ମଲୟା ବସନ୍ତା ବେନି ଭାରିଯାନ୍ତି ଘେନି ପ୍ରଣିପତ୍ୟ ହୋଇ ଗୁଡ଼ିଲା

ରାୟେ ଶିବ ।୪୪।

ଉଠ ଉଠ ନୃପତି ବୋଲି ଆଗ୍ୟାଂ ଅବଧାରି
ଯେ ମନେ ବାଞ୍ଛା ପରପତ ହୋଉ ଯେ ତୋହୋର ।୪୫।
କାଳୀଞ୍ଜନ ପତି ହାରି ଯାଇ ରାଜାକଇଂ କୋଳକଲେ
ଉଠଉଠ ହୋ ଶିବରାଜା ତୁମ୍ଭଂକୁ ଭୀମସେନ ଠାକୁରେ ଆଗ୍ୟାଂ

ଦିଲେ ।୪୬।

---

୪୦।୧ ପବନର ନନ୍ଦନ ଯେ ଲୀଳାୟେ ବିଜୟେ । (ଙ,ଅ)

ଆଜ୍ଞାଂ ପ୍ରମାଣେଣ ଉଠିଲା ଶିବ ନୃପତି
ବେନିକର ମଥାରେ ଦେଇ କରଇ ଅନେକ ସ୍ତୁତି ।୪୭।
ରଥରୁ ଓହ୍ଲାଇ କରି ପବନର ବାଳ
ଶ୍ରୀଭୁଜେ ଭୀମସେନ ଶିବ ନୃପତିକୁ ଧରି କଲେ କୋଳ ।୪୮।
ନିମନ୍ତ୍ରଣ ଯୋଗାଡ଼ ନେଇ ଦିଲେକ ଶ୍ରୀହସ୍ତେ
ବିନମ୍ର ହୋଇ ରାଜା ନିବେଶିଲେକ ମାଥେ ।୪୯।
ଆହେ ଶିବରାଜା ତୋହୋର ଯେତେକ ସଇନି
ଇନ୍ଦ୍ରପ୍ରସ୍ଥକୁ ଚଳଯାଅ ଅନୁକୂଳ ହେଲି ।୫୦।
ରାଜସୂୟ ଯାଗ ଯେ ହୋଇବ ମହାସଭା
ଯୁଧିଷ୍ଠିର ଦେବଙ୍କର ପୟରେ ଯାଇଂ କର ସେବା ।୫୧।
ଦେଖା ଦରଶନ ଧନ ଯେତେକ ଆଣିଲୁ ମୋହୋର ଶ୍ରୀମୁଖକୁ
ଯେ ମୋହୋର ଦିଲି ବୋଲି କହିବୁ ଶ୍ରୀ ଜଗନ୍ନାଥ ଦେବଙ୍କୁ ।୫୨।
ଅନେକ ଭଗତ ଯେ ହୋଇଲା ଶିବରାଜା
ବହୁତ ଭଗତ ହୋଇ ଭୀମସେନର ଚରଣେ କରଇ ଦିବ୍ୟପୂଜା ।୫୩।
ସ୍ୱାମୀ ଅନୁଗ୍ରହ ନାଥ ମୋହୋର ପୁରେ ଆଜକ ରହିବା
ରାଜ୍ୟ ମୋହୋର ସୁଲଭ ହୋଇବ ମୁଣୋହି କରିବା ।୫୪।
ଭୀମସେନ ବୋଇଲା ଯେବେ ପ୍ରସର ହୋଇଲା ରାତି
ଅନେକ ଦେଶ ରାଜାନ୍ତ ମୁହିଂ ଯିବଇ ନିମନ୍ତି ।୫୫।
ଭୋଜନକୁ ଚିନ୍ତା କହେ ହୁଅଇ ଯେତେବେଳହୁଂ
ନାରାୟଣଂକ ଆଜ୍ଞାଂଯେ ଯିବ ରହିବ ଆଉ କାହୁଂ ।୫୬।
ଦୁଇ ଉଣା ପଞ୍ଚାଶ ସହସ୍ର ରାଜା ନିମନ୍ତ୍ରିବ ନଉ ଦିବସେ
ବାହୁଡ଼ି ଯାଇ ପ୍ରବେଶ ହୋଇବ ମକର ଯେ ମାସେ ।୫୭।
ଯେହି ନିରାଧାର ଆଜ୍ଞାଂ ମୋତେ ଦେଇଛନ୍ତି ଗୋବିନ୍ଦ
ନଉ ଦିବସୁଂ ଅଧିକ ହୋଇଲେ ପକାଇବେ ଶିରଚ୍ଛେଦ ।୫୮।
ମୁଣୋହିକ କଟାଳ ତୁ ନ କର ମହାରାଜା
ସମଦଣ୍ଡି ହେଲି ବାବୁ ତୁ ବହନ ହୋଇ ଯା ଯା ।୫୯।
ନିରାଧାର ଆଜ୍ଞାଂ ଘେନୁଂ ଦିଲେ ମହାରାଣେ
ଶିବରାଜା ବାହାର ହୋଇଲା ଭୀମସେନର ଆଜ୍ଞାଂ ପରମାଣେ ।୬୦।



ଆହେ। ଶିବରାଜା ତୁ ଉତ୍ତର କୋଣ ମାଡ଼ ଯିବୁ
ମତ୍ସ୍ୟଦେଶ ରାଜା ବିରାଟକୁ ତୁ ସଙ୍ଗେ ଘେନିଥିବୁ ।୬୧।
ବିରାଟ ପଣ୍ଡିତ ରାଜା କୀଚକ ମନ୍ଦବୁଦ୍ଧି
ବହନ ଦଣ୍ଡ ଘେନିଯାଉ ନାଶ ନ କରୁ ସମ୍ପୃଧି ।୬୨।
ଶିବରାଜା ବୋଇଲେ ଦେବ ଆଜ୍ଞା ପରମାଣେ
ମତ୍ସ୍ୟଦେଶରୁ ବିରାଟକୁ ଘେନିଯିବି ସେହିକ୍ଷଣେ ।୬୩।
ବିରାଟର ପୁତ୍ର ନାମ ଉତ୍ତରକୁମାର
ମୋହୋର ଦୋହିତା ଦେଇଅଛୁ ସେ ଜୁଆଇଁ ମୋହୋର ।୬୪।
ଯଦ୍ୟପି ବିରାଟରାଜା ମୋହୋର ଅଟଇ ସମୁଧି
ସ୍ୱାମୀର ଆଜ୍ଞା ପ୍ରମାଣେ ସେହି ବାଟେ ବିରାଟକୁ ନେଇ ପାରଇ
ବାନ୍ଧି ।୬୫।

ଭୀମସେନ ଚରଣେ ଓଳଗ ମେଲାଇ
ଶିବରାଜା ଉତ୍ତର ମୁଖେ ଥାଟ ଯେ ଚଳାଇ ।୬୬।
ପଞ୍ଚାଶ ସହସ୍ର ରାଜାର ଯେ ମୁକୁଟବନ୍ଧା ଯୋଦ୍ଧା
ବିଦ୍ୟାଧର ପ୍ରତ୍ୟେକ ସର୍ବେ ଦଶନ୍ତ ସର୍ବସିଦ୍ଧା ।୬୭—୩୬୨୯।

---

## ଭୀମଙ୍କର ପୁଣ୍ଡରୀକ ବାସୁଦେବ ରାଜା ସହ ଯୁଦ୍ଧ ଓ ତାହାର ବନ୍ଧନ

ଭୀମସେନ ଚଳଇ ନଇରୁତ କୋଣ ମୂର୍ତ୍ତି
କରବୀର ପୁରକୁ ସମଦଣ୍ଡ ଘେନି ଚଳଇ ମାରୁତି ।୧।
କଉଶିକ ବୋଲିକରି ଯେତେକଇ ନଦୀଗୋଟି
ନଉରୁତ ମେଖଳ୍ଳଂ ସେ ଯମୁନାଧାରେ ଫୁଟି ।୨।
ଦକ୍ଷିଣ ସାଗରେ ଯାଇଂ ହୋଇଲା ସଙ୍ଗମ
ସେ ନଦୀର କୂଳେ ଯାଇଂ ବିଜୟେ ବୀର ଭୀମ ।୩।
ବାଜଇ ବୀରତୂର ଟମକ ନିଶାଣ
ମେଦିନୀ ହେଲ ଘେନଇ ହସିଲେ ସୁରଗଣ ।୪।

ପ୍ରାତକାଳେ ସଇନ ନିତ୍ୟକର୍ମ ସାରିଲେ ନୃପର ଛାରେ
ମୁନେଶ୍ୱରଂ ଯାଇଂ ଜଣାଇଲ ପୁଣ୍ଡରୀକ ବାସୁଦେବ ସ୍ୱମୁରେ ।୫।
ଶୁଣ ଦେବ ସାବଧାନେ କରବୀର ଅଧିକାରୀ
କେଉଂଣ ଦେଶ ରଜାଯେ ଦଣ୍ଡ ଘେନି ଆସଇ ଦିଗବିଜେ କରି ।୬।
ରଥ ଗଜ ଅଶ୍ୱ ସନ୍ୟ ତାର ଅଳପ ପାଦାନ୍ତ
ମହା ବଳବନ୍ତା ସେ ଯେ ଅଟଇ ମହାକ୍ଷତ୍ରୀ ।୭।
କୃତାନ୍ତେକ ମୂର୍ତ୍ତି ଦେବ ନାଶକର ଦର୍ପଭଞ୍ଜା
ପଛିମ ଦିଗ ବରଣ ରଜାଂକ ଦର୍ପ ଗଞ୍ଜା ।୮।
ଅସଂଖ୍ୟ ମନ୍ତ୍ରମାଂ ଦେବ ନ ସରଇ କହନ୍ତେ
ବହୁତ ଦେଶ ସାଧିକଲ୍ଲ ସେ ଯେକା ରଥେ ।୯।
ବିଶ୍ୱର କାର୍ଯ୍ୟକର ବାବୁ ପରମାନନ୍ଦ ଋପୁ
କରବୀର ଚନ୍ଦ୍ରବ୍ରତ୍ତି ପଛିମ ଆଧିପୁ ।୧୦।
ତଗର ମୁଖଂ ବାରତ ପାଇ ପୁଣ୍ଡରୀକ
ନନ୍ଦପାଳ ମନ୍ତ୍ରୀର ସେ ଗୃହ୍ୱଂଲକ ମୁଖ ।୧୧।
ଜାଣୁ କହୋ ମନ୍ତ୍ରୀ ତୁ ସେ କେଉଂଣ ଦେଶ ଥାଠ
ପଛିମ କୋଣଲେ ତ ଅଭୟ ମୋର ରାଷ୍ଟ୍ର ।୧୨।
ରଜାର ବଚନେ ସେ ବାହାର ଅମନାତ୍ୟେ
ଆଗ୍ୟାଂ ଦିଲକ ଯେ ସେନାପତି ସୋମଦତ୍ତେ ।୧୩।
ସାଜ ହୋ ରଥ ଗଜ ଅଶ୍ୱ ପାଦାନ୍ତ ପାରିଦଣ୍ଡ
ଓଗାଳ ରେ ପରରାଷ୍ଟ୍ର ନ ପଶୁ ଦୁରୁଦଣ୍ଡ ।୧୪।
ରଜାର ଆଗ୍ୟାଂୟେ ବାହାର ସକଳ ସେନାପତି
ମଣ୍ଡନ୍ତ ରଥ ଗଜ ଅଶ୍ୱ ସାଜନ୍ତ ପାଦାନ୍ତ ।୧୫।
ହୀର ମାଳା ପୋଯେଲା ମାଣିକ୍ୟ ବଇଡୂର୍ଯ୍ୟ
ଉଦୟେ ପ୍ରଡକ୍ଷଣ ପ୍ରାୟେ ଦିଶନ୍ତ ଦେବରଜ ।୧୬।

---

୧୨। ବୃହନ୍ନ ହୋ ମନ୍ତ୍ରୀ ସେ କେଉଂଣ ଦେଶର ରଥୀ
ପଛିମ କୋଣଲେ ମୁଂ ଅଭୟେ ଚନ୍ଦ୍ରବୃତ୍ତି । (ଅ,ଝ)

୧୬।୨ ପ୍ରଡକ୍ଷଣ— ପ୍ରଦକ୍ଷିଣ ।

ପ୍ରବାଳ ତେଜ ପ୍ରାୟେ ହଣନ୍ତି ଯେ ରଥେ
ଝଲକନ୍ତି ଲଂକସ୍ଥା ଗୁରୁଜ ଅସିପଟ୍ଟ କୁନ୍ତେ ।୧୭।
ରେ ରେ କାର ଶବଦେ ପଡଇ ମହାବୋବ
ମତ୍ସ୍ୟେଂଷା ଯୁଦ୍ଧକାଳେ ଯେହ୍ନେ ଡାକନ୍ତି ଭରଭେରୀ ।୧୮।
ଏକାଦଶ ମଣ୍ଡୁତ ରଥ ବାଇଶ ମଣ୍ଡୁତ ହାଥୀ
ଦଶ ମେବଚ୍ଛ ଅଶ୍ୱ, ତିନି ଷଉଣୀ ପାଦାନ୍ତି ।୧୯।
ପାଠଛନ୍ତ ଆଲମ୍ବ, ଏକଲକ୍ଷୀ ଉଦଣ୍ଡ
ସାଂଗ୍ରାମକୁ ବାହାର ହୋଇଲେ ଗୃଶତ ପାରିଦଣ୍ଡ ।୨୦।
ଭୀମସେନ ବଜେ କରିଛନ୍ତି ନଦୀର ପୂର୍ବଆଡେ
କୌରବୀର ସୈନ୍ୟ ଓଗାଳିଲେ ପଶ୍ଚିମ କଛାଡେ ।୨୧।
ଉଦେକ କରେ ଧେନି ଗୃହ୍ନିଂଲେ ଭୀମସେନ
ଦେଖିଲେ ନଦୀର ତୀରେ ଗହଳ ଅନେକ ସୈନ୍ୟ ।୨୨।
ରେ ରେ କାର କରିଣ ଯେ ଯୋଦ୍ଧାଏ ଗରଜନ୍ତି
ଅଶ୍ୱନ୍ତି ଖେପାଇଣ ସେ କୋପେଣ ତରଜନ୍ତି ।୨୩।
ଖଟାଇ ହୋଇ ନାଚନ୍ତି ମତୁଆଲ ନାଠ
ରଗେଣ ବୃକୋଦରର କମ୍ପଇ ମୁକୁଟ ।୨୪।
ଉଦେକ ପକାଇଣ ସେ ଧଇଲା ଗଦା ବେନି
ନଦୀ ଭିତରକୁ ଡେଇଂ ପଡିଲା ପାବେନି ।୨୫।
ସେ ନଦୀର ଗମ୍ଭୀର ଯେ ଅଟଇ ତିନିତାଳ
ପଣନ୍ତେଣ ମାରୁତି ତହିଂ ହୋଇଲାକ ଥଳ ।୨୬।
ପୁଣ୍ଡ୍ରୀକ ବାସୁଦେବର ଯେତେକ ଥିଲେ ସେନାଯୋଧୀ
ନଦୀକୂଳେ ଥାଇ ଭୀମସେନକଇଂ ଶର ବିନ୍ଧି ।୨୭।
ବରଷା ଋତୁରେ ଯେହ୍ନେ ବରଷନ୍ତି ଦେବରାଜେ
ଗଗନୁଂ ଜଳଧାର ପ୍ରାୟେ ହୋଇ ପଡନ୍ତି ନାରାଜେ ।୨୮।
ନଦୀ ପୂରିଲା ଯେ ନାରାଜ ଘୋର ବୃଷ୍ଟି
ଅଭେଦ ଶରୀରେ ଭୀମସେନର ଶର ଗୋଟିଏ ନ ଫୁଟି ।୨୯।
ନଦୀରୁ ଡେଇଂ ସେ ଉଠିଲା ଗଜରାଜ
କୌରବୀର ସଇନି ପଳାଇଲେ ସର୍ବେ ଭାଙ୍ଗି ।୩୦।

କାଳଚକ୍ର ନୟନେ ସେ ଗର୍ଜ୍ଜିଲ ବୃକୋଦର
ହାସେ ଭାଜିଲେ ସଇନ କେହ୍ନ ନ ରହିଲେ ସ୍ଥମୁର ।୩୧।
ଯ୍ୱେକା ମାରୁତି ରହିଅଛି ପଶ୍ଚିମ ନଦୀକୂଳେ
ଭୀମସେନ ସୈନ୍ୟ ଡେଇଁ ପଡ଼ିଲେ ନଦୀ ଜଳେ ।୩୨।
ଅଗାଧ ଜଳ ସେ ଯାଉଁଣ ହୋଇଲାକ ଥଳ
ପଶିଣ ସଇନ ଯେ ମିଳିଲେ ନଦୀର ପଶ୍ଚିମ କୂଳ ।୩୩।
ସାଂଗ୍ରାମେ ବୃକୋଦର ପଶିଲା ଯାଇଁ ଯ୍ୱେକା
ଅସମ୍ଭବ ସଇନକ ତାର ମନେ ନାହିଁ ଶଂକା ।୩୪।
ଶୂରବର ସୁନ୍ଦର ସେ ପାଣ୍ଡବ ମହାବଳୀ
ରଥନ୍ତ ଧଇଲା ସେ ବାମଭୁଜେ ତୋଳି ।୩୫।
ଯ୍ୱେକ ରଥ ଉପରେ ଆରେକ ରଥ ପିଟି
ଗଜ ଅଶ୍ୱ ପାଦାନ୍ତଯ୍ୱେ ପଡ଼ିଲେ ମହାଲୋଟି ।୩୬।
ଯେସନେକେ ପୃଥୀରେ ଦିଶନ୍ତି କୃତାନ୍ତକ ପୁରୁଷେ
ମନ୍ଦର ତୁଲ ଜାଣି ସେ ତାହାର ଶରୀର ପ୍ରକାଶେ ।୩୭।
ଗିରିବରେ ପଡ଼ିଲେ ଯେହ୍ନେ ଉପୁଡ଼ି ପଡ଼ନ୍ତି ଶହସ୍ରେ
ତୀଖମୁନା ଶହସ୍ରେ ନ ଭେଦନ୍ତି ଭୀମସେନର ଗାତ୍ରେ ।୩୮।
ଶତଶିଙ୍ଗ ପ୍ରସନ୍ନେ ପାଷାଣ ଯାହାର କାୟା
ନାନା ଶହସ୍ରେ ସେହୁ ଅଟଇ ନିର୍ଭୟା ।୩୯।
ମାଇଲା ସୈନ୍ୟ ତାର ଅନେକ ଗେଡ଼ାଇ
ଶରଣ ଫୁକାରନ୍ତି ମୁଖରେ ହାଥ ଲାଇଁ ।୪୦।
ନିର୍ଭୟା ପାଣ୍ଡବ ସେ ପଶି ମଣ୍ଡିଲାକ ରଣେ
ଦଶ ସହସ୍ର ରଥୀ ସେ ମାଇଲା ଯ୍ୱେକଜଣେ ।୪୧।
ଗଜ ଅଶ୍ୱ ପାଦାନ୍ତ ଯେ ନ ଯାଇ କଳଣ
ସୈନ୍ୟକୁ ପାଯ୍ୱେଡ଼ା ପଡ଼ିଲା ଚଉଦ ଯୋଜନ ।୪୨।
ପଳାଇ ସଇନ ଯାଇଁ କହିଲେ ରାଜାର ଅଗ୍ରତେ
ସମ୍ଭାଳି କାର୍ଯ୍ୟକର ସ୍ୱାମୀ ଅପାଦ ପଡ଼ିଲାକ ତୋତେ ।୪୩।
ଅନେକ ସଇନ ତୋର ମାଇଲା ଯ୍ୱେକାଜଣେ
ସଞ୍ଚଯ୍ୱେ କୃତାନ୍ତେକ ଆସି ବିଜୟ୍ୱେ କଲା ରଣେ ।୪୪।

ନଶନ୍ତ କାଳକୁ ଦେବ ବିପରୀତ ବୁଦ୍ଧି
ଅଦୋଷେ ହରାଇଲୁ ଦେବ ଯେତେକ ସମ୍ପ୍ରଧି ।୪୫।
ଧାର୍ମିକ ବିବେକ ନୃପତି ତୁମ୍ଭ ଅଛୁ ମହାଭାଗ୍ୟଂ
ଶୂରବନ୍ତ ଧାର୍ମିକ ତୁ ପୁରୁଷ ସର୍ବଗ୍ୟଂ ।୪୬।
ସ୍ୱାମୀ ବିବେକ ନାରାୟଣ ତୁମ୍ଭ ପଶ୍ଚିମ କୋଶଳେ
ନୃପତି ସମାନେ ତୋତେ ନାହିଂ ରହିତଲେ ।୪୭।
ଉଲ୍କାପାତ ପଡିଲା ଦେବ ହୋଇଲା ଅସମ୍ଭବ
ହରୁଣ କାର୍ଯ୍ୟକର ପୁଣ୍ଡରୀକ ବାସୁଦେବ ।୪୮।
ଯେସନେକ ନିରଧାର ବଚନ ଶୁଣି ସ୍ୱପ୍ନେ
ମୁହିଂ ସେ ରହିତଲେ ଆନକୁ ଚିନ୍ତାଇ ଅପ୍ରାଂଜଯେ ।୪୯।
ଆରେ ପ୍ରତଗ୍ୟାଂ ଘେନାଲ ମୁହିଂ ବାସୁଦେବର ବୀରଧୂ
ଗୃହଉଣା ଲକ୍ଷେ ରାଜାର ମଧ୍ୟେ ମହିମାଂ ମୋର ସାଧୁ ।୫୦।
କହୁ କହୁ ପ୍ରତଗ୍ୟାଂ ଯେ ବଳିଲା ମହାରାଜ
ମନ୍ତ୍ରୀକ ବୋଇଲା ଦଣ୍ଡ ମୋର ବେଗେ ସାଜ ।୫୧।
ରାଜାର ବଚନେ ଯେ ପାତ୍ର ଅମାତ୍ୟେ
ଆପଣେ ବିଜେକଲା କାଠର ବଇନେହେ ।୫୨।
ରଥ ଚକ୍ର ଶଙ୍ଖ ଗଦା ଯେ ସାରଙ୍ଗ ଧନୁ ଦୁଷ୍ଟି
ପ୍ରତକ୍ଷେ ନାରାୟଣ ସରୂପ ଦିଶଇ ମାଳ ଉତ୍ପଳ ମୂର୍ତ୍ତି ।୫୩।
ଲକ୍ଷେକ ପାଟଛତ୍ର ଉଡନ୍ତି ବେନିପାଖେ
ଦୁଇକୋଟି ଫୁରଇ ସୁବର୍ଣ୍ଣ ବନ୍ଧା ଶଙ୍ଖେ ।୫୪।
ଗୃହକୋଟି ରଥୀ ଯେ ବିଶାଶତେ କୋଟି ହାଥୀ
ପଞ୍ଚାଶମତ୍ତ ଅଶ୍ୱ ଦଶ ଷଉଣୀ ପାଦାନ୍ତ ।୫୫।
ଦଶଲକ୍ଷ ଉଦ୍ଦଣ୍ଡ ଆଲମ୍ବ ପାଞ୍ଚଲକ୍ଷ
ମହାସମ୍ଭରେ ବିଜେକଲା ନୃପତି ପୁଣ୍ଡରୀକ ।୫୬।
ବୀରତୂର ଢୋଲ ଯେ ଟମକ ନିଶାଣ
ନିର୍ଘାତ ଅଗ୍ନିଶର ବନ୍ଧନ୍ତି ବଜ୍ରବାଣ ।୫୭।
ଶବଦେ କମ୍ପଇ ସର୍ବ ମହାମହୀ ଭାରଭର
ରଣ ଧନ୍ଦୋଳ ବୀରଧୂ ଅଟଇ ମହାବୀର ।୫୮।

ସମର ସମ୍ମୁଖରେ ଅରିଭ ବଳେ ନ କରଇ ଶଂକା
ଶତେ ନଳ ଆୟୁତନ ବିକାଶଇ ଯାହାର ମୁକୁଟ ଶିଖା ।୫୯।
କୋଟିଏ ମର୍କତ ଯାର ମୁକୁଟରେ ବିରାଜଇ
ଶାର୍ଦ୍ଦୂଳ ସହସ୍ରେ ଯୋଚଣ ରଥ ତାର ସାଜଇ ।୬୦।
ଆହୋ ଲକ୍ଷେକ ରଜାର ଭଣ୍ଡାର ଯେତେ ମୂଲ୍ୟ
ଏକା ପୁଣ୍ଡରୀକ ବାସୁଦେବ ମୁକୁଟକୁ ନୋହଇ ସମତୁଲ ।୬୧।
ଦଇତ ଦାନବଙ୍କୁ ସେ ସାଂଗ୍ରାମେ ଅଟଇ ନିର୍ଭୟା
ବିଂଝଗିରି ପର୍ବତ ପରାଏ ଦିଶେ ଯାହାର କାୟା ।୬୨।
ଶଗଡ଼ ଉପରେ ରଥ, ରଥ ଉପରେ ଗରୁଡ଼ର ଧ୍ୱଜ
ସେ କାଠ ଗରୁଡ଼ ଉପରେ ବିଜୟେ ପୁଣ୍ଡରୀକ ମହାରାଜ ।୬୩।
ପଶ୍ଚିମ କୋଣଲେ ରଜାଂକର ଅଟଇ ଚନ୍ଦଗୁରୁ
ଆସନ୍ତେ ଭୀମସେନ ଦେଖିଲାକ ତାହାକଇଂ ଦୂରୁଂ ।୬୪।
ଦେଖି ଅପସରଇ ସେ ପବନର ତନୟେ
ମରୁତ ସାରଥିକି ପଚ୍ଚରଇ ଏକେ ଜଗନ୍ନାଥଂକ ପରାଏ ।୬୫।
ସାରଥି ବୋଇଲା ଶୁଣ ତୁ ପବନର ବତ୍ସ
ବାସୁଦେବର ଚିହ୍ନ ବହଇ ଏ ନୃପତି ପୁଣ୍ଡରୀକାକ୍ଷ ।୬୬।
କାଠର ବେନିଭୁଜେ ଶଙ୍ଖ ଚକ୍ର ଧରି
ବାସୁଦେବଙ୍କୁ ନିନ୍ଦା କରଇ କାଠଗରୁଡ଼ ଚଢ଼ି କରି ।୬୭।
ବଡ଼ାଇ ପ୍ରତାପୀ ଏ ନିକାଳି ବାସୁଦେବର କଳା
ଜଗନ୍ନାଥଂକ ସରୂପେ ସେ କୃଷ୍ଣବର୍ଣ୍ଣ କଳା ।୬୮।

---

୬୫।୧ "ଦେଖି ଅପସରଇ ସେ ପବନର ତନୟେ" ପରେ
(ଛ) ପୋଥିରେ ଭିନ୍ନ ଏବଂ ଅଧିକା ପାଠ—
ମରୁତକୁ ପଚ୍ଚରଇ ଜଗନ୍ନାଥେ କଲେ କି ବିଜୟେ ।
ଉନ ବଳାଇ ବୋଲି ଅବା ବଜେକଲେ ଜଗନ୍ନାଥ ।
ମହାଭ୍ରାନ୍ତ କଲା ଦେଖି ପବନର ସୁତ ।
ଏହା ଶୁଣିଣ କହଇ ମରୁତ ସାରଥି
ବାସୁଦେବର ଚିହ୍ନ ବହଇ ଏ ପୁଣ୍ଡରୀକ ବାସୁଦେବ ନୃପତି ।
୬୮।୧ ବଡ଼ାଇ ପ୍ରତାପୀ ଏ ଶ୍ରୀକାଳ ବାସୁଦେବର ବଳା । (ଛ,ଙ,ଥ,ଚ)

ଭୀମସେନ କୋପକଲା ହରି ନିନ୍ଦାଦୋଷେ
ସଞ୍ଚଯ୍ୟେ ପୁଣ୍ଡରୀକ ଯିବ ଆଜ ଯମ ଦେବତାର ପାଶେ ।୬୯।
ଜଗନ୍ନାଥ ନିନ୍ଦାଦୋଷ ସହିବେ କେ ପାର
ନାରାୟଣଂକର ଶତ୍ରୁ ଯେ ସେ ପାଣ୍ଡବଂକର ବଇରି ।୭୦।
ଯେଣୁ ସେ ପାଣ୍ଡବ ସେ ପ୍ରତକ୍ଷେ ବାସୁଦେବ
ମୁହିଂ କେସନେ ରଖିବ ଯେହାକୁ ଯେ ଗୋବନ୍ଦେ ଅଭାବ ।୭୧।
ଭୀମସେନ କୋପ ଦେଖି ବୋଲଇ ମରୁତ ସାରଥି
ନିକାଳ ବାସୁଦେବର ପୁତ୍ର ଯେ ଅନନ୍ତ ବାସୁଦେବର ନାତି ।୭୨।
ପ୍ରତକ୍ଷେ ନୃପତି ଯେ ଅନାଦ୍ଧ ବଷ୍ଣୁବଂଶୀ
ବଂଶେ ବଂଶେ ବଷ୍ଣୁର ଯେ ଅଟେ ସଦା ଦୋଷୀ ।୭୩।
ଆହୋ ଅନନ୍ତ ବାସୁଦେବ ବୋଲ ଯେହାର ଉପର ବଂଶେ
ଚଇତିଲା ଅପକ୍ଷରୀକ ରମଣ କଲା ଆକାଶେ ।୭୪।
ତାହାର ପୁତ୍ର ଉପୁଜଲା ତ୍ରଇଲୋକ୍ୟ ବାସୁଦେବ
ତ୍ରଇଲୋକ୍ୟ ବାସୁଦେବର ପୁତ୍ର ବାସୁଦେବ ସଦାଶିବ ।୭୫।
ଯେହାର ପୁତ୍ର ଯେ ସୁରସିଦ୍ଧ ବାସୁଦେବେ
ଯେହାର ପୁତ୍ର ହୋଇଲା ପଦ୍ମଲଭ ବାସୁଦେବ ପୂର୍ବେ ।୭୬।
ଯେହାର ପୁତ୍ର ହୋଇଲା ବାସୁଦେବ କମଳାକର
ଅନଙ୍ଗ ବାସୁଦେବ ବୋଲି ପୁତ୍ରେକ ହୋଇଲା ତାହାର ।୭୭।
ଅନଙ୍ଗ ବାସୁଦେବର ଅନନ୍ତ ବାସୁଦେବ ବଳା
ଅନନ୍ତର ଭାରଯା ବାରହ୍ମ ସହସ୍ରକଳା ।୭୮।
ସୁନ୍ଦରୀ ସୁଲକ୍ଷଣୀ ସେ ଶାହାସ୍ତ୍ରେ ମହାରସି
ପଢଇ ପଢାଇ ସେ ବୀଣାବାଦ୍ୟେ ତୋଷେ କାଶୀ ।୭୯।
ସପତସ୍ୱର ବୀଣା ଯେ ପିନାକୀ ଅଧାଟି
କେଦାର ମହାଲିଙ୍ଗ ବଇଦନାଥକଇଂ ଖଟି ।୮୦।

---

୭୧। ଜଗନ୍ନାଥ ଯେବେ ଆମ୍ଭେ ହସାରେ ରଚତା
କେମନ୍ତେ ସମରକୁ ମୁଂ କରିବ ଜଗଜ୍ଜିତା । (ଘ,ନ,ଖ)

୭୮।୨ ତାହାର ଭରଯା ବାରହ୍ମ ଶକୁନ୍ତଳା । (ଥ)

କୃଷ୍ଣବେଣୀ ସ୍ନାନ ସାରି ସେ ବଇଦନାଥ ଦର୍ଶନେ
ଫଳଭକ୍ତା ସ୍ତ୍ରୀ ସେ ନ ଭଜଇ ଆନେ ।୮୧।
ବଇଶାଖ ଶୁକ୍ଳପକ୍ଷ ଶୁକ୍ରବାର ରଉଠି
ଗ୍ରୀଷମ ଋତୁରେ ଆର୍ଦ୍ରା ନକ୍ଷତ୍ର ପଇଠି ।୮୨।
ପାକାଶୁଦ୍ଧ ସ୍ନାନ ସାରି ସେ ଧନ ବାଳୀ
ବଇଦନାଥ ଦର୍ଶନେ ଆସଇ ବେଲ ମଧ୍ୟାନ ଓଳି ।୮୩।
ବଜ୍ରକପଟ ବୋଲି ଏକ ରାକ୍ଷସ ନୃପତି
ନିର୍ବାତକପଟର ସେ ଅଟଇ ପଣନାତି ।୮୪।
ଗୀତରସ କରଣ ସେ ଆସଇ ସସ୍ତ୍ରକଳା
ସ୍ୱରଣଗିରି ପର୍ବତ ତଳେ ଥାଇ ଦେଖିଲାକ ଅସୁର ମହାବଳା ।୮୫।
କାମରୂପୀ ଅସୁର ସେ ଧଇଲା ଆନ କାଏ
କପଟ ରୂପ ଧଇଲା ସେ ଅନନ୍ତ ବାସୁଦେବର ପ୍ରାଏ ।୮୬।
ବଇଦନାଥ ସେବଣ ବାହୁଡଇ ଯୁବତୀ
ସନ୍ଧ୍ୟାକାଳ ଯାଇ ଆସୁଅଛଇ ନିଶାରାତି ।୮୭।
ହାଥରେ ଖଣ୍ଡାଏକ ଧେନିଣ କଉଣୋପ
ସହସ୍ର କଳାକଇଂ ଭେଟିଲା ଧରିଣ ଗୋପ୍ୟରୂପ ।୮୮।
ଦେଖଇ ସୁନ୍ଦରୀ ଯେ ସରୂପେ ନିଜ ସ୍ୱାମୀ
ନିଜ ବଲ୍ଲଭ ପ୍ରାଏ ମଣି ହୋଇଲା ପରଣାମି ।୮୯।
ଅଧର ସ୍ପୃଷ୍ଟ କରିଣ ସେ ବୋଇଲା ଗୃଣ୍ଡାଳ
କାହିଂ ରହିଥିଲୁ ଆଗୋ ମହା ନିଶାକାଳ ।୯୦।
ନିଜ ପ୍ରଭୁ ପ୍ରାଏ ମଣିଲାକ ଯୁବତୀ
ସ୍ୱାମୀ ସନ୍ତାନ ମାଗୁଥିଲି ମୁଂ ବିଶ୍ୱନାଥ କତି ।୯୧।
ମନ୍ମଥ ପର୍ବତ ଜୀବନାଶନ ବଟତଳେ
ଅସୁର ଦୁରନ୍ତକ ନେଇ ବସାଇଲା ତାକୁ ବଳେ କୋଳେ ।୯୨।
ବର୍ତ୍ତି ଚନ୍ଦ୍ର ସରୂପ ତାର ଅନନ୍ତ ବାସୁଦେବର ପ୍ରାଏ
ସ୍ୱାମୀର ସରୂପ ଦେଖି ସୁନ୍ଦରୀ ସମର୍ପିଲା କାଏ ।୯୩।

---

୮୧।୧ କର୍ଣ୍ଣବେଣୀ ସ୍ନାହାନ ସାରି ସେ ବଇଦନାଥ ଦର୍ଶନେ । (ଠ,ଅ,ଛ,ନ,ଖ)
୮୫।୨ ହର ପର୍ବତେ ଦେଖିଲା ଅସୁର ମହାବଳା । (ଠ,ନ,ଘ,ଖ)



ରାକ୍ଷସ ଶୃଙ୍ଗାର ତାକୁ କଲାକ ବହୁତ
ଭାଳଇ ସୁନ୍ଦରୀ ମୋର ସ୍ୱାମୀର ଶୃଙ୍ଗାର ତ ନୋହଇ ଯେମନ୍ତ ।୯୪।
ରସେ ଶୃଙ୍ଗାର ସହିଲା ସୁନ୍ଦରୀ ସହସ୍ରକଳା
ଛାଡିଲା ମହାବୀର୍ଯ୍ୟ ଅସୁର ମହାବଳା ।୯୫।
ତଦ୍ୟାପି ସୁନ୍ଦରୀ ସେ ନୋହିଲାକ ଗ୍ୟାନ
ଅନ୍ତେଶ୍ୱର ପୁରେ ଯାଇଂ ହୋଇଲା ତୋଷମନ ।୯୬।
ମରୁତ ସାରଥି ବୋଇଲା ଶୁଣ ପବନର ବଳା
ରାକ୍ଷସର ବୀର୍ଯ୍ୟେ ତାର ପୁତ୍ରେକ ଉପୁଜିଲା ।୯୭।
ଦେଖିଣ ଅନନ୍ତ ବାସୁଦେବ ହୋଇଲାକ ତୋଷ
ପ୍ରେରଣ ଉତ୍ସବ ରାଜା କରାଇଲା ହରଷ ।୯୮।
ନିକାଳ ବଇଦନାଥେ ଯେ ଖଟଇ ସହସ୍ରକଳା
ନିକାଳ ବାସୁଦେବ ବୋଲି ତାର ପୁତ୍ର ନାମ ହେଲା ।୯୯।
ଯଦ୍ୟପି ଆବହୁଂ ଉପୁଜିଲା ବୃଷ୍ଣିବଂଶେ
ରାକ୍ଷସ କଳା ଧେନିଲା ସେ ବୀର୍ଯ୍ୟର ମନ୍ଦ ଦୋଷେ ।୧୦୦।
ଯେ ମନ୍ଦେ ରାକ୍ଷସ ସେ ନାରାୟଣଂକର ଅଟଇ ବଇରି
ଅନନ୍ତ ଅବତାରେ ନିକାଳ ବାସୁଦେବକୁ ଚକ୍ରେ ମାଇଲେ ମୁରାରି ।୧୦୧।
ନିକାଳର ପୁତ୍ର ଯେ ପୁଣ୍ଡ୍ରୀକ ବାସୁଦେବ
ସେହି ସେ ବନ୍ଧିଲା ହାଦେ ଅସୁର ସଭାବ ।୧୦୨।
ଅସୁର ବଳ ନିଃଶୋଧନ ସେ ଅଟନ୍ତି ଦାମୋଦର
ପ୍ରସ୍ତାପେ ବଧ ସେହାକୁ କରିବେ ଚକ୍ରଧର ।୧୦୩।
ଆହୋ ଭୀମସେନ ତୁ କଂପେ ସେହାନ୍ତ ବଧ କରିବୁ ସମରେ
ଜଗନ୍ନାଥେ ବକ୍ରର ମାରିବେ ରାଜସୂୟ ଯାଗ ସଭାରେ ।୧୦୪।
ଯଦ୍ୟପି ତୁ ବଳାତ୍କାରେ ସେହାକୁ ମାରିବୁ ଭୀମସେନ
ଦ୍ୱାଦଶ ଷଉଣୀ ବଳର ସୁବର୍ଣ୍ଣ ପିତ୍ତଳ ଗଡାଇବାକୁ ଅଛୁ କାହିଂ
ଧନ ।୧୦୫।

---

୯୮। ସହସ୍ରକଳା ଦେଖି ଅନନ୍ତ ବାସୁଦେବ ତୋଷମନେ
ଅନେକ ହେଲା ରାଜା ବ୍ରାହ୍ମଣେ ଦାନ ଧ୍ୟାନେ । (ଘ,ଠ)

ଭୀମସେନ ବୋଇଲା ସ୍ପେ ନାରାୟଣରେ ଅବଗ୍ୟାଂ
ମୋହୋର ବେଳେ ସର୍ବ ପାଶବ କ ଯେହ୍ନାର ଯେତେକ
ପ୍ରଚଗ୍ୟାଂ ।୧୦୬।
ସ୍ପେହାକୁ ବଧକଲେ ହଶ ହୋଇବେ ଅନେକ ସାନନ୍ଦ
ରାଜସୂୟ ଯାଗରେ ଉପୁଜବ ଅନେକ ଆନନ୍ଦ ।୧୦୭।
ଆହୋ ଭୀମସେନ ସବୁ ରାଜାମାନଂକର ଅନେକ ଅବଗୁଣ
ଦୋଷ ବାଛିଲେ ଆର କାହ୍ନଂ ହୋଇବ ବରଣ ।୧୦୮।
ଯଦ୍ୟପି ଗୋବନ୍ଦରେ ସ୍ପେ ହୋଇଲା ମନ୍ଦ ଦୋଷୀ
ପୃଥୀଭଗ ଲୋକନ୍ତ କଂପେ ବସୁଦେବ ନ ନାଶି ।୧୦୯।
ବାବୁ ଉରାଇ କଶ ଆମ୍ଭେ ସ୍ପେହାକୁ ଯିବା ସାଧି
ପ୍ରାଣେ ନ ମାଶ ସ୍ପେହାକୁ ଘେନିଯିବା ବାନ୍ଧ ।୧୧୦।
ଶୁଣି ସାନନ୍ଦ ସେ ହ୍ରିଡମ୍ବିକାର ପ୍ରାଣନାହା
ପୁଣ୍ଡ୍ରସକ ତହ୍ନଂକ ବେଗେ ରଥ ମୋର ବାହା ।୧୧୧।
କ କ କରଇ ବୁଝିବା ଆମ୍ଭେ ଦେଖି
ସନ୍ୟ ଘୁର ମାରବା କଂପାଇଂ ସ୍ପେ ଅଟନ୍ତ ନିରମାଖି ।୧୧୨।
ଭୀମସେନ ବଚନେ ସେ ବାହ୍ନଲକ ରଥ
ଅନ୍ତରୀକ୍ଷେ ଚଳିଗଲେ ସେ ସଇନ ସମସ୍ତ ।୧୧୩।
ଆହୋ ପୁଣ୍ଡ୍ରସକ ବାସୁଦେବ ଅଛଇ ମଧ୍ୟଥାଠେ
ଭୀମସେନର ରଥ ବେଗେଣ ଯାଇ ଭେଠେ ।୧୧୪।
ଯେସନେକ ଉଡ ଆସି ପଡନ୍ତ ପର୍ବତେ
କରବାର ସନ୍ୟ ଉଡଗଲେ ଭୀମସେନର ଗଦା ବାତଘାତେ ।୧୧୫।
ବହୁତ ଦୂରେ ସନ୍ୟ ପଡଲେ ଯ ଇଂ ଉଡ
ପଳାବନ୍ତ ଯୋଦ୍ଧାସ୍ପେ ପୁଣ୍ଡ୍ରସକ ବାସୁଦେବେ ଘୁଡ ।୧୧୬।
ରଥ ଘୁଡ ପାଣ୍ଡବ ସେ ଡେଇଂଲା ଧାଡକାରେ
ପଡଲା ଯାଇଂ ସେ କାଠଗରୁଡ ଉପରେ ।୧୧୭।
କୋପେ ପ୍ରହାର କଲା ବାମକରେ ଗଦା ତୋଳ
କାଠଗରୁଡ ଭାଞ୍ଜି ହୋଇଲକ ମର୍ଦ୍ଦଧୂଳ ।୧୧୮।
ରଥ ଶଗଡ ସେ ଭାଞ୍ଜି ହୋଇଲା ଉଗନସ୍ତ
ପୁଣ୍ଡ୍ରସକ ବାଳ ଧଇଲା ଭୀମ ବାମହାଥ ।୧୧୯।

ଯେତେବେଳେ ଭୀମସେନ ଧଇଲା ତାର ବାଳ
ବଜ୍ରାବଳୀ ଗଦା ନେଇ ପିଟିଲା ଭୀମ ବକ୍ଷସ୍ଥଳ ।୧୨୦।
ଭୀମସେନ ଉପରେ ପଡ଼ିଲା ଗଦାବର
ଭାଙ୍ଗିଣ ଗଦାବର ତାର ହୋଇଲା ଶତେଚୂର ।୧୨୧।
ପୁଣ ପ୍ରହାର କଲା ରାଜା ଅସିବର
ସେ ଖଡଗ ଦୁଂଖଣ୍ଡ ଛେଦିଲା ବୃକୋଦର ।୧୨୨।
ବାମକରେ ତାହାର କେଶ ଖଡଗ ଦକ୍ଷିଣ ପାଣି
ବୁଲାଇଣ ତାହାର ଶିର ପକାଇବ ହାଣି ।୧୨୩।
ମରୁତ ସାରଥି ଯାଇ ତାର ଧଇଲା ଖଡଗ ହାଥ
ରହ ରହ ଭୀମସେନ ତୋତେ ପବନ ଦେବତାଂକର ଶପଥ ।୧୨୪।
ସାରଥି ବଚନେ ସେ ସଂଘରିଲା ଖଡଗ
କେଶ ଧରିଅଛୁ ତାହାର ଶାନ୍ତ ନୋହେ ରାଗ ।୧୨୫।
ଭୟେଣ ପଳାଇଥିଲେ ଯେ ଯୋଧା ଅମନାତ୍ୟେ
ଶରଣ ପଶିଲେ ଆସି ଭୀମସେନର ଚରଣଗତେ ।୧୨୬।
ଦ୍ୱାଦଶ ଷଉଣୀ ବଳ ଶସ୍ତ୍ରାସ୍ତ୍ର ପକାଇ
ତ୍ରାହି ତ୍ରାହି ଫୁକାରନ୍ତି ମୁଖେ ହାଥ ଲଇ ।୧୨୭।
ବନୋୟୀ ହୋଇ ବୋଲଇ ମରୁତ ସାରଥି
ସଂସାର ଭଗତ ଦେବ କୋପ କରିବାକ ଶାନ୍ତ ।୧୨୮।
ଯେ ଜୀବନ ଚିର ହୋ ନୋହଇ ମହାତମା
ଯୁଗେ ଯୁଗେ ରହିବ ଯେ ତୋହୋର ମହିମାଂ ।୧୨୯।
ଆହୋ ଭୀମସେନ କୁଶଳ ଜୀବନ କଥା ତୋର ରହିଲା ସର୍ବକାଳେ
ସଂସାର ତାରିଲୁ ତୁ ଯେ ଭଗତ ମଣ୍ଡଳେ ।୧୩୦।
ଯେ ଯେ ବନୋପନ୍ତି ତୋତେ ପାରିଦଣ୍ଡ ରାଜାମାନେ
ଧର୍ମ ଉଦ୍ଧତ ହୋଉ କୋପ ଶାନ୍ତକର ଭୀମସେନେ ।୧୩୧।
ଶରଣ ପଞ୍ଜର ପାଣ୍ଡବ କଇଛା ଜଗଜ୍ଜେଠୀ
ନଇଲୋକ୍ୟେ ବିକାଶୁ ଯେ ତୋହୋର ପ୍ରତଗ୍ୟାଂ ନାମଗୋଟି ।୧୩୨।

---

୧୨୮।୨ ଯେମାନଂକର ଦଇନ, ତୁମ୍ଭେ କୋପ କର ଶାନ୍ତ ।
(ବହୁ ପୋଥି ପାଠ)

ଭୀମସେନ ବୋଇଲା ଯେବେ କେଶ ଗ୍ରୁଣ୍ଡିବ ତୋହୋର ବଚନେ
ଜୀବନହିଂ ରକ୍ଷା କଲ ଯେବେ ମାଗିଲ ସର୍ବଜନେ ।୧୩୩।
ରଥରେ ବାନ୍ଧି ମୁଂ ସେହ୍ନାକଇଂ ନେମଇଂ ଅବଶ୍ୟ
ସେହ୍ନ ସରୂପେ ସେହାରେ ରାଜୁସି ଯାଗେ ଦେଖନ୍ତୁ ହୃଷୀକେଶ ।୧୩୪।
ଗ୍ରୁଡିଲା ତାହାର କେଶ ଘେନିଲା ପାଟଡୋରେ
ଗଣ୍ଡସ୍ଥଳେ ବାନ୍ଧିଲା ସେ ରଥର ଖମ୍ବରେ ।୧୩୫।
ପାଶଦଣ୍ଡ ରାଜାଂକୁ ଯେ ଆଗ୍ୟାଂ ଅବଧାରି
ଅକ୍ଷତ ଗୁଆ ଯେ ଶ୍ରୀହସ୍ତେ ଦିଲେ ଶାଢ଼ୀ ।୧୩୬।
ଆହୋ ଯୋଦ୍ଧାମାନେ ଯେ ଯାହାର ଥାଠସନ୍ୟ ଘେନି
ରାଜୂସି ଯାଗକୁ ଯାଅ ତୁମ୍ଭେ ହବା ଯେ ରଯ୍ୟେଣୀ ।୧୩୭।
ସମସ୍ତ ଯାଇନି ଯେ ବୋଇଲେ ପଶଣାମି
ଅମ୍ଭ ରାଜାର ବନ୍ଧନ ଫେଡ଼ିବାକ ଦେବସ୍ୱାମୀ ।୧୩୮।
ଭୀମସେନ ବୋଇଲେ ତୁମ୍ଭେ ନ କହ ଯେମନ୍ତ
ରାଜାକୁ ତୁମ୍ଭର ପ୍ରାଣତ୍ୟାଜ ନାହିଂ ଯେ ମୋହୋର ସତ୍ୟ ସତ୍ୟ ।୧୩୯।
ରଥେ ବନ୍ଧନ ହୋଇ ବୋଲେ ପୁଣ୍ଡ୍ରଶୀକ ବାସୁଦେବ
ମୁହିଂ ନ ଜାଣଇ ସ୍ୱାମୀ ତୁ ବୃକୋଦର ପାଣ୍ଡବ ।୧୪୦।
ସ୍ୱାମୀ ନ ଜାଣି ଦ୍ରୋହ ମୁଂ ତୋତେ କଲଇଂ ଅନମିତେ
ପ୍ରତକ୍ଷେ ଫଳିଲା ମୁହିଂ ଯାହା ଲୋଡ଼ିଲ ସ୍ୱହାଥେ ।୧୪୧।
ପଞ୍ଚାଶ ସହସ୍ର ରାଜା ପଶ୍ଚିମ ଦିଗ ମଧ୍ୟେ
କାହାକଇଂ ବନ୍ଧନ ତୁ ନ କଲୁସି ଯୁଦ୍ଧେ ।୧୪୨।
ମୋହୋର ଦୋଷ ଉପେକ୍ଷା ତୁ କରିବା ମହାରାଣେ
ଦଣ୍ଡ ଘେନି ଯିବଇଂ ମୁହିଂ ତୋହୋର ଆଗ୍ୟାଂ ପରମାଣେ ।୧୪୩।
ଭୀମସେନ ବୋଲେ ତୁ ଯେ ହୋଇଲୁ ମତ୍ତଗର୍ବ
ଜଗନ୍ନାଥଂକର ଉପରେ ତୁ ବୋଲାଉ ପୁଣ୍ଡ୍ରଶୀକ ବାସୁଦେବ ।୧୪୪।
ବାସୁଦେବଂକର ଛାମୁକୁ ତୋତେ ନେମଇଂ ଯେ ଧରି
ସେ ତୋତେ ଦଣ୍ଡ ବିହନ୍ତୁ ଦୋଷ ଯେ ବିଚାରି ।୧୪୫।
ସନ୍ୟଂକୁ ପ୍ରବୋଧି ପଠିଆଇଲା ପୁଣ୍ଡ୍ରଶୀକ ନୃପତି
ମହାପ୍ରଭୁ ନାଥ ମୋତେ କୋପ କରୁକନା ଶାନ୍ତି ।୧୪୬—୩୬୬୫।

— ———

## ଗଣପତି ଓ ରୁଦ୍ରଦେବ ରାଜାଙ୍କୁ ନିମନ୍ତ୍ରଣ

କରବୀର ପୁର ଜିଣି ଚଳଇ ବୀରମଣି
ନିର୍ଜ୍ଜର ଦେଶ ବୋଲି ପଶ୍ଚିମ ଦିଗେ ଜାଣି ।୧।
ସେ ରାଜ୍ୟର ଠାକୁର ଯେ ଅଟଇ ଗଣପତି
ସେ ରାଜ୍ୟରେ ବିଜେକଲେ କାଳିବର ଚକ୍ରବର୍ତ୍ତି ।୨।
ଦେଶାଉର ଜଣାଇଲା ରାଜାର ଆସ୍ଥାନେ
ସ୍ୱାମୀ ପଶ୍ଚିମ ଦିଗ ବରଣେ ଜାଗ୍ର ନିସ୍ତନେ ।୩।
ଯେବଣ ନୃପତି ତାଙ୍କୁ ହୋଉଛନ୍ତି ଅସାଧି
ପୁଣ୍ଡରୀକ ବାସୁଦେବଙ୍କୁ ରଥେ ଅଛନ୍ତି ବାନ୍ଧି ।୪।
ଶୁଣିଣ ସାନନ୍ଦ ଯେ ଗଣନାଥ ମହାରାଜେ
ଆହେ। ମନ୍ତ୍ରୀଏଂ ଜାଣିଅଛୁନା ପଶ୍ଚିମ ଦିଗକୁ ଶ୍ରୀମଦସେନ ଠାକୁରେ
କରିଛନ୍ତି ଦିଗବିଜେ ।୫।
ପାଣ୍ଡ ଅମନାତ୍ୟନ୍ତ ଯେ ହକରାଇ ନୃପତି
ପୁରେ ଉତ୍ସବ କରାଅ ବୋଲି ବୋଇଲା ଗଣପତି ।୬।
ହାଟ ବାଣ୍ଟ ନିକଆଇଂ ଦ୍ୱାରେ କଦଳୀ ହୋଣ
ସୁବର୍ଣ୍ଣର କଳସ ବସାନ୍ତି ନେତର ପାତାଙ୍ଗ ଉଡାନ୍ତି ନଗ୍ରେଣ ।୭।
ଶତେକ ପୁତ୍ରନ୍ତ ଘେନିଣ ନିର୍ଜ୍ଜର ଗଣପତି
ହାଥେ ଗୁମରେକ ଘେନି ଆସଇ ତୋଷମତି ।୮।
ଶତେପୁତ୍ର ଧରି ଯେ ଅଛନ୍ତି ଗୁମର
କେହୁ ଆଲଟ କେହୁ ଛତ୍ର ଧରିଛନ୍ତି କର ।୯।
ରାଜା ବୋଇଲା ଯେତେକ ସ୍ତ୍ରୀ ପୁରୁଷ ଅଛ ମୋର ରାଜ୍ୟେ
ସମସ୍ତେ ଅଲଂକାର ଭରି ହୋଇଥାଅ ସଜେ ।୧୦।
ଆହେ। ଦୁର୍ଗ ନିରଞ୍ଜନ ବିଜୟ କଲେ ମୋହୋର ପୁରୀ
ଦ୍ରଶନେ ସମସ୍ତ ପାପ ହୋଇବ ଅପହାରି ।୧୧।
ରାଜାର ଆଗ୍ୟାଂରେ ବାହାର ହୋଇଲେ ସଇନ
ସର୍ବେ ଅଲଂକାର ହୋଇ ହାଥେ ଗୁମରେ ଗୁମରେକ ଘେନି ।୧୨।
କେହୁ ପାଟଛତ୍ର ଧରଇ କେହୁ ଉଦଣ୍ଡ ମଯୂରଣ
ମହାସମ୍ଭ୍ରମରେ ଆସନ୍ତି ପାରିଦଣ୍ଡ ରାଜାଗଣ ।୧୩।

ନବଶତ ପାରିଦଣ୍ଡ ଖଟନ୍ତି ନୃପମଣି
ସନ୍ୟବଳ ଖଟନ୍ତି ତାଙ୍କୁ ଅଷ୍ଟାଦଶ କ୍ଷଉଣୀ ।୧୪।
ରଥ ଗଜ ଅଶ୍ୱ ସତୁରି ପଦାୟୁଧ ଖଟଇ
ପନ୍ଦର ଶତ ଯୋଜନର ସେ ଠାକୁର ଅଟଇ ।୧୫।
ପଶ୍ଚିମ କୋଶଳେ ରାଜା ମହା ଗରୁହଂସୀ
ସବୁକୁହଂ ଅସାଧ ସେ ରାଜା ବନ୍ଧୁ ରାଜ ତୋଷି ।୧୬।
ଅନେକ ଉଛବ କରାଇ ନିର୍ଝର ଦେଶ ରାଜା
ଶ୍ରୀ ଲମ୍ୱୋଦର ସ୍ୱାମୀଙ୍କୁ କରଇ ବହୁତ ସେବାପୂଜା ।୧୭।
ଅନେକ ଉପହାର ଶୀତଳ ଦ୍ରବ୍ୟମାନ
ଭୀମସେନର କୋପ ଶାନ୍ତି ନିମନ୍ତେ ଅନେକ ଗୋ ଦୋହନ ।୧୮।
ଭୀମସେନ ରହିଅଛି ନର୍ମଦା ନଦୀକୂଳେ
ନିର୍ଝର ଦେଶ ଦର୍ଶନ କରଇ ପ୍ରାତ ସ୍ନାହାନ ବେଳେ ।୧୯।
ସହସ୍ରେକ ଭାର ପାଣିଦ୍ରବ୍ୟ ଦେଖା ଦରଶନ
ଦର୍ଶନ କଲା ଗଣପତି ଶ୍ୱେତ ହାଥୀ ସହସ୍ରେକ ଧେନ ।୨୦।
ବାହ୍ୱ ବାହ୍ୱ ବୋଲିଣ ସେ ଶତେ ସହସ୍ର ପରଣାମି
ଜାଗ୍ର ଦର୍ପ ଚୂରଣ ନାଥ ଶରଣ ରକ୍ଷଣ ଦେବସ୍ୱାମୀ ।୨୧।
ତୁମ୍ଭୁରେ ଜଣାଇଲା ପଡ଼ିହାରୀ କାଳାଞ୍ଜନ
ନିର୍ଝର ଦେଶ ନୃପତି କରୁଅଛି ଦର୍ଶନ ।୨୨।
ଆନନ୍ଦେ ଅଶ୍ରୁ ଜଳ ରାଜା ଅନେକ ସ୍ତୁତି ବୋଲି
ଶତେ ସହସ୍ର ଦଣ୍ଡ ଯେ ଶୁଣ୍ଡିଲା ଗଣ୍ଡୟାଳି ।୨୩।
ଦ୍ରୁହସିତ ହୋଇଣ ସେ ବୋଲଇ ବୃକୋଦର
ଜିତ ମହାପ୍ରସାଦ ବାଞ୍ଛା ସିଦ୍ଧ ହୋଉ ତୋହୋର ।୨୪।
ଅନେକ ବନୋସ୍ତୁତି ହୋଇ କହଇ ନିର୍ଝର ଗଣପତି
ଆହ୍ନେଂ ସେ ସାର୍ଥକ ହୋଇଲା ମୋହୋର ଜୀବତି ।୨୫।
ଦେଖିଲଇଂ ନାରାୟଣ ଯେ ପ୍ରତକ୍ଷେ ବାସୁଦେବ
ଗୁଡ଼ିଲା ଦୁଷ୍କୃତ ମୋହୋର ମନ ବଚନ କର୍ତ୍ତବ୍ୟ ।୨୬।

ଶୂରବର ସୁନ୍ଦର ନାଥ ତୁ କଇଛା ଜଗଜ୍ଜେଠୀ
ଦୁଶନ ମାନଙ୍କେ ମୋହୋର ଦୁଷ୍ଟକୃତ ଗଲା ଫିଟି ।୨୭।
କଣ୍ଟକରେ ପ୍ରବେଶ ଯେ ପବନର ବାଳ
ଦେଖିଲେକ ରାଜ୍ୟଲୋକେ ସାନନ୍ଦ ସକଳ ।୨୮।
ପୁରେଣ ଉତ୍ସବ ଯେ କରନ୍ତି ସକଳ ନରନାରୀ
ଯହିଂ ଭବ ତହିଂ ଭଗତ କେହୁ ଅନ୍ତ କରିପାରି ।୨୯।
ସର୍ବ ଅଳଂକାର ଭୂଷିତ ହୋଇଣ ସର୍ବବାଳୀ
କରେଣ ଅର୍ଘ୍ୟ ଘେନି ଯେ ଦିଅନ୍ତି ହୁଳହୁଳି ।୩୦।
ବାଜନ୍ତି ବୀରତୂର ମଧୁର ରସ ଧୁନି
ତାଣ୍ଡବ ରସେ ଖଟନ୍ତି ସକଳ କାମିନୀ ।୩୧।
କର୍ଣ୍ଣର ଦେଶର ରାଜା ଅନେକହିଂ ସାନନ୍ଦେ
ଜଗଥାରେ ବନ୍ଦେକଲା ଭୀମକଇଂ ଘେନିଣ ଆନନ୍ଦେ ।୩୨।
ପାଞ୍ଚାଶ ମହାଦେବର ଯେ ଶତେକ ପୁତ୍ରନ୍ତ ଘେନି
ଜଗଥାର ତଳେ ରାଜା ଯେ କରଇ ଦଇନି ।୩୩।
ପୁଣ ପୁଣ ପ୍ରଣପତ୍ୟ ରାଜା ଭିନି ପାବଛର ତଳେ
ମଧ୍ୟସ୍ୱର୍ଗ ଠାକୁର ତୁ ପ୍ରତକ୍ଷେ ଆଖଣ୍ଡଳେ ।୩୪।
ଯିସ ଅବା ମୋର ଦୋଷଥିଲା ଗ୍ୟାନେ ବା ଅଗ୍ୟାନେ
ସମସ୍ତ ଉପେକ୍ଷା ମୋତେ କରିବା ତୋଷମନେ ।୩୫।
ଭୀମସେନ ବୋଇଲା ତୁ ପଣ୍ଡିତ ଗଣପତି
ଯେଉଂଣ ରାଜାଙ୍କୁ ଦୋଷୀ ସେ ପାଉଛନ୍ତି ଶାସ୍ତି ।୩୬।
ନିମନ୍ତ୍ରଣ ମୋଗାଡ ସେ ହେଲା ରାଜାର ଆଗେ
ସମଦଣ୍ଡ ଘେନି ଉଦ୍ପ୍ରସ୍ତକଇଂ ଯାଅ ଯା ତୁ ବେଗେ ।୩୭।
ଆଗ୍ୟାଂ ପ୍ରମାଣେ କର ନିବେଶ କରି ଶିରେ
ସ୍ୱାମୀ ମୁଣୋହି କରିବା ଆଜ ମୋହୋର ରାଜ୍ୟରେ ।୩୮।

---

୨୭।୧ ଶରଣ ରକ୍ଷଣ ନାଥ କଇଛା ଜଗଜ୍ଜେଠୀ । (କ,ଥ,ଛ)
୨୯।୨ କର୍ଣ୍ଣର ଦେଶର ଆନନ୍ଦ କହୁତେ କ ପାରି । (କ)
୩୧।୧ ବଜାନ୍ତି ତୂରବା ମଧୁର ରସେ କଳା
୩୧।୧ ହାଣ୍ଡରେ ଖଟନ୍ତି ତାଣ୍ଡବ ରସେ ଖେଳା । (ଘ,ନ)

ଗଣପତିର ବଚନେ ତୁଷ୍ଟ ହୋଇଲେକ ଭୀମସେନ
ପଚ୍ଛିମ କୋଣଲେ ରାଜା ଧନ୍ୟ ଧନ୍ୟ ତୋହୋର ଜୀବନ ।୩୯।
ତୁଷ୍ଟ ଅନୁମତେ ଉପୁଜିଲା କାର୍ଯ୍ୟ ଧର୍ମ
ଭୀମସେନ ବଚନେ ଗଣପତି ଆଗମ ।୪୦।
ସୂପକାରମାନେ ଯେ ପ୍ରବେଶ ରୋଷାଇର ଘରେ
ତିନି ଅସ୍ୱବ୍ରତେକ ସୂପକାର ଥାଆନ୍ତି ଭୀମସେନର ସଙ୍ଗରେ ।୪୧।
ରନ୍ଧଣା ଯୋଗାଡ଼ମାନ କରନ୍ତି ବେଗୁଂବେଗ
ଯେ ବିଧି ଭିଆଇଲେ ଅମୃତ ରସ ପାଗ ।୪୨।
ଗଉଷ୍ଟି ଶଉଷ୍ଟି ନଳବଧି ଯେ ତିନି ପ୍ରତି ରନ୍ଧଣା
ଆହ୍ୱାନକ ସାର ମୁଣୋହ୍ନରେ ବଜେ ପବନ ଦୁଲଣା ।୪୩।
ପରଶନ୍ତି ସାନନ୍ଦେ ସମସ୍ତ ବନ୍ଧୁଜନ
ଭିଆଣେ ପରଶନ୍ତି ତିନିଶ ଷାଠିପଉଟି ଅନ୍ନ ।୪୪।
ସାଂଗ୍ରାମେ ଅନିପୁତ ଭୋଜନେ ଯେତେ ଇଚ୍ଛା
ଶୃଙ୍ଗାରେ ଅନିପୁତ ଧାରଣ ପୁରୁଷ କଇଚ୍ଛା ।୪୫।
କାମ୍ୟେକ ପୁରୁଷ ସେ, ସେ ଭୁଞ୍ଜିଣ ପରମ ଶାନ୍ତ
ଆଂଗ୍ରେବନ ମଧ୍ୟରେ ଯାଇଂ ବଜାସ୍ୱେ କଲେ ଖ୍ରାନ୍ତି ।୪୬।
ସୁବାସିତ ନୀରେ ସେ ଯେ କରନ୍ତି ଆଂଗ୍ରେବନ
କର୍ପୂର ତାମ୍ବୋଲମାନ କରନ୍ତି ଭୋଜନ ।୪୭।
କନକରେ ଖଞ୍ଜିଲା ଅଛି ହୀରାର ଖଟୁଲି
ଭୀମସେନଙ୍କୁ ଶତେକ ବିଳାସୁଣୀ ପଞ୍ଚାବନ୍ତି ଦୋଳି ।୪୮।
ଗୁମୁରେ ନୃତ୍ୟଗୀତ ଯେ କରନ୍ତି ବନିତା
ଗାବନ୍ତି ସୁସ୍ୱରେ ସେ ମଧୁର ସଙ୍ଗୀତା ।୪୯।
ସ୍ନାହାନ ଭୋଜନ ସାରି ନିର୍ଦ୍ଧର ଗଣପତି
ଶତେ ପୁବନ୍ତି ଘେନି ଭୀମସେନଙ୍କଇଂ ଗୃହର ତାଳନ୍ତି ।୫୦।

---

୩୯।୨ ମୁଣୋହ୍ନ କଣବା ତେବେ ତୋହୋର ଭୁବନ । (ନ)
୪୦।୧ ମଉନେ ମଉନେ ମୋତେ ଉପୁଜିଲ କାର୍ଯ୍ୟ ଧର୍ମ । (ଭ)
୪୮।୧ ଅଷ୍ଟରତ୍ନେ ଖଚିତ ସୁବର୍ଣ୍ଣ ଖଟୁଲୀ । (ତ,ଠ)
୪୮।୧ ଅଷ୍ଟରତ୍ନ ଦମେ ରଚିଲ ସୁଣୀଡିଲ ଖଟ ଦୋଳା । (ଥ)

ବହୁତ ବିପୁଳ ମନ ହୋଇଣ ଭୀମସେନ
ଯେତ୍ର ପଶ୍ଚିମ କୋଣରେ ଗଣପତି ଜୀବନ ତୋର ଧନ୍ୟ ।୫୧।
ତାଡ ଝୁମ୍ପା ସରଳ ବାହୁଟି ଜଗଦଳ।
ଶିରେଣ ଶ୍ରୀଭୂଷା ହୃଦରେ ରତ୍ନମାଳା ।୫୨।
ଅନେକ ରତ୍ନ ଅଳଂକାର ହସ୍ତେ ଭୀମସେନ ତାହାର ସରସା
ପୁତ୍ରମାନଂକୁ
ଯେତ୍ମମନ୍ତ୍ରେ ଯାଅ ହୋ ଇନ୍ଦ୍ରପ୍ରଶସ୍ତ ରାଜସୂୟ ଯାଗ ସଭାକୁ ।୫୩।
ବୃକୋଦର ଆଗ୍ୟାଂ ଯେ ଶିରେଣ ନବେଶି
ଅନକୂଳ କର ରାଜା ବାହାର ହୋଇ ଆସି ।୫୪।
ଲଗିଲ ଜଗଦ୍ଦଳ ବହୁତ ମାଳକା
ବାହାଶଲେ ବୃକୋଦର ପରଭୂମି ନଶଂକା ।୫୫।
ଦେଶାନ୍ତରେ ବାରତା ଜଣାଇଲେ ସାବଧାନେ
ସ୍ୱାମୀ କାର୍ତ୍ତିକପୁର ବୋଲ ବଂଝଗିର ସନ୍ନିଧାନେ ।୫୬।
ଦ୍ୱଶାଶତେ ଯୋଜନ ଦେବ ଯେତ୍ଥକୁ ଅଟଇ ଦୂର
ବନ ଗହନ ଭୂମି ଦେବ ବହ୍ନତ ଡଙ୍ଗର ।୫୭।
ତହିଂର ନୃପତି ଯେ ଅଟଇ ରୁଦ୍ରଦେବ
କାର୍ତ୍ତିକେଶ୍ୱର ବଜଯେତ୍ର କରଅଛଇ ଦୁର୍ଗ ସଦାଶିବ ।୫୮।
ସ୍ୱାମୀ ସତ୍ୟଯୁଗେ ଉପୁଜିଲା ତାରକା ନାମେ ଦତ୍ୟ
ତାରେଣୀ ନାମେ ନଦୀଯେତ୍ର ତାରକ ପର୍ବତ ।୫୯।
କାର୍ତ୍ତିକକୁମାର ଜାତ ହୋଇଲ ସେହୁ ବନେ
ଅନଙ୍ଗ ଦହନ ସ୍ୱାମୀ କଲେକ ବିଲୋଚନେ ।୬୦।
ଗଉରୀ ବୋଧିଲେ ଦେବ କୁମାର ସମ୍ଭବେ
ତାରକାକୁ ପର୍ବତେ ମାଡ ବସିଲେ କାର୍ତ୍ତିକେଶ୍ୱର ଦେବେ ।୬୧।
ସେ ତାରେଣୀ ନଦୀରେ ସ୍ନାନ କରଇ ବୃକୋଦର
ଯାଇଂଣ ଉଠିଲେ ଭୀମ ତାରକା ପର୍ବତ ଉପର ।୬୨।
ଦେଖିଲେ କୁମାର ଛଡ ବଦନ ମହାରୂପୀ
ବାମ ଚରଣେ ତାରକାସୁର ମାଡ ଦକ୍ଷିଣ ଚରଣ ଗଗନେ କ୍ଷେପି ।୬୩।
ଦ୍ୱାଦଶ ଲୋଚନ ଯେ ତାର ଦ୍ୱାଦଶ ଭୁଜ
ମକରଧ୍ୱଜ ସ୍ୱାମୀ ସୁନ୍ଦର କାଳାନଳ ଯାହାର ତେଜ ।୬୪।

ଅନାଦି ସିଦ୍ଧ ସ୍ୱାମୀ ସୁସଜ୍ଞ ମହାଶମ୍ଭୁ ଦେବତା
ବୃନ୍ଦାଅର୍କ ଦୁର୍ଗତି ଫେଡ଼ିଲୁ ମହାଚଣ୍ଡା ।୬୫।
ପିନାକ ଶାରଙ୍ଗ ଦେବ ଯେ ତ୍ରିଦଣ୍ଡ ପାଣି
ପଳାବନ୍ତି ଦୁର୍ଗପାତେ ଯାହାର ଡାକ ଶବଦ ଶୁଣି ।୬୬।
ଭୁଜଙ୍ଗ ଧାରଣ ତୁ ବାସୁକୀ ନାଗ ଯେ ପଇତା
ମହାଯୋଗ ବଞ୍ଚାଇ ତୁ ଖଣ୍ଡିଲୁ ସର୍ବଶନ୍ତା ।୬୭।
ଜନ ମନ ମୋହନ ତୁ ପ୍ରସନ୍ନେ ପରମ ଯୋଗୀ
ଭଗତଜନ ମଙ୍ଗଳ ସ୍ୱାମୀ ନାଶକର ଦର୍ପଗଞ୍ଜି ।୬୮।
ଡାକ ଡମ୍ବରୁ ନାଥ କଳକଳା ଶବଦ ଜାଣି
ପଳାଇଲେ ପ୍ରେତ ପିଶାଚ ଡବ ଡବ ବାଦ୍ୟ ଶୁଣି ।୬୯।
ମୟୂର ବାହାନେ ଦେବ ତ୍ରଇଲୋକ୍ୟ ଭୁବନେ ଭ୍ରମି
ଗଳତ ସୁଧାରସ ଦେବ ଯାହାର ଉତଙ୍ଗ ମଣ୍ଡଳ ସ୍ୱାମୀ ।୭୦।
ଜୟ ତୁ କାର୍ତ୍ତିକେଶ୍ୱର ଅନନ୍ତ ବିଶ୍ୱରୂପୀ
ନବଦ୍ୱୀପ ସପତ ସାଗର ଦେବ ଯାହାର ଯେତେକ ଚରଣକେ
ବ୍ୟାପୀ ।୭୧।
ଯେତିକ୍ଷଣ ତାରକାର ଭୟେ ନାସିଲେ ବୃନ୍ଦାଅର୍କେ
ଆକାଶ ଭୁବନ ତେଜ୍ୟା କରି ପଳାଇଲେ ସମସ୍ତ ଦେବଲୋକେ ।୭୨।
ଯେତେକା ଦିବସକେ ଷେପଇ ଯେ ତିନି ଆକାଶେ
ତୁ ତାହାର ଦର୍ପ ଧ୍ୱଂସିଲୁ ଦେବ କୁମାର ବୟସେ ।୭୩।
ବହୁତ ବିନୋଦ୍ୟୀ ତୋତେ ଯେ ହୋଇଲେ ଦେବତାୟେ
ସକଳ ଭୁବନେ ତୋତେ ଦେବ ଶୁଭିଲା ଜୟେ ଜୟେ ।୭୪।
ପ୍ରସନ୍ନେ ବର ତୋତେ ଦେଇଗଲେ କାପାଳୀ
ସୁରବର ସୁନ୍ଦର ନାଥ ଷଡ ଯେ ମଣ୍ଡଳ ।୭୫।
ନବଲକ୍ଷ ଡମ୍ବରୁ ଯାହାର ଯେ ଅନ୍ତରୀକ୍ଷେ ବାଜେ
ଦିଗମ୍ବର ରକ୍ଷା ପାଳକ ତୁ ଦେବାଧି ଦେବରାଜେ ।୭୬।
ମୁହିଂ ତୋହୋର ଚରଣେ ଶରଣ କାର୍ତ୍ତିକ କୁମର
ଯେ ଅନନ୍ତ ଘୋର ପାତକୁଂ ମୋତେ ଦେବ କରିବା ଅପହାର ।୭୭।
ତବ ଚରଣେ ଶରଣ ମୁଂ ତେଜିଲି ସର୍ବଶନ୍ତା
ଭୂତ ଭବିଷ୍ୟ ବର୍ତ୍ତମାନକୁ ତୁହି ସେ ବରଦ୍ୟନ୍ତା ।୭୮।

ସ୍ୱାମୀ ଅକଳନ୍ତ ସାଗରେ ମୁଂ ପଶିଲି ନ ଜାଣି
ବତାଇଲ ପ୍ରତଗ୍ୟାଂ ମୁଂ ନ ଜାଣି ନ ଶୁଣି ।୭୯।
କପିଳାସ ରକ୍ଷଣ ତୁ ପଶ୍ଚିମ ଦ୍ୱାରପାଳ
ଯେତିକା ଯୁଗକେ ବଞ୍ଚାଇଲୁ ନାଥ ତୁ ଚଉଷଠି ଲକ୍ଷ କାଳ ।୮୦।
ନ ପଢି ପଣ୍ଡିତ ମୁଂ ନ ସାଧିଲି ଶାହାସ୍ତ୍ର ବିଦ୍ୟା
ଅଗ୍ୟାନେ ଗ୍ୟାନ ପାଇଲି ଅମୃତ ରସ ଶୁଦ୍ଧା ।୮୧।
ଅନ୍ନ ଭୋଜନ କରନ୍ତେ ପୂରଇ ଉଦର
କର୍ଣ୍ଣେ ପିବନ୍ତେ ନ ଅଣ୍ଟଇ ସେ ମହାଭାରଥ ସାଗର ।୮୨।
ବିଜୟେ ଚନ୍ଦ୍ରାମଣି କାର୍ତ୍ତିକ ନଗ୍ର ପୁରେ
ମୁଂ ତାହାକୁ ଭେଟିଲି ତାରକ ପର୍ବତରେ ।୮୩।
କିଞ୍ଚିତ ମଉଳେଣ ସେ ନ ସହଇ କୂଟକଥା
ପାଦେଣ ପ୍ରହାର କଲୁ ତୁ ଲମ୍ବୋଦର ଦେବତା ।୮୪।
ବାମଚରଣ ତୋର ବିଘ୍ନରାଜ ମୁଖେ ବାଜ
ବାମ ପାଟି ଦନ୍ତଗୋଟିକ ପଡିଲା ଦେବ ଭାଙ୍ଗି ।୮୫।
ସେ ଭଗଦନ୍ତ ଗୋଟି ପଡନ୍ତେଣ ଭୂମି
ରସାଂଗତ ହେଉଥିଲା ବସୁଧା ମହାତମୀ ।୮୬।
ସେ ଗଣନାଥ ଦେଖିଲେ ପୃଥୀ ପଡନ୍ତେ ରସାଂଗତେ
ସେ ଭଗ୍ନଦନ୍ତ ସମ୍ଭାଳି ଧଇଲେ ବାମହାଥେ ।୮୭।
କୋପେଣ ଶାପ୍ୟ ହେଲେ ତୋତେ ବାଳୁତ ମନ୍ଦ ବୁଦ୍ଧି
ଯେବଣ ଚରଣେ ପ୍ରହାର କଲୁ ସେ ଚରଣେ ହେଉ ଗଳିତ କୁଷ୍ଟ
ବ୍ୟାଧି ।୮୮।
ସ୍ୱାମୀ ଯୁଗତେ ଜ୍ୟେଷ୍ଠ ଭ୍ରାଥ ଅଟଇ ସମ ପିତା
ଅଗ୍ୟାନ ବାଳଖିଳା ବୋଲି ସେ ଅଛଇ ବଞ୍ଚନ୍ତା ।୮୯।
ଗଳିତ ଦୁର୍ଗନ୍ଧ ତୋର ଲମ୍ବୋଦର ଶାପେ୍ୟ
ତାହା ଖଣ୍ଡିଲୁ ସ୍ୱାମୀ ଅଜପା ଜପି ଗୋପେ୍ୟ ।୯୦।
ଅକାରଣକଇଂ କାରଣ ତୁ ପ୍ରସନ୍ନ ନିରାକାର
ଅଗାଦ ସାଗରୁଂ ମୋତେ ଉଦ୍ଧର ଧରିବା କୁମାର ।୯୧।
ଯେ ଭୁବ ଭୁବନେ ଯାର ପ୍ରକୃତି ଦୁଲଭ
ଯେ ମୋହଜଳ ସାଗରୁ ମୋତେ ଉଦ୍ଧର ଧର ଦୁଖୀ ସର୍ବାଣୀବ ।୯୨।

ଗିରିଜାର ନନ୍ଦନ ତୁ ଦେବ ଦେବାଧି ଦେବ ରାଜା
ପ୍ରସନ୍ନେ ନ ରାସ୍ତୁଣ ତୁ କୃତାନ୍ତକ ଦର୍ପ ଗଂଜା ।୯୩।
ସ୍ୱାମୀ କଞ୍ଚିତ ପାଃତକେ ମୁଂ ମନୁଷ୍ୟ ଜନ୍ମେ ଜନ୍ମି
ଏଥୁ ଦୁର୍ଗତିରୁ ଉଦ୍ଧରି ଧର ମୋତେ କାର୍ତ୍ତିକେଶ୍ୱର ସ୍ୱାମୀ ।୯୪।
ହେମବନ୍ତର ନନ୍ଦନ ଯେ କୁମାର ଚନ୍ଦ୍ରଧ୍ୱଜ
ତବ ସୋଦର ମାତୁଳ ବାରାହୀ ଆତ୍ମଜ ।୯୫।
ବାଳୁତ ଖେଳଣ ସେ ଯେ ହୋଇଲା ବାରୁଆଳୀ
ତବ ଶାପରେ ସେ ହୋଇଲା ପାଷାଣର ଓଳ ।୯୬।
ତବ ଶାପରୁ କରି ସେ ହୋଇଲା କୁମାର
ଭୁଠ ପାଷାଣ ହୋଇ ସେ ପଡିଲା ଗଙ୍ଗାଜଳ ଭିତର ।୯୭।
ବ ଲଖିଲା ବାଳପତି ଅନନ୍ତ ବ୍ରହ୍ମବେତ୍ତା
ଏଥୁ ପାପବାଧା ଦୋଷରୁ ମୋତେ ତୁମ୍ଭେ ସେ ଉଦ୍ଧରନ୍ତା ।୯୮।
ନମସ୍ତେ ବିଶ୍ୱନାଥ କାର୍ତ୍ତିକେଶ୍ୱର ସ୍ୱାମୀ
ଶୂଦ୍ରମୁନି ସାରଳ ଦାସ କପିଳାସ ସ୍ୱର୍ଗଗାମୀ ।୯୯।
ବଦନ୍ତି ଅଗସ୍ତି ଶୁଣ ହୋ ମହେଶ୍ୱର
ଭୀମସେନ ବିନୟ ଶୁଣି ବିଜୟେ କାର୍ତ୍ତିକେଶ୍ୱର ।୧୦୦।
ଦୁଷ୍ଟ ବିଶ୍ୱନାଥ ବିଜୟେ ମୟୂର ବାହନେ
ଦେଖିଣ ସାନନ୍ଦ ସେ ଯେ ହୋଇଲେ ଭୀମସେନେ ।୧୦୧।
ଅନେକ ବର୍ଣ୍ଣିନା ଭୀମ ଅନେକ ସ୍ତୁତି ବୋଲି
ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ ହୋଇ ଚରଣେ ଶୁଭିଲା ଗଡଧାଳି ।୧୦୨।
ପ୍ରସନ୍ନ ହୋଇ ବୋଇଲେ ତାକୁ ଦେବ ଛତ୍ରମଣ୍ଡଳି
ସାଧୁ ସାଧୁ ପାଣ୍ଡବ ରେ ତୁ ପ୍ରତାପ୍ୟାଂ ମହାବଳୀ ।୧୦୩।
ସମସ୍ତ ରାଜାନ୍ତ ସାଧି ତୁ ଯେ କଲୁନି ପଶ୍ଚିମେ
ଏଣୁତେ ଦୂର ବିଜୟେ ତୁ କଲୁନି ଭୀମସେନେ ।୧୦୪।
ଆବର ନୃପତି ଅଛଇ ଅଳପ ପଶ୍ଚିମ ଦେଶେ
ଅମାର୍ଗ ଭୂମି ଯେବେ ସାଧି କଲୁନି ଅଭ୍ୟାସେ ।୧୦୫।
ଏଥୁ କାର୍ତ୍ତିକ ପୁର ନଗ୍ର ହାଦେ ପଶ୍ଚିମ କୋଶଳେ
ଏଥୁ ସ୍ଥାନେ ବିଜୟେ ଆମ୍ଭେ କରୁ ସର୍ବକାଳେ ।୧୦୬।

ଯେବେ ମହାନଗ୍ର ହାଦେ ଭୀମସେନ ତୁ କରିବୁ ଉଜାଡ
ଭବେଣ ସାଧିକର ଆମ୍ଭର ଦେଖନ୍ତେଣ କରି ।୧୦୭।
ସେ ରାଜାର ନାମ ଅଟେ କାର୍ତ୍ତିକ ନୃପତି
ରୁଦ୍ର ଦେବତା ବୋଲିକରି ସେ ରାଜ୍ୟର ଚକ୍ରବର୍ତ୍ତୀ ।୧୦୮।
ସେ ରୁଦ୍ର ଦେବତା ଯେ ଆସ୍ଥାନେ ବଜାଯେ
ଦେଶାନ୍ତର ଡଗରେ ଗ୍ରୀମୁରେ ନେଇ ବାରତା ଯେ ଦିଯେ ।୧୦୯।
ସ୍ୱାମୀ କେଉଁଣ ଦେଶର ଯେ ରାଜା ଯେବେକ ଆସି
ଅଲମ୍ଭ ସଇନ୍ୟ ଘେନି ତୋହୋର ରାଜ୍ୟେ ପଶି ।୧୧୦।
ବଶୀକରଣ କାର୍ଯ୍ୟ କରିବା ଦେବ ଦଣ୍ଡସାଇଂ
ଜଗତଜନ ଜାଣନ୍ତି ତାହାକଇଂ କେହ୍ନ ନାହ୍ନିଂ ।୧୧୧।
ଡଗର ଅଭିମୁଖେ ରାଜା ପାଇଂଣ ବାରତା
ଦଣ୍ଡ ସାଜ ବୋଲି ଆଗ୍ୟାଂ ଦେଲେକ ମହାରଥୀ ।୧୧୨।
ଆକାଶ ଉଚ୍ଛୁଳିଲା ଯେ ବୀରତୂର ଶବଦେ
ମେଦିନୀ କମ୍ପିଲା ଯେ ନିଶାଣ ଭେରୀ ବାଦ୍ୟେ ।୧୧୩।
ବହଡନ୍ତି ରାଉତେ ଯେ ତୁରଙ୍ଗମ ପିଠି ଚଢି
ଆକାଶ ହାଦୋଳଇ ମହାବାଦ୍ୟ ରଡି ।୧୧୪।
ସାଜ ସାଜ ବୋଲି ଯେ ପାଡନ୍ତି ଘୋର ଡାକ
ଧାମନ୍ତି ଅଶ୍ୱଆରେ ଯେ ପ୍ରତିଗ୍ୟାଂ ଅନେକ ।୧୧୫।
ଗୁରୁତର ପ୍ରତିଗ୍ୟାଂ ଯେ କହଣା ନ ଯାଇ
ନବଶତ ପାରିଦଣ୍ଡ ଘେନି ନୃପତି ଥାଠ ଚଳାଇ ।୧୧୬।
ରେ ରେ କାର ଶବଦେ ଯେ କମ୍ପିଲା ମହୀଆଳୀ
ଆକାଶେଣ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ ।୧୧୭।
ରୁଦ୍ରଦେବ ନୃପତି ସମଦଣ୍ଡ ଘେନି ଆସି
ତାରକ ପର୍ବତେ ଯେ ଭୀମସେନ ଅଛୁ ବସି ।୧୧୮।
ଅଶ୍ୱନ୍ତ ଚଳାଇଣ ଉଠିଲେ ରାଉତେ
ଗଜନ୍ତ ଚଳାଇ ଯେ ଖେପନ୍ତି ମାହୁନ୍ତେ ।୧୧୯।
ତାରକ ପର୍ବତେ ବେଢିଲେ କୋପାନଳେ
ଦେଖିଣ ଶୂନ୍ୟ ପୁରୁଷେ ହସିଲେ ଆକାଶ ମଣ୍ଡଳେ ।୧୨୦।

ଭୀମସେନ ପୁଚ୍ଛାକଲା କାର୍ତ୍ତିକ କୁମାରକୁ
ସ୍ୱାମୀ ଯେ ରାଜା ତ ବଡ଼ାଇଁ କହାଲ କଲା ମୁକୁ ।୧୨୧।
ଅପାର କଟାଳ ସମ୍ବଳାନ୍ତି ତୋହୋର ଉପ୍ରୋଧେ
ଯେତେକ ସନ୍ୟ କ୍ରୁଦ୍ଧବେ କି କଞ୍ଚିତ ମୋର ଯୁଦ୍ଧେ ।୧୨୨।
ଯେସନ ଶୁଣି ବୋଲେ କାର୍ତ୍ତିକେଶ୍ୱର ଦେବତା
ଆମ୍ଭର ଦେଖନ୍ତେ ତୁ ହୋଇବୁ ନାଶପ୍ରିତା ।୧୨୩।
ଶୃନେ୍ୟଣ କୁମାର ଯେ ରାଜାକୁ କହିଲେକ ବାଣୀ
କାହାର ତୁଲେ ସମର କରୁ ହୋ ନୃପମଣି ।୧୨୪।
ନ ଜାଣୁ କି ତୋତେ ନ କହିଲେ ଦେଶାଉର
ପଶ୍ଚିମଦ୍ୱାର ବଜେ ପାଣ୍ଡବ ସୁନ୍ଦର ।୧୨୫।
ଶୁଣିଣ ସାନନ୍ଦ ଯେ ରୁଦ୍ରଦେବ ନୃପତି
ହାଥୀରୁ ଉତ୍ତୁର ରାଯେ ଆସଇ ତତକ୍ଷଣାନ୍ତି ।୧୨୬।
ଶତ ସହସ୍ର ଦଣ୍ଡ ହୋଇଲା ପରଣାମି
ନ ଜାଣି ଅଗ୍ୟାନେ ଅଇଲ ଦଣ୍ଡ ସାଜ ସ୍ୱାମୀ ।୧୨୭।
ଅଗ୍ୟାନ ପ୍ରାଣୀକ ପଣ୍ଡିତଂକର ନାହିଂ କୋପ
ମୋହୋର ଉପରେ ସ୍ୱାମୀ ଗୁଡବାକ ପରତାପ ।୧୨୮।
ତୁହ୍ମ ଦେବ ସକଳ ସଂସାର ଜନ ହିତା
ତୁ ଦେବ ସପୂଲ ଜନ ତାରନ୍ତା ଉଦ୍ଧରନ୍ତା ।୧୨୯।
ବନଚର ନୃପତି ନ ଜାଣୁ ଦେବ ଆମ୍ଭେ କିଛି
ମୂର୍ଖ ଅଗ୍ୟାନ ଆମ୍ଭର ଗ୍ୟାନ କାହିଂ ଅଛି ।୧୩୦।
ଭଗତଜନ ମଙ୍ଗଳ ତୁ ସୋମବଂଶର ଅଧିକାରି
ଦୁଷ୍ଟକୃତ ହରଣ ନାଥ ଅପ୍ରାଧୂଂ ଦେବ କର ପାରି ।୧୩୧।
ରାଜାର ବିନୟ ଦେଖି କୋପକଲେ ସମ
କାର୍ତ୍ତିକେଶ୍ୱର ଦେଖନ୍ତେ ଅନେକ ପ୍ରୀତିକଲେ ଭୀମ ।୧୩୨।
ଶ୍ରୀଭୁଜେ ମାରୁତି ଦିଲେ ନିମନ୍ତ୍ରଣ ଯୋଗାଡ଼
ସମଦଣ୍ଡ ଘେନି ଇନ୍ଦ୍ରପ୍ରସ୍ଥକୁ ରାଜା ହୁଅସି ବାହାର ।୧୩୩।
ଦେଖା ଦରଶନ ଧନ ଥାଠ ସନ୍ୟ ଘେନି
ବନ୍ଦନ ହୋଇ ଚଳ ରାଜା ହବା ଯେ ରଯୈଣୀ ।୧୩୪।

ବିଳମ୍ବ କଲେ ରାଜା ସର୍ବକାର୍ଯ୍ୟ ହୋଇବ ଅସାଧ୍ୟ
ମହାଯାଗ ସମ୍ପୂର୍ଣ୍ଣ ନ ପୁଣ ହୋଇବୁ ଅପରାଧୀ ।୧୩୫।
ମୁହିଂ ଯେ ଅନୁଗ୍ରହ କଲଇଂ ତୋତେ କୁମାର ଦେଖନ୍ତେ
ଯାବତ କାଳକଇଂ ଦୟା କଲଇଂ ମୁଂ ତୋତେ ।୧୩୬।
ଆଜ୍ଞାଂ ପରମାଣେ ଯେ କାର୍ତ୍ତିକପୁର ସ୍ୱାମୀ
ବୃକୋଦର ଚରଣ ତଳେ ଶତେ ସହସ୍ର ଦଣ୍ଡ ପରଣାମି ।୧୩୭।
ରଥ ଗଜ ଅଶ୍ୱ ଯେ ସଇନ ପାଦାନ୍ତ
ଆଜ୍ଞାଂ ପ୍ରମାଣେ ସାକଲ ରାଜା ନବଶତ ପାରିଦଣ୍ଡ ନୃପତ ।୧୩୮।
ବିଜୟସେନ ମନ୍ତ୍ରୀ ଥାଠରେ ଆଗି ଆଣି
ଉତ୍ତର ମୁଖ ହୋଇ ଅନକୂଳ କଲକ ନୃପମଣି ।୧୩୯।
ପୁଣ ପ୍ରଣପତ୍ୟ କରଇ ଭୀମସେନର ପାଦତଳେ
ସ୍ୱାମୀ ଆଜକ ମୋର ପୁରେ ରହିବା ଦେଟନ୍ତୁ ସପୂଳେ ।୧୪୦।
ପ୍ରତକ୍ଷ ନିରଞ୍ଜନ ତୁ ସ୍ୱୟଂ ଜଗନ୍ନାଥ
ତୋହୋର ପାଦରଜ ପଡନ୍ତେ ମୋ ର ରାଜ୍ୟର ଫିଟୁ ଦୁଷ୍କୃତ ।୧୪୧।
ଭୀମ ବୋଇଲେ ମୋତେ ରହିବାକୁ ବେଳ ନାହିଂ
ଭୋଜନେ ଶୟନେ ମୋହୋର ପ୍ରିୟୋଜନ ଅଛୁ କାହିଂ ।୧୪୨।
ମହା ବଳବନ୍ତା ରାଜାଯେ ଛନ୍ତି ପଶ୍ଚିମ କୋଶଳରେ ଅସାଧେ
ପଞ୍ଚାଶ ସହସ୍ର ରାଜା ନିମନ୍ତିବ ନଉଦ୍‌ବସର ମଧ୍ୟେ ।୧୪୩।
ମକର ମାସେ ପ୍ରବେଶ ହୋଇବ ସକଳ ରାଜାନ୍ତ ଘେନି
ତୁ ବହନ ଚଳଯାଅ ଘେନି ଯେ ତୋହୋର ଥାଠ ଯେ ସଇନ
——— ।୧୪୪—୩୯୧୯।

## ଶବରୀ ନାରାୟଣଙ୍କୁ ନିମନ୍ତ୍ରଣ

ରୁଦ୍ରଦେବ ଚଳଇ ଯେ କୁମାରେ ପରଣାମି
କନାଉଜ ଦେଶକୁ ଚଳଇ ପାଣ୍ଡବ ସୁନ୍ଦର ସ୍ୱାମୀ ।୧।
ମଣିଭଦ୍ରା ବୋଲକର ଯେକଇ ନଦୀ ଗୋଟିଏ
ସରସ୍ୱତୀ ନଦୀରୁ ସେ ଇଶାନ୍ୟ ଭାଗେ ଫୁଟିଯେ ।୨।
ସେ ନଦୀର ଘାଟରେ ଚଳଇ ପାଣ୍ଡବ ପଞ୍ଚାଣ
ଆକାଶ ଉଚ୍ଛୁଳୁଅଛି ଘୋର ବାଦ୍ୟ ଢମକ ନିଶାଣ ।୩।

କାନ୍ତିସୁନ୍ଦର ବୋଲି ଯେତେକ ପର୍ବତ ଗୋଟିଏ
ପାଣ୍ଡବ ସୁନ୍ଦର ଯାଇଂ ସେ ପର୍ବତେ ବଜେଏ ।୪।
ଘୋର ତୂର ଭେରୀ ନିଶାଣ ଝମକ ଘୋର ବାଜେ
ଦଶ ଭୁବନ କମ୍ପଇ ହାସିଲେ ଦେବରାଜେ ।୫।
ଧନୁମାସ ଶୁକ୍ଳପକ୍ଷ ପଞ୍ଚମୀର ତିଥି
ସେ ପର୍ବତ ଉପରେ ବଜଏ ଭୀମସେନ ରଥୀ ପାହାନ୍ତି ।୬।
ଶତଭିଷା ନକ୍ଷତ୍ର ଅଙ୍ଗବାର ତିଥି
ତଇତିଲ ନ ମେ କରଣ ଭୋଗ ଦଶ ରାତି ।୭।
ଆୟୁଷ୍ମାନ ନାମେ ଯୋଗ ଶୁଭ ଅନୁକୂଳେ
ଭୀମସେନ ବଜେକଲେ କୃତାନ୍ତେକ ବଟ ତଳେ ।୮।
ସେ କାନ୍ୟକୁବ୍ଜ ଦେଶର ରାଜା ଶରଣ ନାରାୟଣ
ସହସ୍ରେକ କନ୍ୟା ଘେନି କ୍ରୀଡଇ ନଦୀ ଭିତରେଣ ।୯।
ଦେଶାନ୍ତର ଜଣାଇଲା ଶୁଣ ଦେବ ଅଭୟେ ଚନ୍ଦ୍ରମୁଖୀ
ପର ଥାଠ ପଡିଲା ଦେବ କେଉଁଣ ଦେଶର ନୃପତି ।୧୦।
ରଥ ଗଜ ଅଶ୍ୱ ଦେବ ପାଦାନ୍ତି ଅଳପକ
ଯେତେକେଣ ମହାବଳବନ୍ତ ସେ ପ୍ରତିଗ୍ୟାଂ ଅନେକ ।୧୧।
ଦୁର୍ଦ୍ଧର ପ୍ରଚଣ୍ଡ ଦେବ କ୍ଷତ୍ରିୟ ମହାଯୋଧୀ
ଯେତେମନ୍ତେଣ ପଶ୍ଚିମ ଦିଗ ରାଜାନ୍ତ କଲାନି ସର୍ବସାଧି ।୧୨।
ଦୁର୍ଦ୍ଧର ହୋଇଲେ ଦେବ ନ ବୃତାନ୍ତ କେହି
ଶରଣ ସମ୍ଭାଳଣ ସେ ଭଗତେ କରଇ ହାହି ।୧୩।
ଚରଗଣ ମୁଖୁଂ ଯେତେକ ବାରତା ଶୁଣି
ଜଳକ୍ରୀଡା ରସେ ସେ ନ ଶୁଣିଲା ନୃପମଣି ।୧୪।
କଟାଳ ରାଜ୍ୟରେ ଯହୁଂ ପଶିଲା ମାରୁତି
ମନ୍ତ୍ରୀ ଅମାତ୍ୟେ ଓଗାଳଲେ ଥାଠ ଘେନି ଝାଁତି ।୧୫।
ଦଶଲକ୍ଷ ରଥୀ ପଞ୍ଚବଂଶ ଲକ୍ଷ ହାଥୀ
ରଥ ଖର୍ବ ଅଶ୍ୱ ଜଣୋଇଣି ଖଉଣୀ ପାଦାନ୍ତି ।୧୬।
ପଞ୍ଚଶତ ପାରଦଣ୍ଡ ଯେଉଂଣ ରାଜାକୁ ଖଟଇ
ପଶ୍ଚିମ କୋଶଳେ ରାଜା ମହା ଗରଷ୍ଠଇ ।୧୭।



ଅନଙ୍ଗ ସାରକ୍ଷେ ହନେ ସେ ସୁନ୍ଦରପଣେ
ପଶ୍ଚିମ କୋଶଳ ରାଜାଏ ସର ନାହ୍ୱାଂ ଜଣେ ରଣେ ।୧୮।
ଜରାସନ୍ଧ ରାଜାର ଭୁଲେ ସେ ଅନେକ ଯୁଦ୍ଧକଲା
ପଞ୍ଚଦଶ ଦିନେ ଜରା ଯୁଦ୍ଧେ ତାହାକଇଂ ସର ଯେ ନୋହିଲା ।୧୯।
ମହା ପ୍ରତାପୀ ରାଜା ସେ ସନ୍ୟ ତାର ନ ଯାଇ କଳଣା
ଅମାପତ ସନ୍ୟ ଦେଖି ପ୍ରତଗ୍ୟାଂ ବୃକୋଦର କେଳା ।୨୦।
ପର୍ବତ ଉପରେ ଥାଇ ବୃକୋଦର ତାର ଥାଟ ଦେଖି
କାଳଚକ୍ର ପ୍ରାଏକ ବୁଲାଏ ବେନି ଆଖି ।୨୧।
ସୁମରଇ ମାଧବ ସେ ହଇଲୋକ୍ୟ ଚିନ୍ତାମଣି
ରାଜାଂକର ଦୁଷ୍ଟପଣ ଭୁହି ସେ ଜାଣୁନା ଚକ୍ରପାଣି ।୨୨।
ତୁ ଯେ ବୋଇଲୁ ଦୋଷ କରନ୍ତ ଯେତେଂଣ ଯୋଧୀ
ସନ୍ୟ ମାରଣ ରାଜାନ୍ତ ଘେନିଆସିବୁ ଯେ ବାନ୍ଧି ।୨୩।
ହରହର କୋପ ଦେବ କରିବୁନା ମୋତେ
ଏତେ ଦୁର୍ଭାଗ କଥା ମୁଂ ସହିବି କେମନ୍ତେ ।୨୪।
ମନେ ମନେ ହରହରଇ ସେ କାଳଦଣ୍ଡ ପାଣି
ପର୍ବତୁଂ ତେଇଂ ପଡିଲା ସେ କ୍ଷତ୍ରିୟ ଚୂଡାମଣି ।୨୫।
ବାଆନ ବାଆନ ଭାର ବେନିଗଦା ଘେନି ବେନିହାଥେ
ବ୍ରହ୍ମାଣ୍ଡ କମ୍ପିଲାକ ତାର ଗର୍ଜନ ନାଦଘାତେ ।୨୬।
ରାଗେଣ ବଢ଼ିଲା ସେ ଯେ ଯୁଦ୍ଧେଷ୍ଟି ଦେବଂକର ଆଗ୍ୟାଂ
ହଇଲୋକ୍ୟେ ଅଶକ୍ୟ ଯାହାର ପ୍ରତଗ୍ୟାଂ ।୨୭।
ବୃକୋଦର ମୂରତି ତାର ହକାଶିଲା କାଏ
ମହାମତ୍ତ ଶରୀର ହଣଇ ବଂହଗିର ପ୍ରାଏ ।୨୮।
ଏସନେକ ସରୂପ ସହୁଂ ହକାଶିଲା ବୀର ଭୀମ
ହିପଣ୍ଡ ଗଳଇ ରାଗେ ବହଇ ମହାଭ୍ରମ ।୨୯।
ଗିରିବର ବେଢିଣ ଅଛନ୍ତ ଯେ ଶବଶ୍ଚ ନାରାୟଣ ଥାଟ
ଅମନାତ୍ୟ ଯୋଦ୍ଧାଏ ଯେ କରନ୍ତ କାଦମ୍ବରୀ ଭୋଜନ ନାଟ ।୩୦।
ବଜଘୋଷ ମର୍ଦ୍ଦିଲ ଯେ ବୀର ତୂର ଦାଉଣ୍ଡି
ମଦରାପାନେ ଭୋଳ ଯେ ଖେମଟା ନାଟ ଖଣ୍ଡି ।୩୧।

ଅଶ୍ୱନ୍ତ ଖେଦାଇ ବୁଲାବନ୍ତ କୁନ୍ତ ଖରେ
ଝଲକନ୍ତ ନାଂକଆ ବାଳଅର୍କ ତେଜଭରେ ।୩୨।
କୁନ୍ତ ଅସିପଞ୍ଜ ଯେ ବନ୍ଧନ୍ତ ବଜ୍ର ବାଣ
ମହାମତ୍ତ ଅସୁରଂକ ପ୍ରାୟେ ସେ ଦିଶନ୍ତ ସାଂଗ୍ରାମେଣ ।୩୩।
ମଲ୍ଲହୋଲ ଯୁଦ୍ଧ ଦେଖିଣ ଧାମଇ ମାରୁତ
ଗଦାବର ବୁଲାଇଣ ପିଟଇ ଚଡ଼ଡ଼ |୩୪।
ତିନି ସହସ୍ର ଯୋଦ୍ଧା ଯେ ଭୀମସେନର ଭୁଲେ ଥିଲେ
ରେ ରେ କାର ଶବଦ କରଣ ସାଂଗ୍ରାମେ ପଶିଲେ ।୩୫।
କୃତାନ୍ତକ ମୂର୍ତ୍ତି ଜାଣି ଦିଶଇ ପାବେନ
ମୂର୍ତ୍ତି ଦେଖି ଭାଜଲେ କନାଉଜ ଦେଶର ସଇନ ।୩୬।
ସମରେ ଅନିବାରଣ ସେ ହିଡମ୍ବିକା ବଲ୍ଲଭ
ମହାରଣ ମଚ୍ଛାନ ତାହାର ପ୍ରତଗ୍ୟାଂ ଦୁଲଭ ।୩୭।
ରଣରଙ୍ଗ ମଚ୍ଛାନ ସେ କଲା ଭୀମସେନ ଜେନା
ଗଦାବର ଘାତେ ରଥ ସବୁ ହୋଉଛନ୍ତ ଚୂନା ।୩୮।
ପାଞ୍ଚଲକ୍ଷ ରଥୀ ଯେ ଯେକମୁଖ ହୋଇ
ଭୀମସେନ ଉପରକୁ ଶର ବନ୍ଧିଲେ ନଠିଆଇ ।୩୯।
ବରଷା ଋତୁରେ ଯେହ୍ନେ ବରଷଇ ନୀରଧାର
ତେହେନେକ ଶରଘାତେ ଗଗନ ଦିଶଇ ଅନ୍ଧକାର ।୪୦।
ବାଣ ଜ୍ୱାଳାବଳୀ ବରଷନ୍ତ ଯେସନେକ ପାଣି
ବଜ୍ର ଅଙ୍ଗ ପାଣ୍ଡବ ଅଛଇ ସେ କ୍ଷତ୍ରିୟ ଚୂଡ଼ାମଣି ।୪୧।
ଅଭେଦ ଶରୀର ଯାହାର ଶତଶିଙ୍ଗର ପରସନ୍ନେ
ଶରୀରେ ନ ଭେଦନ୍ତ ତାହାର ତୀକ୍ଷ୍ଣମୁନା ଶରମାନେ ।୪୨।
ପର୍ବତେ ଯେହ୍ନେ ଉପୁଡ଼ି ପଡ଼ଇ ବଜ୍ର ବାଣ
ନାଗଜ ପଡ଼ି ତେହ୍ନେ ଚୂର ହୋଉଛନ୍ତ ବୃକୋଦର ଶରୀରେଣ ।୪୩।
ସାଂଗ୍ରାମେ ପାଣ୍ଡବ ଯେ ଅଟେ ନିରଭୟା
ଶତଶିଙ୍ଗର ପ୍ରସନ୍ନେ ବଜ୍ର ଯାହାର କାୟା ।୪୪।

---

୩୪।୧ ମଲ୍ଲହୋଲ—ମଲ୍ଲର—ମଲ୍ଲଲ—ମଲୁଆଲ ।
୪୧।୨ ବାମଅଙ୍ଗ ପାଣ୍ଡଅଛୁ ସେ କ୍ଷତ୍ରିସ୍ୱ ଚୂଡ଼ାମଣି । (ଥ,ଛ)

ଗଦା ଗୁରୁଜ କୁନ୍ତ ଯେ ଅସିପତ୍ର ଯାଠି
ବୁଲାଇଂ ଯୋଦ୍ଧାଏ ଭୀମସେନ ଉପରେଣ ପିଟି ।୪୫।
ଶହସ୍ରକୁ ଭୟ ନାହିଂ ଯାହାର ସାଂଗ୍ରାମେ
କୃତାନ୍ତେକ ମୂର୍ତ୍ତି ଜାଣି ବିକାଶଇ ବୀର ଭୀମେ ।୪୬।
ଯେକା ହୋଇ ମଣ୍ଡିଲ୍ଲ ଯେ କନାଉଜ ଥାଟ
ପଳାବନ୍ତ ସଇନ ଯେ ନ ପାବନ୍ତ ତହିଂ ବାଟ ।୪୭।
ରଥେ ରଥ ପ୍ରହାର କରଇ ଭୀମ ତୋଳି
ଗଜକେ ଗଜ କଚୃଡାଇ ସେହୁ ଅର୍ଗଳ ମହାବଳୀ ।୪୮।
ଧାଇଂଣ ସାଂଗ୍ରାମ ଯେ କଲ୍ଲ ବୃକୋଦର
ରଥ ଗଜ ଅଶ୍ୱ ସଇନ ଚୂର ହୋଉଛନ୍ତି ଗଦାବର ଘାତର ।୪୯।
କନାଉଜ ଯୋଦ୍ଧାଏ ଯେ ବିନ୍ଧୁଛନ୍ତି ଶର
ବିନ୍ଧନ୍ତେ ଶହସ୍ରେ ନ ଫୁଟନ୍ତି ଭୀମସେନର ଶରୀର ।୫୦।
ରଣେ ବିମୁଖ ଯେ ପାଇଲେ ସମସ୍ତ ସଇନ
ବାହାନ ତେଜି ଶହସ୍ର ଛାଡ଼ି ପଳାବନ୍ତ ନିଜ ପ୍ରାଣ ଘେନି ।୫୧।
ନବ ଯୋଜନ ପରିଯନ୍ତେ ଯେ ପଡ଼ିଲ୍ଲ ପଯେଡ଼ି
ଅନେକ ସଇନ ଗୋଡ଼ାଇ ପିଟଇ ବୃକୋଦର ।୫୨।
ଯେସନେକ କଦଳୀ ବନ ପଡ଼ଇ ବାତଘାଏ
ଲୋଟିଲେକ ସଇନ ଯେଗାର ଯୋଜନ ଯାଏ ।୫୩।
ପଳାଇ ଯାଇଂ କହିଲେ ନୃପତି ଶବରୀ ନାରାୟଣ
ସ୍ୱାମୀ ଜଳକ୍ରୀଡା ରସେ ପଶିଲୁ ସାବଧାନେ ଯେବେ ଶୁଣ ।୫୪।
ଅନେକ ସାଂଗ୍ରାମ କଲୁ ସେ ରଥୀର ଭୁଲେ
ତୀକ୍ଷମୁନା ଶହସ୍ର ନ ଭେଦନ୍ତି ତାହାର ଶରୀରେ ପଡ଼ିଲେ ।୫୫।
ଯେତେ ବଡ଼ ଥାଟ ତୋହୋର ପାଇଲେ ବଡ଼ ଦୁଖ
ଭଙ୍ଗିଲେ ସଇନ ତୋହୋର ହୋଇଣ ବିମୁଖ ।୫୬।
ବହୁତ ସଇନ ଦେବ ପଡ଼ିଲେକ ମହାଯୁଦ୍ଧେ
ସାତ ଅହ୍ୱବ୍ରତ ରଥୀ ତୋହୋର ମଲେ ରଣେ ମଧ୍ୟେ ।୫୭।
ତିନିଖର୍ବ ପଡ଼ିଲେ ଦେବ ମହାମତ୍ତ ଗଜ
ପଞ୍ଚାଶ ଅର୍ବୁଦ ଅଶ୍ୱ ପଡ଼ିଲେ ଶୁଣିମା ମହାରାଜ ।୫୮।

ଯେତେଗାର ଯୋଜନ ପରଯନ୍ତେ ପଯ୍ୟନ୍ତ ପଡ଼ିଲା
ଅଗଣିତା ପାଦାନ୍ତ ପଡ଼ିଲେ ଦେବ ଗଣିନ୍ତା ନ ଗଲା ।୫୯।
ଦୂତଗଣ ମୁଖୁଂ ଯେସନ ବାରତ ଶୁଣି
ଜଳକ୍ରୀଡ଼ା ଛାଡ଼ି ବାହାର ହୋଇଲେକ ନୃପମଣି ।୬୦।
ମହାମତ୍ତନାଗ ଯେସନେ ଗରଜ ଫେରୁ ଧରି
ଆକାଶେ କ୍ଷେପଇ ଯେହ୍ନେ ବଳେମ କେଶରୀ ।୬୧।
ମୋହୋର ଗୃହମୁତରେ କାହାର ରେ ଅଛଇ ଯେତେକ ଦର୍ପ
ଖଗେଶ୍ୱର ଗୃହମୁରେ କି ପ୍ରତଗ୍ୟାଂ କରଇ ସର୍ପ ।୬୨।
ସାଜରେ ରଥ ବୋଲି ଆଗ୍ୟାଂ ଦେଲେକ ନୃପମଣି
ଜୟସେନ ସୁତ ଯେ ରଥ ସାଜିଲା ତତକ୍ଷଣି ।୬୩।
ସୂର୍ଯ୍ୟମଣ୍ଡଳ ରଥ ଅନେକ ରତ୍ନେ ଖଞ୍ଜି
ସହସ୍ରେକ ଶାର୍ଦ୍ଦୂଳ ରଥରେ ନେଇ ଯୋଡ଼ି ।୬୪।
ଲୁହାର ଧନୁ ଯେକ ଧରଣ ନୃପତି
ଲୁହାର ଦୁଇ ତୋଣେ ନାରାଜ ପୂରୋଇଲା କୋପମୂର୍ତ୍ତି ।୬୫।
ସାଂଗ୍ରାମକୁ ରଥ ଚଢ଼ି ବାହାର ହୋଇଲା ନୃପମଣି
ସଙ୍ଗରେ ସଇନ୍ୟ ତାର ଅଛଇ ପନ୍ଦର ଅକ୍ଷୌହଣୀ । ୬୬।
ପାରିଦଣ୍ଡ ଘେନିଣ ସେ ନୃପତି ବଜେକଲା
ଆସନ୍ନେଣ ଭୀମସେନଙ୍କଇଂ ଆଗରେ ଓଗାଳିଲା ।୬୭।
ଦେଖିଲା ଭୀମ ମୂରତି ଯେ କାଳାନ୍ତକ ମହାତେଜ
ରଥରେ ଥାଇଂଣ ପଚ୍ଚରଇ ଜରାଜ ମହାରାଜ ।୬୮।
ଆହୋ ମହାତ୍ମା କେଉଂଣ ଦେଶର ମହାରଥୀ
ଅଦଭୁତେ ସଇନ୍ୟ ମୋର କଂପେ ପକାଇଲୁ ମନ୍ତି ।୬୯।
ମୁହିଂତ ତୋହୋର ପୂରୁବେ ନୋହଇ ନା ବଇରି
ଅଦଭୁତେ ଅପହାର ବ୍ରହ୍ମହତ୍ୟା ଦୋଷ ସରି ।୭୦।
ନ ପୁଚ୍ଛିଣ ରାଜ୍ୟ ମୋର ପଶିଲୁ କମରଥେ
ଯେତେକ ସଇନ୍ୟ ମୋର ମାଇଲୁ କି ନିମନ୍ତେ ।୭୧।

---

୬୮।୧ ଦେଖିଲା ଭୀମ ମୂରତି ଯେ କାଳାନଳ ମହାତେଜ । (ଘ,ଛ,ଠ)
୭୦।୨ ଅହୋତେ ପ୍ରହାର କଲେ ବ୍ରହ୍ମହତ୍ୟା ଦୋଷ ସରି । (କ)

ତୋହୋର ଛାମୁରେ ନ କହିଲେ ଚରଗଣେ
ପଶ୍ଚିମ ଢଗେ ବରଧୂ ମୁଁ ମୋହୋର ନାମ ଶବସ୍ତ ନାରାୟଣେ ।୭୨।
ଯେ ପଶ୍ଚିମ କୋଶଳେ ହୋ ନୃପତି ଜରାସନ୍ଧ
ଛୟାଣୋଇ ସହସ୍ର ରାଜାନ୍ତ ବନ୍ଦୀକଲ୍ଲ ସେହୁ ମନ୍ଦ ।୭୩।
ସେ ରାଜାର ଭୁଲେ ମୁଁ କଲଇଁ ଅନେକ ରୋଳ
ବହୁତ ସନ୍ୟ ମରାଇଣ ଗଲ୍ଲ ମଗଧ ଦେଶ ମହୀପାଳ ।୭୪।
ମୋହୋର ଭୁଲେ ଯୁଦ୍ଧକରି ସେ ପାଇଲ୍ଲ ଅନେକ ଲଜ୍ଜା
ସାଧ୍ୟ କରି ନୁଆରିଲ୍ଲ ମୋତେ ସେ ମଗଧେଶ୍ୱର ରାଜା ।୭୫।
ମୋହୋର ମନ୍ତ୍ରମାଂ କ ତୋହୋର ଶୁଣିଲ୍ଲକ ନାହିଁ
ଆୟୁଷ ଥାଉଁ ମହାତ୍ମା ତୁ ମରିବୁ କସ ପାଇଁ ।୭୬।
ବେଳୁଂବେଳ ପ୍ରତଗ୍ୟାଂ ସେ କରଇ ମହାରାଜା
ଶୁଣି ମୁକୁଟ କମ୍ପାଇଲ୍ଲ ସେ ପବନ ଆତ୍ମଜା ।୭୭।
ରଥର ଉପରୁଁ ବୀର ଭୀମ ପଡିଲ୍ଲକ ଡେଇଁ
ମରୁତ ସାରଥି କୋଳକରି ଧଇଲ୍ଲ ବେଗେ ଯାଇଁ ।୭୮।
ରହ ରହ ବୃକୋଦର ନ କର ବାବୁ କୋପ
କଞ୍ଚିତ ଦୋଷକୁ ତୋହୋର କଂପେ ଯେତେକ ପରତାପ ।୭୯।
ଅନମିତେ ରାଜାକୁ ଯେବେ ମାରିବୁ କୋପକରି
କ ଘେନି ରାଜସୂୟ ଯାଗ କରିବେ ଧର୍ମ ଦଣ୍ଡଧାରୀ ।୮୦।
ଯେମନ୍ତେ ତ ଚରରାଜା ନ ଅଣ୍ଟନ୍ତି ରାଜସୂୟ ଯାଗକଇଁ
ରାଜାନ୍ତ ନାଶକଲେ ଗୋବିନ୍ଦେ କସ ବୋଲିବେଟି ଭୁଲୁଇ ।୮୧।
ଭୀମସେନ ବୋଇଲ୍ଲ ମୋହୋର ଛାମୁରେ ଯେହାର ଯେତେକ ପ୍ରତଗ୍ୟାଂ
ଯେ ଛାରକଇଁ କେମନ୍ତେ ସହିବ ମୋହୋର ଆଗ୍ୟାଂ କଲ୍ଲ ଯେ ଅବଗ୍ୟାଂ ।୮୨।
ଯେହାର ସାଦ୍ରଶେ ପଚ୍ଛେ କରାଇବ ସୁବର୍ଣ୍ଣର ରାୟେ
ଯେ ପଶ୍ଚିମ କୋଶଳେ ଲୁହାଇବ ଚରାଂଚନ କଥାୟେ ।୮୩।

---

୮୩।୨ ଚରାଂଚନ — ଚରନ୍ତନ

ପଞ୍ଚାଶ ସହସ୍ର ରାଜାନ୍ତ ନିମନ୍ତ୍ରେ ଯେବଣ ହେଗେ
ରାଜା ଦୁଇ ଗୁରି ନ ମାଇଲେ ସ୍ୱେ ସାଧ ହୋଇବେ କେଉଁଣ
ବାଗେ ।୮୪।
ଗୁଡ ଗୁଡ ପିତାମହ ହୋ ମୋତେ କଟାଳ ନ କର
ନାରାୟଣ ବରଧୂ ବାନା ବହଇ ସ୍ୱେ ପାମର ଗୁଣ୍ଡାଳ ।୮୫।
ଭୀମସେନକଇଂ ମଣାଇ କହିଲେ ସେ ମରୁତ ସାରଥି
ନାରାୟଣ ନାମ ଗୋଟିକ ହୋ ନାଶକର କରଇ ଭୀତି ।୮୬।
ଯେବଣ ଜନେ ହୋ ବାସୁଦେବରେ ଭଗତା
କାରଣ ନିମନ୍ତେ ନାମଗୋଟି ହଅନ୍ତି ପିତାମାତା ୮୭।
ଗୁରଗଣେ କହିଲେ ଶୁଣ ହୋ ଶବରି ନାରାୟଣ
ଶୂରବର ସୁନ୍ଦର ସ୍ୱେ ଅଟଇ ଜାର ନିବାରଣ ।୮୮।
ରାଜସୂୟ ଯାଗ ଯୁଧିଷ୍ଠିର ଦେବ କରିବା ନିମନ୍ତେ
ଭୀମସେନେ ବିଜେକଲେ ପଶ୍ଚିମ ପ୍ରଶସ୍ତେ ।୮୯।
ପଞ୍ଚାଶ ସହସ୍ର ରାଜାନ୍ତ ନେଉଛନ୍ତି ନିମନ୍ତ୍ର
ଅନେକ ସାନନ୍ଦେ ଯାଉଅଛନ୍ତି ସମସ୍ତ ନୃପତି ।୯୦।
ତୋହୋର ପ୍ରାୟେ ବିବାଦ କଲା ନୃପତି ପୁଣ୍ଡ୍ରରାଜ
ରଥଖମ୍ବରେ ବନ୍ଧନ କରିଛୁ ଦେଖ ହୋ ପ୍ରତକ୍ଷ ।୯୧।
ସ୍ୱେତେ ବଡ ସମ୍ପଦ ତୁ ନାଶ ନ କର ଦେବସ୍ୱାମୀ
ଦୁଷ୍ଟପଣ ଗୁଡ ଗୁଲ ହୋ ହୋଇବା ପରଣାମି ।୯୨।
ଦେଶାଭର ବଚନେ ସେ ସାନନ୍ଦ ହେଲାକ ନୃପତି
ଭୀମସେନ ବୋଲି ଜାଣିଲା ସ୍ୱେ ସେ ପାଣ୍ଡବ ମାରୁତି ।୯୩।
ଆଗହୁଂ ମୁହିଂ ଯେ ନ ଜାଣିଲି ସ୍ୱେମନ୍ତେ
ସ୍ୱେତେ ବଡ ସନ୍ୟ ମୁଂ ମରାଇଲି ଅନମିତେ ।୯୪।
ନ ପୁଣ କୋପ ମୋତେ କରନ୍ତୁ ଭୀମସେନ
ନିର୍ଦ୍ଦୟା ପାଣ୍ଡବ ସେ ନ ପୁଣ ନାଶ କରଇ ମୋର ପ୍ରାଣ ।୯୫।
ମନ୍ତ୍ରୀବର ବୋଇଲା ତୁ ଶଂକା ନ କର ମନେ
ସୁକାର୍ଯ୍ୟ ପାଇବା ହୋ ମହନ୍ତଂକ ଦରଶନେ ।୯୬।
ଶରଣପଞ୍ଜର ଦେବ ସେ କଇଛା ଜଗଜ୍ଜେଠୀ
ଭଗତଜନ ବଚ୍ଛଳ ଦୟାସାଗର ସେଟି ।୯୭।

ଶରଣକଇଂ ରକ୍ଷଣ ସେ ଦୁଷ୍ଟରକଇଂ ନାଶକର
ଭଗତ ହୋଇଲେ ହୋ ଦୟା କରଇ ଦୋଷ ଅପହାର ।୯୮।
ମନ୍ତ୍ରୀବର ବଚନେ ରାଜା ତେଜ୍ୟାକଲ ରଥ
ନିଶହସ୍ତେ ଗମଇ ରାଜା ହୋଇଲା ଶରଣାଗତ ।୯୯।
ବେନିହାଥେ ଚାମର ତାଳ ରାଜା ଅନେକ ସ୍ତୁତି ବୋଲି
ନିଉଚ୍ଛୁଳ କରଣ ସେ ଛାମୁରେ ଶୁଭିଲା ଗଡଧାଳି ।୧୦୦।
ନୃପତିର ଆନନ୍ଦାଶ୍ରୁ ବହେ ବେନିନେତ୍ରେ
ଦଶନହ ମୁଖେ ଭରଣ ପ୍ରଣପତ୍ୟ ପାଦତଳେ ।୧୦୧।
ଜୟ ତୁ ଶୂରବର ସୁନ୍ଦର ସୋହଡ ଭୀମସେନ
ଯମର କାଳଦଣ୍ଡକଇଂ ଯେହ୍ନ ନ କରେ ଗଣନ ।୧୦୨।
ତୁ ଦେବ ଭୀମସେନ ନାଶକର ଦର୍ପଭଞ୍ଜା
ଶରଣ ଉଦ୍ଧାରଣ ନାଥ ଦୁଷ୍ଟର ବଳଗଞ୍ଜା ।୧୦୩।
ମୁହିଂ ତୋହୋରେ ଶରଣ ସ୍ୱାମୀ ପାଣ୍ଡବ ସୁନ୍ଦର
ଦଶଦୋଷ ଅପ୍ରାଧ କ୍ଷମାକରିବା ମୋହୋର ।୧୦୪।
ଦନ୍ତରେ ତିରଣ ଘେନି ସେ, ପୁଣ ପୁଣ କରଇ ନିଉଚ୍ଛୁଳ
ଝିାଲେ ନିପଣ୍ଡ ରାଜା ଶରୀରୁ ଭ୍ରମ ଗଲା ।୧୦୫।
ଶରଣପଞ୍ଜର ନାଥ ଭଗତ ମଙ୍ଗଳ
ପଶ୍ଚିମ ଦିଗ ବରଣ କ୍ଷତ୍ରିୟ ଅଗ୍ରୁର୍ଗଳ ।୧୦୬।
ମୁହିଂ ଅବା ଦୋଷ ତୋତେ କଲିଇଂ ଅଗ୍ୟାନେ
ପାଇଲି ମୁକତି ଗତି ମହତ ଦରଶନେ ।୧୦୭।
ସଙ୍ଗରେ ଅଛନ୍ତି ତାହାର ସହସ୍ରେକ ଭାରିଯା
ଛାମୁରେ ତାଳନ୍ତି ଚାମର ସେ ସହସ୍ରେ ଆତ୍ମଜା ।୧୦୮।
ମରୁତ ସାରଥି ଜଣାଇଲା ଭୀମସେନ ଆଗେ
ଶବରୀ ନାରାୟଣଙ୍କୁ ବାବୁ କଂପେ ଅଗ୍ୟାନେ ହୋଇ ରାଗେ ।୧୦୯।
ଯେବେ ଯେ ଅନାସ୍ତ ତୁ ଯେ ଅନାସ୍ତ ଲୋକର ବନ୍ଧୁ
ଶରଣମଙ୍ଗଳ ଯେ ମଣ୍ଡମାଂ ତୋର ସାଧୁ ।୧୧୦।

---

୧୦୫।୨ ଝିାଲେ ତ୍ରିପଣ୍ଡ ଶରୀରେ କର୍ଦ୍ଦମର ଧୂଳି । (ଅ,ଖ,ଛ,ତ,ନ)
୧୦୯।୨ ଶବରୀ ନାରାୟଣଂକୁ କଂପେ ଆଗ୍ୟାଂ ନ ଦେଇ ବେଗେ । (ଠ,ଙ,ଡ)

ଆମ୍ଭେ ଯେହ୍ନାର ରାଜ୍ୟେ ବିଜୟେ କରିଲଇଂ ଆସି
ଆମ୍ଭର କାର୍ଯ୍ୟେ ଯେହ୍ନାର ସଇନ୍ୟ ବଳ ନାଶି ।୧୧୧।
ଅନେକ ସଇନ୍ୟ ଯେହ୍ନାର ପକାଇଲୁ ମାରି
ଧଂସି ହୋଇଲା ରାଜ୍ୟ ତୁ କଲୁ ହୁତଜ୍ଵରି ।୧୧୨।
ସନ୍ୟ ନାଶ କରାଇ ଯେବେ ହୋଉଚ୍ଛୁ ଭଗତ
ଅନେକ ଦୋଷ ଅପରାଧ ଯେହ୍ନାର କ୍ଷମା କରିବା ଯୁଗତ ।୧୧୩।
ସାରଥି ବଚନେ ଭୀମ କୋପକଲେ ଶାନ୍ତ
ଉଠ ଉଠ ହୋ ଶରବସ୍ତ ନାରାୟଣ ତୋହୋର ଫିଟିଲା ମନଭ୍ରାନ୍ତ ।୧୧୪।
ଆଜ୍ଞାଂ ପ୍ରମାଣେ ସେ ଉଠିଲାକ ନୃପମଣି
କୋଳକରି ଧଇଲେ ତାହାକୁ ସେ କାଳଦଣ୍ଡ ପାଣି ।୧୧୫।
ନିମନ୍ତ୍ରଣ ଯୋଗାଡ ଯେ ହିଲାକ ପାବେନ
ଇନ୍ଦ୍ର ପ୍ରସ୍ତକୁ ଯାଅ ତୋହୋର ଥାଠ ସନ୍ୟ ଘେନ ।୧୧୬।
ରାଜ ସୂ ଯାଗ ତହ୍ନିଂ କରିବେ ଧର୍ମସୁତେ
ଆମ୍ଭେ ଦିଗବିଜୟେ କଲୁ ତହ୍ନିଂର ନିମନ୍ତେ ।୧୧୭।
ସମଦଣ୍ଡ ଘେନିଣ ତୁମ୍ଭେ ଯାଅ ହୋ ନୃପତି
ମୁହ୍ନିଂ ଯିବଇଂ ଆବର ରାଜାନ୍ତ ନିମନ୍ତ ।୧୧୮।
ଆଜ୍ଞାଂ ପ୍ରମାଣେ ଚଳଇ ସେ ଶରବସ୍ତ ନାରାୟଣ
ଦଣ୍ଡସନ୍ୟ ଘେନି ଭୀମସେନ ତହ୍ନୁଂ କଲାକ ପୟାଣ ।୧୧୯।
କନାଉଜ ଦେଶ ଜିଣି ଚଳିଲା ବୃକୋଦର
ବଂଙ୍ଗମାଳେ ପ୍ରବେଶ ହୋଇଲା ବୀରବର ସୁନ୍ଦର ।୧୨୦।
ମନ୍ଦର ଉଦକ ବୋଲି ଯେବକଇ ନଦୀଗୋଟି
ରଙ୍ଗବର୍ଣ୍ଣ ହୋଇଣ ସେ ପର୍ବତୁଂ ବହଇ ଫୁଟି ।୧୨୧।

---

୧୧୩। ସେମାନେ କ୍ରୋଧ ଗ୍ରୁଡ ଯେ ହୋଇଛନ୍ତି ଭଗତ
ଅପରାଧ କଲେ କ୍ଷମା କରନ୍ତି ନା ଯେ ମହତ । (ଘ)

୧୨୦।୨ ବଂଙ୍ଗମାଳେ ପ୍ରବେଶ ହୋଇଲା ମହେନ୍ଦ୍ର ଗିରିର । (ଙ)



ଭୀମସେନ ବିଜେକଲେ ସେ ପର୍ବତ ଉପରେ
ମହାତୀର୍ଥ ଦେଖି ସ୍ନାହାନ କଲେ ବୃକୋଦରେ ।୧୨୨।
ନିତ୍ୟକର୍ମ ସାରିଲେ ସେ ଉଦେକ ତୀର୍ଥଜଳେ
ଭେଟିଲେ ବିଶ୍ଵାବସୁଂକୁ ଗିରିର ମଣ୍ଡଳେ ।୧୨୩—୪୦୪।

———

## ଶ୍ରୀକୃଷ୍ଣଙ୍କ ସ୍ଵର୍ଗରୁ ସୁଧର୍ମା ସଭା ଆନୟନ

ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତିଂକ
କହିବା ମହାତ୍ମା ମୋତେ ଅମୃତ ରସ ବାକ ।୧।
ଯେ ରଜାମାନେ ଯେ ଯାଉଅଛନ୍ତି ଇନ୍ଦ୍ରପ୍ରସ୍ଥେ
କାହିଂ ଯାଇ ବିଶ୍ରାମ କରୁଅଛନ୍ତି ମହାପଥ୍ୟେ ।୨।
ଯେହାଂକ ଚରିତ୍ରମାନ କରେ କହେ ମୁଣି
କେମନ୍ତ ସମ୍ଭବେ ଛନ୍ତି ସେ ଧର୍ମ ନୃପମଣି ।୩।
ଯେଥିର ବାରତା ମୋତେ କହିବା ମହାତ୍ମା
ସାତ୍ତ୍ଵିକ ପୁରୁଷ ତୁ ପ୍ରତକ୍ଷେ ଦୁଷ୍ଟବ୍ରହ୍ମା ।୪।
ବଦନ୍ତି ଅଗସ୍ତି ମୁନି ଯେ କୁମ୍ଭଋଷିର ବଳା
ଶୁଣ ହୋ ମହାତମା ତୁ ପ୍ରତକ୍ଷେ ବିଷ୍ଣୁକଳା ।୫।
ସମସ୍ତ ରଜାମାନେ ଯେ ଆସୁଛନ୍ତି ବାହି
ଯମୁନା କୂଳେ ବାରୁଣାବନ୍ତେ ଅଛନ୍ତି ସେ ରହି ।୬।
ହସ୍ତିନା ଆସ୍ଥାନେ ସେ ବିଜୟେ ଧର୍ମସୁତେ
ସମଦଣ୍ଡ ଘେନି ବିଜେ କରିଛନ୍ତି କଉରବେ ଇନ୍ଦ୍ରପ୍ରସ୍ଥେ ।୭।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ବାହ୍ଲିକ ଭୂରିସବା
ଖଟନ୍ତି ପାରିଦଣ୍ଡ ଯେ ନୃପତି ସର୍ବଦେବା ।୮।
ଯେମନ୍ତ ସମୟେ ଯାଇଂ ଜଣାଇଲେ ଚରଗଣ
ସ୍ଵାମୀ ରଜାମାନେ ବିଜେକଲେ ବାରୁଣାବନ୍ତ ଭୁବନେ ।୯।

---

୪ । ବେଦ ଶାହାସ୍ତ୍ରେ ନାହିଂ ତୋତେ ଦେବାକୁ ଉପମା
୪ । ଭାଗ୍ୟବନ୍ତ ପୁରୁଷ ତୁ ଅଟୁ ଧର୍ମ ଆତ୍ମା । (୦)

ଆଗ୍ୟାଂ ହୋଇଲେ ଦେବ ବିଜେ କରିବେ ଆସ୍ଥାନକୁ
ବିଗୃରଣ ଆଗ୍ୟାଂ ଦେବା ରାଜାମାନଂକର ଆସିବାକୁ ।୧୦।

ଧଉମ୍ୟ ପୁରୋହିତଂକୁ ହକାରିଲେ ଧୃତରାଷ୍ଟ୍ରେ
ରାଜାମାନେ ଆସି ପ୍ରବେଶ ହୋଇଲେ ନିକଟେ ।୧୧।

ଆହୋ ଯୁଥକୁ ସଭା ଭିଆଣ ଯେ ହୋଇଲନି କେମନ୍ତେ
ପ୍ରୋହିତେ କହିଲେ ଶୁଣ ହୋ ଅମ୍ବିକାର ସୁତେ ।୧୨।

ସଭାର ମହିମାଂ ରାଜ୍ୟ କହିତ କ ପାରି
ପାତକୀ ଜୀବନ ଗୋଟା ରାଜା ଅଟଇ ତୋହୋର ।୧୩।

ପଣ୍ଡୁର ନନ୍ଦନଂକର ଅସଂଖ୍ୟ ସଂପଦ
ପ୍ରାପତ ନୋହିଲ ରାଜା ବେନିଚକ୍ଷୁ ତୋହୋର ଅନ୍ଧ ।୧୪।

ମହାଯଗ୍ୟଂ ସଭା ଯୁଥି ହୋଇବେ ନୃପମଣି
ଲକ୍ଷେ ରାଜା ଆସୁଛନ୍ତି ଯେ ଯାହାର ଥାଟ ଯେ ପଲଣି ।୧୫।

ବିଶ୍ୱକର୍ମାକଇ ଧାୟେ କଲେକ ଦେବ ହରି
ଅମର ସ୍ୱର୍ଗେ ବିଜେକଲେ ଯାଇଂ ବଇତନେୟ ସୁମରି ।୧୬।

ଦେଖିଲେ ନାରାୟଣ ଲଗିଛନ୍ତି ବିଶ୍ୱକର୍ମା
ଅମର ଭୁବନ ମୋହୋର ସଭା ଯେ ସୁଧର୍ମା ।୧୭।

ସେ ସଭାକଇଂ ଆପଣେ ମଣ୍ଡିଲେ ଜନାର୍ଦ୍ଦନ
ବଇନେୟ ପିଠିରେ ବସାଇ ଆଣିଲେ ସଭା ଦ୍ୱାଦଶ ଯୋଜନ
ଆୟତନ ।୧୮।

ଅଳକାନାଥ କୁବେର କଲ୍କ ମଣ୍ଡଣି
ସେ ସଭା ସ୍ୱର୍ଗୁଂ ଘେନି ବିଜେକଲେକ ଚକ୍ରପାଣି ।୧୯।

ବିଦ୍ୟାଧର ସହିତେ ସଭା ଘେନି ଅଇଲେ ଦେବାନିଶି
ପଞ୍ଚୁ ରାଜ୍ୟ ମଧ୍ୟେ ସଭା ଥାପିଲେ ହୃଷୀକେଶି ।୨୦।

ଦ୍ୱାଦଶ ଯୋଜନ ମାତ୍ର ଯେ ସଭାର ଆୟତନ
ଯେଉଂଣ ସଭାରେ ବସନ୍ତି ଦେବଗଣମାନ ।୨୧।

ଯେବଣ ସଭାରେ ଥିଲେ କାଳ କାମ ନିଦ୍ରା ନାହିଂ
କ୍ଷୁଧା ପିପାସା ନ ଲାଗଇ ଆଉ ଯମଦଣ୍ଡେ ଭୟ ନାହିଂ ।୨୨।
ତ୍ରଇଲୋକ୍ୟ ଅସଂଖ୍ୟ ଯେଉଂଣ ସଭାର ଆୟତନ
ମଞ୍ଚପୁରେ ତାହା ଉଦିତ କଲେ ଜଗତମୋହନ ।୨୩।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲା ରାଜା ମାନଗୋବିନ୍ଦ
ପଞ୍ଚୁରାଜ୍ୟ ଲୋକେ ଦେଖି ପରମ ସାନନ୍ଦ ।୨୪।
ସୁବର୍ଣ୍ଣ ଯୋଗାଡ଼ ଆଣି ଦିଲେକ କୁବେର
ରାଜାମାନନ୍ତ ଲାଗଇ ଯେତେକ ଅଳଂକାର ।୨୫।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଚକ୍ରଧାରୀ
ଆକାଶର ସଭା କେମନ୍ତେ ଆଣିଲୁ ଦେବହରି ।୨୬।
ନ ପୁଣ ବାସବ ଯେ କରଇ ମୋତେ କୋପ
ବଇରାଗ୍ୟ କଲେ ନ ପୁଣ ଖଣ୍ଡଇ ପିତାର ବ୍ରହ୍ମହତ୍ୟା ପାପ ।୨୭।
ଗୋବିନ୍ଦେ ବୋଇଲେ ଶୁଣ ସ୍ୱାମୀ ରାଜାଧି ରାଜେଶ୍ୱର
ଏ ସଭା ଆପଣେ ନିର୍ମାଣିଲେ ସୁନାଶୀର ।୨୮।
ଚଉଷଠି କୋଟି ଦେବ ଅମର ବିଳାସୁଣୀ
ତୋହୋର ରାଜ୍ୟକୁ ଦେବ ଆସିବେ ଏହିକ୍ଷଣି ।୨୯।
ଚଉଷଠି କୋଟି ଦେବ ବାସବର ପ୍ରିୟ ବିଦ୍ୟାଧରେ
ସେହୁ ଆସି ପ୍ରବେଶ ହୋଇବେ ଇନ୍ଦ୍ରପ୍ରସ୍ଥରେ ।୩୦।
ଆପଣେ ବିଜେ କରିବେ ଦେବ ମଘବାନ
ବ୍ରହ୍ମା ସହିତେ ଆସିବେ ସମସ୍ତ ବୃନ୍ଦାଅର୍କମାନ ।୩୧।

---

୨୨।୨ "କ୍ଷୁଧା ପିପାସା ନ ଲାଗଇ ଆଉ ଯମଦଣ୍ଡେ ଭୟ ନାହିଂ ।"
ପରେ 'ନ' ପୋଥିରେ ଭିନ୍ନପାଠ ଅଛି—

ତ୍ରଇଲୋକ୍ୟ ବିସ୍ତାରିଲା ସଭାର ଆୟତନ
ଦେଖିଲେ ବଶ କରଇ ସର୍ବଜନମାନ ।
ସକଳ ପୁର ବିସ୍ତାର କଲେ ଦଇତାରି
ଇନ୍ଦ୍ର ଆମ୍ଭ ସଙ୍ଗେ ଯେବେ ହୋଇବ ବଇରି ।
ଆଶ୍ଚର୍ଯ୍ୟ କରି ବସାନ୍ତି ତାହାକୁ ଗୋବିନ୍ଦ
ପଞ୍ଚରାଜ୍ୟ ଲୋକ ତାହା ଦେଖିଣ ସାନନ୍ଦ ।

ବରୁଣ ଆସିବ ସପତ ସମୁଦ୍ର ତେଜ
ବାସୁକି ସର୍ବରେ ଆସି ଖଟିବେ ତୋତେ ଭାବେ ଭଜ ।୩୨।
ଶୁଣି ଅନେକ ସାନନ୍ଦ ହୋଇଲେ ଯୁଧିଷ୍ଠିର ରାଜଦେବ
ପ୍ରସ୍ତାପ ବାକ୍ୟେଣ ତାହା କହନ୍ତ ବାସୁଦେବ ।୩୩—୪୦୭୫।

———

## ଉତ୍ତରଦଗ ରାଜାଗଣ ନିମନ୍ତ୍ରଣେ ପାର୍ଥଙ୍କ ଗମନ

ବଇବସୁତ ମନୁ ପଚ୍ଚରିଲେ ଶୁଣିମା ଭଗବନ୍ତେ
ଅରଜୁନ ବିଜେକଲେ ଯେ ଉତ୍ତର ପ୍ରଶସ୍ତେ ।୧।
ଉତ୍ତର ଦିଗ ରାଜାଯେ ଯେ କ୍ଷତ୍ରିୟ ମହାଯୋଧୀ
କେମନ୍ତେଣ ଅର୍ଜୁନ କଲେଟି ତାହାକଇଂ ସାଧି ।୨।
ଏହିଥିର ଚରିତ ମୋତେ କହ ତପୋନିଷ୍ଠୀ
ତୋହୋର ବଚନେ ମୋହୋର ଭ୍ରାନ୍ତ ଯାଉ ଫିଟି ।୩।
କହନ୍ତ ଅଗସ୍ତି ଯେ ପଣ୍ଡିତ ବ୍ରହ୍ମବେତ୍ତା
ଯୋଗାଧି ଯୋଗେଶ୍ୱର ବଇବସୁତ ମନୁ ଶ୍ରୋତା ।୪।
କାର୍ତ୍ତିକ ଶୁକଳ ପକ୍ଷ ଦଶମୀ ବୃହସ୍ପତି ବାର
ଉତ୍ତର ଭଦ୍ରୋ ନକ୍ଷତ୍ର ଅଟଇ ସେ ଦିନର ।୫।
ବାଣିଜ୍ୟ ନାମେ କରଣ ଯୋଗ ବଇଧୃତି
ରୋହିଣୀ ଘରେ ଚନ୍ଦ୍ର ଦେବତାର ପିରତି ।୬।
ତାର ଚନ୍ଦ୍ର ବେଳ ଯୋଗ ଘେନିଣ ଫାଲଗୁନି
ଉତ୍ତର ଦିଗକୁ ବାହାର ହୁଅନ୍ତ ଶୁଭ ଅନୁକୂଳ ଘେନି ।୭।
ଗରୁଡ଼ ପିଠିରେ ଚଢ଼ି ଦେବ ଯେ ଅଚ୍ୟୁତ
ଅର୍ଜୁନକଇଂ ପଠିଆଇ ପଥୁଂ ବାହୁଡ଼ିଲେ ଦେବ ଜଗନ୍ନାଥ ।୮।
ଯମୁନା ନଦୀ କୂଳେଣ ସେ ଥାଠ ଯେ ଚଳାଇ
ଦଧିମୁଖ ପର୍ବତେ ସେ ବିଜେ କଲେ ଯାଇଂ ।୯।
ଅରୁଣ ଉଲ୍ଲୋଳ ବୋଲି ଏହିକଇ ବନସ୍ତ ପର୍ବତେ
ଖାଚକର ଉପରେ ତହିଂ ଲୁଚିଅଛି ନିଗର୍ଭେ ।୧୦।

ଗୃହ ଅଛିବ୍ରତ ରଥ ବତିଶ ଲକ୍ଷ ହାଥୀ
ନବକୋଟି ତୁରଙ୍ଗମ ତିନିଅକ୍ଷଉଣୀ ପାଦାନ୍ତି ।୧୧।
ରାଜ୍ୟ ଭ୍ରଷ୍ଟ ହୋଇ ରାଜା ବୁଲଇ ଘୋର ବନେ
କନ୍ଦମୂଳ ଆହାରେ ସେ ରାଜା ଭ୍ରମର ଅରଣ୍ୟେ ।୧୨।
ଅର୍ଜୁନର ଆଗତ ରାଜା ପାଇଣ ବାରତ
ସାନନ୍ଦେଣ ଛାମୁକୁ ଆସଇ ସେ ନୃପତି ତ୍ରିଗର୍ତ୍ତ ।୧୩।
ଗଣ୍ଡା ଗୃହଗୋଟି ରାଜା ଚଳାଇଣ ଆଗେ
ଦର୍ଶନ କଲା ଅର୍ଜୁନକୁ ଅମୃତ ବେଳ ଯୋଗେ ।୧୪।
ପଚୃରନ୍ତି ପାର୍ଥିବ ତୁ କେଉଁଣ ଦେଶର ରାଯ୍ୟେ
ବନଗାମୀ ହୋଇ ତୁ ବୁଲୁ କାହା ଭୟେ ।୧୫।
କହଇ ରାଜ୍ୟେଶ୍ୱର ବିନୟ ଭଗତେ
ଶୁଣିମା ଦେବ ସାବଧାନେ ମୋହୋର ଅବସ୍ଥା ଯେତେ ।୧୬।
ସ୍ୱାମୀ ମଚ୍ଛଦେଶ ବୋଲିକରି ମୋର ନିଜ ରାଜ୍ୟ
ଶୂରସେନ ନୃପତିର ମୁଂ ଅଟଇ ତନୁଜ ।୧୭।
ସ୍ୱାମୀ ମୋହ ଦେଶର ପଡ଼ିଶା ଅଟଇ ମଦ୍ଧଦେଶ
ଇଚ୍ଛାନନ୍ଦ ବୋଲି ରାଜା ତହିଂ କର୍ଣ୍ଣକେଶରର ଶିଷ୍ୟ ୧୮।
ଇଚ୍ଛାନନ୍ଦ ନୃପତିର ପୁତ୍ର ଅଟଇ ନୃପତି ବଇରାଷ୍ଟ୍ର
ଅନୁବ୍ରତେ ତାହାର ସେ ସାଜୁଥାଇ ଥାଠ ।୧୯।
କରାତ ରାଜାର ତୁଲେ ସେ ବହୁତ ବିବାଦ
ଅନୁବ୍ରତେ ତାର ତୁଲେ ସାଂଗ୍ରାମ ସଂପାଦ ।୨୦।
ବଇରାଷ୍ଟ୍ର କରାତର ଦେବ ଯେ ହୋଇଲା ଅନେକ ସାଂଗ୍ରାମ
ଶତେଦିବସ ଯୁଦ୍ଧ ହୋଇଲା ଦିବାରାତ୍ର ଅବଶ୍ରାମ ।୨୧।
ମହାଯୁଦ୍ଧ କରି ସେ ନୃପତି କରାତ
ଗଦାବର ଘାତେ ଭାଙ୍ଗିଲା ବଇରାଷ୍ଟ୍ରର ରଥ ।୨୨।
ବିରଥୀ ହୋଇ ଯେ ପଳାଇଲା ନୃପମଣି
କରାତ ସେନ ରାଜା ତାହାର କେଶ ଧରି ଆଣି ।୨୩।
ରାଗେ କରାତସେନ ନୃପତି କରେ ଧରିଣ ଖଡଗ
ବଇରାଷ୍ଟ୍ର ନୃପତିର କାଟିଲା ବେଗେ ମୁଣ୍ଡ ।୨୪।

ଶ୍ରୀବହ୍ନି ବୋଲିକରି ଦେବ ତାହାର ପାଟରାଣୀ
ସ୍ୱାମୀର ଅଭାବେ ସେ ପଳାଇଲା ଠାକୁରାଣୀ ।୨୫।
ମଲହାର ଦେଶର ରାଜା ଅଛଇ ସଙ୍କୋଚନ
ତାହାର ରାଜ୍ୟେ ରାଣୀ ହୋଇଲା ଗୋପ୍ୟାନ ।୨୬।
ରାଜାର ଭାରିଯା ବୋଲି ଦୟା କଲା ନୃପମଣି
ଭିନ୍ନ ନବର ଗୋଟିଏ ଭିଆଇ ରଖାଇଲା ବଇରାଷ୍ଟ୍ରର ପାଟରାଣୀ ।୨୭।
ଯେତେବେଳେ ମହାଦେଈ ବିଧବା ହୋଇ ଆସି
ଛନମାସ ସୁନ୍ଦରୀ ହୋଇଥିଲା ଗର୍ଭବାସୀ ।୨୮।
ସଙ୍କୋଚନ ରାଜା ତାକୁ ସମ୍ଭାଳିଲା ଅତ୍ୟନ୍ତ ଯତନେ
ପୁତ୍ରେକ ଉପୁଜିଲା ଶ୍ରାବଣ ଶୁକଳ ଚତୁର୍ଥୀର ଦିନେ ।୨୯।
ଦେଖିଣ ସଙ୍କୋଚନ ରାଜା ପରମ ସାନନ୍ଦେ
ବିରାଟ ନାମ ତାହାକଇଂ ଦେଲେକ ଆନନ୍ଦେ ।୩୦।
ବଇରାଷ୍ଟ୍ରର ପୁତ୍ର ସେ ବିରାଟ ତାହାର ନାମ
ରୂପ ଗୁଣେ ସୁନ୍ଦର ସେ ମକରଧ୍ୱଜ ସମ ।୩୧।
ଅନେକ ଯତ୍ନକରି ପାଳିଲା ତାହାକଇଂ ଦେବରାୟେ
ସେ ସଙ୍କୋଚନ ରାଜାର ଉପୁଜିଲା ଦୁହିତା ଗୋଟିଏ ।୩୨।
ଭାଳିଲି ସଙ୍କୋଚନ ରାଜା ତାହାର ପୁତ୍ରନ୍ତ ବସାଇଂ
ବାବୁ କାଅଁକ ରେ ତୋତେ ପଚାରଇ ମୁହିଂ ।୩୩।
ମତ୍ସ୍ୟଦେଶ ମଗଧଦେଶର ରାଜା ଯେ ଅଛଇ ବଇରାଷ୍ଟ୍ର
କରାତ ବିବାଦେ ସେ ହୋଇଲା ହତପାଟ ।୩୪।
ଭାରିଯା ପଳାଇ ଅଇଲା ତାହାର ହୋଇଣ ଗରଭବାସୀ
କୁମର ଗୋଟିଏ ଯେତେ ପ୍ରସବ କଲା ଆସି ।୩୫।
ବଇରାଗେ ରାଣୀ ସହିଂ ଛାଡିଲା ନିଜ ରାଷ୍ଟ୍ର
ସେ ପୁତ୍ରର ନାମଗୋଟି ମୁଂ ଦେଲଇଂ ବିରାଟ ।୩୬।
ବାବୁ ମୁହିଂ ତାହାକଇଂ ପାଳିଲି ଅତି ଯେ ଯତନେ
ପଛେ ଉପୁଜିଲ ବାବୁ ତୁମ୍ଭେ ମୋର ପୁତ୍ରମାନେ ।୩୭।
ବିରାଟକୁ ଯୋଗାଇଲେ ବାବୁ କଥାଏ କରିବା
ଅକାରଣ ଲୋକକୁ ଯେ କାରଣ କରାଇବା ।୩୮।

ଯେବେ ଯୋଗାଇ ବାବୁ ସ୍ନେହା ତୁମ୍ଭର ବଚୃରକୁ
ସୁଦେଷ୍ଣାକୁ ପ୍ରଦାନ କରାଇବା ବିରାଟକୁ ।୩୯।
ସୁସିଦ୍ଧ ବଂଶରେ ସେ ଅଟଇ ଅଧିକାରୀ
ପଣ୍ଡିତ ଭଗ୍ୟଂନ୍ଲେକେ ସେ ସ୍ନେ କଥା ବଚୃର ।୪୦।
ମତ୍ସ୍ୟଦେଶର ରାଜା ଯେ ହୋଇଲା ଅମୂର୍ତ୍ତି
ତୋହୋର ବୁଦ୍ଧିବଳେ ଯେ ସ୍ନେହାକଇଂ କରାଇବା ନୃପତି ।୪୧।
କୀଚକ ବୋଇଲା ତାତ ଯୋଗାଇ ସ୍ନେ ବୁଦ୍ଧି
ମହତକଇଂ ଦ୍ରାଶନେ ସ୍ୱାମୀ ସକଳ କାର୍ଯ୍ୟ ସିଦ୍ଧି ।୪୨।
ପୁହନ୍ତ ସନମତ ସେ କରାଇ ନୃପତି ସୁକୋଚନ
ବିରାଟକଇଂ ସୁଦେଷ୍ଣା ଯେ କରାଇଲେ ପ୍ରଦାନ ।୪୩।
ତ୍ରିଗର୍ତ୍ତ କହଇ ଦେବ ଶୁଣିମା ଫାଲଗୁନ୍ୟେ
ସମସ୍ତେ ବିରାଟ ଥିଲା ସୁକୋଚନ ଭୁବନେ ।୪୪।
ସ୍ୱାମୀ କୀଚକ ମହ୍ୱମାଂ ଯନ୍ତୁଂ ଅର୍ଜିଲା ବହୁତ
ଅନେକ ରାଜ୍ୟ ଜିଣିଲା ସେ ପ୍ରତରାମାଂ ବଳବନ୍ତ ।୪୫।
ସ୍ୱାମୀ ଭୁବ ଭୁବନ ମଧ୍ୟେ ଯାହାକଇଂ ନାହ୍ୱଂ ସମଯୋଧୀ
ଅନେକ ଭୂଅମଣ୍ଡଳ ଭାଜ କଲାକ ସର୍ବସାଧି ।୪୬।
ଗ୍ରାମୁରେ ମିଳ କେହ୍ୱ ନୋହ୍ୱଲେ ତାକୁ ବାଧା
ସବୁ ଦ୍ୱରେ ଭ୍ରମଇ ସେ କୀଚକ ମହାଯୋଧୀ ।୪୭।
ଦ୍ୱନେକ ପ୍ରତରାମାଂ ସେହୁ କରୁଛି ଆସ୍ଥାନେ
ଆବର ରାଜା ସ୍ନେକ ନ ଥୋଇବ ସ୍ନେ ମଧ ଭୁବନେ ।୪୮।
ସୁକୋଚନ ବୋଇଲା ବାବୁ ତୋର ଅସଂଖ୍ୟ ମହ୍ୱମାଂ
ବିରାଟକୁ ଯେବେ ମତ୍ସ୍ୟଦେଶେ ସ୍ଥାପିପାରୁ ତେବେ ସେ ରହଇ
ତୋହୋର ଗାରମା ।୪୯।
ବାବୁ ଦୁହ୍ୱିତା ଗୋଟିସ୍ନେ ତାକୁ ଯେବେ ସେ କଲାଇଂ ପ୍ରଦାନ
ଶରାଚନ କର ବାବୁ ରୁହାଅ ସଞ୍ଚିଲା ଧର୍ମମାନ ।୫୦।

---

୪୨।୨ ମହତ ବଚନେ ସ୍ୱାମୀ ସକଳ କାର୍ଯ୍ୟ ସିଦ୍ଧି । (ଘ,ଡ)
୪୩।୧ ପ୍ରଭୁଂକ ସନମତେ ନୃପତି ସୁକୋଚନ । (ଘ)

ତ୍ରିଗର୍ତ୍ତ କହଇ ଯେ ଅର୍ଜୁନର ଆଗେ
କୀଚକ ବାହୁଳା ଥାଠ ମୋର ରାଜ୍ୟକୁ ବିରାଟର ରାଗେ ।୫୧।
ସ୍ୱାମୀ ଅନେକ ସମର ହୋଇଲା କୀଚକର ମୋହୋର
ମୋହୋର ରାଗେ ବାହୁଳା ନୃପତି କୀରାଟେଶ୍ୱର ।୫୨।
ସ୍ୱାମୀ କରାତ ତ୍ରିଗର୍ତ୍ତ ଆମ୍ଭେ ହୋଇଲୁ ବେନି ଯେ ନୃପତି
କୀଚକର ଭୁଲେ ଦେବ ସମର କଲୁ ଅପ୍ରମିତି ।୫୩।
ଶତେସିଂହର ପ୍ରାକର୍ମ ସେ ସଂକୋଚନର ବାଳ
ଅନେଶ୍ୱତ ଭାଇ ଯେନି ସେ ଜିଣିଲା ଶତେକ ମଣ୍ଡଳ ।୫୪।
ପୃଥୀରେ ଯୋଦ୍ଧାଏ ତାକୁ କେହି ନାହିଁଂନା ସମସର
ତିନିପୁର ଜିଣିମାକୁ ସାମରଥ ସେ ଦୃତରାଷ୍ଟ୍ରକ ବଚନେଣ କର ।୫୫।
ସ୍ୱାମୀ କୀଚକର ମୋର ସଂଗ୍ରାମ ହୋଇଲା ଅପ୍ରମିତେ
ଯେମନ୍ତେ କୀଚକ ବାହୁଳ ଚଉବଂଶ ବରଷ ପର୍ଯ୍ୟନ୍ତେ ।୫୬।
ଓହୋବଳ ସଂଗ୍ରାମେ ନୋହିଲୁ ତାହାକୁ ସର
ରାଜ୍ୟ ଗୁଡଣ ସ୍ୱାମୀ ମୁଂ ଅଇଲ ଅପସର ।୫୭।
କରାତକୁ ଡଆଇଂ ନେଲା ମତ୍ସ୍ୟଦେଶ ଛଡାଇ
ମତ୍ସ୍ୟଦେଶ ଛଡାଇଲା ପଳାଇଲ ମୁହିଂ ।୫୮।
ବିରାଟ ଆଣିଣ ସେ କୀଚକ ସେନାପତି
ମଚ୍ଛଦେଶ, ମଘଦେଶ ଦୁଇ ଦେଶେ କରାଇଲା ଚକ୍ରବର୍ତ୍ତୀ ।୫୯।
ସ୍ୱାମୀ ଦୁହାଂଳ ଦୁଇଲକ୍ଷ ବରଡ ବାରପଦ୍ମ ଗାଈ
ବଳାତ୍କାରେ କୀଚକ ବିରାଟକୁ ଯେତେକ ଭୋଗ କରାଇ ।୬୦।
ହେ ସ୍ୱାମୀ ଶିରୀ ସମ୍ପଦ ମୁଂ ପରକଇଂ ଦେଇ
ବୁଲୁଅଛୁ ବନଗାମୀ ମୁଂ କନ୍ଦମୂଳ ଖାଇ ।୬୧।
ସ୍ୱାମୀ ଭଗତ ମତ୍ସ୍ୟଳ ତୁ ଶରଣପଞ୍ଜର
ନିଜ ରାଜ୍ୟ ଦେଇ ମୋତେ କରିବା ପ୍ରତିକାର ।୬୨।
ଅର୍ଜୁନ ବୋଇଲେ ହୋ ଶୁଣ ତ୍ରିଗର୍ତ୍ତେଶ୍ୱର ରାଜା
ସମଦଣ୍ଡେ ଯେନି ଯେବେ ଇନ୍ଦ୍ରପ୍ରସ୍ଥକଇଂ ଯା ଯା ।୬୩।
ବିରାଟହିଂ ଆସିବ ହୋ ରାଜୁସି ଯାଗସଭାକୁ
ତୋହୋର ନିମନ୍ତେ ହୋ ଆମ୍ଭେ ବୋଲିବା କୀଚକକୁ ।୬୪।

*

ଯେମନ୍ତେ ତୁ ନିଜ ରାଜ୍ୟ ପାଇବୁ ତୋହୋର
ତେମନ୍ତେ କର ଆମ୍ଭେ ସିନା କରିବୁ ବଗୃର ।୬୫।
ଯାଥର ଚରଣେ ରାଜା ଓଳଗ ମେଲ୍ଲଇ
ହସ୍ତିନା ରାଜ୍ୟକୁ ଚଳିଲ୍ଲ ଅର୍ଜୁନ ଆଗ୍ୟାଂ ପାଇ ।୬୬।
ତହୁଂ ବଜସ୍ୱେ କଲ ପାଣ୍ଡବ ସୁନ୍ଦର ବୀରମଣି
ଉତ୍ତର ଦିଗେ ବଜେ ଅର୍ଜୁନ ଥାଠ ଯେ ପଲ୍ଲଣି ।୬୭।
ଗାଞ୍ଜଣ ଦେଶେ ପ୍ରବେଶ ହୋଇଲ୍ଲ ବୀର ଫାଲଗୁନି
ପୃଥିବୀ ହାଦୋଳ ହୋଉଛୁ ବୀରତୂର ବାଦ୍ୟଧୁନି ।୬୮।
ଗାଞ୍ଜଣ ଦେଶର ରାଜା ସେ ଗୋପାଳ ଚକ୍ରବର୍ତ୍ତୀ
ଗୃରଶତ ପାଶଦଣ୍ଡ ତାକୁ ଖଟଇ ନୃପତି ।୬୯।
ପାଞ୍ଚଲକ୍ଷ ରଥ ତାର ପଞ୍ଚାଶ କୋଟି ମାତଙ୍ଗ
ସାତ କ୍ଷଉଣୀ ପାଦାନ୍ତ ଚଉଦ ମର୍ବୁଦ ତୁରଙ୍ଗ ।୭୦।
ଅର୍ଜୁନ ପ୍ରବେଶ ଯାଇଂ ସେ ରାଜାର ରାଜ୍ୟେ
ବୀରତୂର କାହାଳୀ ନିଶାଣ ଢମକ ଘୋର ବାଜେ ।୭୧।
ଆସ୍ଥାନେ ବଜେ କରିଅଛନ୍ତି ଗୋପାଳ ନୃପମଣି
ମହାଗହଳ ଶୁଭିଲ୍ଲ ବୀରତୂର ରବା ବାଣୀ ।୭୨।
ମନ୍ତ୍ରୀର ବଦନ ଗୃହ୍ୱାଂଣ ବୋଇଲ୍ଲ ନୃପତି
କିସ ଶବଦେ ଦୁଲୁ ଦୁଲୁ କମ୍ପୁଅଛୁ ପୃଥୀ ।୭୩।
ଆସ୍ଥାନର ତଳେ ଯାଇଂ ଜଣାଇଲେ ଗୃରଗଣ
ସ୍ୱାମୀ ରାଜାଧି ରାଜେଶ୍ୱର ତୁମ୍ଭେ ସାବଧାନେ ଶୁଣ ।୭୪।
ବନ ଉଗର କଣି ଆସୁଅଛୁ ସ୍ୱେକ ରଥୀସ୍ୱେ
ରଥ ଗଜ ଅଶ୍ୱ ଅଳପ ପାଦାନ୍ତ ମହା ତେଜମସ୍ୱେ ।୭୫।
କେଁବଣ ଦେଶରୁ ଦେବ ସେ ଆସୁଅଛୁ ବାହ୍ମ
ରାଜା ହୋଇ ଗ୍ରୁମୁରେ ତାର ରହନ୍ତା କେହ୍ମ ନାହ୍ମିଂ ।୭୬।
ଶୁଣିଣ ବଗୃର ସେ କରଇ ନୃପତି
ଗ୍ରୁମୁରେ ଜଣାଇଲ୍ଲ ତାର ଶୂରସେନ ମନ୍ତ୍ରୀ ।୭୭।

---

୭୨।୨ ରବା—ବାଦ୍ୟ ବିଶେଷ ।

ସ୍ୱାମୀ ହସ୍ତିନା ଠାକୁରେ ଯେ ଯୁଧିଷ୍ଠି ଦେବରାୟେ
ତାହାଂକର ଅନୁଜ ଯେ ପାଣ୍ଡବ ଧନୁର୍ଜୟେ ।୭୮।
ହଗବଜୟେ ବାସେବ ରାଜସୂ ଯାଗ ଅର୍ଥେ
ଅନେକ ଦେଶର ଯେ ନିମନ୍ତ୍ରବେ ମହୀପତ୍ୟେ ।୭୯।
ମନ୍ତ୍ରୀର ମୁଖରୁଂ ରାଜା ପାଇଣ ଯେସନେକ ବାରତ
ସାଜିଲ ନୃପତି ତାର ଗଜ ଅଶ୍ୱ ସଇନ ବହୁତ ।୮୦।
ବହୁତ ସଇନ ତହିଂ ଯାଜଣ ନୃପମଣି
ରଜେ ଗୋପାଳ ସେନ ଥାଠ ସନ୍ୟ ପଲଣି ।୮୧।
ସକଳ ସଇନ ଘେନି ନୃପତି କଳକ ରଜେ
ପ୍ରତକ୍ଷେ ନାରାୟଣ ଯେ ଦେଖିଲ ଦେବରାଜେ ।୮୨।
ଦ୍ରଶନେ ସୁଫଳ ମୋର ହୋଇବ ଜୀବନ୍ତ
ଗାଞ୍ଜଣ ମଣ୍ଡଳାଧିପ ଯେ ଗୋପାଳ ଚନ୍ଦ୍ରବ୍ରଷ୍ଟ ।୮୩।
ସେ କଟକ ଭିତରେ ଚଳଯେ ଫାଲଗୁନି
ଦ୍ରଶନ କଳକ ରାଜା ଥାଠ ସନ୍ୟ ଘେନି ।୮୪।
ଅର୍ଜୁନ ସ୍ମୁମୁରେ ରାଜା କରଇ ପ୍ରଣପତ୍ୟ
ଆନନ୍ଦେ ଅର୍ଜୁନ ତାକୁ କଲେକ ନିମନ୍ତ୍ର ।୮୫।
ଅକ୍ଷତ ଗୁଆ ତାକୁ ହଲେକ ଅରଜୁନ
ଥାଠ ସନ୍ୟ ଘେନି ଚଳିଯାଅ ଇନ୍ଦ୍ରପ୍ରସ୍ଥ ଭୁବନ ।୮୬।
ସମସ୍ତ ରାଜାୟେ ରହିଥିବେଟି ବାରୁଣାବନ୍ତେ
ଯେତେକସ୍ଥାନେ ରହିଥିବ ସମସ୍ତ ନୃପତ୍ୟେ ।୮୭।
ଗୃଳଶ ସହସ୍ର ରାଜା ନିମନ୍ତ୍ରି ମୁଂ ଘେନିଯିବ
ଯୁଧିଷ୍ଠି ଦେବ ଠାକୁରଂକୁ ଦ୍ରଶନ କରାଇବ ।୮୮।
ଆଗ୍ୟାଂ ଦେଇଣ ତହୁଂ ଚଳିଗଲେ ସବ୍ୟସାଚୀ
ଆକାଶ ହଗବଜେ ପ୍ରାୟେକ ହଶଇ ହଗ ପ୍ରାଚୀ ।୮୯।
ଉଡନ୍ତ ତୁରଙ୍ଗମେ ଯେ ଗଗନ ମେଖଳ
ବରଷା ଋତୁରେ ଯେହ୍ନେ ଝଟକଇ ବିଜୁଳି ।୯୦।
ସେହ୍ନି ମତ ପ୍ରାୟେକ ଉଡନ୍ତ ରଥ ହୟେ ଗୃର
ମାତଳି ସାରଥି ରଥ ବାହଇ ବେଶକରି ।୯୧।

ମାଳବ ଦେଶରେ ଯାଇ ବିଜୟେ ଅରଜୁନ
ଯମୁନା ନଦୀ କୂଳରେ ତା ରାଇଜ ଗହନ ।୯୨।
ସେ ଦେଶର ରାଜା ବୀରବର ଚନ୍ଦ୍ରବ୍ରତି
ଅନେକ ପାରିଦଣ୍ଡ ସେ ରାଜାକଇଂ ଖଟନ୍ତି ।୯୩।
ସମସ୍ତ ସମ୍ପଦେ ସେ ଅଟଇ ଦଣ୍ଡସାଇଂ
ତାହାର ପୁରେ ଅର୍ଜୁନ ପ୍ରବେଶ ହେଲେ ଯାଇଂ ।୯୪।
ଅନେକ ବୀରତୂର ବାଜଇ ଘୋର ଧୂନି
ଇନ୍ଦ୍ର ବିଜୟ ପ୍ରାପ୍ତେକ ସେ ବିଶଇ ଫାଲଗୁନି ।୯୫।
ରାଜ୍ୟରେ ପଶନ୍ତେ ଓଗାଳିଲେ ଚରଗଣ
କଟକରେ ନ ପଶ ବୋଲି ତୁମ୍ଭନ୍ତ ଠାକୁରଂକ ଆନ ।୯୬।
ନ ଜାଣୁ କିହୋ ନୃପତି ବୀରବର ଚନ୍ଦ୍ରବ୍ରତୀ
ଉତ୍ତର କୋଶଳେ ଯାର ମହିମାଂ ବିଖ୍ୟାତି ।୯୭।
ଧାର୍ମିକ ବିବେକ ସେ ପଣ୍ଡିତ ଭାଗ୍ୟଂବନ୍ତା
ଯାହାକୁ ସନ୍ଧାନ ବିଅଇ ରତ୍ନାକର ଦେବତା ।୯୮।
ଜୟେ ବିଜୟେ ବୋଲିଣ ଅର୍ଜୁନର ବେନି ସେନାପତି
ଅଶ୍ୱେ ଅଶ୍ୱେ ଚଢିଣ ସେ ଆଗିଆଣି ହୋଇଛନ୍ତି ।୯୯।
ଯେତେବେଳେ ଆନ ତାଂକୁ ପାଡିଲେ ମୁଟନେହିଂ
ପଶିଲେ ଅର୍ଜୁନ ଥାଠ ରାଜ୍ୟେ ନ ରହିଲେ ବୀରେ କେହି ।୧୦୦।
ଦେଖିଣ ଧାଇଂଲେ ସେ ମାଳବର ସନ୍ୟ
ବାଜଇ ବୀରତୂର ଟମକ ନିଶାଣ ଘନ ଘନ ।୧୦୧।
ପାଟଛନ ଉଦ୍ଦଣ୍ଡ ପ୍ୟେକଲକ୍ଷୀ ପାଞ୍ଚଲକ୍ଷୀ
ଉଡନ୍ତି ଆଲମ୍ବ ଯେ ସୁରେଶ୍ୱର ଦେବା ଦେଖି ।୧୦୨।
ସହସ୍ରେ ରଥୀ ଯେ ପେଷିଲା ବୀରବର
ବୋଇଲେ ପ୍ରାଣେ ନ ମାର ଜୀବନ୍ତା ବନ୍ଦୀକର ।୧୦୩।
ରାଜାର ଆଗ୍ୟାଂରେ ଧାଇଂଲେ ସର୍ବରଥୀ
ନାରାଜ ପୂରାଇଣ ଧାମନ୍ତି କୋପମୂର୍ତ୍ତି ।୧୦୪।

---

୯୬।୨ ଆନ—ରାଣ ।
୧୦୨।୨ ଉଡନ୍ତି ଆଲମ୍ବ ଚଞ୍ଚଳ ଯେ ମୟୂର ଝାଲି ପଛୀ । (ଡ,ଢ)

ମୁକୁଟବନ୍ଧା ତହିଁ ସହସ୍ରେକ ରଥୀ
ଶ୍ୱେତଖୀର ଶ୍ରେଷ୍ଠଅଶ୍ୱ ରଥେଣ ଯୋଚନ୍ତି ।୧୦୫।
ତର୍ଜନ୍ତି ଗର୍ଜନ୍ତି ଯେ ପ୍ରସବନ୍ତି ଖକ୍ଷମୁନି
ନିକଟେ ଦେଖି ବନ୍ଧିଲେ ସେ ମାଳବ ଦେଶର ସେନା ।୧୦୬।
ଦେଖିଣ କୋପାନଳ ଅର୍ଜୁନର ସେନାପତି
ପରିଘନ୍ତ ବୁଲାଇ ବେଗେ ଉଠିଲେ ତତକ୍ଷଣାନ୍ତି ।୧୦୭।
ମାଳବ ଦେଶର ଯୋଦ୍ଧାପ୍ରେ ଯେ ବୁଲାବନ୍ତି ଶସ୍ତ୍ର ଧରି
କୋପେଣ ବନ୍ଧନ୍ତି ସେ ଯେ ଘୋରନାଦ କରି ।୧୦୮।
ଦେଖିଣ ଅର୍ଜୁନ ତାହା ଦୂରହୁଁ ନିବାରି
ବନ୍ଧିଲେ ବାବଲ ଶର କୋପମୁଖ କରି ।୧୦୯।
ଅବକ୍ଷଣେ ଯୋଦ୍ଧାପ୍ରେ ଆନ୍ୱେଷିଣ ବାଣ ବନ୍ଧି
ସେହିମାନ୍ତ ଫୁଟିକରି ଶରୀରେ ଯାଇଂ ଭେଦି ।୧୧୦।
ରୁଧିର ବୃଷ୍ଟି ଯେ ହୋଇଲା ସବୁଂକର ଅଙ୍ଗେ
କିଂଶୁକ ପୁଷ୍ପ ପରିପ୍ରେ ଦିଶିଲେ ସର୍ବେ ରଙ୍ଗେ ।୧୧୧।
ଅମନାତ୍ୟ ଯୋଦ୍ଧାପ୍ରେ ନ ଘୂଞ୍ଚନ୍ତି ସମରେ
ପଡନ୍ତି ଉଠନ୍ତି ଗର୍ଜନ୍ତି କୋପଭରେ ।୧୧୨।
ଯାଠି କୋନ୍ତ ଲଂକଆ କରେ ଧରି ମାରି
ପଡିଲେ ମାଳବ ବୀରେ ନ ପାରିଲେ ଉବୁରି ।୧୧୩।
ସହସ୍ରେକ ରଥୀ ଆସି ହୋଇଥିଲେ ଆଗିଆଣି
ଯୁଦ୍ଧର ସମ୍ମୁରେ ସେହୁ ଲୋଟିଲେ ଧରଣୀ ।୧୧୪।
ଧାଇଂଣ ଗୃରଗଣେ କହିଲେ ରାଜାଙ୍କୁ
ବଡାଇ ଦୁରପଦ ଦେବ ପଡିଲାକ ତୁକୁ ।୧୧୫।
ସହସ୍ରେକ ରଥୀ ଓଗାଳିଲେ ତାର ଆଗେ
ଗୋଟିପ୍ରେ ଉବୁରି ନୁଆରିଲେ ପଡିଲେ ରଣରଙ୍ଗେ ।୧୧୬।
ପ୍ରେତେକ ମାରି ଦେବ ନୋହିଲେକ ଶ୍ୟାନ୍ତ
କଟକ ଭିତରେ ଆସି ପଶିଲେ ନିଭ୍ରାନ୍ତ ।୧୧୭।

---

୧୧୨।୨ ଫୁଟନ୍ତି ଉଠନ୍ତି ଗର୍ଜନ୍ତି କୋପଭରେ । (ଘ,ଙ,ଥ,ଛ,ଜ)

ଆହୋ ମହାରାଜା ଯେବେ ସମ୍ଭାଳ ଚୋହୋର ରାଜ୍ୟ
ଜନଜନ୍ତୁ ନାଶଗଲ ନୋହିଲ କଛୁ କାର୍ଯ୍ୟ ।୧୧୮।
ଉଗର ମୁଖୁଂ ବାରତା ପାଇଣ ବୀରବର
ଆପଣେ ବଜେକଲ ସେ ଚଉଦୋଳା ଉପର ।୧୧୯।
ରାଜା ବଜୟେ ଦେଖି ଧାଇଂଲେ ସର୍ବ ସଇନ
ବନ୍ଧଲେ ନାରଜ ଯେ ଅବକ୍ଷଣେ ଘେନ ।୧୨୦।
ମହାଥାଠ ଦେଖିଲେ ଯହୁଂ ସେ ଜୟେ ବଜୟେ
ବେନ ସେନାପତ ତହୁଂ ଚଳାଇଲେ ମହାହୟେ ।୧୨୧।
ମାର ମାର ବୋଲ ଯେ ପାଡଲେ ମହାବୋବ
ଯୋଗ୍ନୀବଳ ଘେନ ଘେହ୍ନେ ଉଠନ୍ତ ଭଇରେବୀ ।୧୨୨।
ସାଂଗ୍ରାମେ ଅଜୟେ ଅଛେ ଯାହାର ବରଧୂ
ସେନାପତଂକ ମହମାଂ ଚେହେନେକ ସାଧୂ ।୧୨୩।
ଧନୁ ଆମଞ୍ଜଣ ଉଠିଲେ ଜୟେ ଯେ ବଜୟେ
ଆଗେ ଓଗାଳଲେ ଆସି ଯେ ପାଶଦଣ୍ଡ ରାୟେ ।୧୨୪।
ସାତଖର୍ବ ରଥୀ ଚାର ବଣ୍ଡଶ ଖର୍ବ ହାଥୀ
ଗୃଶଙ୍ଗ ହୟେବର ତେରକ୍ଷଉଣୀ ପାଦାନ୍ତ ।୧୨୫।
ଯେତେକ ସଇନ ଘେନ ଉଠିଲ ବୀରବର ଚନ୍ଦ୍ରଗୀ
ରଣ ହାନ୍ଦୋଳ କଲ ସେ କଉଶିକ ଗୋର୍ଷୀ ।୧୨୬।
ହସ୍ତିନାର ଦ୍ୱାରେ ଯାଇଂ ପଶିଲେ ସମରେ
ଡାକ ହାକେ କମ୍ପିଲ ଯେ ଅନେକ ଢଙ୍ଗରେ ।୧୨୭।
ଗର୍ଜିଣ ଉଠିଲେ ଯହୁଂ ମାଳବ ଦେଶର ବଳ
ବେନବଳ ମିଶିଣ ହୋଇଲେ ମହାଗୋଳ ।୧୨୮।
ବାରଣ ନ ଗଲ୍ ତହିଂ କେହୁ ପର କେହୁ ଆପଣା
ଯେକାମାନ ବ ସବ ଯେ ହୋଇଛୁ ଧାରଣା ।୧୨୯।
ଅର୍ଜୁନ ଥାଠ ଯହୁଂ ହୋଇଲେ ଭିତର
ଗୁଣ ଟଂକାର ପଶିଲେ ସେ ସାଂଗ୍ରାମେ ଗୃପଧର ।୧୩୦।

---

୧୨୪। ଆଗେ ଓଗାଳଲେ ଆସି ଯେ ପାଶଦଣ୍ଡ ଗୃଶତ ରାୟେ । (ଛ,ଅ,କ)

୧୨୭। ଡରେଣ କଂପିଲ ଯେ ବ୍ରହ୍ମାଣ୍ଡ ସୁରେଶ୍ୱରେ । (ନ)

ଅର୍ଜୁନ ବାଦ୍ୟକଲା ଦେବଦତ୍ତ ଶଙ୍ଖଧ୍ୱନି
ସଇନି ଲୋଚ ହୋଇଲେ ଶଙ୍ଖ ଶବଦ ଶୁଣି ।୧୩୧।
ଅର୍ଜୁନର ସେନାପତି ଜୟ ଯେ ବିଜୟେ
ତାହାନ୍ତ ଓଗାଳଲେ ଆସି ମାଳେବ ଦେଶ ରାଏ ।୧୩୨।
ବୀରବର ସୁନ୍ଦର ସେ କ୍ଷତ୍ରୀ ଅଶ୍ରୁଗଳା
ସମରେ ଅଭୟ ସେ ଜାଣନ୍ତ ମହାଖଳା ।୧୩୩।
ମାଳବ ସେନାଏ ସେ ଉଠିଲେ ବେଗ ହୋଇ
ବୁଲାବନ୍ତ ଲଂକଆ ଯେ ସିଂଘରଡ ଦେଇ ।୧୩୪।
ଧାଅଂରେ ମାରରେ ବୋଲି ପ୍ରତଗ୍ୟାଂ ବୋଲବୋଲ
ଗାଲଭୁସ ଶବଦ ଦେଇଣ ଯେ ଉଅଂନ୍ତ କୁରୁଳ ।୧୩୫।
ଜୟେ ବିଜୟେ ବୁଲଇ ପଶଘେ ପରଘେ
ବରଷା ଋତୁରେ ଯେହ୍ନେ ଉଠନ୍ତ କଳାମେଘେ ।୧୩୬।
ସଇନି ଉପରେ ନେଇ ପ୍ରହାର କଲେ ଗଦା
ଭାଙ୍ଗିଲେ ଦମନ ବଳ ପିଟିଣ କଲେ ଗଦା ।୧୩୭।
ରଥୀ ସାରଥୀ ଯେ ପଡଲେ ମହୀଲୋଟି
ରଥରେ ବିଜୟେ କର ତା ଦେଖଇ ପାଣ୍ଡବ କଶୀଠୀ ।୧୩୮।
ଅର୍ଜୁନ ବୋଇଲେ ଯେ ମାତଳ ସାରଥିକ
ରଥ ବେଗେ ବାହା ମୋର ବୀରବର ରାଜାର ତହିଂକ ।୧୩୯।
ପବନୁଂ ବେଗେ ରଥ ସାରଥି ନେଲା ଘେନି
ମାଳବ ଦେଶ ରାଜା ସୁମୁରେ ରଥ ନେଇ ଭେଟାଇଲା ମହାବଳୀ ।୧୪୦।
ବୀରବର ରାଜା ଯେ ଦୃଢବନ୍ଧ ଶରୀର ବଜ୍ରସେହ୍ନା
ପାର୍ଥିବକୁ ଦେଖି ଶହସ୍ର ବାନ୍ଧିଲେ ବଡକୁମାର ଜେନା ।୧୪୧।
ରଥରେ ଥାଇଣ ତାକୁ କହଇ ଅର୍ଜୁନ
କମ୍ପାଇଂ ନୃପତି ତୁ ହୋ ଯେତେକ ଅଗ୍ୟାନ । ୧୪୨।
କାହା ତୁଲେ ବିବାଦ କରୁ ତୁ ଅନମିତେ
ଦେଶଉରେ ବାରତା କି ନ କହିଲେ ତୋତେ ।୧୪୩।

---

୧୩୬।୨ ବରଷା ଋତୁରେ ଯେହ୍ନେ ଗର୍ଜନ୍ତ କଳାମେଘେ । (ଢ, ଙ)

ଉତ୍ତର ଦଗବଜେ ମୁହିଁ ସେ ଫାଲଗୁନ
ରାଜାମାନଙ୍କ ନିମନ୍ତ୍ର ରାଜସୂୟ ଯାଗକୁ ଯିବ ଘେନି ।୧୪୪।
ନ ଜାଣି ଅନମିତେ କଂପେ କରୁଛୁ ସମର
ଅନମିତେ ସଇନ ଲୋଗ୍ୟେ ତୋର ହୋଇଲେ ଅପହାର ।୧୪୫।
ଯେତେକ ସଇନ ମରାଇଲୁ ଅକାରଣେ
ଯେତେବଡ ହୋଇ କଲୁ ଅପଣ୍ଡିତ ପଣେ ।୧୪୬।
ଧନୁର୍ଜୟେ ବାକ୍ୟ ଯହୁଁ ଶୁଣିଲା ସଦଭାବ
ରଥରୁ ଡେଇଁଣ ପଡିଲା ନୃପତି ମାଳବ ।୧୪୭।
ଅର୍ଜୁନର ରଥ ତଳେ ହୋଇଲା ପରଣାମି
ଦଶଦୋଷ ଅପରାଧ କ୍ଷମା କରିବା ଦେବସ୍ୱାମୀ ।୧୪୮।
ଅର୍ଜୁନ ବୋଇଲେ ତୁ ଉଠ ଉଠ ରେ ବାବୁ
ଅଗ୍ୟାନେ ସଇନ ନାଶଗଲେ ଆଜ ତୁ କିସ କରିବୁ ।୧୪୯।
ସଇନଙ୍କ ହାକଦିଲା ରହ ରହ ହୋ ସଭିଏଁ
ଅଗ୍ୟାନେ ନାଶଗଲ ନ ଜାଣି ସନ୍ଦେହେ ।୧୫୦।
ଭଗତ ମହ୍ଲ ନାଥ ମମ ଦୋଷ କଲେଣି ଉପେକ୍ଷା
ଯେହ୍ନେ ସେ ନାଶକଲା ସେ କରି ପାରଇ ରକ୍ଷା ।୧୫୧।
ସମସ୍ତେ ପଳାଇଥିଲେ ମହାଭୟେ କରି
ରାଜା ମାଧୁର୍ଯ୍ୟ ବଚନେ ରହିଲେ ପୁରସରି ।୧୫୨।
ନିମନ୍ତ୍ରଣ ଯୋଗାଡମାନ ହଲେକ ସବ୍ୟସାଚୀ
ବାରୁଣାବନ୍ତେ ଯାଅ ହୋ ତୋତେ ଠାକୁରଙ୍କର ଆଗ୍ୟାଂ ଅଛି ।୧୫୩।
ଶୁଣିଣ ସାନନ୍ଦ ସେ ବୀରବର ନୃପମଣି
ସ୍ୱାମୀ ଆଗ୍ୟାଂ ପ୍ରମାଣେ ମୁଂ ଯିବଇଂ ଥାଠ ସନ୍ୟ ପଲ୍ଲିଣି ।୧୫୪।
ମାଳବ ଦେଶର ନୃପତି ପ୍ରଣପତ୍ୟ ଅର୍ଜୁନର ପଦ୍ମପାଦେ
ସ୍ୱାମୀ ଲଭିଲଇଂ ଅନେକ ପୁଣ୍ୟ ତୋହୋର ପରସାଦେ ।୧୫୫।
ସ୍ୱାମୀ ମୁଣୋହ୍ନ ଯୋଗାଡ ମୁଂ କରିବଇଂ ବିଧାନ
ବେଳ ଉଛୁର ଆସି ଦେବ ହୋଇଲାଣି ମଧାହ୍ନ ।୧୫୬।
ଅର୍ଜୁନ ବୋଇଲେ ତୁ ହୋ ଶୁଣ ବୀରବର
ମୁଣୋହ୍ନରେ ବେଳ କାହିଁ ଅଛଇ ମୋହୋର ।୧୫୭।

ଗୃଳଶ ସହସ୍ର ରାଜା ନିମନ୍ତ୍ରିବ ନଉଦ୍ଧବସର ମଧ୍ୟେ
କେମନ୍ତେ ନୃପତି ସାଧି ହୋଇବେ ସ୍ୱେଚ୍ଛାମତି ଯୁଦ୍ଧେ ।୧୫୮।
ଦଣ୍ଡ ଘେନି ବାହାର ତୁ ହୁଅ ସେହିକ୍ଷଣ
ରାତ୍ର ଦିବସେ ଅନୁବ୍ରତେ କରସି ପଯ୍ୟାଣ ।୧୫୯।
ଯେଉଂଣ ନୃପତି ଅବା ବିଳମ୍ବ କରିବ
ସଞ୍ଚୟେ ଅପ୍ରାଧି ହୋଇ ରାଜସୂୟ ଯାଗସଭାରେ ନାଶଯିବ ।୧୬୦।
ସ୍ୱାମୀଂକର ଆଜ୍ଞାଂ ପ୍ରମାଣ କରଇ ନିରାଧାର
ଲଗ୍ନ ବିଚ୍ଛୁର କରି ବାହାର ହୋଇଲା ଦଣ୍ଡଧର ।୧୬୧।
ମାଳବ ଦେଶୁଂ ବାହାର ହୋଇଲେ ଫାଲଗୁନି
ମହା ସମ୍ଭବେ ଚଳିଲେ ଥାଟସୈନ୍ୟ ଘେନି ।୧୬୨।
ମାଳବ ଦେଶ ଅନ୍ତରେ ହିରଣ୍ୟକ ନାମେ ବନ
ହିରଣାକ୍ଷୀ ବୋଲି ନଦୀଏ ପ୍ରସ୍ୱାଗୁଂ ଉଦଯାନ ।୧୬୩।
ସେ ନଦୀର କୂଳେ ସଉରଭ ନାମେ ପର୍ବତ
ସେ ଗିରି ଉପରେ ଯାଇ ବିଜୟ ବୀର ପାର୍ଥ ।୧୬୪।
ଯେଉଁରଙ୍ଗ ବୋଲିଣ କରି ତହିଂ ରାଜ୍ୟ ଗୋଟିଏ
ତହିଂ ସେ ରାଜ୍ୟ କରଇ ଭାନୁବନ୍ତ ବୋଲି ରାଏ ।୧୬୫।
ଅର୍ଜୁନ ହକାରିଲେ ଜୟେ ବିଜୟେ ସେନାପତି
ଆଦିତ୍ୟ ଅସ୍ତଗଲା ଆସି ହୋଇଲା ନିଶାରାତି ।୧୬୬।
ରାତ୍ରକାଳେ କଂପାଇଂ ପଶିବା ହୋ ପରରାଷ୍ଟ୍ରେ
ରାଜାର ଆମ୍ଭର ପରତେ ନାହିଂ ଅପରତେ ଥାଟେ ।୧୬୭।
ରହିଲେ ସଇନି ବଳ ମାଡ ସେହି ପରବତେ
ଅମୃତ ଯୋଗାଡ ଆଣି ଦିଲେ ଦେବଦୂତେ ।୧୬୮।
ସୂପକାରମାନେ ଅନ୍ନ କଲେକ ପଚନ
ସେ ନଦୀରେ ସ୍ନାହାନ କରି କଲେକ ଭୋଜନ ।୧୬୯।
ଅମୃତ ଯୋଗାଡହିଂ ଭୁଞ୍ଜିଲେ ଫାଲଗୁନି
ଅଷ୍ଟ ନାୟିକାନ୍ତ ଆକାଶୁଂ ପଠିଆଇଲେ ସହସ୍ରଯୋନି ।୧୭୦।
ବିଦ୍ୟାଧର ପୁରୁଷେ ପଞ୍ଚମସ୍ୱରେ ବାଦ୍ୟକାରି
ସୁର ଭରି ହରଷେ ଗାୟେଣୀ କନ୍ୟାଗୁଣି ।୧୭୧।

ବିଦ୍ୟାଧର ବିଦ୍ୟାଧରୀ ଜଣ ଯେ କୋଟିଏ
ଅମର ଭୁବନୁଁ ପେଷି ଦିଲେକ ଦେବରାୟେ ।୧୭୨।
ପୁଷ୍ପକ ରଥ ଆରୋହି ସେ ଅର୍ଜୁନକଇଂ ଭେଟି
ଅମର ବିଳାସୁଣୀ ତାଣ୍ଡବ ନୃତ୍ୟେ ଖଟି ।୧୭୩।
କୁତୂହଳେ ରୟୁଣୀ ଯେ ହୋଇଲା ପାହାନ୍ତ
ବାରତା ପାଇଲା ସେ ଯେ ରଙ୍ଗ ଚନ୍ଦ୍ରବୃନ୍ତ ।୧୭୪।
ଧାର୍ମିକ ବିବେକ ସେ ଅଜମୀଢର ତନୁ
ପର୍ବତ ଉପରେ ଆସି ଦ୍ରଶନ କଲାକ ରାୟେ ଭାନୁ ।୧୭୫।
ଶତେକ ଘର ଯେ ଘେନିଣ ଶ୍ୱେତହାଥୀ
ଅର୍ଜୁନକୁ ଦ୍ରଶନ କଲା ସେ ରଜନୀ ପାହାନ୍ତ ।୧୭୬।
ଦେଖିଣ ପ୍ରହସିତ ଯେ ସୋହୋଦର ନାହା
ସମଦଣ୍ଡ ଘେନିଣ ତୁ ରାଜସୂୟ ଯାଗକଇଂ ଯାଅ ଯା ।୧୭୭।
ରାଜା ବୋଲେ ଦୁଷ୍ଟ ନାରାୟଣେ ମୁଂ ଦେଖିଲି ନୟନେ
ପାଇଲି ପରମ ଗତି ଦେବ ପାର୍ଥିବ ଦରଶନେ ।୧୭୮।
ଶ୍ରବଣେ ଯାହା ଶୁଣିଥିଲି ଦେଖିଲି ତାହା ବେନି ଚକ୍ଷୁ
ପ୍ରତକ୍ଷେ ନାରାୟଣ ଦେବ ତୁ ବିଜେ କରଅଛୁ ।୧୭୯।
ଶତ ସହସ୍ର ଦଣ୍ଡଲାଇ ଭାନୁବନ୍ତ ପରଣାମି
ମୋହୋର କଟକେ ବିଜେ କରିବା ଦେବସ୍ୱାମୀ ।୧୮୦।
ଯେ ରାଜ୍ୟ ନରନାରୀମାନେ ସମସ୍ତେ ତୋତେ ଦେଖୁଂ
ରାଜ୍ୟ ମୋହୋର ସୁଲଭ କର୍ମାଇଂ ଉପଲେଛୁ ।୧୮୧।
ସେ ଭାନୁମତ ରାଜାର ଦେଖି ଅନେକ ବିନୟେ
ରାଜ୍ୟକୁ ବିଜୟେ କଲେ ପାଣ୍ଡବ ଧନୁର୍ଜୟେ ।୧୮୨।
ପୁରେ ପୁରେ ଉଛବ ତାର କରାଇ ରାଜଦେବ
ବାଟିଲା ଅନେକ ରତ୍ନ ଯୋଗାଡ଼ ଅନେକ ସମ୍ପଦ ।୧୮୩।

---

୧୭୬।୧ ଶତେକ ଘର ଯେ ଘେନିଣ ମଉହାଥୀ ।

(ଙ,ଘ,ଖ,କ,ନ,ଠ,ଝ)

ପାଯ୍ୱେଡା ପାଡଣ ରାଜା କରଇ ନିଜଗୁଳ
ବଛରନ୍ତ ଗଗନମାର୍ଗେ କର୍ପୂରର ଧୂଳ ।୧୮୪।
ଗମିଲେ ଫାଲଗୁନ ଯେ କଟକ ଭିତରେ
ରତ୍ନ ଯୋଗାଡମାନ ସେନାଯ୍ୱେ ଠାବେ ଠାବେ କଲେ ଜୂରେ ।୧୮୫।
କଟକ ଜିଣିକରି ଚଳଇ ବୀର ଫାଲଗୁନ
ଦେବ ଦୁନ୍ଦୁଭି ଯେ ବାଜଇ ଘୋର ଧୂନି ।୧୮୬।
ହନୁମତକୁ ଦେଇଣ ଗୁଆ ଯେ ଅକ୍ଷତ
ବାରୁଣାବନ୍ତକୁ ରାଜା ଯାଅ ହେ ତୁରିତ ।୧୮୭।
ସମଦଣ୍ଡ ଘେନି ଯେ ରାଜୁଂ ବାହାର ହନୁବନ୍ତ
ବାରୁଣାବନ୍ତକୁ ରାଜା ଚଳଇ ତୁରିତ ।୧୮୮।
ଚଳଇ ଫାଲଗୁନ ଯ୍ୱେରଙ୍ଗ ଦେଶ ଜିଣି
ଶୀଘ୍ରରେ ଚଳାଇ ଯାଇଂ ପାଣ୍ଡବ ଚୂଡାମଣି ।୧୮୯।
ସମ୍ପତରେ ଚଳଇ ଯେ ବୀର ଫାଲଗୁନ
ବଙ୍ଗଦେଶେ ପରବେଶ ହୋଇଲେ ଥାଠ ଘେନି ।୧୯୦।
ସେ ବଙ୍ଗଦେଶର ରାଜା ଅଟଇ ଚନ୍ଦ୍ରସେନ
ସାତ କ୍ଷଉଣୀ ବଳ ଘେନି ରାଜା ବସିଛି ଆସ୍ଥାନ ।୧୯୧।
ଆସ୍ଥାନର ତଳେ ଯାଇଂ ଜଣାଇଲେ ଚୃରଗଣେ
ଶୁଣିମା ସାବଧାନେ ବଙ୍ଗଦେଶ ନୃପରଣେ ।୧୯୨।
ସ୍ୱାମୀ ଯୁଧେଷ୍ଠି ଦେବଂକର ସାନୁଜ ଅରଜୁନ
ଉତ୍ତର ଦଗବଜେ ନିମନ୍ତ ନେବେ ରାଜାଗଣ ।୧୯୩।
ରାଜୁସି ଯାଗ ଦେବ ହୋଇବ ମହାସଭା
ସମଦଣ୍ଡ ଘେନି ତୁମ୍ଭକୁ ବନ୍ଦନ ହୋଇ ଯିବା ।୧୯୪।
ସ୍ୱାମୀ ଦୁର୍ଜନ ନାଶନ ଯେ ସଜ୍ଜନ ପ୍ରତିପାଳ
ଜଗଦର୍ପ ଗଞ୍ଜା ସେ ଅଟଇ ମହାବଳୀ ।୧୯୫।

---

୧୮୪ । ପାଯ୍ୱେଡା ପାଡଣ ରାଜା କଲ୍ପକ ବନତ
ତେଜେ ହଶୁଛନ୍ତ ପାର୍ଥ ଯେହ୍ନେ ଶଚୀପତ । (୦)
୧୮୬।୨ ଦେବବାଦ୍ୟ ବାଜଇ ଦୁନ୍ଦୁଭି ଶୁଭଇ ଶଙ୍ଖଧ୍ୱନି । (କ)
୧୯୫।୨ ଯାହାକୁ ସପକ୍ଷ ହୋଇଛନ୍ତି ବନମାଳୀ । (ଖ)

ଶୁଣିଣ ସାନନ୍ଦ ଯେ ଚନ୍ଦ୍ରସେନ ନୃପତି
ଆସ୍ଥାନ ଚେଜଣ ରାଜା ଆସଇ ତତକ୍ଷଣାନ୍ତି ।୧୯୬।
ଦେଖା ଦରଶନ ଯେ ଶତେଶ୍ୱର ଧନ
ଘେନିଣ ଗ୍ରାମକୁ ଆସଇ ଚନ୍ଦ୍ରାଙ୍ଗ ସ୍ୱଜନ ।୧୯୭।
ଗ୍ରାମରେ ପ୍ରବେଶ ଯେ ହୋଇଲା ମହାରାଏ
ନୟନେ ଦେଖିଣ ଶାନ୍ତ ହୋଇଲେ ଧନୁର୍ଜୟେ ।୧୯୮।
ବିନୟ ଦେଖିଣ ଦୟା କଲେ ଫାଲଗୁନି
ମାଳା ଗୋଟିଏ ଦିଲେ ଶ୍ରୀହସ୍ତେ ତାଙ୍କୁ ଘେନି ।୧୯୯।
ରାଜସୂୟ ଯାଗ କରିବେ ଧର୍ମ ଯେ ଯୁଧିଷ୍ଠି
ପଣ୍ଡୁରାଜାର ପାତକ ଖଣ୍ଡିକେ ଅରିଷ୍ଟି ।୨୦୦।
ଲକ୍ଷେକ ନୃପତି ସମସ୍ତେ ହୋଇବେ ଯେ ରୁଣ୍ଡ
ଯେଉଂଣ ରାଜାର ସଇନ ଯେତେକ ପାଶଦଣ୍ଡ ।୨୦୧।
ଯାହାକୁ ଯେତେ ମିଳଇ ଦେଖା ଦରଶନ
ଅନରୂପେ ସମସ୍ତେ ଯେ ଯାଉଛନ୍ତି ଘେନ ।୨୦୨।
ଅକ୍ଷତ ଗୁଆ ନେଇ ଦିଲେକ ତାହାଙ୍କୁ ଶ୍ରୀହସ୍ତେ
ଯେତ୍ସକ୍ଷଣି ଦଣ୍ଡ ଘେନି ଯାଅ ଯା ବାରୁଣାବନ୍ତେ ।୨୦୩।
ଆଗ୍ୟାଂ ପ୍ରମାଣେ ସେ ବଙ୍ଗଦେଶର ଅଧିପତି
ସମଦଣ୍ଡ ଘେନି ରାଜା ବାହାର ତତକ୍ଷଣାନ୍ତି ।୨୦୪—୪୬୭୯।

———

## ମଙ୍ଗଳସେନ ରାଜା ସହ ଅର୍ଜୁନଙ୍କ ଯୁଦ୍ଧ

ଚଳଇ ଫାଲଗୁନି ଯେ ବଙ୍ଗଦେଶ ଜିଣି
ଶୀଘ୍ରେଣ ଚଳଇ ସେ ପାଣ୍ଡବ ବୀରମଣି ।୧।
କର୍ଣ୍ଣାଟ ଦେଶକୁ ବୋଲି ଥାଠ ଯେ ଚଳାଇ
ଦେବ ଦୁନ୍ଦୁଭି ବାଦ୍ୟନ୍ତ ଗହଳ ବାଜଇ ।୨।
ସିଦ୍ଧ ବଳସ୍ଥା ବୋଲିକରି ଯେତ୍ସକଇ ପରବତେ
ତତ୍ସଂ ଯାଇ ବଜୟେ କଲେ ବୀରବର ପାର୍ଥେ ।୩।

ସୂପକାରମାନନ୍ତ ଗଇଣ ସର୍ବସାରୀ
ସନ୍ୟଂଙ୍କୁ ଅନ୍ନ ହୋ ବହନ ହଅ ପରି ।୪।
ଲଗିଲେ ସୂପକାରେ ରାନ୍ଧଣା ବିଧାନେ
ଭୁଞ୍ଜନ୍ତି ସଇନମାନେ ଅନ୍ନ ଅବସରଣେ ।୫।
ଆପଣେ ମୁଣୋହ୍ନ ତହିଂ ସାରି ବୀର ଫାଲ୍‌ଗୁନ
ମଙ୍ଗଳ ଶବଦ କରି ବାହାର ହୋଇଲେ ସଇନ ।୬।
କର୍ଣ୍ଣାଟ ଦେଶରେ ଯାଇଂ ପଶିଲେ ସର୍ବଥାଠ
ମଙ୍ଗଳସେନ ବୋଲିକରି ତହିଂର ନୃପତି ଗରିଷ୍ଠ ।୭।
ଦେଶାନ୍ତରେ ଜଣାଇଲେ ଦେବ ଶୁଣିମା ମହୀପତେ୍ୟ
ପରଦେଶୀ ଆଠ ଆସି ହୋଇଲା ଉପଗତେ ।୮।
ସହସ୍ରେକ ରଥୀ ଆଜ ବେନି ସହସ୍ର ହାଥୀ
ଦଶ ସହସ୍ର ଅଶ୍ୱ ତିନି ଅକ୍ଷଉଣୀ ପାଦାନ୍ତି ।୯।
ବୀର ମର୍ଦ୍ଦଳ ବଜଘୋଷ ହାଉଣ୍ତି ଦୁନ୍ଦୁଭି
ଘୋର ଶବଦରେ ଦେବ କମ୍ପୁଅଛି ଭୁବ ।୧୦।
ପରରାଷ୍ଟ୍ର ଭୁବକ ଯେ ଅଟଇ ଅଭୟା
ବଡ଼ାଇ ବଳବନ୍ତା ଯୋଦ୍ଧା ଦେବ ଅଟଇ ମହାକାୟା ।୧୧।
କି ଅବା ଅଙ୍ଗାରପନ୍ନଗ କରଇ ହଗବଜେ
ଦେବ ଦୁନ୍ଦୁଭି ଯେ ଗହଳ ଘୋରବାଦ୍ୟ ବାଜେ ।୧୨।
ଚରଗଣ ଅଭିମୁଖେ ରାଜା ପାଇଣ ବାରତା
ଅଧର ସ୍ପୃଷ୍ଟ କରିଣ ଗର୍ଜି ଉଠିଲା ନରନାଥ ।୧୩।
ପ୍ରତିଜ୍ଞାଂ କରଇ ରାଜା ଜାଣେ ହାଥ ଭରି
ଆରେ ଯେ ଉତ୍ତର କୋଶଳେ ମୋତେ କେହ୍ନ ଅଛଇ ସମସରି ।୧୪।
ଯଦ୍ୟପି ହୋଇବେ ଆଜ ବ୍ରହ୍ମା ଇନ୍ଦ୍ର ରୁଦ୍ର ଦଇବତ
ସଞ୍ଚେ ମୃତ୍ୟୁ ଚାକ୍ରେ ହୋଇବ ପରାପତ ।୧୫।
ବହୁତ ପ୍ରତିଜ୍ଞାଂ କଲାକ କର୍ଣ୍ଣାଟ ନୃପତି
ସାଜରେ ସନ୍ୟ ମୋହୋର ରଥ ଗଜ ଅଶ୍ୱ ପାଦାନ୍ତି ।୧୬।
ସମଦଣ୍ଡେ ଥାଠଇଂ ମଙ୍ଗଳସେନ ସାଜି
ରଥରେ ଯୋଚିଲା ନେଇ ଶତେକ ବୈଶାଖ ବାଜୀ ।୧୭।

ବହୁତ ସନ୍ୟ ତାହାର କେ ପାରିବ ପରକଳି
ଆକାଶେ ବ୍ୟାପିଲା ଛତ୍ରୀଂକର ପାଦଧୂଳି ।୧୮।
ବହୁତ ବଳ ଚଞ୍ଚଳ ସେ କ୍ଷତ୍ରିୟ ସର୍ବବୀର
ମେଦିନୀ ନ ସହଇ ସେ ତାହାଂକର ପାଦଭାର ।୧୯।
ପଞ୍ଚାଶ ମର୍କ୍ତ ରଥ ପଞ୍ଚାଶ ମେବଛ ହାଥୀ
ତିନିପଦ୍ମ ହୟ ଯେକାଦଶ କ୍ଷଉଣୀ ପାଦାନ୍ତି ।୨୦।
ସମରେ ସଇନ ବଳ ଚଳାଇଲା ଗାଢ଼େ
ରାଜ୍ୟରୁ ବାହାର ସେ ହୋଇଲା ତଡବଢେ ।୨୧।
ଯେମନ୍ତର ସମୟେ ରାଜ୍ୟେ ପ୍ରବେଶ ସର୍ବସାଚୀ
ଉଡନ୍ତି ତୁରଙ୍ଗମ ଯେସନେ ଶାମଳ ପକ୍ଷୀ ।୨୨।
ଜୟ ବିଜୟେ ବୋଲି ଯେ ଅର୍ଜୁନର ବେନି ସେନାପତି
ଆଗିଆଣି ଥାଠେ ଯାଇଂ ପ୍ରବେଶ ମହାକ୍ଷତ୍ରୀ ।୨୩।
ବଡାଇ ଦୁରାପଦ ସେ ଅସମ୍ଭବ ପ୍ରତାପ୍ୟାଂ ସିନା
କାହାକୁଇଂ ସଂଗ୍ରାମେ ସେ ନ କରଇ ଗଣନା ।୨୪।
ଯୁଦ୍ଧେଣ ପ୍ରବେଶ ଆସି ହୋଇଲେ ବେନିବଳ
ସ୍ୱଥାଠ ପର ଥାଠ ହୋଇଲେ ସର୍ବଗୋଳ ।୨୫।
ବଢିଲା ସମର ଯେ ରଣରଙ୍ଗ ଭୂମି
ସମର ସମ୍ଭବେ ସେ ଠେକିଲେ ଦ୍ୱୟେ ଆଣି ।୨୬।
ବହୁତ ସମଦଣ୍ଡ ଘେନିଣ ଯନ୍ତୁଂ ବିଜୟେ ମଙ୍ଗଳସେନ
ସଇନ ଦେଖିଣ ସେ ରହିଲେ ଫାଲଗୁନ୍ୟ ।୨୭।
କରେ ଶହସ୍ତ୍ର ଧରିଣ ସେ ଗାଣ୍ଡିମ ଧାକ୍ଷାଗୁରୁ
ସଇନ ଧୁଞ୍ଚିଲେ ସେ ଆପଣେ ଶସ୍ତ୍ର ଧରୁଂ ଧରୁଂ ।୨୮।
ବିନ୍ଧଇ ନାରାଜ ସେ ପାଣ୍ଡବ ପଞ୍ଚାଳ
ଅବକ୍ଷଣେ ବିନ୍ଧଇ ସେ କ୍ଷତ୍ରିୟ ଅର୍ଗଳ ।୨୯।
ସହସ୍ରେକ ନାରାଜ ପୂରେଇ କରଇ ବୃଷ୍ଟି
ହାଥୀଂକର କୁମ୍ଭସ୍ଥଳେ ନାରାଜ ଗଲା ଫୁଟି ।୩୦।
ପଡଲେ ସଇନ ଯେ ଲେଟିଲେ ଅବକ୍ଷଣେ
ଉକଟେ କର୍ଦ୍ଦନ ହୋଇଲେ ରାଜୁତ ଯୋଦ୍ଧାମାନେ ।୩୧।

ବାଣ ବୃଷ୍ଟାତେଣ ବରଷନ୍ତି ଜାଳାବଳୀ
ହାଡ ମାଂସେ କର୍ଦ୍ଦନ ଯେ ହୋଉଛନ୍ତି ମହୀଆଳୀ ।୩୨।
ପୁଣିହିଂ ନାଗ୍ନଜେକ ବିନ୍ଧଇ ଧନୁର୍ଜ୍ୟେ
ପଡିଲେ ରଥ ଗଜ ଅଶ୍ୱ ନାଗ୍ନଜର ଘାଏ ।୩୩।
ମହାରାଗେ ନାଗ୍ନଜ ସେ ବିନ୍ଧଇ କଣ୍ଠୀ
ବାତଘାତେ ଯେସନେ ଚୂତଫଳ ପଡନ୍ତି ମହୀଲେଟି ।୩୪।
କନ୍ଧରୁ ଶିର ତୁଟି ପଡିଲେକ ମହାଯୁଦ୍ଧେ
ଖେଚର ଭୂଚର ଜାଣି ସେ ନାଚନ୍ତି କବନ୍ଧେ ।୩୫।
ଲକ୍ଷେକ ଯୋଦ୍ଧା ଘେନିଣ ସେ ଉଠିଲା ମଙ୍ଗଳସେନ
ଅନେକ ନାଗ୍ନଜ ସେହୁ କଲେକ ସନ୍ଧାନ ।୩୬।
କକଡା ମାସେ ଯେହ୍ନେ ବରଷନ୍ତି ମହାମେଘେ
ଜଳଦ ମେଦୁରେ ଯେସନେ ଉଡନ୍ତି ବଳାହକ ସାଙ୍ଗେ ।୩୭।
ନାଗ୍ନଜେ ବିମୋହିତ ହୋଇଲା ଯେ କର୍ଣ୍ଣାଟ ରାଜାର ବଳ
ରକତେ କର୍ଦ୍ଦନ ତାର ସଇନ ସକଳ ।୩୮।
ଲକ୍ଷେକ ରଥୀ ଯେ ବେନିଲକ୍ଷ ହାଥୀ
ପାଞ୍ଚଲକ୍ଷ ତୁରଙ୍ଗମ ତିନି ଷଉଣୀ ପାଦାନ୍ତି ।୩୯।
ସଇନି ପଡିଲେକ ତିନି ଯୋଜନ ପରିଯନ୍ତେ
ଦେଖିକରି ବିଷାଦ ହୋଇଲେ ମହୀପତ୍ୟେ ।୪୦।
ଭାଙ୍ଗିଲେ ସଇନ୍ୟେ ଯେ ନ ରହିଲେ ଅଗ୍ରତେ
ପଡିଲା ପଯ୍ୟୂଡ ନବ ଯୋଜନ ପରିଯନ୍ତେ ।୪୧।
ଧାଇଁଲେ ସମ୍ଭରେଣ ପଞ୍ଚାଳ ବଳ ଖେଦି
ରୋଧିରେ କର୍ଦ୍ଦନ ହୋଇଲା ବହଇ ରକତର ନଦୀ ।୪୨।
ସଂଗ୍ରାମେ ଅଗ୍ରାଂଜଯ୍ୟେ ଯହୁଂ ପାଇଲା ଅପମାନ
ଭାଂଗିଲା ଆପଣେ ଯେ ମଂଗଳସେନ ରାଜନ ।୪୩।
ଅନ୍ତରୀକ୍ଷେ ରଥ ଯେ ବାହିଲା ମାତଳି
ମଂଗଳସେନ ନୃପତିଂକ ଯାଇଂ ଧନୁର୍ଜ୍ୟେ ଉଗାଳି ।୪୪।
ରହ ରହ ମଂଗଳସେନ ପଳାଉ କାହିଂକ
ଅନେକ ପ୍ରତଗ୍ୟାଂ ଯେ କରିଥିଲୁ କେହୁ ତୋତେ ଆଜ ରଖି ।୪୫।

ସୁସ୍ୱର ବଚନେ ସମାଜଇ ସବ୍ୟସାଚୀ
ବୁଡ଼ାଇଲୁ ଘପଦ ରଜା ଶୁଣନ୍ତୁ ତୋତେ ଲକ୍ଷ୍ମୀ ।୪୬।
ଜାଗକୁ ବଧକଲୁ ଆମ୍ଭେ ରାଜସୂୟ ଯାଗ ଅର୍ଥେ
ଗୁରଗଣେ କ ନ କହିଲେ ଅର୍ଜୁନ ଦ୍ୱାରବଢ଼େ ଉତ୍ତର ପ୍ରଶସ୍ତେ ।୪୭।
ସନ୍ଦେଶ ବାରତା ଯହୁଁ ପାଇଲେ ଭୂଅପତ
ଶସ୍ତ୍ରରୁ ଆତ୍ମା ତାହାର ଶୁଣନ୍ତକ ରତ ।୪୮।
ରଥରୁ ଓହ୍ଲାଇଂପଡ଼ ମଙ୍ଗଳସେନ ପରଣାମି
ବୋଇଲେ ଦଶଦୋଷ ମୋର କ୍ଷମା କରିବାକ ଦେବସ୍ୱାମୀ ।୪୯।
ତୁ ଦେବ ରଣେ ଅଜସ୍ୱେ ଜଗତ ଜନ ଦର୍ପଗଞ୍ଜା
ରାଧାଚନ୍ଦ୍ର ଭଞ୍ଜନ ସ୍ୱାମୀ କୃତକେଶୀ ଦର୍ପଭଞ୍ଜା ।୫୦।
ସ୍ୱାମୀ ଯେ ମଧ୍ୟସ୍ୱର୍ଗେ ଯାହାର ଚରଣେ ବନ୍ଦୀ
ନ ଜାଣିମା ପଣେ ମୁଂ ତୋହ ଭୁଲେ ଦ୍ୱନ୍ଦୀ ।୫୧।
ପାଞ୍ଚାଳୀର ପ୍ରାଣଗୁରୁ ସୋଦୋଦ୍ରାର ବଲ୍ଲଭ
ଯେ ବନ୍ଧନ ଦୋଷୁଂ ମୋତେ ଉଦ୍ଧର ପାର୍ଥିବ ।୫୨।
ଶରଣ ପଞ୍ଜର ସ୍ୱାମୀ ତୁ ଜଗନ୍ନାଥଂକର ପ୍ରାଣସଖା
ଦ୍ରଶନେ ମୁକତ ପାଇଲି ବଇକୁଣ୍ଠ ମୋତେ ଦେଖା ।୫୩।
ବହୁତ ସ୍ତୁତି ବୋଲି ସେ ମଙ୍ଗଳସେନ ବନୋଷ୍ଟୀ
ଶତେ ସହସ୍ର ପ୍ରଣପତ୍ୟ ଶୁଣନ୍ତେ ଦଣ୍ଡଲଇ ।୫୪।
ଶ୍ରୀହସ୍ତେ ଅକ୍ଷତ ଗୁଆ ତାକୁ ଦେଲକ ସବ୍ୟସାଚୀ
ଅଗ୍ୟାନେ ଅପ୍ରାଧ ଦୋଷକଲେ ତହିଂକ କୋପ ନାହିଂ କହୁ ।୫୫।
ଯଦ୍ୟପି ମୂର୍ଖଜନେ ହୋଇବେ ଦ୍ୱନ୍ଦକାରୀ
ପଣ୍ଡିତ ଜନେ କ ତହିଂ ଯିବେ ଅପସରି ।୫୬।
ଯଦ୍ୟପି ମୂର୍ଖେ ଅବା କରିବେ ଦୋଷ ଇଚ୍ଛା
ପଣ୍ଡିତ ଜନେ ତାହା କରିବେ ଉପେକ୍ଷା ।୫୭।

---

୪୭।୧ ରାଜ୍ୟକୁ ଅଇଲୁ ତୋହୋର ରାଜସୂୟ ଯାଗ ଅର୍ଥେ । (କ,ଛ)
୫୦।୧ ତୁ ଦେବ ରଣେ ଅଜସ୍ୱେ ଯମ ଦର୍ପ ଗଞ୍ଜା । (ୱ,ନ,ଛ)
୫୧।୧ ଯାହାକୁ ଯାହା ଦେବ ଅଛଇ ଗୋବନ୍ଦ । (ଡ)

ମୂର୍ଖଜନେ ପାତେକ ଅର୍ଜିବେ ଯେବେ ଅଗ୍ୟାନେଣ
ତାହାନ୍ତ ତାରବେନା ପଣ୍ଡିତ ଜନମାନ ।୫୮।
ଭୁବ୍ବ ମନେ ଭ୍ରାନ୍ତ ଆଜ ନ କର କଣ୍ଟ ରଜା
ଥାଠ ସନ୍ୟ ଘେନ ତୁ ଯେବେ ବାରୁଣାବନ୍ତକଇଂ ଯାଅ ଯା ।୫୯।
ଅର୍ଜୁନର ବଚନେ ତାର ଫିଟିଲା ମନଭ୍ରାନ୍ତ
ସମଦଣ୍ଡ ଘେନ ରଜା ବାହାର ତତକ୍ଷଣାନ୍ତ ।୬୦।
ତହୁଂ ବାହାର ହୋଇ ଯେ ଚଳଇ ଅରଜୁନ
କାଶୀପୁରେ ପ୍ରବେଶ କାର୍ତ୍ତିକ ଶୁକ୍ଳ ପଉର୍ଣ୍ଣମୀର ଦିନ ।୬୧।
ସେ ସ୍ଥାନେ ଗୋପ୍ୟାନ ଭଗୀରଥି ଘାଟ ମଣି ଯେ କର୍ଣ୍ଣିକା
ଦଇବେ ପୂଣ୍ୟ ସେ ଆ କା ମା ବୈ ଯେତ୍କା ।୬୨।
ସ୍ନାହାନ ତର୍ପଣ ତହିଂ ସାରଲେ ବୀର ପାଥ
ଚିନ୍ତାମଣି ନାଥ ସେ ଦେଖନ୍ତ ବିଶ୍ବନାଥ ।୬୩।
ନମସ୍ତେ ତ୍ରିଲୋଚନ ପଞ୍ଚୁବକ୍ତ ଇବ
ନମସ୍ତେ ବିରୁପାକ୍ଷ ଦେବ ବିରୂପ ସଦାଶିବ ।୬୪।
ନମସ୍ତେ ଧୂର୍ଜଟି ଦେବ ସୁନ୍ଦର ତ୍ରିଯମ୍ବକ
ନମସ୍ତେ ବିଶ୍ବନାଥ ଦେବ ଅନାସ୍ତର ଲୋକ ।୬୫।
ନମସ୍ତେ ସୁତଳ ନାଥ ଆସନ ବୃଷଭ
ନମସ୍ତେ ନମସ୍ତେ ଦେବ ପାର୍ବତୀର ବଲ୍ଲଭ ।୬୬।
ନମସ୍ତେ ତ୍ରିପୁର ଅନ୍ଧକ ଦର୍ପ ଗଞ୍ଜା
ନମସ୍ତେ ମହାଦେବ ଅନଙ୍ଗ ବପୁ ଭଞ୍ଜା ।୬୭।
ନମସ୍ତେ ପଞ୍ଚଦଶ ଲୋଚନ ଯାହାର ପ୍ରଳୟ ଅନଳ
ନମସ୍ତେ ଜଳଦ ମାଳ ଯାହାର ପଞ୍ଚଦଶ ଡୋଳ ।୬୮।
ନମସ୍ତେ ନମସ୍ତେ ଉମାର ବଲ୍ଲଭ ସୋତଳ
ନମସ୍ତେ ନମସ୍ତେ ସଦାଶିବ ଭକ୍ଷିଲୁ ଗରଳ ।୬୯।
ନମସ୍ତେ ନମସ୍ତେ ସଦାନନ୍ଦ ପୂରଅ ମନବାଞ୍ଛା
ନମସ୍ତେ ନମସ୍ତେ ସଦାନନ୍ଦ କର ମୋତେ ରକ୍ଷା ।୭୦।
ନମସ୍ତେ ନମସ୍ତେ ହେମବନ୍ତ ମଣ୍ଡଣ ବିଶ୍ବନାଥ ସଦାକାଶୀ
ନମସ୍ତେ ନମସ୍ତେ ଦେବ ବିଶ୍ବନାଥ ବିଶ୍ବବାସୀ ।୭୧।

*

ନମସ୍ତେ ନମସ୍ତେ ସଦାନନ୍ଦ ଶୋଭିତ ଖଟ୍ୱାଙ୍ଗ
ନମସ୍ତେ ନମସ୍ତେ ଗଉରୀବଲ୍ଲଭ ଶୁକ୍ଳାଙ୍ଗ ।୭୨।
ନମସ୍ତେ ଅର୍ଦ୍ଧାଙ୍ଗ ଭବାନୀ ଶଇଳଜା
ନମସ୍ତେ ଶାସେକ ପୁରୁଷ ତୁ ସୋମନାଥ ଦେବରାଜା ।୭୩।
ନମସ୍ତେ ଆଦ୍ୟ ଇଶାନ ତୁ ଜଗତଜନ ଦୀକ୍ଷାଗୁରୁ
ନମସ୍ତେ ଆଦ୍ୟ ଇଶାନ ତୁ ଭଗତଜନ ତାରୁ ।୭୪।
ନମସ୍ତେ ସଦାଶିବ ତୁ ମହାଲିଙ୍ଗ ଗୋଟା
ନମସ୍ତେ ମହେଶ୍ୱର ତୁ ଗଉରୀ ଆଖିଫୁଟା ।୭୫।
ଅର୍ଜୁନର ମୁଖୁଂ ଯେସନେକ ବାକ୍ୟ ଶୁଣି
ଲିଙ୍ଗ ବିଦାରି ବାହାର ହେଲେ ଶୂଳପାଣି ।୭୬।
ଟହ ଟହ ନାଦରେ ହସିଲେ ବିଶ୍ୱନାଥେ
ଗଉରୀ ଆଖିଫୁଟା ମୋତେ ବୋଇଲୁ କିସ ଅର୍ଥେ ।୭୭।
କରପଦ୍ମ ଯୋଡ଼ିଣ ଯେ ବୋଲଇ ଧନୁର୍ଦ୍ଧର୍ଯ୍ୟେ
କୋପ ନ କଲେ ମୁଂ କହି ପାରଇ ଦେବରାୟେ ।୭୮।
ସଦାଶିବ ବୋଇଲେ ଯେବେ ପାଇବା ସରୂପ
ନିରୁତାନ୍ତ କଥା କହେ ନ କରିବାକ କୋପ ।୭୯।
ଅର୍ଜୁନ ବୋଇଲେ ପ୍ରଥମ ଅବତାରେ ଦେବୀ ଉମା
ଦକ୍ଷରି ହିଂସାସେ ଦହନ ହୋଇଲା ତୋହୋର ବାମା ।୮୦।
ସେ ମାହେଶ୍ୱରୀ ଯେ ଦୁଅଇ ଅବତାରେ
ହିମବନ୍ତେ ଉପୁଜିଲେ ସେ ଶଇଳ ରାଜାଘରେ ।୮୧।
ଦେଖିଣ ସାନନ୍ଦ ହୋଇଲେ ଶଇଳ ରାଜା
ସେ ଦେବୀର ନାମ ତହୁଂ ହୋଇଲେ ଯେ ଗିରିଜା ।୮୨।
ବାଳୁତ କାଳେ ପିତାର ଘରେ ଖେଳଇ କୁମାରୀ
ଆକାଶ ଗଙ୍ଗା କୂଳେ ଖେଳେ ଗୃହବାସ କରି ।୮୩।
ସ୍ୱାମୀ ଦିଗାମ୍ବର ପୁରୁଷ ତୁ ବୁଲନ୍ତେ ତାହା ଦେଖି
ଉମାର ସରୂପ ଯେ ଦେଖି ଚହଲିଲା ତୋର ଆଖି ।୮୪।
ସେ ଧୂଳିଘରେ ଧୂଳିଭାତ ଧୂଳି ତିଅଣ ରାନ୍ଧଣା କରି ଖେଳି
ତୁ ତହିଂକି ରୂପେକ ଦେବ ଧଇଲୁ କୁଆଁଳି ।୮୫।

ତାହାଂକ ସରୂପେ ତୁ ହୋଇଲୁ ବାଳୁତ ଯଣ୍ଡଗୋଟି
ଡମ୍ବରୁ ବାଦ୍ୟ ଦେବ କଲୁତ ଧୂର୍ଜଟି ।୮୬।
ସ୍ୱାମୀ ବିଭୂତି ଲେପନ ମାଥେ ଅକଳିତ ଜଟା
ଲଲାଟେ ଗୁଂଜରା ସୀମନ୍ତିନୀ ପିନ୍ଧଣ ଅନନ୍ତ ନାଗଗୋଠା ।୮୭।
ଶୁକଳ ଗରଗଡ଼ ଗଳାରେ ସର୍ପହାଡ଼ ମାଳ
ଯାମଳା ଲଉଡ଼ୁମ୍ବା ତ୍ରିଶୂଳ କରେଣ କପାଳୀ ।୮୮।
ସ୍ୱାମୀ ଡବ ଡବ ଡମ୍ବରୁ ବଜାଇଲୁ ଡାକ
ସେ କୁମାରୀମାନେ ଯେ ହସିଲେ ତୋତେ ଦେଖି ।୮୯।
ଦେଖିଣ ଉପହାସ କଲେକ ସର୍ବବାଳୀ
ମିଛୁକା ଖେଳଘରକୁ ଗୋ ସତକା କୁଆଂଳ ।୯୦।
ଭାଳନ୍ତି କୁଆଂରୀମାନେ କସ ଆମ୍ଭେ ଦେବା
ଭିକ୍ଷାହିଂ ଯେବେ ନାହିଂ ଆସ ଯାଇଂ ତ ବୋଲିବା ।୯୧।
ହସିଣ ଗଉରୀ ଯେ ବୋଇଲେ କୁତୂହଳେ
ଧାନ ଚାଉଳ ଅଛି କ ଆମ୍ଭର କ ଦେବୁ ହୋ ରାଉଳେ ।୯୨।
କୁଆଂଳ ସରୂପ ଭିକ୍ଷା ନ ପାଇ ହୋନ୍ତି ରାଗୀ
ଡମ୍ବରୁ ବଜାଇ ମୁହଂକୁ ହଲାଇ ପରମ ଯୋଗୀ ।୯୩।
ସ୍ୱାମୀ ଅପୂର୍ବ ପ୍ରାୟେ କରି ଗଉରୀ ତୋତେ ଦେଖି
ସେ ଡମ୍ବରୁ ବଜାନ୍ତେ ଗଣ୍ଡିଗୋଟି ବାଜଲା ଗଉରୀର ବାମ ଆଖି ।୯୪।
ସ୍ୱାମୀ ଡାକ ଗଣ୍ଡିଗୋଟି ମାଇଲୁ ନେଇ ପରିହାସ କରି
ତେଣୁ କରି ବାମ ଚକ୍ଷୁ ଟେରା ଯେ ହୋଇଲେ ଗଉରୀ ।୯୫।
ସ୍ୱାମୀ ତୁକ ନ ଜାଣୁ ଯ୍ୟେ କଥା ଯୁଗତେ
ଭୋଳାନାଥ ପୁରୁଷ ତୁ ପାଶୋରିଲୁ ଅବା ବିଶ୍ୱନାଥେ ।୯୬।
ଅର୍ଜୁନର ମୁଖୁଂ ଯ୍ୟେସନେକ ବାକ୍ୟ ଶୁଣି
ପାର୍ବତୀର ବଦନକୁ ଚାହିଂଲେ ଶୂଳପାଣି ।୯୭।

---

୮୬।୧ ସ୍ୱାମୀ ବିଭୂତି ଲେପନ ମାଥେ ଅଖିଳ ଜଟା । (ଙ,ଡ)
୮୬।୧ ସ୍ୱାମୀ ବିଭୂତି ଲେପନ ମାଥେ ଅଲେଖ ଜଟା । (କ,ଥ,ଘ)
୮୬।୨ ଲଲାଟେ ଗୁଞ୍ଜରା ସୀମନ୍ତିନୀ ପିନ୍ଧଣ ଲଙ୍ଗଟା । (ଜ,ଝ,ଥ)

ଯାହା ସେ ପ୍ରସ୍ତାବେଣ ବୋଇଲା ଅର୍ଜୁନ
ସରୂପ କ ଗଉରୀ ଗୋ ହୋଇବୁ ଯେସନେକ ବଚନ ।୯୮।
ପାର୍ବତୀ ବୋଇଲେ ସ୍ୱାମୀ ଅର୍ଜୁନ ଯୋଗଭୋଗୀ
ନାରାୟଣଂକ ଆତ୍ମାୟେ ସେ ଅଟଇ ମହାଯୋଗୀ ।୯୯।
ଯଥାର୍ଥ ସରୂପ ସ୍ୱାମୀ ଅଟଇ ଯେତୁ କଥା
ଅର୍ଜୁନ କହିଲା ଯାହା ସେ ସରୂପ ବାରତା ।୧୦୦।
ଗିରିଜାର ମୁଖୁଂ ଯେସନେକ ବାକ୍ୟ ଶୁଣି
ସଦୟେ ସାନନ୍ଦେ ଅର୍ଜୁନକୁ ଭଜିଲେ ଶୂଳପାଣି ।୧୦୧।
ଧନ୍ୟ ଧନ୍ୟ ପାଣ୍ଡବରେ ଜୀବନ ତୋର ସାଧୁ
ଆଇଷ ଯେଣ୍ଣ ବ୍ରତ ଲକ୍ଷ୍ମୀ ନ ଗୁଣ୍ଡୁ ତୋର କନ୍ଧୁ ।୧୦୨।
ସଦାଶିବ ପଦ୍ମପାଦେ ଅର୍ଜୁନ ବହୁତ ବିନୟେ
ଅନୁଭବ ନାଥ ମୋତେ କରିବା ସଦୟେ ।୧୦୩।
ଶରଣ ଉଦ୍ଧାରଣ ତୁ ଗଉରୀ ବଲ୍ଲଭ
ପ୍ରସନ୍ନେ ପରମବନ୍ଧୁ ଜୟ ତୁ ସଦାଶିବ ।୧୦୪।
ଯୋଗବଳ ଧାରଣ ତୁ ପର ଦୁଖେଣ ଦୁଖୀ
ଯେ ତୋତେ ସେବା କରଇ ସେ ଅନେକ ଭୋଗ ସୁଖୀ ।୧୦୫।
ସ୍ୱାମୀ ସେବକ ଲୋକନ୍ତ ତୁ ମାହେଶ୍ୱର ପଦ ଦେଇ
ଆପଣେ ବୁଲୁଅଛୁ ଦିଗମ୍ବର ହୋଇ ।୧୦୬।
ସ୍ୱାମୀ ହସ୍ତୀ ଛତ୍ର ସିଂହାସନ ତୋର ସେବକ ଲୋକଂକୁ
ବୃଦ୍ଧ ବଇଲ ଗୋଷ୍ଠୀ ଦେବ ବାହାନ ହୋଇଲା ତୁକୁ ।୧୦୭।
ହାଡ଼ମାଳା କଂକାଳ ଆଭରଣ ହୃଦୟର
ସେବକମାନଂକୁ ଦେଉ ରତ୍ନ ନଉସର ।୧୦୮।
ସ୍ୱାମୀ ଦେବତାମାନଂକର ମଧ୍ୟେ ଜୀବନ ତୋର ସାଧୁ
ପର ଦୁଖେ କାତର ତୁ ପରଲୋକେ ବନ୍ଧୁ ।୧୦୯।
ସ୍ୱାମୀ ବାରଣାସୀ ପୁରେ ଶ୍ରୀ ବିଶ୍ୱନାଥ ଦେବା
ତବ ଚରଣେ ମୋହୋର ସ୍ୱାମୀ ଜନ୍ମେ ଜନ୍ମେ ସେବା ।୧୧୦।
ସ୍ୱାମୀ ବ୍ରହ୍ମହତ୍ୟା ବିମୋଚନ ହୋଇଲା ଯେଉଣ ତୀର୍ଥେ
ତହିଂ ମେ ହୋର ପଞ୍ଚଭୂତ ଆତ୍ମା ନିମଜ୍ଜୁ ଅନୁବ୍ରତେ ।୧୧୧।
ଶ୍ରୀ ବିଶ୍ୱନାଥ ଦେବଂକ ଚରଣେ ମୋର ସେବା
ଶୂଦ୍ରମୁନି ସାରଳା ଦାସକୁ କାଶୀପୁରେ ଠାବ ଦେବା

—— ——

।୧୧୨—୪୩୯୧।

## ଅର୍ଜ୍ଜୁନର କ୍ଷେତ୍ରପାଳ ନୃପତିଙ୍କ ନିମନ୍ତ୍ରଣ, ମାହେଶ୍ୱର ରାଜା ସହ ଯୁଦ୍ଧ

ଅର୍ଜ୍ଜୁନ ବଚନ ଶୁଣି ତୋଷ ଦେବରାୟେ
ବୋଲେଣ ପାର୍ଥଙ୍କଇଂ ସେ ଅଭୟ ବର ଦିଏ ।୧।
ଅନେକ ମନ୍ତ୍ର ବିଦ୍ୟା ଦିଲେକ ଈଶାନ
ସାନନ୍ଦେ ଘେନିଲେ ତାହା କୋଇନ୍ତାଂକର ନନ୍ଦନ ।୨।
ସଦାଶିବ ବୋଇଲେ ସମସ୍ତ କାର୍ଯ୍ୟ ସୁବିଧାନ ହୋଉ ରେ ବାବୁ
ରାଜସୂୟ ଯାଗ ସଭାକଇଂ ଆମ୍ଭେ ଶିବଗଣ ଘେନି ଯିବୁଂ ।୩।
ବାରଣାସୀ ପୁରେ ସେ କ୍ଷେତ୍ରପାଳ ନୃପତି
ଅନେକ ସମ୍ଭ୍ରରେ ବିଜେକରି ଆସଇ କାଶୀଶ୍ୱରର ନାଥ ।୪।
ଅକ୍ଷତ ଯୋଗାଡ଼ ତାହାକଇଂ ଦିଲେକ ଧନୁର୍ଜ୍ଜୟେ
ସମଦଣ୍ଡ ଘେନି ଚଳ ହୋ ରାଜସୂୟ ଯାଗ ସଭାଏ ।୫।
ଉତ୍ତର ଦିଗେଣ ବାରୁଣାବନ୍ତ ପ୍ରଶସ୍ତେ
ମୋହୋର ଯିବାଯାଏ ରୁଣ୍ଡ ତହିଂ ହୋଇଥିବଟି ସମସ୍ତେ ।୬।
ଆହେ। କ୍ଷେତ୍ରପାଳ ତୁମ୍ଭର ଯେତେ ଥାଟ ସଇନ
ପେସ୍ତାକ୍ଷଣି ବାହାର ହୋ ଆହେ। ଦେଖା ଦରଶନ ଧନ ଘେନି ।୭।
ଶୁଣିଣ ନୃପତି ସେ କରଇ ଦଇନ
ଅର୍ଜ୍ଜୁନର ବଚନେ ସଜ କଲ୍ଲକ ସଇନ ।୮।
ପାର୍ଥର ବଚନେ ସେ କ୍ଷେତ୍ରାଧି ଅଧିପତି
ସମଦଣ୍ଡ ଘେନି ରାଜା ବାହାର ତତକ୍ଷଣାନ୍ତ ।୯।
କାଶୀପୁର ପ୍ରଦକ୍ଷଣ କରି ଚଳଇ ଅର୍ଜ୍ଜୁନ
ଯମୁନା ପୁରେ ଯାଇଂ ପ୍ରବେଶ ହୋଇଲେ ବହନ ।୧୦।
ସେ ଯମୁନା ପୁରେ ରାଜା ମାହେଶ୍ୱର ନୃପତି
ସେ ପୁରେ ପ୍ରବେଶ ଯାଇଂ ବିଶିବ୍ରୀର୍ଯ୍ୟର ନାଥ ।୧୧।
ପାଟଛତ୍ର ଉଦଣ୍ଡ ଆଲମ୍ବ ଉଡ଼ଇ ସେ୍କଲକ୍ଷୀ
କନକବନ୍ଧା ଶୁଆ ମୟୂର ଝାଲ ପକ୍ଷୀ ।୧୨।
ଅଷ୍ଟରତ୍ନରେ ଖଞ୍ଜଣୀ ଅଛି ଯେଉଂଣ ରଥ ମଣ୍ଡି
ବାଜନ୍ତ ବଜ୍ରଘୋଷ ଦେବ ଦୁନ୍ଦୁଭି ଦାଉଣ୍ଡି ।୧୩।

ରାଜ୍ୟ ପଶନ୍ତେଣ ଉଗାଳିଲେ ଆସି କଟୁଆଳ
ଗୃହଶତ ଯୋଦ୍ଧାଏ ଅମନାତ୍ୟ ମହାବଳ ।୧୪।
ତର୍ଜନ୍ତି ଗର୍ଜନ୍ତି ସେ ବାବନ୍ତି ଗାଲତୂରି
ବଜାନ୍ତି ସିଂହନାଦ କରେ ଅସିପଣ ଧରି ।୧୫।
କାହାଂର ସନ୍ୟ ଆସି ରେ ପଶ ନିଶାକାଳେ
ମରଣକଇଂ ଇଚ୍ଛା କଲ ରେ ପାମର ଦୁଷ୍ଟବଳେ ।୧୬।
ନଶନ୍ତି କାଳକୁ ରେ ବିପରୀତ ବୁଦ୍ଧି
କାଲବନ୍ଧେ କାହାଂ ରେ ବାନ୍ଧବ ବାରିନିଧି ।୧୭।
ନ ଜାଣ କରେ ଯମୁନା ଯେ ମହାନଗ୍ର ବୋଲ
ନିଂପତ୍ରର କଂପା ରେ ରାଜ୍ୟରେ ପଶୁଅଛ ପେଲ ।୧୮।
ରେ ରେ କାର ଶବଦେ ପାରୁଛନ୍ତି କୁରୁଳ
ଧାଇଁ ଲଗିଲେ ଅନେକ କୁଟ ବଚନ ବୋଲ ।୧୯।
ଅର୍ଜ୍ଜୁନର ଥାଠେ ଆଗିଆଣି ଜୟେ ବିଜୟେ ସେନାପତି
କୃତାନ୍ତେକ ଜାଣି ହଶଇ ଦୁହାଂକର ମୂର୍ତ୍ତି ।୨୦।
ହାଥେ ବେନି ବେନି ଗଦା ଢେନିଣ ଛୁରୀ ବେନି
ମହୀ ହାନ୍ଦୋଳ ହୋଉଅଛୁ ମୁଖରବ ଧ୍ୱନି ।୨୧।
ଗଦା ବୁଲାଇ କରି ରଥୁଂ ପଡ଼ଲେ ସେ ଡେଇଂ
ପିଟିଲେ କୋପାନଳେ ସେ ଗଦାନ୍ତି ବୁଲାଇ ।୨୨।
ବିଂଶଷେ ଅନ୍ଧକାରେ ସେ ରଥୟେଣୀ ପାହାନ୍ତି
ଗୋଡ଼ାଇ କଟୁଆଳନ୍ତି ମାଇଲେ ବିକୋଡ଼ି ।୨୩।
ଚଳାଇ ବୋବ ହଲେ ଜୟେଦାସ ମନ୍ତ୍ରୀ ଦ୍ୱାରେ
ଅଦଭୁତ ଯୋଦ୍ଧାଏ ଆସି କାହୁଂ ପଶିଲେ ରାଜ୍ୟରେ ।୨୪।
ନଗ୍ରରେ ପଶନ୍ତେ ଆମ୍ଭେ ପଥ ଯେ ନିରୋଧି
ଅଣ ଉପ୍ରୋଧି ଦେବ ସେ ନିଠାଇ ଶର ବନ୍ଧ ।୨୫।
ରାସକାଳେ ମହାଗୋଳ ଶୁଣିଣ ଶବଦ
ଧାଡ଼କାରେ ବାହାର ହୋଇଲେ ରାଜଇନ୍ଦ୍ର ।୨୬।
ମନ୍ତ୍ରୀ ପାତ୍ର ଅମନାତ୍ୟ ଯେ ସାମନ୍ତେ
ଅସମ୍ଭାଳେ ଧାମନ୍ତି ଆରୋହି ନୁଆରନ୍ତି ବାହାନ ସହିତେ ।୨୭।

କରେଣ କରବାଳ ସେ କୋନ୍ତ ଖଣ୍ଡଗ ଜାଠି
ଗୁରୁଜ ମୁଦୁଗର ଧନୁ ହୋଣ ଯେ ଶକତ୍ତ ।୨୮।
ବେଗ ବେଗ ଅଶ୍ୱନ୍ତ ସାଜନ୍ତ ବାରୁଆଳେ
କାଦମ୍ୱରୀ ପାନେ ଖେଳ କେଶବାସ ଅସମ୍ଭାଳେ ।୨୯।
ଗଜ ନାୟେକମାନେ ସାଜନ୍ତ ମତ୍ତହାଥୀ
କରେଣ ଅଂକୁଶ ଘେନି ଗଜନ୍ତ ଉଭାରନ୍ତ ।୩୦।
କଟକେ ଘଣନ୍ତେ ଯାଇଂ ସମସ୍ତେ ଓଗାଳ
ସେନାନ୍ତ ରୁହାଇ ଅର୍ଜୁନ ମନେ ଭାଳ ।୩୧।
ଆହୋ ପୃଥ୍ୱୀଠାରେ ରହ ତୁମ୍ଭେ ସେନାସ୍ୟେ ଲୋଟି ହୋଇ
ରଯ୍ୟଣୀ ପାହିବା ଯାଏଂ ହନ୍ଦ ନ କର କେହି ।୩୨।
ରାହିକାଳେ ସନ୍ୟ ମଧ୍ୟେ ହେବ ମହାଗୋଳ
ସ୍ଥିର ହୋଇ ରହ ବାବୁରେ କୋପନ୍ତ ଫଣ୍ଡର ।୩୩।
ଆମ୍ଭେ ଭଗବନ୍ତେ କରନ୍ତୁଂ ରାଜସୂୟ ଯାଗ ଅର୍ଥେ
ପିତାର ବ୍ରହ୍ମହତ୍ୟା ଦୋଷ କ୍ଷୟାନ୍ତ ନିମନ୍ତେ ।୩୪।
ଆହୋ ଧର୍ମ ଅର୍ଜ୍ଜୁନ ଆସି କଂପେ କରିବାଟି ପାପ
ହତ୍ୟା ବିବାଦୀ ହୋଇଲେ ସରଇ ସର୍ବ ତପ ।୩୫।
ଧର୍ମ ବିଗ୍ରହ ରୁହାଇଲେ ଆପଣାର ଥାଠ
ମାହେଶ୍ୱର ରାଜାର ସଇନି ଯାଇଂ ହୋଇଲେକ ଭେଟ ।୩୬।
ଅନେକ ପ୍ରତାପ୍ୟାଂ କରନ୍ତ ବୀରେ ହାକ
ବାନ୍ଧଲେ ନାରାଜ ଯେ ପରଦେଶୀ ଥାଠ ଦେଖି ।୩୭।
କାହିଂର ରେ ଥାଠ ତୁମ୍ଭେ ଆସି ପଶିଲ ଅନିମିତେ
ଯାହାର ଭୟେ ହେଲ ଘେନଇ ହେମାଂଚଳ ପର୍ଯ୍ୟନ୍ତେ ।୩୮।
ଶୁଣିଲ ନାହିଂ କ ମହାନଗ୍ର ଯମୁନାପୁର ଅଧିକାରୀ
ଚତୁର୍ଦ୍ଦିଗ ରାଜାୟେ ଯାହାର କୋପକୁ ଭୟେ କରି ।୩୯।
ସଦାଶିବର ପ୍ରସନ୍ନେ ମାହେଶ୍ୱର ଯାହାର ନାମ
କଞ୍ଚିତ ଭାବେ ସେ ସାଧିଲ ରାଜଧର୍ମ ।୪୦।
ଶୂଳଶ ସହସ୍ର ରାଜାଂକ ଉପରେ ଯେ ମଣ୍ଡଳମଣି
ଉତ୍ତର ଦିଗରେ ପ୍ରତାପ୍ୟାଂ ଯାହାର ଯେ ଭଣି ।୪୧।

କେବଣ ଭାବରେ ପଶିଲ ଆସି ହୁଡ
ଜୀବନେ କାର୍ଯ୍ୟ ଥିଲେ ଯାଅ ଯା ବାହୁଡ ।୪୨।
ଅନେକ ପ୍ରତଗ୍ୟାଂ ସେ କରନ୍ତି ଅନର୍ଥ୍ୟାପେ
କେତେହେଂ ସଂଖ୍ୟା କରିବା ଶାହାସ୍ର ସଂତପେ ।୪୩।
ଅନେକ ପହ୍ନଜ ସେତୁ କରନ୍ତି ମତ୍ତିରେ
ସହି ନୁଆରଣ ସେ ଗର୍ଜନ୍ତି ସଙ୍ଗାତରେ ।୪୪।
ଅର୍ଜୁନ ବୋଇଲ ହୋ ସହିଥାଅ ବାଜିଯେ
ରଯ୍ନଣୀ ପ୍ରସର ହେଉ ଅରୁଣ ଉଦୟ ଯାଯେ ।୪୫।
ବୁଝିବା ପ୍ରତଗ୍ୟାଂ ଆଜ ରଯ୍ନଣୀ ପାହିଲେ
ଫଳ ଶ୍ରୁତି ହୋଅଇ କ ପୁଟକ ବଦ୍ୟା କହିଲେ ।୪୬।
ଅନେକ ଘୋର ଅନ୍ଧକାରେ ଅନେକ ତୁଷାର
ଭାନୁ ଉଦେ ହୋଇଲେ କିସ କରିବ ତାହା ଗ୍ଭର ।୪୭।
ବହୁତ ସର୍ପେ ଯେ ଗର୍ଜୁ ଥାନ୍ତି ଫେରୁ ଧରି
ଖଗେଶ୍ୱର ଦୃଶନେ ତାହା ପାଇ କାହିଂ ଲେଉ ।୪୮।
ଆହୋ ଅମାପତ ବଳ ଥାଠ ବେଢିଲେ ସଇନ
ବନ୍ଧନ୍ତି ଅବକ୍ଷଣେ ନାଗ୍ରଜ କରେ ଘେନ ।୪୯।
ଅର୍ଜୁନ ସଇନ ସର ଫଳା ଆଡଣ ଦେଇ
ବଞ୍ଚାବନ୍ତି ନାଗ୍ରଜ ବସିଣ ଚୂନ ହୋଇ ।୫୦।
ବନ୍ଧନ୍ତି ସଇନ ଯେ ଅନେକ ଶରଘାଯେ
ଘଗ ସହି ନୁଆରଲେ ଜଯେ ଯେ ବଜଯେ ।୫୧।
ଘସ ବେନଘଡ ଥାଉଂ ଡାକ ଦ୍ୱଲେ ସଇନ
ସମସ୍ତେ ଶରଘାତି ହୋଇଲୁଂ ଯେ ରଖ ରଖ ହୋ ଫାଲଗୁନୀ।୫୨।
ବକଲେ ସଇନ ଯହୁଂ ଫୁକାରଲେ ନିରମାଖି
ଜଯେ ବଜଯେ ସେନାପତ ନୁଆରଲେ କଷ୍ଟ ଦେଖି ।୫୩।
ଅର୍ଜୁନ ବଚନ ଯହୁଂ କଲେକ ଅବଗ୍ୟାଂ
ଗର୍ଜିଣ ଉଠିଲେ ବୀରେ ଦୁସହ ପ୍ରତଗ୍ୟାଂ ।୫୪।
ଗଦାନ୍ତି ବୁଲଇଣ କୋପେ ନେଇ ପିଟି
ଭାଂଜଲ ଗଜ କୁମ୍ଭସ୍ଥଳ ଯେ ପଡଲେ ମହୀଲୋଟି ।୫୫।

ଧରଣ ବୁଲବନ୍ତ ହାଥୀଂକର ଥୋରହସ୍ତ
ଆଛେଷି କଶୃଡଲେ କି ଜାଣି ବଜ୍ରାଘାତ ।୫୬।
ପଡ଼ି ଚୂର ହୁଅନ୍ତି ଗଡ଼ତେ ତାଡ଼େଣୀ ବଜ୍ରସେହ୍ନା
ରଥ ଗଜ ଅଶ୍ୱ ପଡ଼ନ୍ତ ହୋଅନ୍ତି ସର୍ବ ଚୂନା ।୫୭।
ମହାତେଜ ବଳବନ୍ତା ସେ ଉଠିଲେ ଗଳଗାଜ
ମାହେଶ୍ୱର ରାଜାର ସଇନ ପଳାଇଲେ ସର୍ବ ଭାଂଜ ।୫୮।
ସାଂଗ୍ରାମେଣ ବିମୁଖ ହୋଇ ଅର୍ଜୁନ ସଇନ
ବାହାନାଦ କରି ଉଠିଲେ କରେ ଶସ୍ତ୍ର ଘେନ ।୫୯।
ବିନ୍ଧନ୍ତି ନାରାଜ ଝଲକନ୍ତି ଶାଷମୁନା
ଫୁଟନ୍ତି ରାଉତଂକର କପଟ ବଜ୍ରସେହ୍ନା ।୬୦।
ହୃଦେ ପଡ଼ନ୍ତ ଶର ପିଠି କଣ୍ଟକ ନିକଳି
ରୁଧିରେ ବିପଣ୍ଡ ହୋଇ ପଡ଼ନ୍ତି ରଥ ଗଜ ଅଶ୍ୱ ସର୍ବସନ୍ୟ ତଳ ।୬୧।
ଅସିପବ ପ୍ରହାର ସେ କରନ୍ତି ଉପରେ
ପଡ଼ନ୍ତି ବେନିଖଣ୍ଡ ହୋଇ ବହଇ ରୋଧିରେ ।୬୨।
ଯେତ୍କ ପ୍ରହାରକେ ଦଶ ବିଂଶ ରହ୍ୱି
ମହାର ରସଭୋଳ ବାଟରେ ନ ଘୁଞ୍ଚନ୍ତି କେହ୍ବି ।୬୩।
ନାଚନ୍ତି ରଣରଙ୍ଗେ ବାବନ୍ତି ଶିଂଘାନାଦ
କଡ଼ା ମର୍ଦ୍ଦଳ ଘୁମୁରା ଢୋଲ ବଜାନ୍ତି ମହୁଆଳ ବାଦ୍ୟ ।୬୪।
ଜୟେ ବିଜୟେ ବିନ୍ଧନ୍ତି ଥାଠଂକୁ ଶସ୍ତ୍ରଘାତେ
ଭାଂଜିଲେକ ଥାଠ ଯେ ବେନି ଯୋଜନ ପରିଯନ୍ତେ ।୬୫।
ରୋଧିରେ କର୍ଦ୍ଦମ ଯେ ହୋଇଲା ମହୀଆଳ
ପଳାବନ୍ତି ସଇନ ହୋଇଣ ଅନେକ ବିକଳ ।୬୬।
ଦନ୍ତେଣ ତୃରଣ କେହୁ ମୁଖେଣ ଅଙ୍ଗୁଷ୍ଠି
ରଥ ଗଜ ଅଶ୍ୱ ତେଜି କେହ୍ନ ଚରଣରେ ଲୋଟି ।୬୭।
ଭଗ୍ନବଳ ଦେଖି ଡାକ ଦେଲେ ଫାଲଗୁନ
ରହ ରହ ଆମ୍ଭର ବଳ ନ ମାରରେ ନିସତ ସଇନ ।୬୮।
ପଯ୍ୟେତ ଥାଠକୁ ହୋ ମାରିତ ନ ଯୋଗାଇ
ଛତ୍ରୀବୃତ୍ତ ଅକାରଣ ଧର୍ମ ନାଶଯାଇ ।୬୯।

---

୬୫।୧ ଭଗବିଜୟେ ଥାଠ ଯେ ବିନ୍ଧନ୍ତି ଶସ୍ତ୍ରଘାତେ । (ଙ,ଡ,ଛ,କ)

❋

ରହିଲେ ସଇନ୍ୟ ସେ ପ୍ରତାପୀ ବଳମୂର୍ତ୍ତି
ଯମୁନାପୁର ଆଠ ପାଇଲେ ଅନେକ ଶାସ୍ତି ।୭୦।
ମହାର ପୃଷ୍ଠ୍ୟ ପ୍ରାୟେ ଟକାଶଇ ସର୍ବଅଙ୍ଗ
ଅବସ୍ଥାଧାଗ୍ମ ହୋଇ ମିଳିଲେ ମାହେଶ୍ୱର ରାଜା ଆଗ ।୭୧।
ସ୍ୱାମୀ ରଣଭଙ୍ଗ ହୋଇଲା ଆମ୍ଭେ ପାଇଲୁ ଅନେକ ଶାସ୍ତି
ସଞ୍ଚୟେ ଅମରପୁର ତେଜ କ ବଳଯେ ସୁରପତି ।୭୨।
ମାନବ ରାଜା ହୋଇ କେ ଯେତେ କଟାଳ କରିବାକୁ
ଯେ ମହୀ ମଣ୍ଡଳେ କେ ଅର୍ଜନ ଅଛଇ ଦେବ ତାକୁ ।୭୩।
ସ୍ୱାମୀ ଅନେକ ପ୍ରତାପୀ ସେ କ୍ଷତ୍ରିୟ ମହାବଳା
ରାଜ୍ୟ ଖଣ୍ଡଣ ଯେଥୁଂ ବନ୍ଧନ ହୋଇ ପଳା ।୭୪।
ସଂସାର ରକ୍ଷା ହେବ ଆମ୍ଭର ଅଛି ବୁଦ୍ଧି
ଶରଣ ପଶିଲେ ଦେବ ସର୍ବକାର୍ଯ୍ୟ ସିଦ୍ଧି ।୭୫।
ଶୂରବନ୍ତ ସୁନ୍ଦର ସେ ଦୟାସାଗର ମହାରଥୀ
ଶରଣ ବୋଇଲେ ସେ କଟାଳ କରନ୍ତି ।୭୬।
ସୁରେଶ୍ୱର ବୋଲଣ ଯେ ଯେକଇ ପୁରୋହିତ
ଧଉମ୍ୟ ପୁରୋହିତଂକର ସେ ଅଟଇ ନିଜ ସୁତ ।୭୭।
ସେ ପୁରୋହିତେ ଅଛନ୍ତି ଯେ ଅର୍ଜୁନଂକର କୁଳେ
ଗ୍ରାମୁରେ ଉଭା ହୋଇ ବାରତା ପଚାରିଲେ ।୭୮।
ଆହୋ ଅର୍ଜୁନ ଆମ୍ଭେ ଯିବୁ କ ମାହେଶ୍ୱର ରାଜାର ତହିଂକ
ସମାଧାନ କରି ଆଣିପାରିବା କ ଦେଖି ।୭୯।
ଅର୍ଜୁନ ତୂନି ହୋଇଲେ କୃଷ୍ଣ ଅନୁମତେ
ଯମୁନାପୁରେ ପ୍ରବେଶ ହୋଇଲେ ସୁରେଶ୍ୱର ପୁରୋହିତେ ।୮୦।
ଦିବ୍ୟ ସୁଖାସନେ ଚଢି ପାଟଛନ୍ଦ ବେନି
ଗ୍ରାମୁରେ ପୂରଇ ତାର ଶତେକ ଶଙ୍ଖଧ୍ୱନି ।୮୧।
ଦଣ୍ଡ ଘେନି ମାହେଶ୍ୱର ନୃପତି ଆସୁଅଛି ପଳଣି
ପ୍ରୋହିତେ ବୋଇଲେ ତୁ ଯେତେକ ଅଜ୍ଞାନ ହେଲୁ ନୃପମଣି ।୮୨।
ମୁନେହି ବାରତା କ ନ କହିଲା ତୁକୁ
ଅନମିତେ ଦଣ୍ଡ ତୁହି ବାହୁଛୁ କାହାକୁ ।୮୩।

---

୮୦।୧ ଅର୍ଜୁନ ତୂନି ହୋଇଲେ କାର୍ଯ୍ୟର ନିମନ୍ତେ । (ନ,ଠ,ଖ)

ନ ଜାଣୁ କି ରାଧାଚକ୍ର ପଞ୍ଚାଳ ଦେଶେ ବନ୍ଧ
ଲକ୍ଷେ ରାଜାଂକର ସେ ସାଂଗ୍ରାମେ ମାନ ଯେ ମରଦ ।୮୪।
ଆହୋ ମାହେଶ୍ୱର ହସ୍ତିନା ଠାକୁର ଯେ ଅଟନ୍ତି ଯୁଧିଷ୍ଠି
ଭୀମସେନର ଅନୁଜ ଯେ ପାଣ୍ଡବ କରଟୀ ।୮୫।
ନ ଜାଣୁ କି ଖାଣ୍ଡବ ବନ ଦହିଲା ଗଗନେ
ଅନେକ ସମରେଁ ଯାହାକୁ ହାରିଲେ ମଘବାନେ ।୮୬।
ନ ଜାଣୁ କି ଅଗ୍ନି ଦେବତାକୁ ସେ ଦେଲାକ ମଞ୍ଜୁଷଧି
ବଣ୍ୟାନର ଦେବତାଂକର ପାରିଗଲା ଲୁଦୁବୁଦୁ ବ୍ୟାଧି ।୮୭।
ସେହି ଅର୍ଜୁନ ଯେଣୁହିଟି ବାସବ ଫାଲଗୁନ
ଆହୋ ଯେଣୁକାଶରେ ଜିଣି ପାରଇଟି ସେହୁ ପୁର ତିନ ।୮୮।
ନ ଜାଣୁ କି ଦ୍ୱାରକାରେ ପଶି ସେ ହରିଲେ ସୁଭଦ୍ରେ
ଅନେକ ସମରେ ଯାକୁ ହାରିଲେ ରାମଚନ୍ଦ୍ରେ ।୮୯।
ନ ଜାଣୁ କି ଉତ୍ତର ଦିଗକୁ ଆସିଛନ୍ତି ସାଧି
ଅଗ୍ୟାନ ପଣେ କଂପେ ତାହାଂକ ଭୁଲେ ବାଧି ।୯୦।
ନ ଜାଣୁ କି ଅର୍ଜୁନ କଇଛା ଜଗଜେଠୀ
ପରଦୁଖେ କାତର ସେ ଶରଣ ପଞ୍ଜର ବାନାଗୋଟି ।୯୧।
ଆହୋ ମାହେଶ୍ୱର ରୂଳ ପୁଅ ଭରିଯାନ୍ତି ଘେନିଯିବା
ରାଜ୍ୟ ରକ୍ଷାହୋଉ ତୋତେ ଦ୍ରଶନ କରାଇବା ।୯୨।
ଦୁରାର ହୋଇଲେ ସେହୁ ଅଟଇ ଦର୍ପଗଞ୍ଜା
ଦୁଖୀଜନ ସୋଦର ଯେ କଉଣୋପ ବଳ ଗଞ୍ଜା ।୯୩।
ପ୍ରୋହିତଂକ ମୁଖୁଂ ଯେସନେକ ବାକ୍ୟ ଶୁଣି
ହାଥୀ ଉପରୁ ପଡ଼ିଲା ରାଜା ବଜ୍ରଘାତ ଜାଣି ।୯୪।
ଗୋସାଇଂ ଆଦ୍ୟରୁ ମୁଂ ବାରତା ନ ପାଇଲି ଯେହା
ଅଗ୍ୟାନ ମନ୍ଦପଣେ ମୁଂ ହୋଇଲି ଦୋରେହା ।୯୫।
ଅକାରଣେ ନାଶକଲି ମୋହୋର ଅନେକ ସଇନ
ନ ପୁଣ ପ୍ରାଣେ ମୋତେ ନାଶ କରନ୍ତି ଫାଲଗୁନ ।୯୬।
ପ୍ରୋହିତେ ବୋଇଲେ ରାଜା ତୁ ନୋହସି ଅସାଷ୍ଟମ
ଅନେକ ଦୟା ତୋତେ କରିବେ ସେ ପୁରୁଷ ଉତ୍ତମ ।୯୭।

ଆପଣେ ରାଜାର ହାଥ ଧରି ସୁରେଶ୍ୱର ପ୍ରୋହିତେ
ଭୁଲେଣ ଆଣ ରାଜା ପୁତ୍ର ବଧୂଗଣ ଯେତେ ।୯୮।
ଦୁଷ୍ଟ ନାରାୟଣଂକର ବର୍ଣ୍ଣ ଚିହ୍ନ ଦେଖି
ଦୁର୍ଗନ୍ଧ ପାତକମାନ ତୋର ଯାଉ ତ ଉପେକ୍ଷି ।୯୯।
ମାହେଶ୍ୱର ରାଜା ଭୁଲେ ଘେନିଣ ପୁତ୍ର ଭାର୍ଯ୍ୟା
ଅନେକ ସମ୍ପଦେ କଟକୁ ବାହାର ହୋଇଲା ମହାରାଜା ।୧୦୦।
ଲକ୍ଷେ ତୁରଙ୍ଗମ ସଙ୍ଗତେ ଘେନି ପ୍ରତାପୀ ମହାତେଜା
ଚଉରଙ୍ଗୀ ଲକ୍ଷଣ ଯେ ଅଟନ୍ତି ମହାବାଜୀ ।୧୦୧।
ଦରଶନକ ଘେନି ସେ ଶତେଶ୍ୱର ଗଜ ମୁକୁତା
ଚଉସରା ଝର ଅଷ୍ଟରତ୍ନେ ଅଗଣିତା ।୧୦୨।
ଅଷ୍ଟ ଉତ୍ତର ଭୁଲେ ଶୃଙ୍ଗଶତ ଭାରଯା
ଶତେକ କୁମାରୀ ତାର ତିନିଶତ ଆତ୍ମଜା ।୧୦୩।
ସବୁକଂର କରେ ଅଛୁ ଆଲଟ ଚାମର
ସମସ୍ତେହେଂ ଫୁକାରନ୍ତି ସ୍ୱାମୀ ଧନୁର୍ଜୟେ ପ୍ରତିକାର କର ।୧୦୪।
ଅର୍ଜୁନର ଅସ୍ତ୍ରାନ ଦେଖିଲକ ଯେତେ ଦୂରୁଂ
ଶରୀର ନିପତ୍ତି ରାଜା ନିଉଛୁଳ କରୁଂ କରୁଂ ।୧୦୫।
ସନ୍ନିଧ୍ୟେ ଆସିଣ ରାଜା ଶତେ ସହସ୍ର ଦଣ୍ଡ ପରଣାମି
ଭଗତ ଜନ ବତ୍ସଳ ନାଥ ମୋତେ ପ୍ରାଣଦାନ ଦେବା ସ୍ୱାମୀ ।୧୦୬।
ଭୁମୁରେ ବାରତା ଯାଇଂ ଜଣାଇଲେ ପୁରୋହିତେ
ଅଗ୍ୟାନେ ଦୋଷକଲା ରାଜା ନ ପାଇ ବାରତେ ।୧୦୭।
ଆଗ୍ୟାଂ ପାଇଲେ ସେ ଉଠିବ ନା ମହାରାୟେ
ଶୁଣିଣ ଦ୍ରୁହସିତ ହୋଇଲେ ବୀର ଧନୁର୍ଜୟେ ।୧୦୮।
ପ୍ରୋହିତେ ବୋଇଲେ ଉଠ ହୋ ଯମୁନାପୁର ଅଧିକାରୀ
ଦୟା ଅନୁଗ୍ରହ କଲେ ତୋତେ ଗାଣ୍ଡିମ ଧନୁର୍ଦ୍ଧାରୀ ।୧୦୯।
ଉଠିଣ ପୁଣ ପୁଣ ରାୟେ କରଇ ପ୍ରଣପତ୍ୟେ
ପୁତ୍ର ବନ୍ଧୁ ଭାରଯା ତା କୁଟୁମ୍ବ ସହିତେ ।୧୧୦।
ଅର୍ଜୁନ ବୋଇଲା ଆହୋ ତୋର କିସ ଦୋଷ
ଅଗ୍ୟାନେ ତୋହୋର ଯେ ସଇନ୍ୟ କରାଇଲୁ ନାଶ ।୧୧୧।

ଅନୁଗ୍ରହ ନାଥ ଯେ କଲେକ ସଦୟେ
ଶ୍ରୀଭୁଜେ କୋଳାଗ୍ରତ କଲେ ତାକୁ ପାଣ୍ଡବ ଧନୁର୍ଜୟେ ।୧୧୨।
ତୁ ମୋର ବାନ୍ଧବ ଯେ ହୋଇଲୁ ଆଜହୁଂ
ଶରୀର ଆମୋଦ ହୋଇଲା ତୋହୋର କଥା କହୁଂ କହୁଂ ।୧୧୩।
ସମଦଣ୍ଡ ତୋହୋର ଘେନି ମହାରାଜା
ବାରୁଣୀବନ୍ତକଇଂ ତୁ ବହନ ହୋଇ ଯାଆ ଯା ।୧୧୪।
ଯେ ଅଶ୍ୱ ଧନମାନ ନେଇ ଦେବୁଟି ଶ୍ରୀ ଜଗନ୍ନାଥଂକ ଗୋଚରେ
ଦରଶନ ଧନମାନ ନେଇ ପ୍ରବେଶ କରାଇବୁ ଭଣ୍ଡାରେ ।୧୧୫।
ପାଦଦଣ୍ଡ ଆଦିକରି ଯେତେକ ତୋହୋର ସଇନ
ମହାଯାଗ ଦେଖଯାଇଂ କୁଟୁମ୍ବଯାକ ଘେନ ।୧୧୬।
ସ୍ୱାମୀଂକର ଦରଶନେ ଦୁଷ୍କୃତ ତୋର ଯାଉ କ୍ଷୟେ
ଜଗତଜତା ହୋଇବୁ ସମଦଣ୍ଡକଇଂ ହୋଇବୁ ନିର୍ଭୟେ ।୧୧୭।
ଯେ ମୋହୋର ଦେଖନ୍ତେ ତୋହୋର ଆଠ ପଲାଣି
ଶୁଭ ଅନକୂଳେ ବାହାର ହୁଅସି ଯେତ୍ନକ୍ଷଣି ।୧୧୮।
ଅର୍ଜୁନର ଆଗ୍ୟାଂ ସେ ନିବେଶିଲା ଶିରେ
ଯମୁନାପୁର ତେଜ ରାଜା ହୋଇଲା ବାହାରେ ।୧୧୯—୪୫୧୦।

---

## ଅର୍ଜୁନଙ୍କର ବରୁଣ, ଜଳନ୍ଧର, ବ୍ୟୋମକେଶ ରାଜାଙ୍କୁ ନିମନ୍ତ୍ରଣ ଓ ମନ୍ମଥରାଜାଙ୍କ ସହ ଯୁଦ୍ଧ ଏବଂ ଜୟ

ତହୁଂଣ ଥାଠସେନ୍ୟ ଘେନି ଧନୁର୍ଜୟେ
ଚଳଇ ବାସବ ଯେ ଦେବ ଇନ୍ଦ୍ର ପ୍ରାୟେ ।୧।
ଯମୁନାପୁର ଅନ୍ତରେ ଉତ୍ତଙ୍ଗ ନାମେ ଭୂମି
ତହିଂ ଯାଇଂ ପ୍ରବେଶ କ୍ଷତ୍ରିୟ ଉତ୍ତମି ।୨।
ଯମୁନାପୁର ଭଗ ପାଇଣ ବାରତ
ଉତ୍ତଙ୍ଗ ଦେଶ ରାଜା ସାଜିଲା ଅଶ୍ୱ, ଗଜ ରଥ ।୩।
ସେ ଉତ୍ତଙ୍ଗ ଦେଶର ରାଜା ଅଟଇ ବରୁଣ
ତୁଲେ ଘେନି ଅଛଇ ସ୍ତରଶତ ପାଦଦଣ୍ଡ ରାଜାଗଣ ।୪।

ଦେଶାନ୍ତରେ ବାରତା କରୁଛନ୍ତି ଘନ ଘନ
ଅନୁସର ପର୍ବତେ ଦେବ ବିଜୟେ ଅରଜୁନ ।୫।
ଯମୁନା ଦେଶ ଜିଣି ଉତ୍ତଙ୍ଗ ଦେଶେ ପ୍ରବେଶ
ସମଦଣ୍ଡ ଘେନି ରାଜା ବାହାର ଅନେକ ହରଷ ।୬।
ଅନେକ ଉଦଣ୍ଡ ଯେ ପାଟଛତ୍ରମାନ
ସମ୍ମୁଖୁ ଆଣିଲା ପାଣିଦ୍ରବ୍ୟ ଶତେଭାର ଧନ ।୭।
ଚରଗଣେ ବାରତା ଯେ କହିଲେ ଅର୍ଜୁନଙ୍କୁ
ସ୍ୱାମୀ ଉତ୍ତଙ୍ଗ ଦେଶର ରାଜା ଆସୁଅଛଇ ସମ୍ମୁଖୁ ।୮।
ଛନ୍ନକୋଶ ଥାଉଣୁଂ ବାହାନ ତେଜିଣ ରାଏ
ଦଣ୍ଡନହ ମୁଖେ ଭରଣ ସେ ଶରଣ ଜନ ପ୍ରାଏ ।୯।
ଅର୍ଜୁନ ବସିଛନ୍ତି ଚନ୍ଦନ ବୃକ୍ଷର ତଳେ
ସନ୍ନିଧେଣ ନିଉଛାଳି କଲେ ଯେ ମହୀପାଳେ ।୧୦।
ଅନେକ ଝୀନବାସ ଦେବାଙ୍ଗ ପଟମ୍ବ
ନିଉଛାଳି କଲା ରାଜା ଅନେକ ବସ୍ତ୍ର ଘେନି ।୧୧।
ସନ୍ନିଧେ ପ୍ରଣପତ୍ୟ ହୋଇଲା ମହାବୀର
ଜୟତୁ ପ୍ରସନ୍ନ ଦେବ ସୋହୋଜ ସୁନ୍ଦର ।୧୨।
ତୁ ଦେବ ଯୋଗେଶ୍ୱର ପ୍ରସନ୍ନ ପରମବନ୍ଧୁ
ତୁ ଦେବ ଶରଣ ଉଦ୍ଧାରଣ ଜଗତେ ସାଧୁ ସାଧୁ ।୧୩।
ତୁ ଦେବ ବାସବ, ପ୍ରସନ୍ନେ ଦୁଷ୍ଟ ନାରାୟଣ
ତବ ଚରଣେ ସ୍ୱାମୀ ମୁଂ ଜନ୍ମେ ଜନ୍ମେ ଶରଣ ।୧୪।
ଦେଖିଣ ହୃଦହସିତ ହୋଇଲେ ଫାଲଗୁନି
ସାନ୍ତ୍ୱି ସାନ୍ତ୍ୱି ବୋଲି ପ୍ରଣପତ୍ୟ ହୋଇଲେ ସଇନି ।୧୫।
ଦେଖିଣ ସାନନ୍ଦ ଯେ ହୋଇଲେ ବାସବର ବଳା
ଉତ୍ତଙ୍ଗ ନୃପତିର କଣ୍ଠେ ନେଇ ଲମ୍ବାଇଲେ ରତ୍ନମାଳା ।୧୬।
ଆହେ। ବରୁଣସେନ ରାଜା ତୁ ବିବେକୀ ଭାଗ୍ୟବନ୍ତ ଅଟୁ
ପଣ୍ଡିତ ଭଗ୍ୟଂବନ୍ତପଣେ ଚରଣେ ଆମ୍ଭର ଖଟୁ ।୧୭।
ଶ୍ରୀହସ୍ତେ ଅର୍ଜୁନ ତାହାକୁ ଦିଲେ ଯୋଗାଜ ନିମନ୍ତ୍ରଣ
ରାଜସୂୟଯାଗ ସଭାକୁ ତୁ ଯାଅ ଯା ପେ୍ରୟକ୍ଷଣ ।୧୮।

ବରୁଣସେନ ବୋଇଲା ସ୍ୱାମୀ ଅନେକ ମୋର ଭାଗ୍ୟ
ଆଜ୍ଞାଂ ପ୍ରମାଣେ ମୁଂ ଯେବ୍ହନ୍ତଣି ଯିବ ବେଗ ।୧୯।
ସମଦଣ୍ଡ ଭେଟି ରାଜା ହୋଇଲା ବାହାର
ତହୁଂ ଅର୍ଜୁନ ହରବଳେ କଲେକ ଉତ୍ତର ।୨୦।
ବୀରଦେଶ ବୋଲଣ ଯେ ଯେକ ରାଜ୍ୟ ଗୋଟିଏ
ତହିଂ ଯାଇଂ ବଜଯେ କଲାକ ଧନୁର୍ଜୟେ ।୨୧।
ବଡ଼୍ଗୁମାସ ଶୁକ୍ଳପକ୍ଷ ଦୁଖିଯାର ତିଥି
ଆଦିତ୍ୟବାର ମୂଳା ନକ୍ଷତ୍ର ସୁଧାବେଳା ଶାନ୍ତି ।୨୨।
ବାଳବ ନାମେ କରଣ ଗଣ୍ଡ ନାମେ ଯୋଗ
ଭୁଜ ସନ୍ଧାନ୍ତକ ହୋଇଛୁ ଛନ୍ଦନ ଭୋଗ ।୨୩।
ଅର୍ଜୁନ ବଜେକଲେ ଗଣ୍ଡୁକୀ ନଦୀ ତୀରେ
ବଇଡ଼ୁର୍ଯ୍ୟ ନାମେଣ ଯେକ ପର୍ବତ ଉପରେ ।୨୪।
ସୁରେଶ୍ୱର ପୁଚରେହିତେ ଯେ କହିଲେ ବାରତ
ବାବୁ ଗଣ୍ଡୁକୀ ନଦୀ ଯେ ଗୁରୁଯୁଗେ ମହାତୀର୍ଥ ।୨୫।
ଆକାଶ ଗଙ୍ଗାଉ ଯେ ବହଇ ମେରୁ ଯେ ମେଖଳ
ପିତାମହ ସ୍ନାହାନ ଯେଥେଂ କରନ୍ତି ଛନ୍ଦଓଳ ।୨୬।
ତ୍ରିକାଳ ସଂଧ୍ୟା ଯେଥେଂ କରନ୍ତି ବେଦବରେ
ଉଦେକ ଗଣ୍ଡୁଷ କରନ୍ତି ଯେ ନଦୀର ଭିତରେ ।୨୭।
ବ୍ରହ୍ମାର ଗଣ୍ଡୁଷ ଯେ ଅଟଇ ଉଦକୀ
ତେଣୁକରି ଯେହା ନାମ ଅଟଇ ଗଣ୍ଡୁକୀ ।୨୮।
ବ୍ରହ୍ମା କର୍ଣ୍ଣରୁ କାଟି ପକାଇଲେ କର୍ଣ୍ଣକୁଟ ମଳ
ସେ କର୍ଣ୍ଣକୁଟ ପର୍ବତୁଂ ଯେ ଗଙ୍ଗା ଆସଇ ଚଳ ।୨୯।
ବଜ୍ରକୀଟ ପୋକ ଥାଇ ପର୍ବତ ଉପରେ
ସେ ପୋକର ଶରୀର ଦିଶଇ ବଇଡ଼ୁର୍ଯ୍ୟ ଆକାରେ ।୩୦।
ନୀଳାର ତେଜ ପ୍ରାୟେକ ଦିଶଇ ରୋମାବଳୀ
ଚଉଦ ନୟନ ତାର ମାଣିକ୍ୟର ତେଜ ଝଳ ।୩୧।
ହୀରାର ତେଜ ପ୍ରାୟେ ବକାଶଇ ବେନିଦନ୍ତ ପାନ୍ତି
ମର୍କତ ତେଜ ପରାୟେ ତାହାର ପାଦ ଚାରିଗୋଟି ।୩୨।

ଶୁଦ୍ଧ ସଷ୍ଟିକ ପ୍ରାୟେ ଯେ ବିରାଜଇ ଗୃହଭିତ୍ତ
ଅମୋଘ ମଣି ପ୍ରାୟେକ ତାହାର ନଖ ଯେ ବିରାଜ ।୩୩।
କାଳାନଳ ଅଗ୍ନି ଜାଣି ତା ଜଭ ପ୍ରକାଶି
ମନୁକଳ୍ପ ବଞ୍ଚାଇଲା ସେ ଯେତ୍ର ପରବତେ ବସି ।୩୪।
ମହା ବ୍ରହ୍ମଯୋଗୀ ସେହୁ ବଜ୍ରକାଠ ପୋକ
ସହସ୍ରେ ବରଷ କାଟଇ ଶିଳା ଗୋଟିଯେକ ।୩୫।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯେ ତିନି ମୂରତି
ଯେହାନ୍ତ ଆଦିକରି ଅନନ୍ତ କୋଟି ଜ୍ୟୋତି କାନ୍ତି ।୩୬।
ଆକାଶ ଭଗିମା ମେରୁ ଯେ ମେଖଳା
ଯେଥୁଂ ସେ ସମ୍ଭୂତ ହୁଅଇ ଶାଳଗ୍ରାମ ଶିଳା ।୩୭।
ପ୍ରୋହିତଂକ ବଚନେ ସାନନ୍ଦ ଧନୁର୍ଜୟେ
ସେ ଗଣ୍ଡକୀ ନଦୀରେ ପଶି ପାର୍ଥ ସ୍ନାନ ବେଗେ କୟେ ।୩୮।
ପ୍ରାତସ୍ନାନ ଆହ୍ନିକ ସନ୍ଧ୍ୟା ଦେବାର୍ଚ୍ଚନ ସାରି
ମୁଣୋହି ଯୋଗାଡ କର ବୋଲି ସୂପକାରମାନନ୍ତ ଆଗ୍ୟାଂ
ଅବଧାରି ।୩୯।
ପାର୍ଥର ବଚନେ ସେ ସମସ୍ତ ଦ୍ୱିଜବରେ
କରନ୍ତି ବିଧାନ ଯେ ରନ୍ଧଣା ଯୋଗାଡେ ।୪୦।
ଆହୋ ରାଜନ ଯେମନ୍ତ ସମୟେ ତହିଂ ସେ ଦ୍ୱାରଦେଶର ରାଜା
ଲୋକେଶ୍ୱର ଜଳନ୍ଧର କଲା ଆସି ଅର୍ଜୁନକଇଂ ପାଦପୂଜା ।୪୧।
ମାଥେଣ ଜଟା ତାର ଆଉ ତାମ୍ରମୁଦ୍ରା କଣ୍ଠେ
କଷା ବସନ ପରିହରଣ ଯେ ତପୋଧନ ରୁଦ୍ର ଛନ୍ଦେ ।୪୨।
ଲକ୍ଷେ ପରମାଣେ ଯୋଦ୍ଧା ଖେଖାର ତୁରଙ୍ଗମାନ ଆରୋହି
ଅର୍ଜୁନ ସମ୍ମୁଖରେ ଉଭାହେଲେ ଅଶ୍ୱରୁ ଓହ୍ଲାଇ ।୪୩।
ବିରୂପାକ୍ଷକଇଂ ବୋଧିଲା ସେ ଅଟଇ ସର୍ବଯୋଗୀ
ଯୋଗବଳେ ରାଜ୍ୟ କରନ୍ତି କାଳାନ୍ତକ ରସଭୋଗୀ ।୪୪।
ପାର୍ଥକଇଂ ଦର୍ଶନ କଲେ କର୍ଣ୍ଣକୂଟ ପରବତେ
ବିରୂପାକ୍ଷଂକର ସିଦ୍ଧ ବିଭୂତି ହଲେ ତାମ୍ରପାହେ ପାର୍ଥ ମାଥେ ।୪୫।

---

୪୨। ମାଥେଣ ଜଟା ତାର ଅଉ ରୁଦ୍ରାକ୍ଷ ମାଳା କଣ୍ଠେ । (ଙ,ଚ)

ବାବୁ ସାଧୁ ପାଣ୍ଡବ ତୁ ମଞ୍ଜପୁର କରୁ ରକ୍ଷା
ସେହୁ ଉତ୍ତର କୋଣଲେ ସର୍ବଥା ଚୋର ରହିଲକ କକ୍ଷା ।୪୬।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣିମା ସର୍ବଗୁରୁ
ରାଜସୂୟ ଯାଗକୁ ଯାଅ ଯା ବାଞ୍ଛା ଆମ୍ଭର ପୂରୁ ।୪୭।
ଶ୍ରୀରାମ ମୁଦ୍ରା ଶିଳା ଲକ୍ଷ୍ମୀ ନାରାୟଣ ମୂର୍ତ୍ତି
ମହାଶିଳା ଅଟେ ରୁଦ୍ର ପିଙ୍ଗଳ ତା ଜ୍ୟୋତି ।୪୮।
ଏମାନ ଘେନିଣ ସେ ପୁରୁଷ ସର୍ବଯୋଗୀ
ଆଗ୍ନେୟଂ ପ୍ରମାଣେ ସେ ଚଳିଗଲେ ବେଗି ବେଗି ।୪୯।
ସେ ଗଣ୍ଡକୀ ନଦୀ ପଶ୍ଚିମ ତୀରେ ବଭଙ୍ଗ ବୋଲି ଦେଶ
ତହିଂର ନୃପତି ନାମ ଅଟଇ ବ୍ୟୋମକେଶ ।୫୦।
ପାଞ୍ଚ କ୍ଷଉଣୀ ତାହାର ପାଦାନ୍ତ ସଇନ
ତିନିକୋଟି ରଥ ଯେ ଅଶ୍ୱ ଚୂରଖର୍ବ ଘେନ ।୫୧।
ତିନିଶତ ପାରିଦଣ୍ଡ ଘେନିଣ ସେ ନୃପତି
ଅର୍ଜୁନେ ଦର୍ଶନ ଆସି କଲକ ଭୂଅପତି ।୫୨।
ଚୂରଶତ ଭାର ଧନ ଘେନି ଦେଖା ଦରଶନ
ଶ୍ୱେତ ହାଥୀ ଚୂରଶତ ଶାର୍ଦ୍ଦୂଳ ସହସ୍ରେକ ଘେନି ।୫୩।
ଏତେକ ଘେନି ଦର୍ଶନ କଲା ବ୍ୟୋମକେଶ ନୃପତି
ଅନେକ ବିନୋସ୍ତି ରାଜା ବହୁତ ଭଗତି ।୫୪।
କରପଦ୍ମ ଯୋଡିଣ ଯେ ବୋଲଇ ବ୍ୟୋମକେଶ
ସ୍ୱାମୀ ଏହୁ ନଦୀ ତୀରେଣ ମୋର ବଭଙ୍ଗ ବୋଲି ଦେଶ ।୫୫।
ମୋହ ପୁରକୁ ସ୍ୱାମୀ ବିଜେକର ଯିବା
ଏହୁକ୍ଷଣି ନଗ୍ରେ ଯାଇଂ ପ୍ରବେଶ ହୋଇବା ।୫୬।
ସ୍ୱାମୀ ଆଜକ ମାତ୍ର ମୋହ ପୁରେ ରହ
ରାଜ୍ୟ ମୋର ସୁଫଳ ହେଉ କରବା ମୁଣୋହ୍ନ ।୫୭।
ଅର୍ଜୁନ ବୋଇଲେ ସେ ବ୍ୟୋମକେଶର ବଚନେ
ପରଅନ୍ନ ଭୋଜନ ମୋର ନାହିଂ ନଉଦ୍ଧନେ ।୫୮।

---

୪୬। ବାବୁ ସିଦ୍ଧ ପାଣ୍ଡବ ଯାହା କରୁ ମନେ ବାଞ୍ଛା
ଏହୁ ଉତ୍ତର କୋଶଲେ ହୋଇଲୁ କଇଛା । (ଙ)



ଆମ୍ଭେ ସେ ଅନ୍ନଦାନ ଦେବୁ ହୋ ଅପ୍ରମିତେ
ଆମ୍ଭେ ତୁମ୍ଭର ଅନ୍ନ ଭୁଂଜିଲେ ଧର୍ମ ରହିବ କେମନ୍ତେ ।୫୯।
ବାହୁଡ଼ି ହସ୍ତିନାପୁରେ ପ୍ରବେଶ ହୋଇବା ପର୍ଯ୍ୟନ୍ତେ
ପରଦେଶେ ଭୋଜନ ଆମ୍ଭର ନାହିଂ କଦାଚିତେ ।୬୦।
ଯେତେକ ନୃପତି ତୁମ୍ଭେ ଆମ୍ଭର ହିତକାରୀ
ହସ୍ତିନା ପୁରକୁ ବାଉଡ଼ିଯେ ଯାଅ ବିଜେକରି ।୬୧।
ଅକ୍ଷତ ଗୁଆ ତାଙ୍କୁ ଦିଲେକ ଆଖଣ୍ଡଳ
ବ୍ୟୋମକେଶ ନୃପତି ସମଦଣ୍ଡ ଘେନି ଚଳ ।୬୨।
ଗଣ୍ଡକୀ ନଦୀ ତୀରେ ପାର୍ଥ ଆହ୍ନିକ ସାରି
ଆପଣେ ସୂର୍ଯ୍ୟବେଳେ ମୁଣୋହ୍ନରେ ବିଜେକରି ।୬୩।
ଭୋଜନ ସାରଣ କଲେକ ଅଂଗ୍ରେବନ
କର୍ପୂର ତାମ୍ବୋଳ ଆଦି କରନ୍ତି ଭୋଜନ ।୬୪।
ସଜାଡ଼ି ବୀରତୂର ବାଜିଲା ଶଙ୍ଖଧ୍ୱନି
ରଥେ ବିଜେକଲେ ଯାଇଂ ଶୁଭଲଗ୍ନ ଘେନି ।୬୫।
ସମଦଣ୍ଡ ସନ୍ୟ ଯେ ଥାଠନ୍ତି ଚଳାଇ
ଭୂପାଳ ଦେଶରେ ପ୍ରବେଶ ହୋଇଲେକ ଯାଇଂ ।୬୬।
ବାଜନ୍ତି ବିଜଘୋଷ ଦେବବାଦ୍ୟ ଦୁନ୍ଦୁଭି
ଶବଦେ ଶୋଭିବନ ଯେ ହଣିଲ୍ଲ ପୃଥୀଦେବୀ ।୬୭।
ଭୋପାଳ ଦେଶର ରାଜା ମନ୍ମଥ ଚକ୍ରବର୍ତ୍ତୀ
ବଡ଼ାଇ ସମ୍ପଦ ରାଜ୍ୟ ତାର ଜଗତେ ବିଖ୍ୟାତି ।୬୮।
ବେଣୀଗଙ୍ଗା କୂଳେ ଯେ କଟକ ତାହାର
ବଇଲୋଚନ ପର୍ବତେ ବିଜେ ପାଣ୍ଡବ ସୁନ୍ଦର ।୬୯।
ସମଦଣ୍ଡ ଘେନି ରାଜ୍ୟ ବାହାର ମୃଗୟା ବିନୋଦେ
ବିହରନ୍ତି ଯୋଦ୍ଧାପୁରେ ଯେ ପରମ ସାନନ୍ଦେ ।୭୦।
ଦୁନ୍ଦୁଭି ବାଦ୍ୟ ଶୁଣିଣ ପଚାରଇ ନୃପତି
କିସ ବାଦ୍ୟ ଶୁଭଇ ରେ ହେଲ ଘେନଇ ପୃଥୀ ।୭୧।

୬୭।୨ ଶବଦେ ଦଶ ଭୁବନ ଚହଲଇ ପୃଥିବୀ । (ଖ,ନ)
୬୯।୨ ବଇଡୂର୍ଯ୍ୟ ପର୍ବତେ ପାର୍ଥ ଧନୁର୍ଦ୍ଧର । (ଡ,ଢ)

କରପଦ ଯୋଡ଼ଣ ସେ କହିଲେ ମୁନେନ୍ଦ୍ର
ସ୍ୱାମୀ କେଉଂଣ ଦେଶର ରାଜା ଯେଉଁଠି ବଇଲୋଚନ ପର୍ବତେ ଅଛି
ରହି ।୭୨।
ରଥ ଗଜ ଅଶ୍ୱ ଦେବ ଅନେକ ପାଦାନ୍ତ
ଦଣ୍ଡ ଘେନି ଆସଇ ସେ ଉତ୍ତର ମୂରତ ।୭୩।
କେଉଂଣ ଦେଶ ପର୍ଯ୍ୟାଣ ଦେବ ନ ଜାଣୁଂ ଆମ୍ଭେ ତଥ୍ୟ
ସାରଥିକ ବୋଇଲ ଦେଖିବା ତାର ସମ୍ମୁଖକୁ ବାହା ମୋର ରଥ ।୭୪।
କାହୁଂ ଆଗମ ସେ କାହାଂକ ଯିବ ଥାଠ
ନ ପୁଣ ବଳାକ୍ରାରେ ପଶଇ ମୋର ରାଷ୍ଟ୍ର ।୭୫।
ରାଜାର ବଚନେ ସେ ରଥ ବାହଇ କଣସ୍ତ ସାରଥି
ଦକ୍ଷିଣକଇଂ ଚଳାଇଲ ମନୁରଥ ଚନ୍ଦ୍ରବ୍ରାଞ୍ଚି ।୭୬।
ବଇଲୋଚନ ପର୍ବତ ତଳେ ଯାଇଂ ହୋଇ
ମନୁମଥ ରାଜା ଶତେପୁର କଣ ତାକୁ ବେଢ଼ିଲେକ ଯାଇଂ ।୭୭।
ପର୍ବତ ଉପରକୁ ସେ ବହନ୍ତ ବାଣ ଘେନି
ଝଲକାନ୍ତ ଖ୍ରାକ୍ଷମୁନା ଅଗି ତେଜ ଜାଣି ।୭୮।
ତିମିର ବଦାରଣ ଯେହ୍ନେ ବାଳଅର୍କ ମଣି
ପଡନ୍ତ ନାରାଜ ଯେ ବଜ୍ରସୂଚୀ ଜାଣି ।୭୯।
ଅର୍ଜ୍ଜୁନର ସଇନ ଯେ ଦେଖନ୍ତ ଗିରିବର ଉପରେ
ବାହ୍ନଲେ ନାରାଜ ଘେନି ପ୍ରତଗ୍ୟାଂ କୋପଭରେ ।୮୦।
ନାରାଜ ପଡନ୍ତେ ସେ ପର୍ବତ ଉପରୁ
ଝଲକନ୍ତ ଶହସ୍ରେ ଯୋଦ୍ଧାଂକର ପରେ ପଡୁଂ ।୮୧।
ସେହ୍ନା ଟୋପର ଯେ ବାହୁନ୍ତି ଜଗଦଳା
ଫୁଟିଣ ସେନାଯେତ୍ତେ ଯେ ଦିଶନ୍ତ ରଙ୍ଗମାଳା ।୮୨।
ଗଜଅଶ୍ୱ ଫୁଟନ୍ତ ନାରାଜ ବରଷନ୍ତେ
ରଥେ ଚୂର ହୋଉଛନ୍ତ ବଜ୍ରଶର ଘାତେ ।୮୩।
ଭାଜିଲେ ସଇନ ଯେ ବିମୋହିତ ହୋଇ
ପର୍ବତ ଉପରୁ ଜଯେ୍ତ ବଜଯେ୍ତ ପଡ଼ିଲେକ ବେଗେ ଡେଇଂ ।୮୪।
ରଣେ କାତର ସେ ହୋଇଲେ ମନୁମଥ ରାଜାର ଥାଠ
ପଳାବନ୍ତ ସଇନ ଯେ ନ ପାବନ୍ତ ବାଟ ।୮୫।

ସମରେ ଅଣବାରଣ ସେ ପାଣ୍ଡବ ବଳ ଯୋଧୀ
ଅନେକ ନାଗଜ ସେ ପୂରେଇଣ ବେଗେ ବାନ୍ଧି ।୮୬।
ରଣରଙ୍ଗ ଧନ୍ଦୋଳ ଯେ ବଢ଼ିଲା ସମର
ପଡନ୍ତେ ନାଗଜ ଯେ ଗଗନ ଅନ୍ଧକାର ।୮୭।
ଯେତେକ ନାଗଜକେ ପାଞ୍ଚସାତ ବାର ଫୁଟି
ନାଚନ୍ତି କବନ୍ଧେ ଯେ ଶୋଣିତ ହୋଇଣ ବୃଷ୍ଟି ।୮୮।
ଦଣ୍ଡ ଭଗ୍ନ ଦେଖିଣ ସେ ମନୁମଥ ଚକ୍ରବର୍ତ୍ତି
ଭୁଲେଣ ଯେମନ୍ତ ତାହାର ମୁକୁଟ ବନ୍ଧା ଲକ୍ଷେକ ସେନାପତି ।୮୯।
ବୁଲାଇ କୋନ୍ତ ଯେ ମାରନ୍ତି ଅବଚ୍ଛନ୍ନେ
ସମରେ ହାନ୍ଦୋଳ ସେ ହୋଇଲା ମହାରଣେ ।୯୦।
ଜୟେ ବିଜୟେ ଯେ ଉଠିଲେ ବେନି ଗଦା ବୁଲାଇ
ପିଟିଲେ ଗଜଂକର ଉପରେ ନିଠାଇ ।୯୧।
ଅଭଙ୍ଗ ଯୋଦ୍ଧାଏ ଯେ ପାଣ୍ଡବ ସଇନି
ପୁଣ ପ୍ରହାର କଲେ ବାରେ ଅନେକ ଶହସ୍ର ଯେଣି ।୯୨।
ଉଭୟ ବଳ ସାଂଗ୍ରାମ ଦେଖିଣ ଫାଲଗୁନି
ବାହୁଲକ ସାରଥି ରଥ ଅମରାଧି ଅଶ୍ୱ ଯେଣି ।୯୩।
ଲକ୍ଷେକ ନାଗଜ ଯେ ପେଷିଲା ଧନୁର୍ଜୟେ
ଲକ୍ଷେକ ଯୋଦ୍ଧାଏ ସେ ପଡଲେ ଶସ୍ତ୍ରଘାଏ ।୯୪।
ରାଜାର ଦେଖନ୍ତେ ସେ ପଡଲେ ଅନେକ ଦଣ୍ଡ
ନାଚନ୍ତି କବନ୍ଧେ ଯେ ଛୁଡକର ମୁଣ୍ଡ ।୯୫।
ସେନାଂକର ପଡନ୍ତେ ଯେ ଦେଖିଲା ମନୁମଥ
ସାରଥିକ ବୋଇଲା ବେଗେ ବାହା ମୋହୋର ରଥ ।୯୬।
ବିଜୟେ ସାରଥି ରଥ ବାହିଲା ବେଗକର
ଅର୍ଜୁନ ସମ୍ମୁଖରେ ଯାଇଂ ରାଜା ଗୃପ ଧର ।୯୭।
ବୋଇଲା ରେ ଶୁଣ ତୁହି କେଉଂଣ ଦେଶର ରଥୀ
ଅଦୋଷେ କମ୍ପ ଇଂ ତୁ ମୋହୋର ଆଠ ମନ୍ତ୍ରି ।୯୮।

---

୯୦।୨ ଜୟେ ବିଜୟେ ଯେ ତାହା ବଞ୍ଚାଉଛନ୍ତି ତୋଷମନେ । (କ)
୯୦।୨ ଜୟେ ବିଜୟେ ବେନିବାରେ ବନ୍ଦନ୍ତି ତୋଷମନେ । (ଖ)

କେଉଁଣ ଦେଶର ରାଜା ତୁ କେଉଁଣ ଦେଶର ସେନା
ପରସୀମାରେ ପଶି ତୁ କଂପା ଦେଖାଉ ଅପାର ଗାରମା ।୯୯।
ପ୍ରାଣୀନ୍ତ ନାଶ ଯେ କରନ୍ତ ବନା ଦୋଷେ
ଅନେକ ଶାସ୍ତି ପାବନ୍ତ ସେ ସଞ୍ଜିବନୀ ଆକାଶେ ।୧୦୦।
ବହୁତ ସମ୍ବୋଧନ କଲକ ସେ ମନୁମଥ ନୃପତ
ରଥେ ଥାଇଂ କହ୍ବଲେ ପାର୍ଥିବ ମହାରଥୀ ।୧୦୧।
ଆହୋ ମନୁମଥ୍ର ମୁହ୍ବଂ ଗାଣ୍ଡିମ ଧାକ୍ଷାଗୁରୁ
ରାଜସୂିୟ ଯାଗ ଅର୍ଥେ ଆମ୍ଭେ ହ୍ବଗବଳେ କରୁଂ ।୧୦୨।
ଯୁଦ୍ଧେଷ୍ଠି ଦେବ କରିବେ ରାଜସୂିୟ ଯାଗ ସଭା
ସମସ୍ତ ରାଜା କରିବେ ତାଂକ ପାଦ ପୂଜା ।୧୦୩।
ବୋଲଇ ମନୁମଥ ମୁଂ ଅନେକ ଦ୍ରୋହକଲି
ଅଗ୍ୟାନ ପଣେ କରି ଅନେକ ପ୍ରମାଦ ଚନ୍ତ୍ରିଲ ।୧୦୪।
ମୁହ୍ବଂ ପାମର ମନ୍ଦ ନ ଜାଣି କଲଇଂ ଯେ ଦ୍ରୋହ
ପ୍ରସନ୍ନେ ନାରାୟଣ ସ୍ୱାମୀ ତୁ ଉଦ୍ଧର ସନ୍ଦେହ ।୧୦୫।
ଅନେକ କାପୁର୍ଣ୍ୟେ ଯହୁଂ କହ୍ବଲ୍ ରାଜେଶ୍ୱର
ପାର୍ଥ ବୋଇଲେ ଆହୋ ରାଜା ଭୟ ତୁ ନ କର ।୧୦୬।
ଅଗ୍ୟାନ ପ୍ରାଣୀନ୍ତ ହୋ କୋପ ଯେ ନ କରି
ଅଗ୍ୟାନେ ପ୍ରାଣୀନ୍ତ ଦ୍ରୋହକଲେ ବ୍ରହ୍ମହତ୍ୟା ଦୋଷ ସରି ।୧୦୭।
ଶୁଣ ରାଜା ମନୁଂ ଭ୍ରାନ୍ତ ବୋଇଲେ ସର୍ବସାରୀ
ଆହୋ ମହାରାଜା ତୋହୋର ଦୋଷ ନାହ୍ବଂ କିଛି ।୧୦୮।
ଆପଣେ ଚନ୍ଦନ ଯେ ଘେନିଲେ ଶ୍ରୀହସ୍ତେ
ସର୍ବାଙ୍ଗେ ଲେପନ କଲେ ମନୁମଥ ରାଜାର ଗାତ୍ରେ ।୧୦୯।
କଣ୍ଠେଣ ହଲେ ନେଇ ମାଳଉପ୍ଳଳ ମାଳୀ
ଯେଦ୍ବକ୍ଷଣି ଦଣ୍ଡ ଘେନି ରାଜା ବହନ ହୋଇଯାଅ ଚଳ ।୧୧୦।
ରାତ୍ର ଦିବସେ ବାଉସ୍ତେ ନ ରହ୍ବ ଦଣ୍ଡେ କାହ୍ବଂ
ଇନ୍ଦ୍ରପ୍ରସ୍ଥ ରାଜ୍ୟକୁ ରାଜା ଯାଅ ଯା ବେଗହୋଇ ।୧୧୧।
ଶୁଭ ଅନକୂଳେ ରାଜା ଅର୍ଜୁନ ଆଗ୍ୟାଂ ଘେନି
ବାରୁଣୀବନ୍ତକଇଂ ଦକ୍ଷିଣ ମୁଖ ହୋଇ ଚଳିଲେ ସଇନି

———— ।୧୧୨—୪୬୨୨।

## ବୈଲୋଚନ ସହିତ ଅର୍ଜୁନଙ୍କ ଯୁଦ୍ଧ ଓ ନିମନ୍ତ୍ରଣ

ଅର୍ଜୁନ ବିଜେକରି ଗଲେକ ତହୁଂ ପୁଣ
ଉଜାଣକାନ୍ତ ରାଜ୍ୟକୁ କରଇ ପୟାଣ ।୧।

ଉଜାଣ ନଗ୍ର ବସଇ ବଳାଙ୍ଗୀ ନଦୀ କୂଳେ
ବେନି ଯୋଜନ ଆୟୁତନ ସେ ନଗ୍ର ପରିମଳେ ।୨।

ବେନି ଯୋଜନ ଆୟେତନ ସେ ଉଜାଣ ନଗ୍ର କାନ୍ତି
ସର୍ବୁଂକର ସୁବର୍ଣ୍ଣର ଘର ସେ ନଗ୍ରେ ବସନ୍ତି ।୩।

ଯାହାର ଘରେ ହୋ ପୁରୁଷେ ଥାନ୍ତି ଯେତେ
ସଭିହେଂ ଅଶ୍ୱ ଯୋଦ୍ଧା ସାଂଗ୍ରାମେ ବଳବନ୍ତେ ।୪।

ରଥ ଗଜ ପାଦାନ୍ତି ନାହିଂ ତାହାଂକର
ସମସ୍ତେ ମୁକୁଟବନ୍ଧା ଅଟନ୍ତି ଅତି ଧନୁର୍ଦ୍ଧର ।୫।

ନାରଜେ ମାଛିର ଚକ୍ଷୁକୁ ପାରନ୍ତି ସେ ବିନ୍ଧି
ନାରଜେ ପାରନ୍ତି ସେ ଅଚଳ ଗିରି ଭେଦି ।୬।

ଯେସନେକ ବଳବନ୍ତ ସେ ଅଟନ୍ତି ସର୍ବବୀରେ
ଶେଣାପକ୍ଷୀ ପ୍ରାୟେକ ସେ ପଶନ୍ତି ସମରେ ।୭।

ଅଶ୍ୱ ପିଠିରେ ଥିଲେ କେ ଜିଣନ୍ତା ନାହିଂ ରଣେ
ସହସ୍ର ଶର ବିନ୍ଧି ପାରନ୍ତି ଯେକାଜଣେ ।୮।

କନେକଧାରା ପର୍ବତେ ସେ ବଳାଙ୍ଗୀ ନଦୀକୂଳେ
ବରଷକେ ଦିନେ ସୁବର୍ଣ୍ଣ ବୃଷ୍ଟି ତହିଂ କରଇ ଆଖଣ୍ଡଳେ ।୯।

ସେ କନକଧାରା ପର୍ବତେ ତ୍ରେତୟା ଯୁଗେ ଶ୍ରୀରାମଚନ୍ଦ୍ର ସ୍ୱାମୀ
ବନବାସ କାଳେଣ ସେ ପର୍ବତେ ବିଶ୍ରାମି ।୧୦।

ବଇଶାଖ ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାରେ
ପୁନର୍ବସୁ ନକ୍ଷତ୍ର ଭୋଗ ହୋୟେ ସେ ଦିନରେ ।୧୧।

ସେ ପର୍ବତ ଉପରେ ବସିଣ ଦେଖ ସୀତା
ବାଲୁଂକା ଲିଙ୍ଗ ଗୋଟିଏ ଯେ ଥାପିଲେ ଜନକ ଦୁହିତା ।୧୨।
କନକ ପୁଷ୍ପ ଗୋଟିଏ ଢଳେ ସେ ଲିଙ୍ଗର ଉପରେ
ଅନେକ ଭୁସ୍ତି କରି ମଣାଇଲେ ଦେବ ହରେ ।୧୩।
ଜାନକୀର ଭଗତେ ତହିଂ ବଜଯେ ଧୂର୍ଜଟୀ
ସେ କନକେଶ୍ୱର ମହାଲିଙ୍ଗ ଲକ୍ଷେ ଯୋଜନ କଣ୍ଟି ।୧୪।
ଇନ୍ଦ୍ର ଦେବତାଂକୁ ବନସ୍ତ ହୋଇଲେ ଗୋସାମଣୀ
ବରଷକେ ଅନେକ କନକ ବୃଷ୍ଟି ଯେ ଲିଙ୍ଗ ଉପରେ କରିବ
ବଜ୍ରପାଣି ।୧୫।

---

୧୨।୧ "ବାଲୁଂକା ଲିଙ୍ଗ ଗୋଟିଏ ଯେ ଥାପିଲେ ଜନକ ଦୁହିତା" ପରେ
'ଠ' ପୋଥିରେ ଭିନ୍ନ ପାଠ—

ଚଂପକ ପୁଷ୍ପ ଗୋଟିଏ ଦେଇ ଲିଙ୍ଗ ପରେ
ବହୁ ସ୍ତୁତି କଲେକ ତାହାଂକୁ ଭକ୍ତିରେ ।
ସୀତାଂକ ଭକ୍ତିରେ ତୁଷ୍ଟ ହୋଇ ଦେବକାଶୀ
ଜାନକୀଂକ ନିକଟରେ ବଜେକଲେ ଆସି ।
ବୋଇଲେ ତୁମ୍ଭ ଭକ୍ତିରେ ତୁଷ୍ଟହେଲୁ ଆମ୍ଭେ
ତୁମ୍ଭର କି ବାଞ୍ଛା ଅଛି ତାହା ମାଗ ଏବେ ।
ସୀତା ବୋଇଲେ କାହିଂରେ ଇଚ୍ଛା ନାହିଂ ମୋର
ତୁମ୍ଭେ ତ ସବୁ ଦେଇଛ ଆଉ କି ପଚ୍ଚାର ।
କେବଳ କଥାଏ କହେ ଶୁଣ ହେ ଧୂର୍ଜଟୀ
ବରଷକେ ଥରେ ଏଠାରେ ହେବ ସ୍ୱର୍ଣ୍ଣବୃଷ୍ଟି ।
ଶିବ କହିଲେ ସେ କଥା ନାହିଂ ଆମ୍ଭ ହାଥେ
ତୁମ୍ଭ ଆଗ୍ୟାଂକୁ ପାଳିବ ବାସବ ନିଶ୍ଚିତେ ।
ଏହା କହି ବିଶ୍ୱନାଥ ଅନ୍ତର୍ଦ୍ଧାନ ହେଲେ
ସୀତା ଇନ୍ଦ୍ରଂକୁ ସ୍ମରନ୍ତେ ସେଠାରେ ମିଳିଲେ ।
ତାହାଙ୍କୁ ଦେଖି ବୋଇଲେ ସୀତା ଠାକୁରାଣୀ
ବରଷକେ ରତ୍ନ ବରଷିବ ଏଥେ ବଜ୍ରପାଣି ।
ଜାନକୀଂକ ବଚନରେ ସେ ପାକଶାସନ
ବରଷକେ ସ୍ୱର୍ଣ୍ଣ ବରଷେ ଏ ଲିଙ୍ଗ ପରେଣ ।

ଜାନକୀର ବଚନ ପାଳି ସେ ଦେବ ମଘବା
ଅବଶ୍ୟ ବରଷକେ କଣସୁ ବୃଷ୍ଟି ତହିଁ କରଇ ଇନ୍ଦ୍ରଦେବା ।୧୬।
ସେ ବଳାଙ୍ଗୀ ନଦୀରେ ସ୍ନାନ କରଣ ତୀର ପାଥେ
କନେକଶ୍ୱର ଲିଙ୍ଗ ଦେଖିଲେ କନକ ଧାରା ପରବତେ ।୧୭।
ଅର୍ଜୁନ ବିଜୟେ କରିଅଛନ୍ତି ପଉଷମାସ କୃଷ୍ଣ ଚଉଠୀର ଦିନ
ଅରକବାର ନକ୍ଷତ୍ର ଯେ ପୁନର୍ବସୁ ମିଥୁନ ।୧୮।
ସେ ଦିନ ପ୍ରବେଶ ହୋଇଛି ଧନୁ ସଂକରାନ୍ତି
ଇନ୍ଦ୍ର ସେ ଦିନ କଣସୁ ବୃଷ୍ଟି କଲେ ସୀତାଂକର କଥା ଚିନ୍ତି ।୧୯।
ସେ ରାଜ୍ୟର ଲୋକେ ଅଇଲେ ତହିଂକ କଣସୁ ସାଉଂଟି
ଅର୍ଜୁନର ଭୟେ ସେ ପର୍ବତକୁ ନୁଆରିଲେ କେହି ଉଠି ।୨୦।
ସେ ରତ୍ନକୁ ରୁଣ୍ଡିକଲେ ଅର୍ଜୁନର ସଇନ
ସ୍ବରଶତ ରଥେ ପୂରୋଇଲେ ବୀରେ ଆଣି ।୨୧।
କଣସୁ ବୃଷ୍ଟି ବୋଲି ରାଜାକଇଂ କହିଲେ ମୁନେହି
ବିଜେକଲେ ନୃପତି ବଇଲୋଚନ ଶାହି ।୨୨।
ରଥ ଗଜ ଅଶ୍ୱମାନ ପାଦାନ୍ତି ଗହନ
କଣସୁଗିରି ପର୍ବତେ ବେଢିଲେ ବିହନ ସନ୍ୟମାନ ।୨୩।
ଦେଖିଲେ ସେ ପରବତ ଉପରେ ଅଛି ଦଣ୍ଡ
ବାଦ୍ୟ ଘୋର ଶବଦେ କଂପଇ ବ୍ରହ୍ମାଣ୍ଡ ।୨୪।
ଇନ୍ଦ୍ର ଦେବତା ତହିଂ କରିଅଛଇ କଣସୁ ବୃଷ୍ଟି
ବଇଲୋଚନ ଶାହିର ସନ୍ୟ ଯେ ପର୍ବତକୁ ନୁଆରିଲେ ଉଠି ।୨୫।
ହାକନ୍ତି ସଇନ ଭୁମ୍ଭେ ରେ କେଉଂଣ ଦେଶର ବୀର
ପର ପଦାର୍ଥ ହର ରେ କାହିଂର ଧନଚୋର ।୨୬।
ଆହୋ ଚଉର୍ଯ୍ୟ ମାର ବୋଲି ଧାଇଂଲେ ସର୍ବଯୋଧୀ
ଅବିଛିନ୍ନେ ବାହାନ ଆରୋହି ବାଣ ବିନ୍ଧି ।୨୭।

୨୨। ବଇଲୋଚନ ଶାହି ।.'ଅ'
ଶାହି—ଶାହଣ (ପା—ରସ୍ୟ) ରାଜା
ସାରଳା ଦାସଙ୍କ ସମୟକୁ ଆରବ୍ୟ ପାରସ୍ୟ ଶବ୍ଦ-ରୁ ସରହି ହେଲା
ପାରସ୍ୟ ଶବ୍ଦ ପ୍ରା-ବୈଦିକ ଶବ୍ଦ, ଏକଶବ୍ଦଜ ।

ବାସବର ସଇନ ଯେ ଅଛନ୍ତି ମଧ୍ୟେମଗ୍ନ
ପ୍ରତଗ୍ୟାଂ ସାମରଥ ସେ ଅଭୟ ବଳବନ୍ତ ।୨୮।
ପର୍ବତେ ଥାଇଣ ସେ ନାରାଜ କଲେ ବୃଷ୍ଟି
ବଇଲୋଚନ ଶାମ୍ବର ସଇନ ଉପରେଣ ପଡ଼ ଫୁଟି ।୨୯।
ଅଶ୍ୱଂକର ଉପରେ ଥିଲେ ଯେତେକ ଯୋଦ୍ଧାମାନେ
ସେହ୍ଲା ଟୋପର ଫୁଟି ପଡ଼ଲେ ଅବଚ୍ଛନ୍ନେ ।୩୦।
ହାତବୋଡ଼ା ନାରାଜ ଧାଏଁ ପଡ଼ନ୍ତି ମହାଲୋଟି
ପର୍ବତ ଉପରକୁ କେହ୍ନ ନୁଆରଲେ ଉଠି ।୩୧।
ଲାଂକଯା କୁନ୍ତ ପରଘ ଯାଠି ଯେ ମୂଷଳୀ
ପର୍ବତ ଉପରେ ଥାଇ ବନ୍ଧନ୍ତି ସନ୍ୟ ଉପରେଣ ନିକଳ ।୩୨।
ଅଶ୍ୱ ଯୋଦ୍ଧାମାନେ ଯେ ପଳାନ୍ତି ଅସମ୍ଭାଳେ
ସ୍ୱେକର ଉପରେ ଆରେକ ପଡ଼ନ୍ତି ମହାଆଳେ ।୩୩।
ସନ୍ୟଂକର ବଛବ ଦେଖିଣ ମହାପତ୍ୟେ
ଦଶଲକ୍ଷ ଯୋଦ୍ଧା ସେନ ଉଠିଲା ପର୍ବତେ ।୩୪।
ତିନି ଯୋଜନ ଆଯତନ ସେ କଣପ୍ୟ କୋଶ ଗିର
ଦୁଇବଳ ଉଠି ହେଲେ ଉଦୁର ଉଭୁର ।୩୫।
ବନ୍ଧନ୍ତି ନାରାଜ ଯେ ଗହନ ଖାଖମୁନା
କପଟ ମଣି କୁଣ୍ଡଳ ଯେ ଫୁଟନ୍ତି ବଜ୍ରସେହ୍ଲା ।୩୬।
ପାଣ୍ଡବ ସଇନ ଯେ ହୋଇଲେ ଶରଘାତ
ଘଂକଟଲ ସଇନ ଯହୁଂ ଉଠିଲେ ବୀର ପାର୍ଥ ।୩୭।
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମା ପ୍ରକାଶି
ସ୍ୱେକା ଫାଲଗୁନ ବଦାରଣ କଲ ପଶି ।୩୮।
ଆପଣେ ନାରାଜ ବନ୍ଧଲେ କୋପକରି
ବାତଘାତେ ଯେହ୍ନେ ବୃନ୍ଦାହୁଳ ଫଳ ଝଡ଼ ।୩୯।
ରଥୀକେ ଶତେ ନାରାଜ ଗଜ ଯୋଦ୍ଧାକେ ଅଶିଶର
ଅଶ୍ୱ ଯୋଦ୍ଧାକେ ପଞ୍ଚାଶ ପାଦାନ୍ତିକେ ପନ୍ଦର ।୪୦।
ମନଭେଦୀ ବୋଲକରି ଯେବଣ ଶରଗୋଟି
ମନେ ଯେତେ ବୋଲ ତେତେ ନାରାଜ ହୋଏ ବୃଷ୍ଟି ।୪୧।



ଯେତ୍କା ଘାନ୍ତକେ ଯେ ପଡିଲେ ଆଠଗୋଟି
ବେନିଜନୂଣ ପରିଯନ୍ତେ ମାଡ଼ି ପଡିଲେ ମହୀରେଣ ଲୋଟି ।୪୨।
ନବଲକ୍ଷ ରଥୀ ତାର ଅଶିଲକ୍ଷେ ମାତାଙ୍ଗ
ସାତ କ୍ଷଉଣୀ ସନ୍ୟ ତେର ଖର୍ବ ତୁରଙ୍ଗ ।୪୩।
ବାସବର ମହ୍ୱମାଂ ଦେଖ ହେ ସମରେ
ଅର୍ଜୁନ ବାଣ ଝଘାତେ ଲୋଟିଲେ ସର୍ବାରେ ।୪୪।
ତେତିଶ ଯୋଦ୍ଧାର ଭୁଲେ ଉବୁରିଲା ବଇଲୋଚନ ଶାହ୍ୱ
ଅର୍ଜୁନକୁ ବୋଇଲେ ହେ ଆମ୍ଭନ୍ତ କର ଶାହ୍ୱ ।୪୫।
ଶରଣ ଦେଖିଣ ନାରାଜ ସମ୍ଭରିଲେ ଧନୁର୍ଜୟେ
ପଡିଛନ୍ତି ସମଦଣ୍ଡ କଦଳୀ ବନ ପ୍ରାୟେ ।୪୬।
ରଣେ ନିସତ ଯତ୍ନଂ ହୋଇଲେ ବଇଲୋଚନ ବଳ
ବାହାନ ତେଜ ପ୍ରଣପତ୍ୟ କଲକ ମହୀପାଳ ।୪୭।
ପୁଣ ପୁଣ ନୃପତି ହୋଇ ପରିଣାମି
ବୋଇଲା ସନ୍ୟ ମୋର ଅହୋକ୍ଷେ କଂପେ ନାଶ କଲୁ
ଦେବସ୍ୱାମୀ ।୪୮।
କରପଦ୍ମ ଯୋଡ଼ି ବୋଲଇ ନୃପମଣି
ଦଶଦୋଷ ଅପ୍ରାଧ ମୋର କ୍ଷମା କରିବା ଦେବସ୍ୱାମୀ ।୪୯।
ଅର୍ଜୁନ ବୋଇଲା ତୋହୋର ନାହିଂ କହୋ ଗ୍ୟାନ
ମୁହିଂ ସେ ପାଣ୍ଡବ ଅର୍ଜୁନ ମୋତେ କଂପାଇଂ ନ ଚିହ୍ନ ।୫୦।
ରାଜସୂୟ ଯାଗସଭା ଯୁଧିଷ୍ଠିର କରିବା ନିମନ୍ତେ
ଉତ୍ତର ଦିଗବିଜେ ମୁଂ ରାଜାନ୍ତ ନିମନ୍ତ୍ରିବା ଅର୍ଥେ ।୫୧।
ସମସ୍ତ ନୃପତିୟେ ହୋଇବେ ତହିଂ ରୁଣ୍ଡ
ଚଳନ୍ତି ରାଜାମାନେ ଘେନିଣ ଯେ ଯାହାର ପାରିଦଣ୍ଡ ।୫୨।
ଯେସନେକ ଶୁଣି ବଇଲୋଚନ ଶାହ୍ୱ
କହଇ ବଚନ ପୁଣ ଅର୍ଜୁନକୁ ଗୃହିଂ ।୫୩।
ଆହେ ଅର୍ଜୁନ ତୁ ପଣ୍ଡିତ ଭାଗ୍ୟବନ୍ତ
ଯେତେବଡ଼ ପ୍ରଭୁ ହୋଇ କଂପେ କରୁ ତୁ ଯେମନ୍ତ ।୫୪।

୪୨। ଯେତ୍କା ବେଳକରେ ସେ ନାରାଜ ଯାଇ ଘୋଟି
ପଡିଲେ ଆଠ ବାତଘାତେ ଯେତ୍ତେ ଚୂତଫଳ କି ଲୋଟି । (ଘ)

ଆମ୍ଭେ ପରରାଷ୍ଟ୍ରେ ପଶୁଂ ଯେତେକ ରାଜାମାନେ
ମୂର୍ଖ ଅଗ୍ୟାନେ ଥାଉଂ ମହର ରସପାନେ ।୫୫।
ଆମ୍ଭ ତହୁଂ ଆରବଡ ନ ଜାଣୁଂ ଆମ୍ଭେ କାହିଂ
ମହାମଲ୍ଲ ଯୋଦ୍ଧା ମୁଂ ଯେ ବଇଲୋଚନ ଶାହ୍ୱ ।୫୬।
ନ ଜାଣି ସମର ମୁହିଂ କଲଇଂ ଅନମିତେ
ରଣେ ସଂପଦ ହରାଇଲ ମୁଂ ଯେ ବୁଦ୍ଧି ବିପରୀତେ ।୫୭।
କୁଟୁମ୍ବଯାକ ମୋହୋର ପଡିଲେ ହୋଇ ନିରାମାଖି
ଶରୀର ଦହୁଅଛୁ ମୋର ସୈନ୍ୟ କଷ୍ଟ ଦେଖି ।୫୮।
ତୋତେ ଜିଣିମାକୁ ମୁଂ ତ ନୋହଇ ସାମରଥ
ଅଭିମାନେ ବ୍ରତିବା କି ସେ ମରଣ ଅବସ୍ଥା ।୫୯।
ରାଜା ବନୋସ୍ତ୍ରୀ କହନ୍ତେ ହୋଇ ମହାକ୍ରୋଧୀ
ସଇନ ମରାଇଲୁ ତୁ ବିନା ଅପରାଧୀ ।୬୦।
ଉଠ ଉଠ ନୃପତି ହୋ ନାହିଂ ତୋର ଦୋଷ
ପ୍ରତଗ୍ୟାଂ ସହି ନୁଆରି ତୋର ସଇନ କଲୁଂ ନାଶ ।୬୧।
କରପଦ୍ମ ଯୋଡି ବୋଲଇ ବଇଲୋଚନ ଶାହ୍ୱ
ନାଶକଲୁ ମୋର ସନ୍ୟ ଦେବ କର ଶାହ୍ୱ ଶାହ୍ୱ ।୬୨।
ଯଦ୍ୟପି ଅର୍ଜୁନ ବାସୁଦେବ ଅଭେଦ ଆତ୍ମା
ସଞ୍ଜିବନୀ ନାଥ ତୁହି ତାରଣ ମହାତ୍ମା ।୬୩।
ସ୍ୱାମୀ ସମସ୍ତ ରାଜାଙ୍କେ ଯିବେ ଯେ ହରଷେ
ସ୍ୱାମୀଙ୍କ ସେବାକରି ମୁଂ ଯିବି କି ନିରାଶେ ।୬୪।
ଅର୍ଜୁନ ବୋଇଲେ ହୋ ପଡିଲେ ତୋର ସୈନ୍ୟବଳ
ମୃତ୍ୟୁବନ୍ତ ପ୍ରାଣୀ ହୋ ନ ବ୍ରତନ୍ତ କେହୁଣିସି କାଳ ।୬୫।
ସ୍ୱାମୀ ସନ୍ୟ ମୋର ନାଶକରି ବ୍ରତାଇବୁ ଯେବେ
ମୋତେହେଂ ନାରାଜକେ ସ୍ୱାମୀ ବଧକର ଏବେ ।୬୬।
ସ୍ୱାମୀ କୁଟୁମ୍ବଯାକ ମରଇ ବ୍ରତନ୍ତ ଯେବଣ ପ୍ରାଣୀ
ପୁରୁଷ ଅଲକ୍ଷଣ ତାକୁ ଜନରେ ନ ଗଣି ।୬୭।
ଏତେ କହି ପଦ୍ମାସନେ ବସିଲା ନୃପମଣି
ମୁକୁତ ଗତ ନାଥ ଶିର ମୋ ଛେଦ ଏହିକ୍ଷଣି ।୬୮।

ଭରଥେ ଘରେର ମଲ୍ଲ ନାରାୟଣ ଅଟୁ ତୁମ୍ଭ ଦୁହିଁ
ତବ ହାଥେ ଶିର ଛେଦନ ହେଲେ ବଇକୁଣ୍ଠେ ପାଇବ ସ୍ଥିତି ।୬୯।
ସ୍ୱାମୀ ଅର୍ଜୁନ ତୁମ୍ଭ ମୋହୋର ଇଷ୍ଟ ଯେ ଦେବତା
ତୁମ୍ଭ ସେ ମୋର ସ୍ୱାମୀ ଅଟୁ ପିତାମାତା ।୭୦।
ବଇଲୋଚନ ଶାହ୍ମର ଯହୁଂ ଶୁଣିଲେ ସ୍ୱେ ନରାଣ ବଚନ
ମାତଳ ବୋଇଲା ରକ୍ଷା କରବୁ ନାହ୍ମଂକ ଫାଲଗୁନ୍ୟ ।୭୧।
ଜୀବନ୍ୟାସ ଶରେକ ଘେନିଣ ସର୍ବସାରୀ
ଅମୃତ ବୃଷ୍ଟି କଲେ ନାରାଜ କର ପ୍ରାଞ୍ଜ ।୭୨।
ଯେତେବେଳେ ଅର୍ଜୁନ କଲେ ଅମୃତ ଶରବୃଷ୍ଟି
ସନ୍ୟ ଉପରେ ଶର ବରଷିଲାକ ଝାନ୍ତି ।୭୩।
ଚେତନା ପାଇଣ ସେ ଉଠିଲେ ସର୍ବ ସଇନ
ହାହ୍ମ ହାହ୍ମ ବାସବ ବୋଲି ଉଠିଲା ଘୋର ଧୁନ ।୭୪।
ନିମନ୍ତ୍ରଣ ଯୋଗାଡ କଲେ ସୁଭଦ୍ରାର ନାହା
ସମଦଣ୍ଡ ଘେନି ବଇଲୋଚନ ଶାହ୍ମ ତୁ ରାଜସୂ ଯାଗକୁ ଯାଅ ଯା ।୭୫।
ଅନେକ ସାନନ୍ଦେ ରାଜା ହୋଇଲା ପରଣାମି
ମୋହୋର ରାଜ୍ୟେ ଆଜକ ରହ୍ମବା ହୋ ଦେବସ୍ୱାମୀ ।୭୬।
ମୁଣୋହ୍ମ ଯୋଗାଡ ଦେବଇଂ ଯେତେମାନେ ପାରଇ
ରାଜ୍ୟକଇଂ ଅନେକ ସୁଲଭ ହୋଇବ ମୋହୋରହ୍ମଂ ।୭୭।
ଅର୍ଜୁନ ବୋଇଲେ କାହାରହ୍ମଂ ରାଜ୍ୟେ ଆମ୍ଭର ନାହ୍ମଂ ନା ଭୋଜନ
ପିତାର କାର୍ଯ୍ୟେ ଆମ୍ଭେ ଆନେ ଦେବୁଂ ଅନ୍ନ ।୭୮।
ଆହୋ ବଇଲୋଚନ ଶାହ୍ମ ଚଲ ତୋର ସମଦଣ୍ଡ ଘେନି
ଅପୂର୍ବ ପଦାର୍ଥ ନେବୁଟି ଦେଖା ଦରଶନି ।୭୯।
ପାଥର ଆଗ୍ୟାଂସ୍ୱେ ସେ ଚଳଇ ଯମନିକ ବାଳ
ଥାଠ ଚଳାଇଲା ରାସ୍ୱେ ତେଜଣ ଆପଣା ମଣ୍ଡଳ ।୮୦—୪୬୦୨।

———

# ଅର୍ଜୁନଙ୍କର ବର୍ଣ୍ଣାନକ ରାଜା, ବଭ୍ରୁବାହନଙ୍କର ପଣ୍ଡା ବେଦ ଶ୍ରବଣ, ଅଙ୍ଗାରପର୍ଣ୍ଣ ଓ ଦ୍ରୁପଦ ରାଜାଙ୍କୁ ନିମନ୍ତ୍ରଣ

ତହୁଂଣ ସୁବର୍ଣ୍ଣପୁର ବୋଲ ପ୍ରେନଇ ନଗରେ
ତହୁଂ ଯାଇଂ ପ୍ରବେଶ ହୋଇଲେ ଶିବଭଦ୍ରା ନଦୀତଟରେ ।୧।
ସେ ସୁବର୍ଣ୍ଣପୁର ରାଜା ବନାମାକ ଚନ୍ଦ୍ରବୃତ୍ତି
ତାହାର ତହୁଂକ ଅର୍ଜୁନ ଦୂତ ବରଗିଲେ ଝାଟ ।୨।
ବଜପ୍ରେ ନରବର ଚନ୍ଦ୍ରଶାଳା ଭୁବନେ
ପ୍ରଣପତ୍ୟ ହୋଇ ଜଣାଇଲେ ଦେଶାନ୍ତରମାନେ ।୩।
ସ୍ୱାମୀ ଯୁଧିଷ୍ଠିରଦେବ ରାଜସୂୟ ଯାଗ କରିବା ନିମନ୍ତେ
ଅର୍ଜୁନ ଦିଗବିଜପ୍ରେ ଉତ୍ତର ପ୍ରଶସ୍ତେ ।୪।
ଅନେକ ରାଜ୍ୟେ ଦେବ ଆସୁଅଛନ୍ତି ଉଜାଡ଼
ଦୁଷ୍ଟ ହୋଇଲେ ତାହାନ୍ତ ଦେବଂ ଗଂଜଣ ଚୂରକର ।୫।
ସମଦଣ୍ଡ ଘେନି ଗୃଲ ଯିବାକ ପାଗ୍ରେଛି
ଭଗତେ ଅନୁଗ୍ରହ ସେ କରଇ କରିଷ୍ଠୀ ।୬।
ଭଗ୍ୟଂବନ୍ତ ରାଜା ସେ ବନାମାକ ଚନ୍ଦ୍ରବୃତ୍ତି
ଶୁଣିଣ ସାନନ୍ଦ ମନେ ଆସଇ ଭୂଅପତି ।୭।
ସଇନି ସାଗରେକ ଅଛଇ ତାର ଭୁଲେ
ରାଜ୍ୟରୁ ବାହାର ହୋଇ ସମସ୍ତେ ଅଇଲେ ।୮।
ନଦୀରେ ଅର୍ଜୁନର ଆହାର୍ଣ୍ଣିକ ବେଳେ
ସମ୍ମୁଖରେ ଦ୍ରଶନ କଲ ସୁବର୍ଣ୍ଣପୁର ମହୀପାଳେ ।୯।
ପ୍ରଣପତ୍ୟ ହୋଇଲ ସେ ବନାମାକ ରାଜେଶ୍ୱର
ପ୍ରସନ୍ନ ହୋଇଣ ଦେଖି ପାଣ୍ଡବ ସୁନ୍ଦର ।୧୦।
ଅକ୍ଷତ ଗୁଆ ଦେଇ କଲେକ ନିମନ୍ତ୍ରଣ
ଦଣ୍ଡ ଘେନିଣ ସେ ରାଜା ବାହାର ତତକ୍ଷଣ ।୧୧।
ନିମନ୍ତ୍ରଣ ପାଇ ସେ ଚଳଇ ନରପତି
ତହୁଂଣ ଧନୁର୍ଜପ୍ରେ ଚଳିଲେ ରାଜାନ୍ତ ନିମନ୍ତ ।୧୨।

ବିଜୟେ ଧନୁର୍ଜୟେ ଚତୁରଂ ଥାଠ ଯେ ଚଳାଇ
ଶିବପୁର ନଗ୍ରରେ ପ୍ରବେଶ ବୀର ପାର୍ଥ ଯାଇ ।୧୩।
ବୀରତୂର ଶବଦରେ ସିନ୍ଧୁ ଉଚ୍ଛୁଳଇ ।୧୪।
ବଷ୍ଟୁକର ପଣ୍ଡା ଯେ ନଗ୍ରେଣ ଆଧିପତି
ବ୍ରାହ୍ମଣ ରାଜା ସେ ବେଦ ଶାସ୍ତ୍ରେଣ ବ୍ରତି ।୧୫।
ମୁନେନ୍ଦ୍ର ଜଣାଇଲେ ଦେବ ଶୁଣିମା ସାବଧାନେ
ଉତ୍ତର ଭଗବତେ କଲେ ପାଣ୍ଡବ ଫାଲଗୁନ୍ୟେ ।୧୬।
ବାରତା ପାଇଣ ସେ ବଷ୍ଟୁକର ବ୍ରାହ୍ମଣ
ବୋଇଲା କଟକେ ମୋର ପାଟ୍ୟେଡ଼ା ପାର ଯେତ୍ୱକ୍ଷଣ ।୧୭।
ନଗ୍ର ଭିତରେ ସେ ପାଡ଼ିଲେ ପାଟ୍ୟେଡ଼ା
କର୍ପୂର ଚନ୍ଦନ ଯେ ଢଳେକ ତହିଂ ଛେର ।୧୮।
ସେ ବଷ୍ଟୁକର ପଣ୍ଡାଂକର ଭାରିଯା ଗୃରୁମନ୍ତି
ସେ ଅମୃତ ଯୋଗାଡ଼ମାନ ପଚନ କରନ୍ତି ।୧୯।
ବିପ୍ରଗଣନ୍ତ ଘେନିଣ ଚଳିଲେ ବଷ୍ଟୁକରେ
ଅର୍ଜୁନ ରହିଣଛନ୍ତି ନଗ୍ରର ବାହାରେ ।୨୦।
ପଞ୍ଚାଶ ଭାର ଯେ ମୁକୁତା ଦ୍ରବ୍ୟ ଘେନି
ଛାମୁରେ ଦ୍ରଶନ କଲା ବଷ୍ଟୁକର ବୀର ଫାଲଗୁନି ।୨୧।
ବଷ୍ଟୁକର ପଣ୍ଡାଟେ କଲେକ ନିଉଛୁନି
ଅର୍ଜୁନ କୋଳକରି ପଣ୍ଡାଂକୁ ବେଗେ ତୋଳି ।୨୨।
ଆଲଟ ଚମର ଯେ ଡାଳନ୍ତି ସର୍ବବାଳୀ
ନଗ୍ରେଣ ପଶନ୍ତେ ଯେ ପଡ଼ଇ ହୁଳହୁଳି ।୨୩।
ଅନେକ ଉତ୍ସବ ଯୋଗାଡ଼ନ୍ତି ବନ୍ଧୁଜନେ
ବିଜେ କରାଇଲେ ନେଇ ଚନ୍ଦ୍ରଶାଳା ଭୁବନେ ।୨୪।
ସର୍ବ ଅଳଂକାର ହୋଇ ବଷ୍ଟୁକର ପଣ୍ଡାଂକ ରାଣୀ
ହାତେ ଅର୍ଘ୍ୟ ଘେନି ଅର୍ଜୁନଙ୍କୁ ବନ୍ଦାଇଲେ ଆଣି ।୨୫।
ଅର୍ଜୁନର ବଦନ ଚୃହ୍ନଂଣ ପ୍ରଶଂସି
ମୁହିଂ ସେ ଯେ ନଗ୍ରରେ ଯେ ଅଟଇ ଭିକ୍ଷାବାସୀ ।୨୬।

---

୧୮।୧ ନକ୍ଷେ ଘୋଷଣା ଦିଲେ ପାତାଂଗ ହୁଷ୍ଟ ସଡ଼ା (ଛେର)
(କେତେକ ପୋଥି)

ବିଶ୍ରାମ କଲେ ଆସି ମୋହୋର ଭୁବନେ
ଦୁର୍ଗତି ଫିଟିଲା ମୋର ମହନ୍ତଂକ ଦରଶନେ ।୨୭।
ଅପୁତ୍ରିକ ହୋଇଥିଲି ଅନେକ କାଳ ପରିଯନ୍ତେ
ଯେତ୍ତେ ଜନମାନେ ଅପୁତ୍ରିକ ଦେଖି ରାଜ୍ୟୁଂ ବାହାର କରନ୍ତିଲେ
ମୋତେ ।୨୮।
ସ୍ୱାମୀ ମୋ ଦ୍ୱାରେ ତୁମ୍ଭେ ଆସି କଲ ଭିକ୍ଷାପାତ୍ର
ଧର୍ମବଳେ ମୁହ୍ନଂ ତୁମ୍ଭନ୍ତ ହୋଇଲି ଭଗତ ।୨୯।
ଦେଖିଣ ଦୟା ମୋତେ କଲେ ତୁମ୍ଭ ମାତା କୁଇନ୍ତା ମହାରାଣୀ
ବୋଇଲେ ପୁତ୍ରେକ ଉପୁଜବ ଭଗ୍ୟଂବନ୍ତ ମହାଶ୍ରେଷ୍ଠ ପୁଣି ।୩୦।
ସ୍ୱାମୀ ଯେସନେକ ଆଗ୍ୟାଂ ମୋତେ ଯହୁଂ ହେଲେ ଦେବୀ କୋଇନ୍ତୀ
ସେହି ମାସର ମଧ୍ୟେ ମୁଂ ହୋଇଲି ଗର୍ଭବତୀ ।୩୧।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣସି ପଣ୍ଡାୟେ
କେମନ୍ତେ ଆମ୍ଭନ୍ତ ଚହ୍ନି ବୋଇଲ ଧନୁର୍ଜୟେ ।୩୨।
ପଣ୍ଡାୟେ ବୋଇଲେ ଓଡ଼ାହ କୁଣ୍ଡାଳ ବଳ ମାରି
ଜୟସେନ ଠାକୁରେ ମୋତେ ଯେ ରାଜ୍ୟରେ କଲେକ ଅଧିକାରୀ ।୩୩।
ବାହାର ହୋଇ ରାଜ୍ୟରୁ ଗଲେ ଯେତେବେଳେ
ବାମଦେବ ପୁରୋହିତ ମୋତେ କହିଲେ ସନ୍ଧ୍ୟାକାଳେ ।୩୪।
ବୋଇଲେ ହୋ ବିଷ୍ଟୁକର ତୁ ନୁଆରିଲୁ ଚହ୍ନି
ପାଣ୍ଡବେ ତୋହୋର ରାଜ୍ୟେ ଥିଲେ ଗୋପ୍ୟାନ ରୂପ ଘେନି ।୩୫।
ଗୁଣ୍ଡାଳ ବଳ ଯେତ୍ତୁ ମାଇଲେ ସଂଗ୍ରାମେ
ପବନ ନନ୍ଦନ ସେ ଯେ ପାଣ୍ଡବ ଭୀମସେନେ ।୩୬।
ପୁରୋହିତଂକ ବଚନେ ମୁଂ ଲେଉଡ଼ିଲି ଚଉକନ୍ତି
ଅନେକ ବନ କନ୍ଦର ଲେଉଡ଼ିଲି ମୁଂ ଝାନ୍ତି ।୩୭।
ସ୍ୱାମୀଂକ ଦ୍ରଶନ ମୁଂ ପାଇଲି ଯେତେକାଳେ
ପ୍ରସନ୍ନେ ଜଗନ୍ନାଥ ମୁଂ ଦେଖିଲି ବେଳାତଡ଼ୋଳେ ।୩୮।
ସ୍ତ୍ରାହାନ ଆହାର୍ନିକ ସାରିଣ ଧନୁର୍ଜୟେ
ବିଷ୍ଟୁକର ପଣ୍ଡା ଘରେ ମୁଣୋହିକ ବଜେଯେ ।୩୯।
ସମଦଣ୍ଡ ସଇନା ଭୁଞ୍ଜନ୍ତ ତୋଷମନେ
ଘାବେଣ ଅନ୍ତ ନିପୂତ ଯେ ହୋଇଲେ ଅରଜୁନେ ।୪୦।

ଆଂଗ୍ରେବନ ସାରଣ କର୍ପୂର ତାମ୍ବୋଳ ଭୁଞ୍ଜି
ଗୁରପୁତ୍ର ପଣ୍ଡାଂକର ଦେଖି ଅର୍ଜୁନ ତୋଷ ଭଜ ।୪୧।
ପୁତ୍ରଂକୁ କୋଳେ ଧଇଲ ବଷ୍ଟୁକର ପାଟରାଣୀ
ସ୍ୱାମୀଂକର ପ୍ରସନ୍ନ ହୋଇଲା ଅହ୍ବାଓ ସୁଲକ୍ଷଣୀ ।୪୬।
ଅନେକ ଅଳଂକାର ଧଲେକ ଦୁଗ୍ଧହର
ବ୍ରାହ୍ମଣନ୍ତ ଘେନ ଯାଅ ହସ୍ତିନା ନଗ୍ରପୁର ।୪୩।
ନିମନ୍ତ୍ରଣ ଯୋଗାଡ଼ ଘେନିଣ ବଷ୍ଟୁକର
ଶିବପୁର ନଗ୍ର ଜଣି ହୋଇଲେକ ବାହାର ।୪୪।
ତତ୍କ୍ଷଣ ଅର୍ଜୁନ ଗଲେ ଥାଠନ୍ତ ଚଳାଇ
ଯେକଚକ୍ରା ନଗ୍ରପୁରେ ପ୍ରବେଶ ହେଲେ ଯାଇଂ ।୪୫।
ଭାରତୂର ମର୍ଦ୍ଦଳ ଯେ ବଜଘୋଷ ବାଜନ୍ତି
ଦେବ ଦୁନ୍ଦୁଭି ବାଜଇ ଅଷ୍ଟରତ୍ନେ ମଣ୍ଡି ।୪୬।
ବକାସୁର ପର୍ବତେ ବଜଯେ ଧନୁର୍ଜ୍ଜଯେ
ଘୋର ଶବଦ ବାଦ୍ୟେ ପୃଥୀ ଉଲ୍କାପାତ ପ୍ରାୟେ ।୪୭।
ନଗ୍ରକୁ ପଶନ୍ତେଣ ସେ ଗୃରଗଣ ମୁନେହ୍ବ
ବେଦଶ୍ରବଣ ପଣ୍ଡାଂକର ଗୁମୁରେ ଯାଇଂ କହ୍ବ ।୪୮।
କେଉଂଣ ଦେଶରନ୍ତି ପ୍ରବେଶ ଯେକଥାଠ
ଅପୁଚ୍ଛ ଅଗୋଚରେ ପଶଇ ଆମ୍ଭ ରାଷ୍ଟ୍ର ।୪୯।
ଶୁଣିଣ କୋପକଲା ବେଦଶ୍ରବଣ ପଣ୍ଡା
ଆସ୍ତାନରୁ ଉଠିଣ ସେ କରେ ଘେନିଲା ଖଣ୍ଡା ।୫୦।
ସାଜରେ ଦ୍ୱିଜବରେ ସଇନ ବଳ ଥାଠ
ପରଦେଶୀ ଯୋଦ୍ଧାଂକର ଶିର ବେଗେ କାଟ ।୫୧।
ଅରାଜାଂକ ଆଗ୍ୟାଂ ପାଇ ଧାଂଇଲେ ଦୁଷ୍ଟ ଦ୍ୱିଜେ
ପଖାଉଜ ଭୁଲେ ଢୋଲ ନିଶାଣ ଭାରତୂର ବାଜେ ।୫୨।
ହାଥୀ ଯେକ ଆରୋହଣ ଯେ ବେଦଶ୍ରବଣ ପଣ୍ଡାୟେ
ଦୃଘର ବଳ ଘେନିକର ଦ୍ୱିଜବର ଆୟେ ।୫୩।

---

୪୨।୨ କୋଇଲ୍ୟାଂକର ପ୍ରସନ୍ନ ହୋଇଲା ପୁତ୍ରବନ୍ତୀ ସୁଲକ୍ଷଣୀ । (କ)
୪୮।୨ ଶ୍ରବଣ—ଶର୍ମଣ ।

ବେନି ଅଶ୍ୱବ୍ରତ ପାଟଛତ୍ର ଆଲମ୍ବ ଉଦ୍ଦଣ୍ଡ
ଟାଳନ୍ତି ଚାମର ଯେ ମୋହନ୍ତି ବ୍ରହ୍ମାଣ୍ଡ ।୫୪।
ରଥ ଗଜ ଅଶ୍ୱ ପାଦାନ୍ତି ଯେ ଅନେକ ଅକଳଣା
ବହୁତ ସଇନ୍ୟ ଚଳାଇ ସେ ବେଦଶ୍ରବଣା ।୫୫।
ଅର୍ଜ୍ଜୁନ ରହିଅଛୁ ବକାସୁର ପର୍ବତ
ଅର୍ଜ୍ଜୁନ ସନ୍ନିଧିରେ ହୋଇଲେ ଯାଇଂ ଓହୋବଳ ଭେଟ ।୫୬।
ଅର୍ଜ୍ଜୁନ ବୋଇଲେ ରହ ରହ ପଣ୍ଡା ହେ
ତୁମ୍ଭର ଆମ୍ଭର ନାହିଂ କଛିହିଂ ସନ୍ଦେହେ ।୫୭।
ବହନ୍ତି ଦ୍ୱିଜବରେ ଯେ ମହା ମହା ବଳିଷ୍ଟ
ସମରେ ନ ଘୁଞ୍ଚନ୍ତି ସେ ଯେ ଅଟନ୍ତି ଗରିଷ୍ଟ ।୫୮।
ଶ୍ରୀବତ୍ସ ଅଂକିତ ସେ ହଣଇ ଥାଠଯାକେ
ବ୍ରହ୍ମାଣ୍ଡ ଉଛୁଳୁଅଛୁ ଯେ ମାର ମାର ଡାକେ ।୫୯।
ବହୁତ ପ୍ରତଗ୍ୟାଂ ସେ କହିତ କ ପାର
ସଗେଣ ବ୍ରାହ୍ମଣ ବଳ ବେଢିଲେ ପୁରସର ।୬୦।
ଛେଲ ଚନ୍ଦ କୋନ୍ତ ନାସଜ ଖଣ୍ଡଗ ଯାଠି
ବହନ୍ତି ବପ୍ରବଳ ଜାବନ୍ତେ ସ୍ୱେକମୁଖେ ଉଠି ।୬୧।
ବପ୍ରବଳ କୋପ ଦେଖି ଅର୍ଜ୍ଜୁନ ସଇନ୍ୟ
ନାସଜ ପୂରେଇଣ ବନ୍ଧିଲେ କରଣ ମୁଖ ଧୁନ୍ୟ ।୬୨।
ଅର୍ଜ୍ଜୁନ ସମାର୍ଜ୍ଜିଇ ଯେ ଆପଣା ସଇନ୍ୟକ
ଅକାରଣେ ତୁମ୍ଭେ କୋପ କରୁଛ କାହିଂକ ।୬୩।
ନ ଜାଣି ବ୍ରାହ୍ମଣେ କୋପ କଲେକ ଯଦ୍ୟପି
ସ୍ୱେ ସଜ୍ୟେ ବ୍ରାହ୍ମଣଂକୁ ଆମ୍ଭେ ଅଛୁଂ ଥାପି ।୬୪।
ମାତଳ ସାରଥିକ ବୋଇଲେ ବୀର ପାଥ
ସେ ବ୍ରାହ୍ମଣ ଗୁମ୍ଫକୁ ହୋ ବାହା ମୋର ରଥ ।୬୫।
ନ ଜାଣି ଅଗ୍ୟାନେ ପର ଥାଠ ବୋଲଣ ଅଇଲେ
ସମାଧାନ ହୋଇବ ସେ ବାରତା ପାଇଲେ ।୬୬।
ଅର୍ଜ୍ଜୁନର ଆଗ୍ୟାଂସ୍ୱେ ସେ ମାତଳ ସାରଥି
ପବନୁଂ ବେଗେ ଅଶ୍ୱ ବାହିଲା ତତକ୍ଷଣାନ୍ତି ।୬୭।

---

୬୭।୨ ପବନୁଂ ବେଗେ ରଥ ବାହିଲା ତତକ୍ଷଣାନ୍ତି । (ଙ,ଡ,ଘ,ଙ,ଥ)



ଧାଡକାରେ ଅଶ୍ୱେ ଉଠିଲେ ଅତି ବେଗେ
ରଥ ଉଭାରିଲେ ନେଇ ବେଦଶ୍ରବଣ ପଣ୍ଡାଂକର ଆଗେ ।୬୮।
ଦେଖିଣ ବ୍ରାହ୍ମଣେ ଯେ କରେଣ ଧନୁ ଧରି
ଅର୍ଜୁନ ଉପରକୁ ବାହ୍ଧଲେ ଶର ଗୃରି ।୬୯।
ଅର୍ଜୁନର ଶରୀର କି ଭେଦାଇ ତାହାଂକର ଶରଘାୟେ
ବୋଇଲେ ବାସବ ରହ ରହ ହେ ପଣ୍ଡାୟେ ।୭୦।
ତୁମ୍ଭେ ଯେ ଆହ୍ୟହୁଂ ଅଟ ବୁଭୁକ୍ଷିତ ଦ୍ୱିଜ
କେଉଂଣ ପ୍ରକାରେଣ ପାଇଲ ତୁମ୍ଭେ ଏଥି ରାଜ୍ୟ ।୭୧।
ବ୍ରାହ୍ମଣେ ବୋଇଲେ ଆହେ ଶୁଣ ମହାରଥୀ
ତୁହ୍ମ ଯେବେ ଆମ୍ଭନ୍ତ ପଚ୍ଚରିଲୁ ଆଦଅନ୍ତ ପ୍ରତି ।୭୨।
ବଜ୍ରକପଟ ବୋଲିଣ ଥିଲା ଅସୁର ରାଜାୟେ
ଗୃରିଗୋଟି ପୁତ୍ର ତାର ଯେକ ଦୁହିତାୟେ ।୭୩।
ବକ ହିଡମ୍ବକ ଆଉ କୁର୍ମ୍ମିରି କନ୍ନରି
କୁର୍ମ୍ମିରି ଜ୍ୟେଷ୍ଠ ଯେ ସେ ସୁରନରୀ ଅଧିକାରୀ ।୭୪।
କନ୍ନରି ବୋଲକରି ଯେ ତାହାର କନିଷ୍ଠ
ତାହାର ନିଜ ରାଜ୍ୟ ହୋୟେ ଯେ ମଧୁବନ ରାଷ୍ଟ୍ର ।୭୫।
ହିଡମ୍ବକ ବୋଲିକରି ତାହାର ସାନୁଜ
ହିଡମ୍ବକ ବନେ ସେ କରଇ ନିଜ ରାଜ୍ୟ ।୭୬।
ହିଡମ୍ବକ ବନେ ଥାଇ ତା ଭଗ୍ନୀ ହିଡମ୍ବିକା
କ୍ଷଣକର ମଧ୍ୟେ ପୃଥୀଯାକ ପାରଇ ସେ ଭକ୍ଷି ।୭୭।
ହିଡମ୍ବକ ଅନୁଜ ଅଟେ ବକ ଯେ ରାକ୍ଷସ
ଯମଦଣ୍ଡେ ଅବଧ୍ୟ ସେ ତାର କାହାରେ ନାହିଂ ତ୍ରାସ ।୭୮।
ଯେକଚକ୍ରା ନଗ୍ରେ ଯେ ସେ ପୁରୁଷ ଠାକୁର
ରାଜା ହୋଇଥିଲା ସେହୁ ଅନେକ ଯୁଗର ।୭୯।
ସେ ବକ ରାକ୍ଷସ ଦର୍ପ କପଟେ ନିବାରି
ତେଣୁକରି ଭୁଜଦଣ୍ଡେ ଯେ ରାଜ୍ୟେ ମୁଂ ହୋଇଲ ଅଧିକାରୀ ।୮୦।
ଅର୍ଜୁନ ବୋଇଲେ ତୁହ୍ମ ହୋ ମାଇଲୁ କି ବକ
କେ ଆନ ମାଇଲା ତାହା କହନି ସରୂପ ।୮୧।

ବେଦଶ୍ରବଣ ବୋଇଲା ଶୁଣ ହେ କ୍ଷତ୍ରୀ ତଥ୍ୟ
ତୁ ଯେ ପୁଚ୍ଛାକଲୁ ତୋତେ କହିବା ଯଥାର୍ଥ ।୮୨।
ଆହୋ ବକଦୈତ୍ୟ ବୋଲିକର ଯେଉଂଣ ରାକ୍ଷସ
ଯମଦଣ୍ଡ ଅବଧ୍ୟ ସେ ତାର କାହାରେ ନାହିଂ ତ୍ରାସ ।୮୩।
ଏକଚକ୍ରା ନଗ୍ରେ ସେ ଅଟଇ ଅଧିପତି
ତାହାର ଦର୍ପେ ଯମ ଏଥି ନ କରେ ଅମାନ୍ତି ।୮୪।
ଆକାଶୁଂ ଜଳବୃଷ୍ଟି ହୁଅଇ କଲେ ଇଚ୍ଛା
ଇନ୍ଦ୍ର ବୃଷ୍ଟି କରଇ ଏ ନଗ୍ରେ ମନବାଞ୍ଛା ।୮୫।
ଜରା ଅବସ୍ଥା ଏଥି ନ ଥାଏ ରୋଗବ୍ୟାଧି
ପରରାଷ୍ଟ୍ର ପଡଲେ ସେ ଦୂରୁହଂ ପାରେ ସାଧି ।୮୬।
ଅସଂଖ୍ୟ ଫଳ ଏଥି ଫଳଇ ବସୁନ୍ଧରା
ଏମନ୍ତେ ସୁବଧାନେ ରାଜ୍ୟ ଯେ ଏକଚକ୍ରା ।୮୭।
ଯେ ଯେତେ ଅର୍ଜଇ ସୁଖେ ଭୋଗ କରଇ ଦୁଇବାଣି
ନିଶଙ୍କେଣ ଜନ ପ୍ରଜାଏ ଉପୁଜାନ୍ତି ବହୁ କୃଷି ।୮୮।
ଏମନ୍ତେ ଏଠାର ସହସ୍ର ସତଷଠୀ ବରଷର
ଦୁଇମାସ କୋଡିଏ ଦିନେ ପାଳି ପଡଇ ଏକଘର ।୮୯।
ଭାତ ପିଠା ବେନି ଶଗଡ ପୋରୁଅ ହଳେ ବଇଲ ବେନି
ନରବଳି ଏକଜଣେ ପର୍ବତକୁ ଆସଇ ଘେନି ।୯୦।
ସେ ଭାତ ପିଠା ଦୁଇ ଶଗଡ ବଇଲ ପୋରୁଅ ମନୁଷ୍ୟ
ଏତେକ ନିତ୍ୟାପ୍ରତି ଭକ୍ଷଇ ସେ ରାକ୍ଷସ ।୯୧।
ଶୁଣ ହୋ ମହୀକ୍ଷେତ୍ରୀ ଏ ନଗ୍ରେ ମୋହୋର ବାସ
ଏଣ୍ଡେ ବଡ ନଗ୍ରେ ମୁଂ ବଞ୍ଚଇ ଭିକ୍ଷା ଆଶ ।୯୨।
ଏମନ୍ତେଣ ଭିକ୍ଷାପାନ କରନ୍ତେ ଏକଇ ସମୟେ
ମୋହୋର ଘରେ ପ୍ରବେଶ ଏକ ମହାମ୍ଭାଣୀ ସଙ୍ଗେ ଅଛନ୍ତି ପାଞ୍ଚ
ପୋଏ ।୯୩।
ସେ ଭିକ୍ଷାପାନ କରୁଥିଲେ ଏହି ନଗ୍ରେ ପଶି
ବେଳ ଅବସ୍ଥାନେ ମୋତେ ଘର ମାଗିଲେ ଭିକ୍ଷାବାସୀ ।୯୪।
ମୋହୋର ଘର ଅଧକେ ରହିଲେ ମହାମ୍ଭାଣୀ
ଏମନ୍ତେ ବଞ୍ଚିଲେ ସେ ସାତ ଦିବସ ସାତ ରଜଣୀ ।୯୫।

ସେହିଦିନ ଘରେ ମୋର ପଡିଲାକ ପାଳି
ପୁତ୍ର ଦୁହିତା ଘେନି ଆମ୍ଭେ ପତି, ପତ୍ନୀ ଭାଳି ।୯୬।
ଭାତ ପିଠା ପୋଡୁଅ ଶଗଡ ବଳଦ ଭିଆଇଲୁ
ନରବଳି ଜଣେ ନାହିଁ ବୋଲି ବିକଳେ ଭାଳିଲୁ ।୯୭।
ସେ ମହାତ୍ମାଣୀ ଦୟା କଲେ ଆମ୍ଭର କଷ୍ଟ ଦେଖି
ବୋଇଲେ ମୋହୋର ତହୁଁ ପୁତ୍ର ଦେବ ଅକାରଣେ ନୋହି
ଦୁଖୀ ।୯୮।
ଜୟସେନ ବୋଲିକରି ତାଂକ ପୁତ୍ର ଯେ ଗୋଟିଏ
ତାହାନ୍ତ ପଠିଆଇଲେ ଶଗଡ ଘେନିଯାଏ ।୯୯।
ପ୍ରବେଶ ହୋଇଲେ ଆସି ଯେତେହି ପରବତେ
ବକଦୈତ୍ୟଙ୍କୁ ମାଇଲେ ସେ ଅଭୟେ ବଳବନ୍ତେ ।୧୦୦।
ଆବର ପ୍ରପଞ୍ଚ କଲାକ ସେହି କାମରୂପୀ
ନଗ୍ରଆଡକୁ ମୁହଂକରି ଅସୁରକଇଂ ଥାପି ।୧୦୧।
ରଜଣୀ ପ୍ରଭାତେ ତାହା ଦେଖି ଡରିଲେ ସର୍ବଜନେ
ଭୟଙ୍କର ପଳାବନ୍ତ ଦେଖି ତା ବିକଟ ନୟନେ ।୧୦୨।
ସଭିଏଂ ବିଚାରିଲେ କାଲି କାହାର ଘରେ ପାଳି
ଠାକୁରଂକୁ ଯୋଗାଡ ନ ହେଲା ଅବା ସେ ନ ହେଲା ନରବଳି ।୧୦୩।
ମୋତେ ଆସିକରି ଯେ ବେଢିଲେ ସର୍ବଜନେ
ନଗ୍ର ନାଶଗଲା ତୋହୋର ହେତୁ ଠାକୁରଂକ ଅଭୋଜନେ ।୧୦୪।
ସମସ୍ତ ଲୋକେ ଅପଖ୍ୟାତି ହେଲେ ମହୁଂ ମୁକୁ
ବୋଇଲେ ଯେବେ ଯାଅ ଭୋଜନ ହୁଅ ଠାକୁରଂକୁ ।୧୦୫।
ମୁହିଂ ଯାଇଂ ପ୍ରବେଶ ହୋଇଲି ଅସୁର ସନ୍ନିଧାନେ
କର ଧରି ଉଚ୍ଛୁଡନ୍ତେ ପଡିଲା ଯାଉଧାନେ ।୧୦୬।
ନଗ୍ରଲୋକେ ଦେଖିଣ ସେ ପରମ ସାନନ୍ଦେ
ସାଧୁ ସାଧୁ ଧ୍ୱନି ଗୋଟିଏକ ଶୁଭିଲା ଆନନ୍ଦେ ।୧୦୭।
ସେ ମହାତ୍ମାଂକୁ ବସାରେ ଲୋଡିଲୁ ଆମ୍ଭେ ଯାଇଂ
ସେହି କେଉଂଣ କତି ଗଲେ ତାହାନ୍ତ ଲୋଡିତେ ନ ପାଇଂ ।୧୦୮।
ମୋହୋରେ ସମସ୍ତ ଲୋକେ କଲେ ଅଧିକାରି
ମହାତେ ଭେଟିଲୁ ସାଧୁ ଜୀବନ ତୋହୋର ।୧୦୯।

ସେ ଯେବେ ନଗ୍ରେ ଥାଆନ୍ତେ ଆମ୍ଭେ ତାହାନ୍ତ କରନ୍ତୁ ରାଜା
ଯେବେ ସମସ୍ତେ ତୋହୋର ଚରଣେ କରବୁ ପୂଜା ।୧୧୦।
ହେ ମହାରଥୀ ଶୁଣିଲୁକ ଯେ ମୋହୋର ଚରିତ
ଯେମନ୍ତେ ରାଜ୍ୟ ମୋତେ ହୋଇଲା ପ୍ରାପତ ।୧୧୧।
ଅର୍ଜୁନ ହସିଲେ ବେଦଶ୍ରବଣ ବଚନେ
ଯେ ଦତ୍ୟ ମାଇଲେ ମୋର ଭ୍ରାଥ ଭୀମସେନେ ।୧୧୨।
ଆହୋ ବ୍ରାହ୍ମଣ ଆମ୍ଭେ ଗୃହଭାଇ ଯେ ଭିକ୍ଷାକୁ ଚଳିଯାଉଂ
ଦୁଷ୍ଟ ବୋଲି ଭୀମସେନ ଠାକୁରଂକୁ ସଙ୍ଗତେ ନ ନେଉ ।୧୧୩।
କାର୍ତ୍ତିକ ମାସ କୃଷ୍ଣପକ୍ଷ ଅମାବଇ ଚନ୍ଦ୍ରବାର
ସ୍ୱାତି ନକ୍ଷତ୍ରକୁ ଯୋଗ ଅଟେ ସେ ଦିନର ।୧୧୪।
ସେ ଦିନରେ ତୁମ୍ଭେ ଯେ ଭିକ୍ଷାକୁ ନ ଗଲ
ପାଦ କୃଚ୍ଛ୍ର ବୋଲିକର ଗୃହରେ ରହିଲ ।୧୧୫।
ସେଦିନ ରାତ୍ର ପାହିଲେ ତୁମ୍ଭର ଘରେ ପଡ଼ିବ ପାଳି
ନରବଳି ଜଣେ ଲଗି ତୁମ୍ଭେ ବିକଳେଣ ଭାଳି ।୧୧୬।
ତୁମ୍ଭେ ବୋଇଲ ଆମ୍ଭେ ଯିବଇଂ ବ୍ରାହ୍ମଣୀ
ପୁତ୍ର ଦୁହିତା ସମ୍ଭାଳିଥିବୁଂ ବୋଲି କାହିଲ କ୍ରୋଧବାଣୀ ।୧୧୭।
ବିକଳ ଦେଖି ବୋଇଲେ ତୁମ୍ଭର ଘରଯାୟେ
ମୁହିଂ ଯେ ଘାନ୍ତ ଯାଇ ତୁମ୍ଭେ ରହ ହୋ ପଣ୍ଡ୍ରାୟେ ।୧୧୮।
ମାତାଂକର ବଇକୁଳି ଦେଖିଣ ପୁତ୍ରଗୋଟି ଯେ ବୋଇଲା
ଯେଘାନ୍ତ ପାଳି ତାତ ମୋହୋର ହୋଇଲା ।୧୧୯।
ଦୋହିତା ଗୋଟି ବୋଇଲା ତୁମ୍ଭେ ନ ଭାଳ ବିମନ
ମୋତେ ସେ ପରକୁ ସିନା କରବ ପ୍ରଦାନ ।୧୨୦।
ଯେଘାନ୍ତକ ପାଳି ତାତ ଦେଇଣ ମୋତେ ସୁଝ
ଯେ କଥାକୁ ପିତା ମନେ ଆନ ତୁ ନ ବୁଝ ।୧୨୧।
ତୁମ୍ଭର ବିକଳ ଦେଖି ବୋଇଲେ ଆମ୍ଭର ମାୟେ
ତୁମ୍ଭର ନିମନ୍ତେ ଦେବଇଂ ଗୋ ମୋହୋର ଯେକ ପୋୟେ ।୧୨୨।

---

୧୧୫। ପା.ଦ ପୁତ୍ର (ପୁତ୍ରିର) ବୋଲିକଣ ଗୃହରେ ରହିଲ । (କ)
୧୧୫। ପାଦକୃଚ୍ଛ୍ର— ପାଦର ଯନ୍ତ୍ରଣା, କଷ୍ଟ ।

ରାଜ ପାଣ୍ଡବଲେ କାର୍ତ୍ତିକ ମାସ ଶୁକଳ ପ୍ରତିପଦା ଭଉମବାର
ବିଶାଖା ନକ୍ଷତ୍ର ଭୋଗ ଯେ ଅଟଇ ସେ ଦିନର ।୧୨୩।
ଭୀମସେନ ଠାକୁରେ ଅଇଲେ ସେ ଦିନ ପୂର୍ବେ ପରବତେ
ବକାକଇଂ ମାଇଲେ ମାଲ ବନ୍ଧାଣ ମୁଥଘାତେ ।୧୨୪।
ଆହୋ ବେଦଶ୍ରବଣ ଆମ୍ଭର ମାତା କୋନ୍ତଭୋଜର କୁମାରୀ
ଜୟନ୍ତ ନାମ ବହିଲେ ଯୁଧିଷ୍ଠି ଦଣ୍ଡଧାରୀ ।୧୨୫।
ଜୟସେନ ନାମେ ଖ୍ୟାତ ସେ ଭୀମ ଠାକୁର
କୁନ୍ତିରୀ କନ୍ନରୀ ବକ ହିଡମ୍ବକ ଗୃହଂକର ଦର୍ପ କଲେ ଚୂର ।୧୨୬।
ହିଡମ୍ବିକା ପ୍ରଦାନ ହୋଇଲେ ହିଡମ୍ବକ ବନେ
ଘଟୋତ୍କଚ ଉତ୍ପନ୍ନ ହୋଇଲେ ସେ ଉଦ୍ୟାନେ ।୧୨୭।
ଅଜୟସେନ ବୋଲି କରି ଯେଉଂଣ ପୁତ୍ରଗୋଟି
ମୁହିଂ ସେହି ଅର୍ଜ୍ଜୁନ ହୋ ଗୋପ୍ୟାନ ନାମ ହେଠି ।୧୨୮।
କୀର୍ତ୍ତିବନ୍ତ ଜୟେବନ୍ତ ଆମ୍ଭର ସାନୁଜ
ନକୁଳ ସହଦେବ ଯେ ମାଦ୍ରୀର ଆତ୍ମଜ ।୧୨୯।
ତୋହୋର ଘରୁ ବାହାର ହୋଇଲୁ ଯେଉଂଣ ଦିନେ
ଅଙ୍ଗାରପର୍ଣ୍ଣଗକଇଂ ଜିଣିଲୁଂ ସୁର ଯେ ଅରଣ୍ୟେ ।୧୩୦।
ଦ୍ରୋପଦର ଭୁବନେ ଯାଇଂ ରହିଲୁ ଗୁପତେ
ରାଧାଚର ବନ୍ଧିଲ ମୁଂ ରାଜାଂକୁ ଦେଖନ୍ତେ ।୧୩୧।
ଶୁଣିଣ ବେଦଶ୍ରବଣ ତେଜିଲ ମତ୍ତହାଥୀ
ଅର୍ଜ୍ଜୁନର ଚରଣେ ଶତସହସ୍ର ଦଣ୍ଡ ପ୍ରଲମ୍ବ ହୋଇଲା ତଡିତ ।୧୩୨।
ସ୍ୱାମୀ ଅଦଭୁତେ ମୋର ରାଜ୍ୟେ ପଶିଲୁ ଅନମିତେ
ଭଲେ ଭର୍ତ୍ସନା ସ୍ୱାମୀ ନ ବୋଇଲି ତୋତେ ।୧୩୩।
ଅନେକ ଉତ୍ସବ କରାଇ ସେ ବେଦଶ୍ରବଣ
ଅର୍ଜ୍ଜୁନର ଚରଣେ ସେ ପୁଣ ପୁଣ କରଇ ପ୍ରଦକ୍ଷଣ ।୧୩୪।
ପ୍ରବେଶ ହୋଇଲେ ଯାଇଂ ଏକଚକ୍ରା ନଗ୍ର ଦେଶେ
ଆପଣା ପୁରେ ବ୍ରାହ୍ମଣ ରୁହାଇଲା ହରଷେ ।୧୩୫।
ଭାର୍ଯାର ନାମ ତାର ଅଟଇ ମାଳତି
ଲକ୍ଷ୍ମୀର ସମାନେ ସେ ଅଟଇ ରୂପବନ୍ତୀ ।୧୩୬।

ନଗରଗୋଟି ହଟଇ ତାର ଅଳକା ଭୁବନ ପ୍ରାୟେ
ଦେଖିଣ ସାନନ୍ଦ ଯେ ହୋଇଲେ ଧନୁର୍ଦ୍ଧର୍ଯ୍ୟେ ।୧୩୭।
ବେଦଶ୍ରବଣ କହଇ ଯେ ଧର୍ମସାର ଆଗେ
ଆଗୋ ଯେତେକ ସମ୍ପଦ ପ୍ରାପତ ମୋତେ ଯେହାଂକର
ଅନୁରାଗେ ।୧୩୮।
ଭିକ୍ଷାସୀ ରୂପ ଯେ ଧରିଥିଲେ ମୋର ଗୃହେ
ବକ ରାକ୍ଷସ ବଧକଲେ ଯେ ମୋହୋର ସନ୍ଦେହେ ।୧୩୯।
ବେଦଶ୍ରବଣ ତହୁଂ ଯେମନ୍ତ କଥା ଶୁଣି
ପୁତ୍ରନ୍ତ ହେନ ପ୍ରଣପତ୍ୟ ହୋଇଲେ ବ୍ରାହ୍ମଣୀ ।୧୪୦।
ମୁଣୋହ୍ଵକ ଯୋଗାଡ଼ ସେ ଆପଣେ ଦ୍ଵିଜବରେ
ମୁଣୋହ୍ଵ କଲେ ଅର୍ଜୁନ ବେଦଶ୍ରବଣର ଘରେ ।୧୪୧।
ଅନେକ ଯୋଗାଡ଼ମାନ ହଲେ ସଇନକ
ଉତ୍ତମ ଭଲ ତହିଂକ ଯୋଦ୍ଧାମାନନ୍ତ ଦେଖି ।୧୪୨।
ଆଂଗେବନ ସାରଣ ସେ ପାଣ୍ଡବ ସୁନ୍ଦର
ନିମନ୍ତ୍ରଣ ଯୋଗାଡ଼ ହଲେ ବେଦଶ୍ରବଣ ହାଥର ।୧୪୩।
ତୁହ୍ମେ ଯେ ଆମ୍ଭନ୍ତ ଅଟୁ ହୋ ବହୁତ ଉପୁଗାସ୍ତ
ଆପଣାର ଆଶ୍ରମ ଅଧେକ ହଲୁ ତୁଚ୍ଛାକର ।୧୪୪।
ଧର୍ମ ପ୍ରାପତ ପ୍ରାଣୀଂକ ହୋଅଇ ଯେତେବେଳେ
ଆପଣେ ସୁବୁଦ୍ଧି ଭାଷଇ ବାକ୍ୟଛଲେ ।୧୪୫।
ସର୍ବଦା ପ୍ରାଣୀଯେ ହାଦେ ନୁହନ୍ତ ନା ଦୁଖୀ
ଧର୍ମ ଆଚରଣେ କଲେ ହୁଅନ୍ତ ନା ସୁଖୀ ।୧୪୬।
ଯେତ୍ଵ ଭୁବନେ ଦୁଖ ପଡ଼ିଥିଲା ସମୟେ
କର୍ମ କରଣ ଯେ ଭୁବନେ ହୋଇଲୁ ଯେ ରାୟେ ।୧୪୭।
ବେଦଶ୍ରବଣ ପ୍ରଣପତ୍ୟ ଅର୍ଜୁନର ପଦ୍ମପାଦେ
ଯେତ୍ଵ ସମ୍ପଦ ଅରଜିଲି ମୁଂ ତୁମ୍ଭର ପରସାଦେ ।୧୪୮।
ଯେବେ ରାଜସୂୟ ଯାଗ ସଭାକୁ ପଣ୍ଡାଯେ ତଳ ଯେହ୍ଵକ୍ଷଣ
ପାଶୋର କ ପାରବୁ ଆମ୍ଭେ ତୁମ୍ଭର ଯେତେ ଗୁଣ ।୧୪୯।
ଆଗ୍ୟାଂ ପ୍ରମାଣେ ବେଦଶ୍ରବଣ ପଣ୍ଡା ଚଳାଇଲା ସଇନ
ବାରୁଣାବନ୍ତକଇଂ ଚଳେ ଶୁଭ ଅନୁକୂଳ ହେନ ।୧୫୦।

ତହୁଂଣ ବିଜେକଲେ ଗଲେ ସବ୍ୟସାଚୀ
ଦଧିମୁଖ ବନସ୍ତେ ପର୍ବତ ଦଧିରୁଚି ।୧୫୧।
ନନ୍ଦାକ୍ରତକ ବୋଲଣ ଯେତେକ ନଦୀଗୋଟି
ପୁଷ୍କର ବିଜେକଲେ ଥାଇ ତହିଂ ତୀର୍ଥ ନବକୋଟି ।୧୫୨।
ଦକ୍ଷିଣେସ୍ଥ ପର୍ବତୁଂ ସେ ବହଇ ଧବଳୀ
କୃଷ୍ଣ ଶୁକ୍ଳ ତାମ୍ର ଯେ ବହଇ ତିନିଓଳ ।୧୫୩।
ସେ ନଦୀରେ ସ୍ନାହାନ ଯେ ସାରଣ ଧନୁର୍ଜୟେ
ଆଦିତ୍ୟ ଅସ୍ତକାଳେ ରହିଲେ ସେହିଠାୟେ ।୧୫୪।
ଧଉମ୍ୟ ପ୍ରୋହିତଂକ ନନ୍ଦନ ସୁରେଶ୍ବର ପ୍ରୋହିତେ
ବିଷ୍ଣୁ ପୁରାଣ ସେ ଗ୍ରନ୍ଥରେ ଶୁଣାବନ୍ତି ଅନୁକ୍ରତେ ।୧୫୫।
ସେ ନନ୍ଦାକ୍ରତ ତୀର୍ଥ ମହିମାଂ ଅନେକ କହନ୍ତି
ଧର୍ମକଥା କହୁଂ କହୁଂ ପ୍ରସର ହୋଇଲା ରାତ୍ରି ।୧୫୬।
ସହସ୍ରେ କନ୍ୟା ଘେନି ଅଙ୍ଗାରପର୍ଣ୍ଣଗ ଆସଇ ଆକାଶୁଂ
ଅର୍ଜୁନ ଚିହ୍ନିଲେ ସେ ବିଦ୍ୟାଧର ଆସୁଂ ଆସୁଂ ।୧୫୭।
ପାଦାର୍ଘ୍ୟ ଦେଇ ତାକୁ ପୂଜାକଲେ ପାର୍ଥସ୍ୱାମୀ
ଦୁଷ୍ଟ ବାସବ ବୋଲି ତାଂକୁ ହୋଇଲେ ପରଣାମି ।୧୫୮।
ଅନେକ ରତ୍ନ ଦେଇ ଗନ୍ଧର୍ବକୁ କଲେ ପୂଜା
ଅକ୍ଷତ ଯୋଗାଡ଼ି ଦିଲେ କୋଇନ୍ତା ଦେବୀଂକର ତନୁଜା ।୧୫୯।
ରାଜସୁିଯାଗ ବାରତା କହିଲେ ଫାଲଗୁନି
ବହୁତ ସମ୍ଭବେ ଚଳବନ୍ତି ବୃନ୍ଦାଅର୍କ ବଳ ଘେନି ।୧୬୦।
ଯେସନେକ ବାରତା ଶୁଣିଣ ବିଦ୍ୟାଧର
ବୋଇଲେ ହୋ ଅର୍ଜୁନ ଅମର ସଭା ସହିତେ ହରି, ନେଲେ
କୁବେର ଭଣ୍ଡାର ।୧୬୧।
ଲକ୍ଷେ ରାଜାନ୍ତ ଯେତେ ଅଳଂକାର ସହିତେ
ଦେବାଙ୍ଗବସନ ଯେତେ ଲଗଇ ଅପ୍ରମିତେ ।୧୬୨।
ସ୍ୱର୍ଗର ସମ୍ପଦ ଯେ ଦିଲେକ ଚଳାଇ
ମୁହିଂ ଅଇଲି ପାଥ ତୋତେ ଦେଖିବାର ପାଇଂ ।୧୬୩।

---

୧୫୧।୨ ଦଧିମୁଖ ପର୍ବତେ ବିଜୟେ ଧନୁସନ୍ଧି । (ଅ)
୧୫୩।୧ ନନ୍ଦାବର୍ତ୍ତିକ ପର୍ବତୁଂ ସେ ବହଇ ଧବଳୀ । (କ,ଘ,ଖ)

ଅନେକ ପୁରୁଷାର୍ଥ କରିଲେ ଅଙ୍ଗାରପର୍ଣ୍ଣେ
ଅର୍ଜୁନଙ୍କୁ ଚଳାଇ ପଶିଲେ ଜଳକ୍ରୀଡ଼ା ରଙ୍ଗେ ।୧୬୪।
ବନ ଡଙ୍ଗର ଜିଣି ଚଳଲେ ପଞ୍ଚ ଦିବସେ
ବିଜୟେ ଦୁଷ୍ଟକୃଷ୍ଣ ପାଞ୍ଚାଳ ନଗ୍ର ଦେଶେ ।୧୬୫।
ସେ ରାଜ୍ୟର ରାଜା ଯେ ଦ୍ରୁପଦ ନୃପତି
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଯେ ତାହାଂକର ବେନି ସନ୍ତତି ।୧୬୬।
ଦ୍ରୋଣଙ୍କର ପିଅର ଯେ ବ୍ରାହ୍ମଣ କୁଳେ ଜାତ
ପର ଅଭିମାନ ନ ସହଇ ନୃପତି ସତ୍ୟବନ୍ତ ।୧୬୭।
ଧାର୍ମିକ ବିବେକ ସେ ପଣ୍ଡିତ ମହାଭାଗ୍ୟ
ବେଦ ଶାସ୍ତ୍ର ପୁରାଣେ ନିର୍ଜିତା ସେ ଅତ୍ୟନ୍ତ ସର୍ବଗ୍ୟ ।୧୬୮।
ଗୃଶବୃନ୍ଦ ରଥ ସାଜେ ବତିଶ ବୃନ୍ଦ ହାଥୀ
ନଉବୃନ୍ଦ ବାରସ ଯେକାଦଶ ଷଉଣୀ ପାଦାନ୍ତି ।୧୬୯।
ପାଞ୍ଚଶତ ରାଜା ଯେ ଖଟନ୍ତି ପାଶଦଣ୍ଡ
ଛତିଶତ ଯୋଜନ ମାଡ଼ ପଞ୍ଚାଳ ଦେଶଖଣ୍ଡ ।୧୭୦।
ପ୍ରଜାନ୍ତ ପୁତ୍ରସମ ପାଳଇ ସେହୁ ମହାରାଜା
ମାଣକ ଭୂମିରୁ ସେ ଘେନଇ ଚନାଯେକ ସଞ୍ଜା ।୧୭୧।
ଦେବତା ବ୍ରାହ୍ମଣେ ଭଗତ ଅନେକ ପୂଜା ପ୍ରକାରେ
ସେବି ବେଦ ଶାସ୍ତ୍ରେ ବରଣ ଦ୍ୱିଜବରେ ।୧୭୨।
ଗଉଡଗିରି ପର୍ବତେ ରହିଲେ ଫାଲଗୁନି
ସଇନି ରହିଲେ ରୁଦ୍ରବେଣୀ ନଦୀକୂଳ ଘେନି ।୧୭୩।
ଆସ୍ଥାନେ ବିଜେକର ଅଛଇ ଶିଖଣ୍ଡୀ
ଅର୍ଜୁନ ବିଗବଜେ ବାରତା ଶୁଣି ସମ୍ଭ୍ରେ ରାଜ୍ୟ ମଣ୍ଡି ।୧୭୪।
ସୁବର୍ଣ୍ଣର ଘର ଉପରେ ଅଷ୍ଟରତ୍ନ କଳଶେ
ନେତର ପାତାଙ୍ଗ ଯେ ଉଡନ୍ତି ତହିଂ ବାସେ ।୧୭୫।
ସବୁରି ଦ୍ୱାରେ କଦଳୀ ତୋଣା ଚଉରା ସୁବର୍ଣ୍ଣ ଘଟଭରି
ଦାଣ୍ଡି ଯାକେ ଉପହାର ପାଉନ୍ତି ପାଯେଡ଼ା ।୧୭୬।
ଘରେ ଘରେ ଚହକମ କରୁଛନ୍ତି ବାଳୀ
ହାଥରେ ଘେନିଛନ୍ତି ଯେ କନେକ ଅର୍ଘ୍ୟଥାଳୀ ।୧୭୭।

---

୧୭୨।୨ ବିଷ୍ଣୁ ସ୍ମରଣ ବସଇ ତହିଂ ସର୍ବଘଟରେ । (ନ,ଖ,ଡ,କ,ଅ)

॥୫

ସୈନ୍ୟମନ୍ତ ସମସ୍ତେ କହିଲେ ଦେଶାନ୍ତର ଧାଇଁ ବେଗେ
ଯାଇଁ ଜଣାଇଲେ ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନନଂକ ଆଗେ ।୧୭୮।
ସ୍ୱାମୀ ଅର୍ଜୁନ ବଜେ ଗଉଡ଼ଗିରି ପର୍ବତେ
ଶୁଣିଣ ସାନନ୍ଦ ଯେ ଦ୍ରୁପଦର ବେନିପୁତ୍ରେ ।୧୭୯।
ବାଜଇ ବାଦ୍ୟତୂର ବଜଘୋଷ ଢମକ ନିଶାଣ ଦାଉଣ୍ଡି
ଅନେକ ସାନନ୍ଦେ ରଥ ଗଜ ଅଶ୍ୱମାନନ୍ତ ମଣ୍ଡି ।୧୮୦।
ବେନିଲକ୍ଷ ପାଟଛତ୍ର ଗୃଢ଼ଲକ୍ଷ ଉଦ୍ଦଣ୍ଡ
ପାଞ୍ଚଲକ୍ଷ ସ୍ୱେତଲକ୍ଷୀ ବେନିଲକ୍ଷ ଆଲମ୍ବ ।୧୮୧।
ସଜାଡ଼ ମୃଦଙ୍ଗ ବୀର କାହାଳୀ ମହୁରୀ ବଜଘୋଷ
ବାଜନ୍ତ ଛନ୍ଦେଣ ଝୀଡ଼ା ରଙ୍ଗରସ ।୧୮୨।
ଭାରଯା ପୁତ୍ରନ୍ତ ଘେନି କୁଟୁମ୍ବ ସହିତେ
ନାରୀଗଣ ଉଭାରଲେ ସର୍ବାଲଂକାରେ ଅର୍ଘ୍ୟ ଘେନି ହାଥେ ।୧୮୩।
ବସନ୍ତ ଉତ୍ସବେ ଯେହ୍ନେ ବଜସ୍ତେ ବାସୁଦେବେ
ଜୟେ ଜୟେ ଶଙ୍ଖଧ୍ୱନି ପୂରଇ ଅନେକ ଉତ୍ସବେ ।୧୮୪।
ଆଳଟ ଚାମର ଆଦ୍ୟ ଯୋଦ୍ଧାମାନେ ଘେନି
ଖେଦାଇଣ ଅଶ୍ୱମାନନ୍ତ ବୁଲନ୍ତ ସଇନି ।୧୮୫।
ଯେସନେକ ସମ୍ଭ୍ରମେ ଦ୍ରୋପଦର ବେନିପୁତ୍ରେ
ପାଟ୍ଟେଛି ଚଳନ୍ତ ତହିଁ ରାଜା ଦ୍ରୋପଦ ସହିତେ ।୧୮୬।
ଅର୍ଜୁନ ବଜେକର ଅଛନ୍ତ ଗଉଡ଼ ନାମେ ଗିରି
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନନ ଯାଇଁ ଗ୍ରାମରେ ତଜେକର ।୧୮୭।
ପର୍ବତ ଉପରେ ଉଠିଲେ ଦ୍ରୋପଦର ବେନି ଯେ ତନୟି
ଅର୍ଜୁନର ପଦ୍ମପାଦ୍ୟେ ପ୍ରଣପତ୍ୟ ହେଲେ ଯାଇଁ ।୧୮୮।
ଆସ୍ତାନେ ବଜସ୍ତେ କରଛନ୍ତ ଧନୁର୍ଜୟେ
ପୁରସର ରହିଲେ ଯେ ଦ୍ରୋପଦର ବେନି ତନୟେ ।୧୮୯।

---

୧୮୧। ପାଞ୍ଚଲକ୍ଷ ମୟୂର ଝାଲ ଲକ୍ଷେକ ଆଲମ୍ବ । (ଛ)
୧୮୫। ଖେଦାଇଣ ଅଶ୍ୱମାନନ୍ତ ବହଉନ୍ତ ସଇନ । (ଘ,ଙ)
୧୮୯। ଦୂରୁ ଦେଖିଣ ରହିଲେ ଦ୍ରୋପଦର ବେନିପୋସ୍ୟେ ।
(ଘ,ଛ,ଖ,ଠ,ଝ)

ଆସ୍ଥାନର ଚଳେ ଯାଇଂ କଲେକ ନିଉଛାଳ
ଅନେକ ବନୋସ୍ମୀ କହିଲେ ଦୁହେଂ କୃତ ଯେ ଆଞ୍ଜୋଳ ।୧୯୦।
ରାଜ୍ୟ ସୁଲଭ ମୋହୋର ଶୁଭଇ ପୁଣ୍ୟଧ୍ୱନି
ଦୁଷ୍ଟନାରାୟଣ ଆମ୍ଭେ ଦେଖିଲୁ ଚକ୍ଷୁ ଘେନି ।୧୯୧।
ସ୍ୱାମୀ ଉତ୍ତର କୋଶଳେ ଛନ୍ତି ଯେତେକ ନୃପତ୍ତି
ସବୁର ସାଧୁ ଜୀବନ ସାର୍ଥକ ଜୀବନ୍ତି ।୧୯୨।
ଅନେକ କାପୂର୍ଣ୍ୟ ଶ୍ରୀଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନେ
ହରଲୁଂ ପାତକ ସ୍ୱାମୀ ତବ ଦରଶନେ ।୧୯୩।
ବହୁତ ସ୍ତୁତି କରନ୍ତି ଯେ ଦ୍ରୁପଦ କୁମରେ
ଅର୍ଜୁନଙ୍କୁ ବଜେ କରାଇଲେ ରାଜ୍ୟର ଭିତରେ ।୧୯୪।
ହାଟ ଦାଣ୍ଡ ମେଡ ମଣ୍ଡପ ଯେ ଦେଉଳ ଜଗତି
ସମସ୍ତ ଜନେ ମିଳଣ ସମ୍ଭବେ ଦେଖନ୍ତି ।୧୯୫।
ଇନ୍ଦ୍ର ଦେବତା ବଜେକଲେ କ ଆସି ଯେହ୍ନେ ମଧ୍ୟସ୍ୱର୍ଗେ
ଦେଖିବାକୁ ଜନେ ଯେ ବାହାର ଅଛ ସ୍ୱାଗେ ।୧୯୬।
କରେଣ ଅର୍ଘ୍ୟସ୍ଥାଳୀ ଘେନିଣ ଦୀପାବଳୀ
ସମସ୍ତ ଗଣିକାଏ ମଙ୍ଗଳ ଧ୍ୱନି ତୋଳି ।୧୯୭।
ଅମର ବିଳାସୁଣୀ ଆବର ଅଷ୍ଟ ଯେ ନାୟିକା
ଖଟନ୍ତି ସୁନ୍ଦରୀଏ ଗଗନେ ମଣିରେଖା ।୧୯୮।
ବାଜନ୍ତି ମୃଦଙ୍ଗ ଯେ ଧି ଧି କାର ଶବଦେ
ଜଗୁଜନ ମୋହନ୍ତି ସେ ଭରହରଷ ନାଦେ ।୧୯୯।
ପାଞ୍ଚାଳ ଦେଶକୁ ସେ ଚଳଇ ସବ୍ୟସାଚୀ
ପାଏଡ଼ା ଦଣ୍ଡମାନ ଧୂଳିହୋଇ ଯାଉଅଛି ।୨୦୦।
ଗୃହ ପଦାଣ୍ଡ ଉପରେ ରଚକୁତ ଗୋଟିଏ
ମାଡବାର ଘାଏ ସେ ହୋଇଲେ ଧୂଳିମୟେ ।୨୦୧।
ଶରୀରେ ପଡଣ ସେ କଣୟ ରଜ ଧୂଳି
ଶରୀର ବିକାଶଇ କନେକ ପୁଷ୍ପ୍ୟଓଳି ।୨୦୨।
ଯେମନ୍ତେ ରତ୍ନ ଚାଳେ ଚାଳେ ଉସ୍ତର୍ଗେ ଶତେକୁତ ଥିଲା
ସିଂହଦ୍ୱାର ଯାକେ ସବୁ ଧୂଳି ହୋଇ ଉଠିଲା ।୨୦୩।

ହାଥୀଏକ ଚଢ଼ିଣ ଯେ ଥିଲେ ଧନୁର୍ଜୟେ
ଉତ୍ତର ଭୁବନେ ଯାଇଂ କଲେକ ବିଜୟେ ।୨୦୪।

ସେବଣି ପାଖୁଡ଼ାମାନ ହୋଇଅଛି ବୃଷ୍ଟି
କର୍ପୂର ଧୂଳି ପଡ଼ଣ ଶଙ୍ଖରେ କର୍ଦ୍ଦମ ଉଠି ।୨୦୫।

ଅର୍ଜୁନକୁ ଦେଖିଣ ସେ ଦ୍ରୁପଦେଶ୍ୱର ରାଜା
ଅର୍ଘ୍ୟ ଯୋଗାଡ଼ନ୍ତ ଥୋଇ କରଇ ପାଦପୂଜା ।୨୦୬।

ବେନିଲକ୍ଷ ସୁବର୍ଣ୍ଣ ସେ ପାଦାର୍ଘ୍ୟକଇଂ ଦେଇ
ରତ୍ନମୁରେ ଓଭାହେଲେ ବନସ୍ତ ଭାବ ବହି ।୨୦୭।

ଦ୍ରୋପଦୀଂକୁ ନମସ୍କାର କରଇ ଫାଲଗୁନି
ଜୟେ ଜୟେ ଶବଦ ଯେ ଶୁଭଇ ଶଙ୍ଖଧ୍ୱନି ।୨୦୮।

ଦିବ୍ୟ ସିଂହାସନ ସେ ଚନ୍ଦ୍ରଶାଳା ଭୁବନେ
ବିଜୟେ ଫାଲଗୁନି ଯେ ରତ୍ନ ସିଂହାସନେ ।୨୦୯।

ଯେମନ୍ତର ସମୟେ ଦ୍ରୁପଦ ପାଟରାଣୀ
ପଦ୍ମାବତୀ ନାମ ତାର ପଦ୍ମଦଳ ରାଜାର ଦୁଲଣୀ ।୨୧୦।

ଲକ୍ଷେକ ଯୁବତୀ ଘେନି ଲକ୍ଷେକ ଦୀପାବଳୀ
ଅର୍ଜୁନ ଶିରେ ଦୂର୍ବାକ୍ଷତ ଦେଇଣ ମଙ୍ଗଳ ଧ୍ୱନି ତୋଳି ।୨୧୧।

ଜୟ ହୁ ପୁରୁଷୋତ୍ତମ ବାରାଣସୀ କୂଳବାସୀ
ନୀଳସୁନ୍ଦର ପର୍ବତେ ବସିଲୁ ହୃଷୀକେଶୀ ।୨୧୨।

ବାରାଣସୀ ମନ୍ଥନେ ଯେ ପାଇଲୁ ଚଞ୍ଚଳା
ଖଟଇ ବାରାଣସୀ ଯେ କୁଟୁମ୍ବ ସଫଳା ।୨୧୩।

ଅଭୟେ ମହାଲିଙ୍ଗ ଜମ୍ବେଶ୍ୱର ଲିଙ୍ଗ ପୂଜ
ନୀଳ କଳ୍ପବଟ ଦେବ ଯୋଗଲୟେ ଭଜ ।୨୧୪।

---

୨୧୨।୨ ସୁନ୍ଦର ପର୍ବତେଣ ଧ୍ୱଂସିଲୁ କୃତକେଶୀ । (ଅ,ଙ)
୨୧୪।୨ କଳପ ବଟ ପର୍କଳ ଏକ ଚତ୍ୱରେ ଭଜ । (ଘ)

ନୀଳେନ୍ଦ୍ରୀ ପୁଷ୍ପ ଭୂଷଣ ଯେ କାଳଦର୍ପ ଭଞ୍ଜା
ମୁନିଜନମାନେ ନିତ୍ୟେ କରନ୍ତି ଯେ ପୂଜା ।୨୧୫।
ଅଶିପଦ୍ମ ବଳ ଯେନି ଯେ ଷେନାଧି ପୁଷ୍କର
ନିତ୍ୟନ୍ତେଂ ଅଭିଷେକ କରଇ ଯାହାର ପୟୂର ।୨୧୬।
ମଣ୍ଡଳ ଆରକ୍ତ ଯାହାର ପାଦ ଅରବିନ୍ଦେ
ମାରବଣ୍ଡା ବଲ୍ଲଭ ଯେ ଖଟଇ ଆନନ୍ଦେ ।୨୧୭।
ଗନ୍ଧର୍ବ ଯକ୍ଷ କିନ୍ନର ଯେ ଆବର ସୁର ସିଦ୍ଧ ମୁନି
ପଦ୍ମମୁଖ ଦେଖି ଯାହାର ବିନସ୍ତେ ଦଇନି ।୨୧୮।
ଅଶୁଭକଇଂ ଶୁଭ ଯେ ଛାତେ କାରଣ ଦେବ ଭୁଜି
ଯୁଗାନ୍ତକ ଚିନ୍ତାମଣି ନାଥ ତୋ ଚହ୍ନୁଂ ଆନ ନାହ୍ନିଂ ।୨୧୯।
ହଳୀର ସୋଦୋଦ୍ର ଦେବ ସ୍ୱଂସ୍ୟୁଣ ଅନୁଜ
ପ୍ରସନ୍ନେ ପରମବନ୍ଧୁ ସଦସ୍ତେ ଦେବରାଜ ।୨୨୦।

---

୨୧୫।୧ "ନୀଳେନ୍ଦ୍ରୀ ପୁଷ୍ପ ଭୂଷଣ ଯେ କାଳଦର୍ପ ଭଞ୍ଜା"
ଠାରୁ "ଘ" ପୋଥିରେ କେତେକ ଅଧିକା ପାଠ—
ନୀଳେନ୍ଦ୍ରୀ ଦଳ ତୋର ପଦ୍ମପତ୍ରାକ୍ଷ ଆଭା
ସୁନ୍ଦର ମୁଖଗୋଟି ବାହୁ ଦୁଇକ ଶୋଭା ।
ସୁଗନ୍ତକ କମନ୍ତେ ଶଙ୍ଖାର ଦର୍ପ ମନ୍ଥି
ଅଶିପଦ୍ମ ତୀର୍ଥ ଯେନ ଗଣାଧି ଆଦପନ୍ତ ।
ପୁଷ୍କର ମାରକଣ୍ଡ କ୍ଷେତ୍ରାଧି ଶୀରବର
ଅଭିଷେକ କରନ୍ତି ନିତ୍ୟେ ତୋହୋର ପୟୂର ।
୨୧୬।୨ "ନିତ୍ୟେନ୍ତେଂ ଅଭିଷେକ କରଇ ଯାହାର ପୟୂର"
ପରେ 'ଛ' ପୋଥିରେ ଅଧିକା ପାଠ—
ଧବଳ କୁଂକୁମ ପୀତବାସ ଅଟଇ ଯେ ତନ
ଅମର ସ୍ୱର୍ଗ କଳ୍ପି ଛତ୍ତ ଯୋଜନ ପୁରୁଷୋତ୍ତମ ମେଦନୀ ।
ଚନ୍ଦ୍ରହସ୍ତିଳା କଳ୍ପୁଂ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପରଯନ୍ତେ
ଦେବତ ଗଣ ମୁନିଗଣ ଋଷିଗଣ ସନ୍ଧତେ ।
ହେ ପଣ୍ଡିତ ଜନେ ପରଣାମୀଗଣ
ସମସ୍ତେନ୍ତେଂ ନାରାୟଣ ଦେହ ଯେତେ ବ୍ରାହ୍ମଣ ।
୨୧୭।୧ ନବଗ୍ରଡ କଳପରେ ଯାହାର ପାଦ ବନ୍ଦେ । (ଘ)

ପରମାନନ୍ଦ ସ୍ୱାମୀ ପ୍ରସନ୍ନେ ପରମ ଯୋଗୀ
କାଳ ବଞ୍ଚାଇଲୁ ଦେବ ଯୋଗବଳ ପରତ୍ୟାଗି ।୨୨୧।
ସ୍ୱାମୀ ରୁଦ୍ର ଦେବତା ଦହିଲା ମନସିଜ
କାମେଶୀ ମୋହନୀ ତୁ ଉଦ୍ଧରିଲୁ ଦେବରାଜ ।୨୨୨।
ଭୃଙ୍ଗସାର ବଲ୍ଲଭ ପଦ୍ମପାଦ ସରୋଜେ
ଶୂଦ୍ରମୁନି ସାରଳା ଦାସେ ବନୋପନ୍ତି ଦେବରାଜେ ।୨୨୩।
ଶ୍ରୀ ବାସୁଦେବର ଚରଣେ ନିଜ ଦାସ
ସଂସାର ଜନହିତେ ସାରଳା ଦାସ କରଇ ଅଭ୍ୟାସ ।୨୨୪।
ଶୁଣ ବଇବସୁତ ମନୁ ବଦସ୍ୱନ୍ତ ଅଗସ୍ତି
ଶ୍ରୀ ମହାଭାରଥ ଯେ ଅମୃତ ରସମୟ ଶ୍ରୁତି ।୨୨୫।
ଅର୍ଜୁନକୁ ଅନେକ ଭଗତି ଭାବେ ଦ୍ରୋପଡେ
ଅନେକ ଆନନ୍ଦ ହୋଇଲେ କୁଟୁମ୍ବ ସହିତେ ।୨୨୬।
ମୁଣୋହି ଯୋଗାଡମାନ ହୋଇଲାକ ପଚନ
ଆହାନିକ ସାରି ମୁଣୋହିରେ ବଜେ ବାସବର ନନ୍ଦନ ।୨୨୭।
ସମ୍ଭରେଣ ସଇନ ଘେନିଣ ପାର୍ଥିବ
କରନ୍ତି ମୁଣୋହି ଯେ ଅନେକ ସମ୍ଭବ ।୨୨୮।
ରାଜେଶ୍ୱର ମହାପ୍ରଭୁ ସେ ଆବର ଜାମାତା
ଭୋଜନ ଯୋଗାଡ ଯେ ହୋଇଲା ଅପ୍ରମିତା ।୨୨୯।
ମୁଣୋହି ସାରିଣ ସେ ବଜଯେ ଆଂଗ୍ରେବନେ
କର୍ପୂର ତାମ୍ବୋଳ ଭୋଜନ ଯେ ବଧି ବଧାନେ ।୨୩୦।
ଦିବ୍ୟ ଭବନେଣ ଯାଇଂ ବଜଯେ ସବ୍ୟସାଚୀ
ଖଟନ୍ତି ବଳାସୁଣୀଯେ ମୋହିନୀ ଜଗତାକ୍ଷୀ ।୨୩୧।
ସେ ଦିବସକ ତହିଂ ରୁହାଇଲେ ଦ୍ରୋପଦେ
ସମରାଜ୍ୟଯାକ ପାଞ୍ଚାଳେ ଯେ ଅନେକ ସାନନ୍ଦେ ।୨୩୨।
ନିମନ୍ତ୍ରଣ ଯୋଗାଡ ଦିଲେକ ଫାଲଗୁନି
ରାଜୁସି ଯାଗକୁ ଯାଅ ଯା ତୋର ଆଠ ସନ୍ୟ ଘେନି ।୨୩୩।
ଶୁଣିଣ ସାନନ୍ଦ ଯେ ପାଞ୍ଚାଳ ଚକ୍ରବ୍ରତ୍ତି
ଅନେକ ସାନନ୍ଦେ ବାଭଯେ ଭୂମିର ଦେଖିବ ବଭୂତି ।୨୩୪।

ଆନନ୍ଦେ ଅକ୍ଷତ ଯେ ଦେଲେ ମହାରାୟେ
ସନ୍ୟ ସେନା ଆଦିକରି ସମସ୍ତଙ୍କର ଅକ୍ଷତମାନ ଦିଏ ।୨୩୫।
ସମଦଣ୍ଡ ଘେନିଣ ତହୁଂ ଚଳେ ବୀର ପାର୍ଥ
ପାଞ୍ଚାଳ ଦେଶୁଂ ବାହାର ହୋଇ ଆସଇ ଦ୍ରୋପଦ ନରନାଥ ।୨୩୬।
ଥୋକାଏକ ଦୂର ଆସି ଅର୍ଜ୍ଜୁନ ବୋଲଇ ଯାଅ ଯା ଭୁବନେ
ଏ ଉତ୍ତର କୋଶଳ ସମସ୍ତ ରାଜାମାନେ କରୁଅଛନ୍ତି ଗମନେ ।୨୩୭।
ସବୁ ମଣ୍ଡଳ ମାଡଯିବିଟି ବେନିଭାଇ
ସାଧ୍ୟ ଅସାଧ୍ୟ ରାଜାମାନନ୍ତ ଘେନିଯିବିଟି କଢାଇ ।୨୩୮।
ଆଜ୍ଞାଂ ପାଇଣ ସେ ସାନନ୍ଦ ଶ୍ରୀଖଣ୍ଡୀ
ଅନେକ ସମ୍ଭର୍ବେ ବାଜିଲ ବିଜଘୋଷ ବୀରତୂର ଦାଉଣ୍ଡି ।୨୩୯।
ଆହୋ ଶ୍ରୀଖଣ୍ଡୀ ତୁମ୍ଭେ ବାରୁଣାବନ୍ତେ ଥିବ
ମୋହୋର ଥିବାଯାଏ ତୁମ୍ଭେ ରାଜାନ୍ତ ସମ୍ଭାଳିବ ।୨୪୦।
ଆଜ୍ଞାଂ ପାଇ ଚଳିଲେ ଦ୍ରୋପଦ ରାଜାର ବେନିପୁତ୍ରେ
ତହୁଂ ପଯ୍ୟାଣ ସେ କଲେ ବୀରବର ପାଥେ ।୨୪୧—୪୯୪୩।

---

## ଅର୍ଜ୍ଜୁନଙ୍କର ଦରଦସେନ ରାଜା ଓ ଜମାଟଗୋଷ୍ଠ ରାଜାଙ୍କ ସହତ ଯୁଦ୍ଧ ଓ ଜୟ ଏବଂ ଜମାଟଗୋଷ୍ଠ ରାଜାର ବନ୍ଧନ

ଭରତମଣ୍ଡଳ ବୋଲି ଯେକଇ ଦେଶ ଗୋଟିଏ
ତହିଂ ଯାଇଂ ପ୍ରବେଶ ହୋଇଲେ ଧନୁର୍ଜ୍ଜୟେ ।୧।
ଭରଥ ବୋଲି କରିଣ ଯେ ସେ ରାଜ୍ୟର ନୃପତି
ଦ୍ରୋପଦ ରାଜାଂକର ସେହୁ ପୁତୁରା ଅଟନ୍ତି ।୨।
ଅର୍ଜ୍ଜୁନ ଭଗବନ୍ତେ ବୋଲି ତାହାଂକୁ ଚରଗଣେ ଜଣାଇଂ
ସମଦଣ୍ଡେ ପାଞ୍ଚୋଟି ଆସଇ ନରବଇ ।୩।

---

୨୩୭। ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନେ
ଉତ୍ତର କୋଶଳୁ ଯାଉଛନ୍ତି ସମସ୍ତ ରାଜାମାନେ ।
(କ,ଙ,ଖ,ଛ,ଝ,ନ)

ଅର୍ଜୁନଙ୍କୁ ଦରଶନ କଲାକ ବେଗେ ଆସି
ନିମନ୍ତ୍ରଣ କଲେ ପାଥ ତାହା ରାଜ୍ୟେ ନ ପଶି ।୪।
ରାଜସୂୟଯାଗ ଯେ ହୋଇବ ମହାସଭା
ସମଦଣ୍ଡ ଘେନିଣ ସ୍ୱଜା ବହନ ହୋଇଯିବା ।୫।
ସନ୍ୟ ସମ୍ମୁଖେ ଦେଖୀ ଦରଶନ ଯେତେ ପାରୁ
ଘେନାଇ କରି ଚଳ ବିଳମ୍ବ କମା କରୁ ।୬।
ଅର୍ଜୁନର ବଚନେ ସେ ଚଳିଲ ଦଣ୍ଡପତି
ଦିଗବିଜେ କରିଣ ଅର୍ଜୁନ ଚଳଇ ଝଟତି ।୭।
ଶାଖାପୁର ବୋଲିକରି ଏକ ନଗ୍ର ଗୋଟିଏ
ତହିଁର ନୃପତି ଅଟେ ଜମାଗୋଷ୍ଠ ରାଏ ।୮।
ରାଜାଧି ରାଜ୍ୟେଶ୍ୱର ସେ ବଡ଼ାଇ ଧାର୍ମିକ
ପ୍ରଶୁ ଚନ୍ଦ୍ର ବିରାଜଇ ତାହାର ଭୁଜେକ ।୯।
ହିରଣ୍ୟକ ବଂଶରେ ସେ ହୋଇଲେ ଉତପତ୍ତି
ଯମ ଦେବତାହୁଂ ତାର ଆନ ନାହିଂ ଯେ ଭଗତି ।୧୦।
ଲୁହାର ପ୍ରତିମା ଏକ କରିଥାଇ ଯମ
ମଇଂଷି ବାହାନ ତାର କାଳଦଣ୍ଡ ଅବଶ୍ରାମ ।୧୧।
ମନ୍ଦାର ପୁଷ୍ୟ ଦେଇଣ ହେ ଅନେକ କରଇ ପୂଜା
ରୁଧିର ପୋଡ଼ା ମାଉଂସ ଦେଉଥାଇ ବଳଭୋଜା ।୧୨।
ବାଳକାଳହୁଂ ସେ ଯେ ଯମ ଦେବତାଙ୍କୁ ଭଗତି
ଆଇଷ ପାଇଲ ସେ ଦ୍ୱାପର ଅନ୍ତ ପ୍ରତି ।୧୩।
ତିନିଲକ୍ଷ ନଉ ସହସ୍ର ବରଷେ
ପ୍ରାଣତ୍ୟାଜ ହୋଇଣ ଗଲ ସେ ଯମପାଶେ ।୧୪।
ନାଶକର ପଚ୍ଚରଇ ରେ ମାନବ ଜନ୍ମ ହୋଇ
ଯମ ଦେବତାଙ୍କୁ ଆର୍ଥନା କରିଅଛୁ କି କେହ୍ନି ।୧୫।
ତୁ କିଂପେ ମୋତେ ରେ କରୁ ଆରାଧନା
କେଉଣ ମନ୍ତ୍ରେ ପୂଜୁଂ ମୋତେ କହସି ମହାତମା ।୧୬।
ମହାକାଳ ଶାନ୍ତକଳ୍ପ ସ୍ତୁତି ସ୍ତୋତ୍ର ମନ୍ତ୍ରେ
କାଳ ସୁଫପାଦଇ ରାଜା କାଳଞ୍ଜନ ଗୋତ୍ରେ ।୧୭।

୪।୨ ପଶ୍ଚିମ ଦେଇଅଛୁ ପଶ୍ଚିକେରେଣ ବ ବେକ । (ଘ,ଡ)

କୃତ୍ତିକା ମନ୍ତ୍ରେ ହୋମ୍ୟେ ଆମ୍ଭର ବେଦ ପାଠେ
ସାଧିଲ ସୁଭଗ୍ୟ ସେ ରବିମଣ୍ଡଳ ରାଷ୍ଟ୍ରେ ।୧୮।
ଯମ ଦେବତା ବୋଇଲା ତୁ ଜନ୍ମେଣ ମାନବ
ଯମ ମନ୍ତ୍ରେ ପୂଜାକରି ଉପୁଜାଇଲୁ ଭାବ ।୧୯।
ଯାଅ ଯା ତୁ ଥାଅ ଯେବେ ମଧ୍ୟସ୍ୱର୍ଗେ
ମମ ପୂଜା ଜଗତେ ଥାଅ ତୁ ସେହି ଭାବେ ।୨୦।
ପୁଣି ଆନନ୍ଦେ ଯମ ଦେବତା ହୋଇଲା ପ୍ରସନ୍ନ
ଦକ୍ଷିଣ କରେ ଲେଖନ କଲେ କାଳଚକ୍ର ଚିହ୍ନ ।୨୧।
ଯେ ଅବା ମଧ୍ୟସ୍ୱର୍ଗେ ହେବ ତୋତେ ଅସାଧି
ନାମ ଲିହି ପୋଛିଲେ ସେ ହୋଇବ ପ୍ରତକ୍ଷେ ଶିରଚ୍ଛେଦୀ ।୨୨।
ନାଶକର ବଚନେ ତାର ଯେସନେକ ମହିମା°
ମହୀତଳେ ନରପତି ତାକୁ ନାହିଁ°ନା ଗାରମା ।୨୩।
ଶାଖା ମଣ୍ଡଳରେ ସେହୁ ଅଛଇ ଆଧିପତି
ଯମ ଦେବତାକଇଁ° ଆର୍ଚ୍ଚନା ସେ କରଇ ଦିବାରାତି ।୨୪।
ଯମର କାଳଚକ୍ର ଚିହ୍ନ ସେ ବହଇ ଦକ୍ଷିଣ ପାଣି
ଇହଲୋକ ରାଜାନ୍ତ ସେ ସମରେ ନ ଗଣି ।୨୫।
ବଡ଼ାଇ ଧାର୍ମିକ ସେ ଅଛଇ ମହୀପତେ୍ୟ
ଯମର ଚିହ୍ନ ବହଇ ତାହାର ବାମହାଥେ ।୨୬।
ଯେସନେକ ମହିମା° ତାର ଦେଖିଣ ଦରଦସେନ
ଭାଖା ମଣ୍ଡଳରେ ସେହୁ ଅଛଇ ରାଜନ ।୨୭।
ସନ୍ଧାନ ମାଗିଲା ସେ ଦରଦସେନ ନୃପତି
ଗୁରୁଗଣ ପେଷିଲା ସେ ଭାଖାମଣ୍ଡଳ ଆଧିପତି ।୨୮।
ଦରଦସେନ ଆଗ୍ୟା°ଯେ ସେ ଚଳଲେ ମୁନେହି
ଯମାଗୋଷ୍ଠ ରାଜା ଛାମୁରେ ବାରତା ଯାଇ କହି ।୨୯।

---

୧୮। ମୃତ୍ତିକା ମନ୍ତ୍ରେ ହୃସ୍ୱେ ଆମ୍ଭର ବେଦପାଠେ
୧୮। ସାଧିଲ ଶୁଭଗ୍ୟାନ ସେ ସଞ୍ଜିବନୀ ରାଷ୍ଟ୍ରେ । (ଙ,ଥ)
୧୮।୨ ସାଧିଲକ ତତ୍ତ୍ୱଗ୍ୟାନ ଯମନକ ରାଷ୍ଟ୍ରେ । (କ,ଛ,ଡ)



ଦରଦସେନ ନୃପତି ଶ୍ରୀମୁଖ ଦେଇଅଛୁ ତୋତେ
ସନ୍ଧାନ ଦେବୁ ତୁ ପୂର୍ବେ ଦେଉଥିଲୁ ଯେତେ ।୩୦।
ସୈନେକ ଆଗ୍ୟାଂ ସେ ବହଲ ଦରଦସେନ
ଆମ୍ଭର ଗୋଚରରେ ରାଜା ଦେବୁ ତୁ ସନ୍ଧାନମାନ ।୩୧।
ସମାଗୋଷ୍ଟ ବୋଇଲ ରେ ଗ୍ୟାନ ତୋର ନାହିଂ
କେତେ ଦଣ୍ଡ ଘେନିଣ ସେ ଆସଇ କନା ବାହି ।୩୨।
ବାହୁଡ ଦେଶାଉରେ ଚଳଲେ ନିଜ ଦେଶେ
ବାରତା ଜଣାଇଲେ ଯାଇ ଦରଦସେନ ପାଶେ ।୩୩।
ସମାଗୋଷ୍ଟ ରାଜା ତୋତେ କଲକ ଅମାନ୍ନ
ନ ବହଇ ସନ୍ଧାନ ବୋଇଲା ତାର ବାହୁ ଯେତେକ ସନ୍ୟ ଘେନ ।୩୪।
ଡଗର ମୁଖେ ବାରତା ପାଇଣ ମହାରାଜ
ମନ୍ତ୍ରୀକ ବୋଇଲା ହୋ ଦଣ୍ଡ ମୋହୋର ବେଗେ ସାଜ ।୩୫।
ସାଜରେ ସାଜରେ ବୋଲ ଶୁଭଇ ବଜଘୋଷ
ମଣ୍ଡନ୍ତ ରହୁବର ଗଜ ଅଶ୍ୱ ସଇନି ଅଶେଷ ।୩୬।
ତିନିପଦ୍ମ ରଥୀ ଚାର ପାଞ୍ଚପଦ୍ମ ହାଥୀ
ଦଶପଦ୍ମ ହୟ ଯେ ଶତ ଷଉଣୀ ପାଦନ୍ତି ।୩୭।
ସମଦଣ୍ଡ ଘେନି ବାହାର ହୋଇଲେ ମହାଶୟେ
ଆକାଶ ବଶଇ ଯେ ଘୋର ଅନ୍ଧକାର ପ୍ରାୟେ ।୩୮।
ପୃଥୀ ହେଲ ଘେନଇ ଦରଦସେନ ଯାଆନ୍ତେ
ଉତ୍ତର ଦଗ ହାଦୋଳ ହୋଇଲା ନୃପତି ପଲଣନ୍ତେ ।୩୯।
ବନ ଡଙ୍ଗରେ ପଶନ୍ତି ରାଜାୟେ ବାରତା ପାଇକରି
ନ ପୁଣ କେଉଂଣ ରାଜ୍ୟକୁ ପଡଥାଇ ଧାଡ ।୪୦।
ସକଳ ଦେଶ ରାଜ୍ୟେ ପଡଲା ଚମକ
ଆକାଶ ଉଚ୍ଛୁଳଇ ଘୋର ବାଦ୍ୟ ଡାକ ।୪୧।
ସମଦଣ୍ଡ ଘେନିଣ ସେ ଶାଖା ମଣ୍ଡଳର ଅଧିକାରୀ
ଶାଖାମଣ୍ଡଳ ରାଜ୍ୟକୁ ଅନମିତେ ବହଲ ଧାଡ ।୪୨।
କାର୍ତ୍ତିକ ମାସ ଶୁକଳପକ୍ଷ ତିଥି ଯେ ଚଉଠୀ
ଅର୍କବାର ଜ୍ୟେଷ୍ଠା ନକ୍ଷତ୍ର ବେଳ ନବଘଟି ।୪୩।

ଶାଖା ମଣ୍ଡଳ ରାଜ୍ୟ ଯାଇଂ ବେଢିଲା ଦରଦସେନ
ପୃଥୀ ଉଲୁକାପାତ ହେଉଅଛି କମ୍ପଇ ତ୍ରିଭୁବନ ।୪୪।
ଆସ୍ଥାନେ ବଜେ କରଅଛି ନୃପତି ଯମାଗୋଷ୍ଠି
ମନ୍ତ୍ରୀକ ଦେଶାନ୍ତରେ କହିଲେ ଦେବ ପଡିଲା ବଡହିଂ ସଙ୍କଟ ।୪୫।
ଦେବ ବଡାଇ ଥାଠେକ ଯେନ୍ନ ବାହିଲା ଦରଦସେନ ନୃପତି
ସମରାଷ୍ଟ୍ର ତୋହୋର ବେଢିଲା ନିଶାରାତି ।୪୬।
ଯେତେକ ଯେତେକ ଯୋଦ୍ଧା ଦେବ ପୃଥୀ ପାରନ୍ତି ଜିଣି
ଦୁଷ୍ଟ ସମୁଦ୍ର ଜାଣି ଶୁଭୁଅଛି ମୁଖରବ ଧ୍ୱନି ।୪୭।
ଜଗତ୍ରେ ଥାଇଂ ରାଜା ଗୃହିଂଲକ ଥାଠ
ଗୃହଆନ୍ତେ ତିନି ତିନି ଯୋଜନ ଯିବାକୁ ନାହିଂ ବାଟ ।୪୮।
ଲଂକା ଭୁବନକଇଂ ଯେହ୍ନେ ବେଢିଛି ବାରିନିଧି
ଶୁକଲ ଅଶ୍ୱନ୍ତ ଚଢି ବହଉନ୍ତି ସର୍ବଯୋଧୀ ।୪୯।
ଗଡର ବାହାରେଣ ଥିଲା ଯେତେକ ନଗ୍ର ଦେଶ
ଚୂରକର ଭଂଗିଲା ରାଜା ସମସ୍ତ କଲା ଧ୍ୱଂସ ।୫୦।
ଜନଜନ୍ତୁମାନନ୍ତ ପକାଇଲା ସର୍ବ ମାର
ମୁଣ୍ଡମାନ ପକାଇଲା ପର୍ବତ ସମାନ କୂଡକର ।୫୧।
ମନ୍ତ୍ରୀବର ବୋଇଲା ଦେବ ଶୁଣିମା ଯମାଗୋଷ୍ଠି
ସମରେ ସର ନୋହିବୁ ଓଡ଼ହୋବଳ ଥାଠେ ଭେଟ ।୫୨।
ଅମାପତ ଯୋଦ୍ଧାଯେ ତାକୁ ସମରେ ସମ ନାହିଂ
ଯାହାର ଘାଯେ ନାଶଗଲା ପ୍ରଚଣ୍ଡ ବ୍ରହ୍ମଶାସ୍ତ୍ରୀ ।୫୩।
ଆଉର ରାଜ୍ୟ ତାହାକୁ ସମ ନାହିଂ ଇବତଳେ
ଛତ୍ରୀବର ବୀରଧ୍ୱ ବୋଲଇ ସେ ଉତ୍କଳ କୋଶଳେ ।୫୪।
ଗୁପତେ ଗୃହଗଣ ସହସ୍ରେକ ରାଇ ରାଜା
ଆଗ୍ୟାଂ ହେଲା ତୁମ୍ଭେ ରେ ଦରଦସେନ ଥାଠକୁ ଯାଅ ଯା ।୫୫।
ଗୁପତେ ପଶିବ ତାହାର ଥାଠେ ଛଦ୍ମ ରୂପ ଧର
ରଥ ଗଜ ଅଶ୍ୱ ପାଦାନ୍ତ କେତେ ତାହାର ବୁଝିବ ତଥ୍ୟକର ।୫୬।
ବହନ କରଣ ତାହାର ସମଦଣ୍ଡ କଲଆସ
ଲକ୍ଷ ପୋଟ୍ଟବ ତାର ସମସ୍ତ ସନ୍ୟ ଯିବ ନାଶ ।୫୭।

ରାଜାର ବଚନେ ଗୁପତେ ଚଳିଲେ ଚରଗଣେ
ଛଦ୍ମ ରୂପ ଧରି ସେ ହୋଇଲେ ଭିକ୍ଷୁକ ବ୍ରାହ୍ମଣେ ।୫୮।
ଆଠର ଭିତରେ ଯାଇ ପଶିଲେ ମହାଜ୍ଞାନୀ
ମାଗନ୍ତି ଛଦ୍ମମେଣ ସେ ବ୍ରାହ୍ମଣ ଭିକ୍ଷାଣୀ ।୫୯।
ରାତ୍ର ଦିବସେ ଖୋଜନ୍ତି ଅନୁବ୍ରତେ
କଳନା ନ ଯାଇ ତାର ରଥ ଗଜ ଅଶ୍ୱ ସଇନ୍ୟ ଛନ୍ତି କେତେ ।୬୦।
ଭିକ୍ଷା ଆଶ୍ରେକରି ସେ ମାଗନ୍ତି ତଣ୍ଡୁଳ
ଦିବସେ ସେନା କଳନ୍ତି ଅନ୍ନ ରାନ୍ଧନ୍ତି ନିଶାକାଳ ।୬୧।
କଇଚ୍ଛାବନ୍ତ ରାଜା ସେ ରହିଅଛି ସମ୍ମୁରେ
ସହସ୍ରେ ପୁର କରି ବେଢି ରହିଅଛି କଟକ ବାହାରେ ।୬୨।
ଯମାଗୋଷ୍ଟ ସଂଗ୍ରାମ ତାକୁ ନ ଦିଅଇ ଓହୋମୁଖେ
ଗଡ଼ରୁ ବାହାର ନୋହି ବାର୍ତ୍ତା ବୁଝେ ଚରମୁଖେ ।୬୩।
ସଂଗ୍ରାମ ନ ଦିଅଇ ତାକୁ ନ ଦିଅଇ ସନ୍ଧାନ
ଶରଣ ପଶୁ ବୋଲି ବୋଲଇ ଦ୍ରୁପଦସେନ ।୬୪।
ଡଗର ମୁଖେ ବାରତା ପାଇବା ପରିଯନ୍ତେ
କଟକ ବେଢ଼ିଅଛି ରାଜା ଛଡ଼ ବରଷ ପ୍ରେମ୍ଭମତେ ।୬୫।
ସହସ୍ର ଚରଗଣ ପେଷି କଳନା କରଇ ଦିବାରାତ୍ତି
କଳି ତ ନୁଆରିଲେ ତାହାର କେତେ ରଥ ଗଜ ଅଶ୍ୱ ପାଦାନ୍ତି ।୬୬।
ସଂଗ୍ରାମ ନ ପାଇଲେ ସେ ନ ବାହୁଡ଼ଇ ନୃପମଣି
ଆପଣ ରାଜ୍ୟୁଂ ଅନ୍ନ ବହିଲିକ ବଳଦ ପଲଣି ।୬୭।
ଜମାଗୋଷ୍ଟ ସଂଗ୍ରାମ ନ ଦିଅଇ ସେ ନ ଯାଇ ରାଜ୍ୟୁଂ ଭୁଞ୍ଜି
ନବ ବରଷ ହେଲା ସେ ଗଡ଼ ବେଢ଼ିଅଛି ।୬୮।
ସନ୍ଧାନ ନ ଦିଅଇ ସେ ସନ୍ଧାନ ନ ପାଇଲେ ନ ଯାଇ
ଚଷକରି ଦ୍ରୁପଦସେନ ରହିଲା କୃଷି ଉପୁଜାଇ ।୬୯।
ଆପଣା ରାଜ୍ୟ ପ୍ରାପ୍ତେକ ସେ କଲା ପରରାଷ୍ଟ୍ର
ଅବକଳେ ରହିଲେ ସେ ଦ୍ରୁପଦସେନର ଆଠ ।୭୦।
ଦ୍ୱାଦଶ ବରଷ ପରିଯନ୍ତେ କଟକେ ବେଢିଲା ସେ ଦ୍ରୁପଦସେନ ନୃପତି
ପୁଣ ପୁଣ ଜମାଗୋଷ୍ଟ ଗୁପତେ ଚର ପେଷଇ ପ୍ରତି ପ୍ରତି ।୭୧।

ବାର ବରଷେ ତାର ସନ୍ୟ ନ ଗଲ୍ଲ କଳଣ
ରାଜା ଆଗେ ଯାଇ କହ୍ଲ ନୁଆରିଲେ ଗୁରିଗଣ ।୭୨।

ସାଧୁ ସାଧୁ ମନ୍ତ୍ରୀଂମା ହୋ ସେ ଦରଦସେନ ନୃପତି
ସାଧୁ ସେ ଜମାଗୋଷ୍ଟ ଦରଦସେନକଇଂ ନ କରଇ କିଛି ଭ୍ରାନ୍ତି ।୭୩।

ଗଡର ଭିତରେ ରାଜା ସମସ୍ତ ଥିଲ୍ଲ ସଞ୍ଚି
ଦ୍ଵାଦଶ ବରଷ ପର୍ଯ୍ୟନ୍ତେ ରାଜା ସମ୍ମୁରେ ରହିଅଛି ।୭୪।

ଦରଦସେନ ଜମାଗୋଷ୍ଟ ଦୁଇ ରାଜାଂକର ଉଚ୍ଚବାଚ ସମଟେ
ଶାଖାପୁର ନଗ୍ରେ ଯାଇଂ ବଜପ୍ତେ ଧନୁର୍ଜପ୍ତେ ।୭୫।

ଅର୍ଜୁନ ଶ୍ରିମୁରେ ଜଣାଇଲେ ଦେଖାଉରେ
ଦରଦସେନ ବେଢ଼ିଛି ଜମାଗୋଷ୍ଟ ରାଜ୍ୟରେ ।୭୬।

ସ୍ଵାମୀ ଦ୍ଵାଦଶ ବରଷ ହେଲ୍ଲ ଦରଦସେନ ଶାଖା ନଗ୍ର ଅଛି ବେଢ଼ି
ଜମାଗୋଷ୍ଟ ସାଂଗ୍ରାମ ନ ଛାଅଇ ହୋ ମୁଖକରି ।୭୭।

ଅମରକୂଟ ପର୍ବତେ ବଜପ୍ତେ କରିଛନ୍ତି ଫାଲଗୁନ
ଶ୍ରିମୁରେ ଜଣାଇଲେ ଯାଇଂ ଜପ୍ତେ ବଜପ୍ତେ ସେନାପତି ବେନି ।୭୮।

ଦୁଇ ରାଜାଂକର ବଡ ଉଚ୍ଚବାଚ ସମର ହୋଇବ
ମଧ୍ୟରେ ଥାଠ ଆମ୍ଭେ ଦେଖାଇବା କି ଦେବ ।୭୯।

ଅର୍ଜୁନ ବୋଇଲେ ଆହୋ ନୁହଇ ସ୍ଵେମନ୍ତ
ଅଗ୍ୟାନେ ପଶିଲେ ପ୍ରମାଦ ପଡଇ ବହୁତ ।୮୦।

ସୁରେଶ୍ଵର ପ୍ରୋହିତଂକୁ ଯେ ଆଗ୍ୟାଂ ଦେଲ୍ଲ ପାର୍ଥ
ଦରଦସେନ ରାଜାକଇଂ ଶ୍ରୀମୁଖ ଗୋଟିପ୍ତେ କରିବା ନିମିତ୍ତି ।୮୧।

ଆଗ୍ୟାଂ ପ୍ରମାଣେ ସୁରେଶ୍ଵର ମହାମୁନି
ଅଲହା ତାଳପତ୍ରେକ କରେ ଲେଖନକୁ ଘେନି ।୮୨।

ଚଟାଉ ଲେଖନ ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ଅନାଦ୍ଧ ଦେବ ଚରଣେ ଶରଣ
ଶ୍ରୀ ନିଶାକର ନାଥ ଦେବଗଣ ।୮୩।

ଶ୍ରୀ ଚନ୍ଦ୍ର ଦେବତାଂକର ପୁତ୍ର ବୁଧଦେବା
ବୁଧଂକର ପୁତ୍ର ଯେ ଅଟଇ ପୁରୁରବା ।୮୪।

ପୁରୁରବାଂକ ପୁତ୍ର ଆୟୁର
ଆୟୁରଂକ ପୁତ୍ର ନଘୋଷ ଯେ ବୀର ।୮୫।
ନଘୋଷଂକ ପୁତ୍ର ଯଯାତି କ୍ଷତ୍ରୀବର
ଯଯାତି ଦେବଙ୍କର ଆଗ୍ୟାଂ ଭରଥ ମଣ୍ଡଳ ।୮୬।
ଯଯାତି ଦେବଂକର ପୁତ୍ର ପୁରୁ ବୀର
ପୁରୁଂକର ପୁତ୍ର ଯେ ରାଜନ ପ୍ରବୀର ।୮୭।
ପ୍ରବୀର ନନ୍ଦନ ଯେ ମନସିବା ନୃପତି
ମନସିବା ପୁତ୍ର ଯେ ଅନୁପାମ ଚକ୍ରବ୍ରତ୍ତି ।୮୮।
ଅନୁପମାର ପୁତ୍ର ରାଜନ ଇଳନର
ଇଳନର ପୁତ୍ର ଦୁଷ୍ୟନ୍ତ, ଦୁଷ୍ୟନ୍ତଂକ ପୁତ୍ର ଯେ ଭୃଥେଶ୍ୱର ।୮୯।
ଭୃଥେଶ୍ୱର ଦେବ କୁଳ ପ୍ରଦୀପ
ଶ୍ରୀ ଭୃଥେଶ୍ୱରଂକର ପୁତ୍ର ଭୂମନୁ ଭୂପ ।୯୦।
ଭୂମନୁଂକର ପୁତ୍ର ବିରଥ ଯେ ଦକ୍ଷ
ବିରଥଂକର ପୁତ୍ର ଅଟଇ ବିଭୁରୁକ୍ଷ ।୯୧।
ବିଭୁରୁକ୍ଷଂକର ପୁତ୍ର ଶମ୍ଭୁରଣ
ଶମ୍ଭୁରଣଂକର ପୁତ୍ର କୁରୁ ନୃପ ସୁଜାଣ ।୯୨।
ଶ୍ରୀ କୁରୁ ମହାରାଜ ବଂଶ ପ୍ରତିପାଳକ
କୁରୁଂକର ପୁତ୍ର ପାର୍ଥିବ ଗ୍ୟାନବନ୍ତ ବିବେକ ।୯୩।
ପାର୍ଥିବଂକର ପୁତ୍ର ଶାନ୍ତନୁ
ଶାନ୍ତନୁଂକର ଚିତ୍ରବୀର୍ଯ୍ୟ ଯେ ତନୁ ।୯୪।
ବିଚିତ୍ରବୀର୍ଯ୍ୟ ଯେ ଅବଶେଷ
ଭୀଷ୍ମଦେବ ଗ୍ୟାନବନ୍ତ କନିଷ୍ଠ ଶିଷ ।୯୫।
ଭୀଷ୍ମଦେବ ପିତୃ ବଚନ ପ୍ରତିପାଳନ
ଶ୍ରୀ ବେଦବ୍ୟାସଂକର ଚରଣେ ଶରଣ ।୯୬।
ଶ୍ରୀ ବେଦବ୍ୟାସ ସମ୍ଭବୀ ଭବିଷ୍ୟ କୃତ୍ତୁ
ଶ୍ରୀ ପଣ୍ଡୁ ମହାରାଜାଂକ ବ୍ରତ ହେତୁ ।୯୭।

---

୮୬।୨ ନଘୋଷ—ନହୁଷ ।
୮୬।୨ ଭରଥ ମଣ୍ଡଳ—ଭରତ ମଣ୍ଡଳ ।
୯୪।୧ ପାର୍ଥିବ—ପ୍ରତାପ ।

ଶ୍ରୀ ସୋମବଂଶ କୁଳ ଉଦ୍ଧାରଣ
ଶତଶୃଙ୍ଗ ଗିରି ମଣ୍ଡଣ ।୯୮।
ହସ୍ତିନା ଜଇନ୍ତା ବାରୁଣା ଇନ୍ଦ୍ରପ୍ରସ୍ଥକ
ଯମପ୍ରସ୍ଥ ଯେ ପଞ୍ଚ ରାଜ୍ୟ ରକ୍ଷା ପାଳକ ।୯୯।
ବନାନଳ ଦର୍ପ ଚୂର୍ଣ୍ଣଣ
ସମ୍ବର୍ତ୍ତିକ ମେଘ ଧ୍ୱଂସନ ।୧୦୦
ଶଇଳଜାର ବଲ୍ଲଭ ଚରଣେ ବନ୍ଦନ
କୁମ୍ଭେକ ଦୈତ୍ୟ ଦର୍ପ ଚୂର୍ଣ୍ଣଣ ।୧୦୧।
ଶବଶ ବର ଶରଣ ସଦାରେକ
ପାଣ୍ଡବାସୁର ଦର୍ପ ଧ୍ୱଂସକ ।୧୦୨
ନାଗକର କାଳ କୃତାନ୍ତକ
ରାଧାଚକ୍ର ଶହସ୍ର ସନ୍ଧାତକ ।୧୦୩।
ଲକ୍ଷେ ରଜାଂକର ମଉଡ଼ମଣି ପ୍ରମାଣ
ପାଞ୍ଚାଳୀର ପ୍ରାଣଗୁରୁ ସୁଜାଣ ।୧୦୪।
କୃତକେଶୀର ଦର୍ପ ନିବାରଣ
ଭାରଦ୍ୱାଜବଶଂକର ନନ୍ଦନ ଚରଣେ ବନ୍ଦନ ।୧୦୫।
ଶତଧନୁ ଶରଣ ପଞ୍ଜର
କ୍ଷତ୍ରୀବର ସୋଦଣ୍ଡ ସୁନ୍ଦର ।୧୦୬।
ଗାଣ୍ଡିମ ଧାକ୍ଷାଗୁରୁ ଅମର ସ୍ୱର୍ଗ ରାଣ
ଅମରାଧି ନାଥ ମନ ଉଚ୍ଚାଟନ ।୧୦୭।
ସଦାନନ୍ଦ ଧନୁ କୁଣ୍ଡଳୀ କୃତ
ପିଙ୍ଗଳ ଜାଲା କାଳାନଳ ପ୍ରାଣତ୍ୟାଜ କାଳ ଜାତ ।୧୦୮।
ବଶ୍ୟାନର ଅନଳ ଯେ ପଞ୍ଚଅଗ୍ନିକୁ ମଉଷଧି ନାଥ
ମନ୍ଦାଅଗ୍ନିକ ଆରୋଗ୍ୟ ଶରୀର କୃତ ।୧୦୯।
ଶୋଷେକ କାଳସର୍ପ ଅଶ୍ୱବଳ ମର୍ଦ୍ଦନ
ଦ୍ୱାରକା ରକ୍ଷା ପାଳନ ।୧୧୦।
ସୁଭଦ୍ରା ପ୍ରାଣଗୁରୁ ଶ୍ରୀ ରାମକୃଷ୍ଣ ହୃଦୟ ବାନ୍ଧବ
ଦ୍ୱିଗ ସାଗର ପ୍ରଦୀପ ନାଥ ଦେବ ।୧୧୧।

ଯଦୁବଂଶ ଭୋଜବଂଶ ବୃଷ୍ଣି ଅନ୍ଧକ ବଂଶ
ହଇହୟ ବଂଶ, ବାଣବଂଶ, କୁକୁର ବଂଶ, କାଦମ୍ବ ବଂଶ ।୧୧୨।
ଯେୟୁ ସାତବଂଶର ଅଇଲ ବଳ ମର୍ଦ୍ଦନ
ସକଳ ଦୈତ୍ୟ ଦାନବ ଗର୍ବ ଗଞ୍ଜନ ।୧୧୩।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶକୁନି ଅଶସ୍ତମା ଶଲ୍ୟ
ବାହ୍ଲିକ ସୋମଦତ୍ତ ଭୂରିଶ୍ରବା କଉରବ ବଳ ଭରସଲ ।୧୧୪।
ଧୃତରାଷ୍ଟ୍ର ଭୟ ଭଙ୍ଗାଣ
କରୁଣାକର ଶରଣ ସାର୍ଥକ ପ୍ରମାଣ ।୧୧୫।
ଜୟ ବିଜୟ ପ୍ରାଣଗୁରୁ କଣ୍ଟୟ ଗିରି ଶଖର ଫୁଟେଣ
ଲୋହଗିରି ବଜ୍ର ପ୍ରହାରଣ ।୧୧୬।
ଅଙ୍ଗାରପନ୍ନଗ ସାଧାରଣ କରଣ
ମାଳଞ୍ଚି ନନ୍ଦୀ ମନ ସ୍ତମ୍ଭନ ।୧୧୭।
ମନଭେଦୀ, ବ୍ରହ୍ମ ଶରସ୍ତ୍ର, ପାଶୁପତ, ଅକ୍ଷୟ ତୋଣ
ଶୀଳବାଣ ଭୁଜବାଣ ନାରାୟଣ ଶସ୍ତ୍ର ସାଧନ ।୧୧୮।
ଅଇରି ବଳ ଦର୍ପ ଗଞ୍ଜନ
ଦୁଷ୍ଟ ବଳ ନିଶୋଧନ ।୧୧୯।
ଅନାଥ ଜନ ରକ୍ଷା ପାଳକ
ଜାରା ବିଧ୍ୱଂସ ନାୟେକ ।୧୨୦।
ଶରଣ ରକ୍ଷଣ କଇଞ୍ଚା ଜଗଜ୍ଜେଠୀ ରାଣ
ବସୁଧା ଭାରଭର ନିଶୋଧନ ।୧୨୧।
ଧାନୁକ୍ଷା ଯାଗ ରକ୍ଷା ପାଳକ
ମୋଡାସୁର ପ୍ରାଣ ହନ୍ତକ ।୧୨୨।
ଆର୍ଦ୍ରାବଳୀ ମୁଷ୍ଟିକ ଚୂଡଣ
ଶ୍ରୀ ଦୁର୍ଗାଙ୍କର ବର ନନ୍ଦନ ।୧୨୩।
ତଇଲୋକ୍ୟ ମଣ୍ଡଳାଧି ନାୟକ
ଜାରା ବିଧ୍ୱଂସ ଦାୟକ ।୧୨୪।
ରାଜାଧି ମୂରୁଧୂନା
ବସୁନ୍ଧରା ଧାରଣା ।୧୨୫।

ଶ୍ରୀରାମ ଅଳଂକୃତ
ରଜାଧି ରାଜେଶ୍ୱର ତ ।୧୨୬।
ଶ୍ରୀ ଅନାଦି ନିରଞ୍ଜନ ଶୁକ୍ଳାମ୍ବର
ଯେଉଁକାଇ ବିଷ୍ଣୁ ଅବତାର ।୧୨୭।
ସଉନାଧି ବିଷ୍ଣୁ ବଇକୁଣ୍ଠପୁର ମଣ୍ଡନ
ଶ୍ରୀ ଯୁଧିଷ୍ଠିର ଦେବଂକ ପାଦପଦ୍ମେ ସତତ ବିନୋପ୍ରୀ ନମ ।୧୨୮।
ଶ୍ରୀ ପଞ୍ଚରାଜ୍ୟ ପୁର ମଣ୍ଡନ
ଉତ୍ତର ଦିଗ ବିରଗଣ ।୧୨୯।
ଗ୍ରୁଳଣି ସହସ୍ର ରାଜାନ୍ତ ନିମନ୍ତ୍ରଣ
ଶୂଦ୍ର ବଶ୍ୟ କ୍ଷତ୍ରୀ ବ୍ରାହ୍ମଣ ।୧୩୦।
ଯକ୍ଷ ପିଶାଚ ଅସୁର ଦାନବ ଦୈତ୍ୟ
ରାକ୍ଷସ ନିଷାଦ କିରାତ ଅଷ୍ଟାଦଶ ବଂଶ ଅଧିକୃତ ।୧୩୧।
ତିନିଲୋକ ରାଜ ସିଂହାସନେ ଅଭିଷିକ୍ତ ।୧୩୨।
ଅର୍ଜୁନ ଫାଲଗୁନ୍ୟ ଦୁଷ୍ଟାକୃଷ୍ଣ କିରୀଟୀ ଶ୍ୱେତବାହନୀ ଯେଉଁ
ବିବଣ୍ଣ ବିଜୟ ପାର୍ଥ ସବ୍ୟସାଚୀ ଧନୁର୍ଜୟେ ।୧୩୩।
ଶ୍ରୀ ଭାରଥେ ଭାରେଇ ମଲ୍ଲ ଧାନୁକା ଚକ୍ର ଚୂଡ଼ାମଣି ତ
ଶ୍ରୀ ପରଶୁରାମର ମହାବିଦ୍ୟା ହୃଦଗତ ।୧୩୪।
ଶହସ୍ର ଶାହାସ୍ତ୍ରେ ଉତ୍ତମ
ଶ୍ରୀ କ୍ଷେତ୍ରୀବର ମହାରଥୀ ଶ୍ରୀ ଅର୍ଜୁନ ଦେବ ଚରଣେ ବିନଯେ
ନମ ।୧୩୫।

ଭାଖା ମଣ୍ଡଳ ରାଜା ଦ୍ରୁପଦସେନଙ୍କୁ ଶ୍ରୀମୁଖ ପ୍ରସାଦ ଯେହ୍ନ
ଶ୍ରୀମୁଖ ପଢିବା ମାତ୍ରକେ ଚୋହୋର ଥାଠସନ୍ୟ ଯେହ୍ନ ।୧୩୬।
ଦେଖା ଦରଶନ ଧନ ଧେନ
ରାଜସୂୟଯାଗ ସର୍ଭାଙ୍କୁ ଉଠି ଆସିବା ବହନ ।୧୩୭।
ଶୂଦ୍ରମୁନି ସାରୋଳା ଦାସ ନମସ୍ତେ ନମସ୍ତେ
ଶ୍ରୀ ହିଙ୍ଗୁଳା ଦେବୀଂକୁ ମୁଂ ଭାବଇ ହୃଦଗତେ ।୧୩୮।
ଅରୁଣ ଚଞ୍ଚଳ ବୋଲି ବେନି ଦୂତପତ୍ର
ଶ୍ରୀମୁଦା ସନ୍ତକ ଦିଲେ ହୋଇଣ ଶାନ୍ତମୂର୍ତ୍ତି ।୧୩୯।

*

ଶ୍ରୀମୁଖ ଘେନିଣ ସେ ଚଳଲେ ବେନିଦୂତେ
ପ୍ରବେଶ ହୋଇଲେ ଯାଇଂ ଶାଖା ମଣ୍ଡଳ ପ୍ରଶସ୍ତେ ।୧୪୦।
ଜମାଗୋଷ୍ଠ ରାଜ୍ୟ ବେଢିଛନ୍ତି ଦରଦସେନ ନୃପତି
ସମ୍ପରେ ରହିଛି ଖାଖା ମଣ୍ଡଳ ଅଧିପତି ।୧୪୧।
ଦରଦସେନ ରାଜା ହଜେ କରନ୍ତି ଆସ୍ଥାନ ଜଗତି
ତହିଂ ଯାଇଂ ପ୍ରବେଶ ହୋଇଲେ ଦୂତପତି ।୧୪୨।
ସନ୍ନିଧେ ପଞ୍ଚୋଆଗ୍ନ ଅଛନ୍ତି ଅମନାତ୍ୟେ
ତହିଂ ପ୍ରବେଶ ହୋଇଲେ ଯାଇ ଅର୍ଜୁନ ବେନିଦୂତେ ।୧୪୩।
ଶ୍ରୀମୁଖ ଘେନି ବୋଲିଣ ସେ ଆଗ୍ୟାଂ ଅବଧାରି
କାହାର ଶ୍ରୀମୁଖ ବୋଲ ନୃପତି ପଚ୍ଚରି ।୧୪୪।
ରାଜାର ଆଗରେ କହିଲେ ଉଗରେ ଯାଇଂ
ଅର୍ଜୁନ ଠାକୁରେ ହଜେକଲେ ଉତ୍ତର ଦିଗକଇଂ ।୧୪୫।
ଗୃଳଣ ସହସ୍ର ରାଜା କରନବ ନିମନ୍ତ୍ରଣ
ପାଦ୍ୟୋଡା ପାଡ ରାଜା ଶ୍ରୀମୁଖ ଘେନସି ବହନ ।୧୪୬।
ଆଚମ୍ବିତ ବାରତା ପାଇଣ ଦରଦ
କାହାର ଶ୍ରୀମୁଖ ବୋଲ ହଅଇ ସମ୍ବାଦ ।୧୪୭।
ମନ୍ତ୍ରୀ ବୋଇଲ ଦେବ ଶୁଣିମା ସାବଧାନେ
ସ୍ତମ୍ଭୀଭୂତ ହୋଇ କଂପା ବସିଲ ମଉନେ ।୧୪୮।
ପାଣ୍ଡବ ସୁନ୍ଦର ସେ ଅଟଇ ବୀରମଣି
ତୁ ଦେବ ମହିମାଂ ତାର ନ ଜାଣି ନ ଶୁଣି ।୧୪୯।
ସଜ୍ଜନ ପାଳକ ସେ ଦୁର୍ଜନ ଦର୍ପଭଞ୍ଜା
ଶରଣ ଉଦ୍ଧାରଣ ସେ ନାଶକର ଦର୍ପଗଞ୍ଜା ।୧୫୦।
ଘେନ ଘେନ ଶ୍ରୀମୁଖ ରାସ୍ତେ ନ କର ତୁହି ହେଳା
ଜଗଦ୍ଦର୍ପ ନାଶନ ସେ ଦାସବର ବଳା ।୧୫୧।
ଖାଣ୍ଡବ ବନ ଦହନେ ସେହୁ ବାସବ ହବାଦେ
ବହନି ବ୍ୟାଧି ଛୁଟିଲ ବାସବୀର ପ୍ରସାଦେ ।୧୫୨।
ଶ୍ରୀ ଜଗନ୍ନାଥେ ପୀରତି ବାସବେ ହବାଘ
ପ୍ରସନ୍ନେ ନାରାୟଣ ଅଛଇ ସବସାଧି ।୧୫୩।

ମନ୍ତ୍ରୀର ବଚନେ ସେ ରାଜା ମଣ୍ଡଳ ଅଧିପତି
ବାମ ଆଣ୍ଠୁ ମାଡିଣ ସେ ହୋଇଲା କୋପମୂର୍ତ୍ତି ।୧୫୪।
ଅଧର ପୃଷ୍ଠକର ଅଧରେ ଦନ୍ତ ଚାପି
ଯେସନେ ନିଦ୍ରାନ୍ତ କାଳେ ଅସୁର କାମରୂପୀ ।୧୫୫।
ଉତ୍ତର କୋଶଳେ ମମ ପ୍ରତାପ୍ୟାଂ ପ୍ରସିଦ୍ଧି
ଦଇତ ଦାନବ ମୁଂ ନ କଲି କାହା ସାଧି ।୧୫୬।
ଆଦିତ୍ୟ ଲୁଗୁଣ ହୁଅଇ ଯାହାର ଗମନେ
ବାରିନିଧି ସନ୍ଧାନ ଯାକୁ ଦିଅଇ ରେ ନିତ୍ୟେ ।୧୫୭।
ଯେଉଂଣ ରାଜା ଦେବ ଦାନବେ ନୋହଇ ନାଶ
ହେଲେ ନାଶକଲି ମୁହିଂ ଅସୁର ମହାଦାସ ।୧୫୮।
କେତେକ ଦୁଷ୍ଟ ମୁହିଂ ନାଶିଲି ସ୍ୱେଚ୍ଛ ମହାସ୍ଥଳେ
ଅରୁଣ ଗିରିବର ମୁଂ ଭାଂଜିଲି କରତଳେ ।୧୫୯।
କ୍ଷତ୍ରୀବର ପଣ୍ଡିତ ମୁଂ ଭାଗ୍ୟବର ପରସାଦେ
ସ୍ୱେ ଦ୍ୱାପର ଯୁଗ ଅନ୍ତକଲି ମୁହିଂ ବରଞ୍ଜିନାରାୟଣର ମନ୍ତ୍ର ସାଧେ ।୧୬୦।
ସ୍ୱର୍ଗେ ଦେବେ କଂପନ୍ତି ରେ ଯାହାର ପଳଣନ୍ତେ
ଅସାଧ୍ୟ ସାଧ୍ୟ ହୋନ୍ତି ଯାହାର ନାମ ଧରନ୍ତେ ।୧୬୧।
ଇହଲୋକ ରାଜାନ୍ତ ମୁହିଂ କେତେ ନ ଦିଲଇଂ ଦୁଖ
କେଉଣ ପାମର ରେ ମୋତେ ଦିଅଇ ଶ୍ରୀମୁଖ ।୧୬୨।
ଆସଇ କନା ତାର ସମଦଣ୍ଡ ସାଜ
ପ୍ରତାପ୍ୟାଂ କରଣ ରାଜା ଉଠିଲା ଗଲଗାଜ ।୧୬୩।
ଦୁସହ ପ୍ରତାପ୍ୟାଂ ସେ କରଇ ପୁଣ ପୁଣି
ଆସୁ ତାହାର ଦଣ୍ଡ ସାଜ କେତେକ ଦର୍ପ ଜାଣି ।୧୬୪।
ସାଜ ସାଜ ସନ୍ୟ ବୋଲି ଆଜ୍ଞାଂ ଦିଲା ନୃପତି ଦରଦସେନ
ତ୍ରିଭୁବନ କମ୍ପିଲା ତାର ବାରତୂର ଶବଦେଣ ।୧୬୫।
ଶ୍ରୀମୁଖ ନିନ୍ଦା ଶୁଣିଣ ଗଲେକ ଦେଶାନ୍ତରେ
ପ୍ରବେଶ ହୋଇଲେ ଯାଇଂ ଅର୍ଜୁନ ସ୍ମୁମୁରେ ।୧୬୬।
ସ୍ୱାମୀ ଅତି ଦୁଷ୍ଟ ନୃପତି ସେ ଅଟଇ ଦୁରର ବଡ ମନ୍ଦା
ନ ଘେନିଲା ଶ୍ରୀମୁଖ ଦେବ ବହୁତ କଲା ନିନ୍ଦା ।୧୬୭।

ଅନେକ ପ୍ରତଗ୍ୟାଂ କରଣ ସେ କହିଲ ମହାରାଗୀ
ରଥ ଗଜ ଅଶ୍ୱ ସାଜ ବଜେକଲ ବେଗି ।୧୬୮।
ବଢାଇ ଅସମ୍ଭବ ଦେବ ଅସଂଖ୍ୟ ତାର ଦଣ୍ଡ
ମୁଖରବ ଶବଦେ କମ୍ପଇ ସପତ ବ୍ରହ୍ମାଣ୍ଡ ।୧୬୯।
ଆଦ୍ଭୁତ୍ୟ ଭସ୍ମ କରଇ ଦେବ ସନ୍ଧାନ ଦଅଇ ସିନ୍ଧୁ
ଉତ୍ତର କୋଶଳେ ଦେବ ପ୍ରତଗ୍ୟାଂ ତାହାର ସାଧୁ ।୧୭୦।
ଦେବ ଦାନବ ଗଣ ଗନ୍ଧର୍ବେ ସେ ଅଟଇ ନିର୍ଭୟେ
ଅସୁର କୁଳ ନୃପତ୍ତ ସେ କ୍ଷଣ କ୍ଷଣକେ ମାୟେ ।୧୭୧।
ମୁନେଶ୍ୱର ମୁଖରୁ ଯେସନେକ ପ୍ରତଗ୍ୟାଂ ବାକ୍ୟ ଶୁଣି
ଅଧର କମ୍ପାଇ ଅର୍ଜୁନ ଉଠିଲ ଶିର ଧୂଣି ।୧୭୨।
ଶୂରବର ସୁନ୍ଦର ସେ ପ୍ରତଗ୍ୟାଂ ମହାରାଗୀ
ରଥରେ ପାର୍ଥିବ ଯାଇଂ ବଜେକଲ ବେଗି ।୧୭୩।
ଅକ୍ଷୟ ତୋଣ ବେଗକଲେ କରେଣ ଗାଣ୍ଡିମ ଧନୁ
ପବନହୁଂ ବେଗେ ରଥ ଚଲାଇଲେ ସୁରବର ତନୁ ।୧୭୪।
ଗୁଣ ଟଂକାର କରଣ ସେ ସୁଭଦ୍ରାର ନାହା
ମାତଳକୁ ବୋଇଲେ ମୋ ରଥ ବେଗେ ବାହା ।୧୭୫।
ଆଗିଆଣି ଥାଠେ ସେନାପତ୍ତ ଜୟେ ସେ ବଜୟେ
କ୍ଷେପନ୍ତ ତୁରଙ୍ଗମ ଯେ ଶ୍ୟାମଳ ପକ୍ଷୀ ପ୍ରାୟେ ।୧୭୬।
ଦେବଦତ୍ତ ଶଙ୍ଖ ଯେ ବଜାଇ ସବ୍ୟସାଚୀ
ଲକ୍ଷେକ ବଳ ଗାଣ୍ଡିମ ଗୁଣଦେଇ ଆମଞ୍ଚି ।୧୭୭।
ପ୍ରତଗ୍ୟାଂ ସାମରଥ ଯେ ଅଟଇ ପାଣ୍ଡବ କଣ୍ଠୀ
ଅଳପ ସଇନ ଯେ ଦରଦସେନ ଥାଠ ଘୋଟି ।୧୭୮।
ଶଙ୍ଖ ଗୋକ୍ଷୀର ଶ୍ୱେତ କାମପାଳ ଗୃଶହୟେ
ଉଡନ୍ତ ଗଗନେ ଯେହ୍ନେ ଶେଣ ପକ୍ଷୀ ପ୍ରାୟେ ।୧୭୯।
ଅସ୍ତ୍ରାନେଣ ଥାଇଂ ତାହା ଦେଖଇ ଦରଦସେନ
ସୁରସାହ୍ୱ ମନ୍ତ୍ରୀକି ରଜା ପୁଚ୍ଛଇ ବଚନ ।୧୮୦।
ଆହେ। ମନ୍ତ୍ରୀ ରଥେକ ଯେ ଭ୍ରମି ଆସଇ ଅନ୍ତରୀକ୍ଷେ
ଗଜ ଅଶ୍ୱ ସଇନ ତ ନାହିଂ ତାର ପଛେ ।୧୮୧।

ରାଜାଙ୍କଇଂ ଜଣାଇଲା ସେ ମନ୍ତ୍ରୀ ସୁରସାହ୍ଵ
ଦୁଷ୍ଟକ୍ଷତ୍ର ଅବତାର ଅର୍ଜୁନ ଅଟଇ ସୈନ୍ଯ ।୧୮୨।
ବାସବର ନନ୍ଦନ ରଥେ ମାତଳ ବାହ୍ଵଗ୍ନ
କୋଟିକଲ୍ପ ଅଶ୍ଵ ଗୃର କ୍ଷେପନ୍ତ ଭୁବନ ତିନ ।୧୮୩।
ମନ୍ତ୍ରୀର ବଚନେ ସେ ଦରଦସେନ ମହାରାଜ
ସୁରବର ସୁନ୍ଦର ବୋଲି ସାଜ ଚଢିଲ ମତ୍ତଗଜ ।୧୮୪।
ମଣ୍ଡିଲା ମହାନାଗ ଅନେକଙ୍କଇଂ ଆୟୁଧ
ସାଂଗ୍ରାମେଣ ଅଭୟା ସେ ନ ଭୁଞ୍ଜନ୍ତି ମହାଯୁଦ୍ଧେ ।୧୮୫।
ଦକ୍ଷିଣ କରେ ପରଶ ଆୟୁଧ କୁଠାର ବାମ କରେ
ଅନ୍ଧକ ବଧକାଳେ ଯେସନେକ ବଜେକଲେ ହରେ ।୧୮୬।
ଲୁହାର ଦୁଇଲକ୍ଷ ନାଗଜ ଅଛୁ କଷି
ଅନ୍ତରୀକ୍ଷେ ଶିକ୍ଷମୁନା ଦଶନ୍ତ ଅଗିରାଶି ।୧୮୭।
ଗଦା ମୁଦୁଗର ଧନୁ ଅସିପଷ କୁନ୍ତଶରେ
ବଜେକଲ ଅଛୁ ନରେନ୍ଦ୍ର ଯାଇଂ ମହାନାଗ ପିଠିରେ ।୧୮୮।
ବାରତୂର ଢୋଲ ଝମକ ନିଶାଣ ବାଜେ
ରେ ରେ କାର ଶବଦେ ରାଜା ଆପଣେ କଲା ବଜେ ।୧୮୯।
ତିନି ସାଗର ରଥ ବତିଶ ସାଗର ନାଗ
ପଞ୍ଚଷଠୀ ସାଗର ଯେ ଗୈଖାର ତୁରଙ୍ଗ ।୧୯୦।
ଆଳମ୍ବ ପାଞ୍ଚଲକ୍ଷ ସୈକଲକ୍ଷୀ ମୟୂର ଝାଲି ଛତା
ଆକାଶେ ଅଦୃଶ୍ୟ ହୋଇଲେ କରତାର ଦେବତା ।୧୯୧।
ରାଜାର ଆଗ୍ୟାଂ ଯାଇ ଧାଇଂଲେ ତାହାର ବଳ
ମହାବାଦ୍ୟ ଶବଦେ ଉଚ୍ଛୁଳିଲା ମହାଗୋଳ ।୧୯୨।
ଡାକହାକ ଶବଦେ ଉଠିଲେ ଓହୋବଳ ସଇନ୍ୟ
ବହନ୍ତ ନାଗଜ ଯେ ପବନୁଂ ବେଗ ଜାଣି ।୧୯୩।
ହାଥୀଂକର ଗର୍ଜନ ଯେ ଘଣ୍ଟାରବ ଶବଦେ
ମହୀ ଉଚ୍ଛୁଳଇ ଯେହ୍ନେ ସିନ୍ଧୁ ଘୋଷ ନାଦେ ।୧୯୪।
କଣକଲୁ ମାଝ ସିନା ଅର୍ଜୁନ ଆଠଗୋଟି
ଦରଦସେନ ଆଠ ରେ ରେ କାର କରି ଉଠି ।୧୯୫।

ସର୍ବେ ଗୁରୁ ଅନ୍ତ୍ରଭାବ ଅର୍ଜୁନର ସଇନ
ଦରଦସେନ ବେଢ଼ିଲ୍ଲ ସେ ବାଇଶି କ୍ଷଉଣୀ ବଳ ଘେନ ।୧୯୬।
ସମୋଦ୍ର ଭିତରେ ଯେହ୍ନେ ଦଶନ୍ତ ମାଛମାନେ
ସେହ୍ନ ସରୂପେ ଯେ ଦଶନ୍ତ ପାଣ୍ଡବ ସଇନେ ।୧୯୭।
ବହୁତ ସନ୍ୟ ଦେଖି ଅର୍ଜୁନ ବଳ ହୋଇଲେକ ଲୋଚ
ଦଣ୍ଡଭଗ୍ନ ହୋଇଣ ଭାଜଲେ ସର୍ବେ ଘୁଞ୍ଚ ।୧୯୮।
ଆରେ ରହ ରହ ଡାକଇ ବୀର ପାର୍ଥ
ଯେସନେକେ କେଶରୀ ନ ଲେଖଇ ଗଜଯୂଥ ।୧୯୯।
କରେଣ ଗାଣ୍ଡିମ ଧନୁ ଧରଣ ସର୍ବସାଚୀ
ଅଗଣିତା ନାରାଜ ତେଣୁ ନେଇ ଗୁଣେ ଯୋଚ ।୨୦୦।
ଝଲକନ୍ତ ନାରାଜ ଯେ ସହସ୍ରେ ତୀକ୍ଷମୁନା
ବାହ୍ନନ୍ତେ ନିକଳିଲ୍ଲ ସେ ଛର୍ଷୀଙ୍କର ବଜ୍ରସେହ୍ନା ।୨୦୧।
ଗିରିବର ଫୁଟଇ ଯାହାର ଶରଘାତେ
କକଡ଼ା ବୃଷ୍ଟି ପ୍ରାୟେ ଦଶିଲ୍ଲ ରଣପଥେ ।୨୦୨।
ଅର୍ଜୁନକୁ ବେଢିଲେ ଆସି ବତ୍ତିଶ ମର୍ଚ୍ଛ ରଥୀ
ଅକମେକ ଅର୍ଜୁନ ସେ ସେୈକସରେ ଥାଠ ମଚ୍ଛି ।୨୦୩।
ଦରଦର ସଇନ ନାରାଜ ବାହ୍ନନ୍ତ ଅବଛନ୍ନେ
ସହସ୍ରେ ସହସ୍ରେ ତୀକ୍ଷମୁନା ପଡଇ ଘନ ଘନେ ।୨୦୪।
ବହୁତ ନାରାଜ ଦେଖି ଅର୍ଜୁନ କୋପାନଳ
ମନଭେଦୀ ନାରାଜ ଯେ ଧଇଲ୍ଲ ମହାବଳ ।୨୦୫।
ହାବୋଡ଼ା ଶରେକ ଯେ ପୂରେଇ ଫାଲଗୁନ
ଆଗ୍ୟାଂ ଦିଲ୍ଲ ଭେଦ ଯାଇଂ ଦରଦସେନର ଯେତେକ ସଇନ ।୨୦୬।
କୁତୂହୋଳ ଯୁଦ୍ଧକୁ ମୋର ବେଳ ଅଚ୍ଛୁ କାହ୍ନଂ
ନଉଦନୁଂ ଦନେ ଅଧିକ ହେଲେ ନ ବ୍ରତଇ ମୁହ୍ନଂ ।୨୦୭।

---

୧୯୭। ସମୁଦ୍ର ଭିତରେ ଯେହ୍ନେ ଦଶନ୍ତ ତରଙ୍ଗମାଳେ
୧୯୭। ସେହ୍ନ ସରୂପେ ଦଶନ୍ତ ଯେ ପାଣ୍ଡବର ବଳେ । (ଘ,ନ,ଖ)
୨୦୭।୨ ଅଣଷାଠି ଦନୁଂ ଦନେ ଅଧିକ ହେଲେ ମୋହୋର ବ୍ରତ
ନାହ୍ନଂ । (ଝ,ଥ,ଛ,ଡ)

ବାସବର ଆଗ୍ୟାଂସ୍ତେ ସେ ନାଗଜ ମନଭେଘ
ବାଇଶି କ୍ଷଉଣୀ ବଳ ସବୁର ହୃଦେ ଭେଘ ।୨୦୮।
ହାବୋଡା ଶର ଯେ ହାବୁଡ ସର୍ବକାୟେ
ପଡଲେ ସର୍ବସନ୍ୟ ସେ ବ୍ରହ୍ମଶର ଘାୟେ ।୨୦୯।
ଛନ୍ନ ଯୋଜନ ମାଡ ପଡଲେ ବଳ କୋଟି
ପୃଥୀ ଉଲ୍କାପାତ ହୋଇ ରୁଧିର ହେଲା ବୃଷ୍ଟି ।୨୧୦।
ଦରଦସେନ ଗଜାର ସଇନ୍ନ ଅସମ୍ଭବ ବନସ୍ତ
ଚନ୍ଦ୍ରାଂକ ପବନ ଯେ ଅଣଗୁଣ ବୀର ପାଥ ।୨୧୧।
ଗହନ ବନେ ଯେହ୍ନେ ସମସ୍ତ ବୃକ୍ଷ ଭାଙ୍ଗି
ଦଣ୍ଡ ଅସାଷ୍ଟମ ଦେଖି ଦରଦସେନ ଉଠିଲା ଗଳଗାଜ ।୨୧୨।
ସହସ୍ରେକ ନାଗଜ ପୂରେଇଲେ ଲୋହାର ଧନୁ
ଅର୍ଜୁନକୁ ଆକ୍ଷେପି ବନ୍ଧଲା ସେ ବୃନ୍ଦାରକ ଗଜା ତନୁ ।୨୧୩।
ଅର୍ଜୁନ କୋପେ ବନ୍ଧିଲେ ଦରଦସେନକୁ ପଞ୍ଚଶର
ଲୋହାର ବଜ୍ରଘୋଟ ରଥଗୋଟି ଭଜ ହୋଇଲା ଶତେ ଚୂର ।୨୧୪।
ଧନୁଶସ୍ତ୍ର ଗୁଡ ଗଜା ହୋଇଲା ପାଦଗତ
ଧାଡକାରେ ଆରୋହିଲା ଗଜା ସେ ଗଣ୍ଡାଧି ନାମେ ହାଥୀ ।୨୧୫।
ବଜ୍ର ପରଘେକ ବୁଲାଇ ଯବନାଧି
ଅର୍ଜୁନର ରଥେ ନେଇ ପ୍ରହାର କଲା ଖେଦ ।୨୧୬।
ବାବଲ ଶରେକ ଘେନି ପେଷିଲେ ଦୁଷ୍ଟ ବନମାଳୀ
ହାଥୀ କୁମ୍ଭସ୍ଥଳେ ପଡ ପଛକଡକ ନିକଳ ।୨୧୭।
ଘାୟେଣ ଘୁମାଇ ମହାନାଗ ପଡିଲା ଗଳଗାଜ
ପୁଣି ଆରୋହିଲା ମହା ବାରଣ ବାଜୀ ।୨୧୮।
ଆକ୍ଷେପି ଖେଦାଇ ଗଜା ମହା ବାରଣ ଅଶ୍ୱ ପିଠି
ଅର୍ଜୁନ ଉପରକୁ ଗଜା ମାଇଲା ନବନିଶି କୁନ୍ତ ଯାଠି ।୨୧୯।
ମାତଲି ସାରଥି ତାର ରଥେ ଥାଇ ବଞ୍ଚି
ପଶୁପତ ନାଗଜ ଯେ ବନ୍ଧଲେ ସର୍ବସାଚୀ ।୨୨୦।
ଶର ପଡଣ ଅଶ୍ୱ ଯେ ହୋଇଲା ବେନିଖଣ୍ଡ
ଗୁଣଘୋଷ ଶବଦେ ଯେ କଂପଇ ବ୍ରହ୍ମାଣ୍ଡ ।୨୨୧।

ପାଦଗତି ହୋଇ ପଳାଇଲା ଦରଦସେନ ରାୟେ
ପଛକତି ଗୋଡାୟେ ପାଣ୍ଡବ ଧନୁର୍ଜୟେ ।୨୨୨।
ଯେତେକ ଆରମ୍ଭ ତୁରେ କଲୁସି ଦରଦ
କାଳେଣ ନିଷତ କଂପା ହୋଇଲୁ ରେ ଦୁଷ୍ଟ ମନ୍ଦ ।୨୨୩।
ବଳମ ସିଂହ ଛାମୁରୁ ତୁ କେତେ ଦୂର ଯାଉ
ନିଷତ ହୋଇ ରହିବୁ ନା କେତେ ଦୂର ପଳାଉ ।୨୨୪।
କମ୍ପାଇଣ ରଥ ଯେ ବାହିଲା ମାତଳି ସାରଥି
ଅର୍ଜୁନ ବୋଇଲା ନିଷତ ଲୋକକୁ ଗୋଡାଇଲେ ଆପଣା ଧର୍ମ
ବିନଶ୍ୟତି ।୨୨୫।

ପଳାଇ ଦରଦସେନ ପଶିଲା ଶାଖା ମଣ୍ଡଳ ପୁରେ
ମୁନେହ୍ବ ଜଣାଇଲା ଯାଇଂ ଯମାଗୋଷ୍ଟ ଛାମୁରେ ।୨୨୬।
ସ୍ୱାମୀ ଆମ୍ଭର କଟକେ ବେଢିଥିଲା ନୃପତି ଦରଦ
ଅଦଭୁତେ ଯୋଦ୍ଧାୟେ ଆସି ତାକୁ ଚମ୍ପିଲା ପରମାଦ ।୨୨୭।
ଯେତିକା ରଥୀକେ ଦେବ ନାରଜ କଲା ବୃଷ୍ଟି
ବାଇଶି ଷଉଣୀ ବଳ ପଡିଲେ ମହୀତଳେଟି ।୨୨୮।
ଯେତିକା ଦରଦସେନ ନୃପତି ପଳାଇଲା ବିମୋହେ
ଆମ୍ଭର ରାଜ୍ୟରେ ପଶିଲା ଦେବ ଶରଣ ସନ୍ଦେହେ ।୨୨୯।
ଯମାଗୋଷ୍ଟ ବୋଇଲା ଯେତେକ ଦରଦକୁ ପଡିଲା ଅପଚୟେ
ଗଉରେବ କରି ଆଣରେ ଆସୁ ବେଗେ ରାୟେ ।୨୩୦।
ଯମାଗୋଷ୍ଟ ବିଜେ କରିଅଛୁ ଆସ୍ଥାନ ଜଗତି
ସନ୍ନିଧେ ପ୍ରବେଶ ହେଲା ଦରଦସେନ ନୃପତି ।୨୩୧।
ଆସ୍ଥାନୁଂ ଓହ୍ଲାଇ କରି ଆୟେ ନୃପତି ଯମାଗୋଷ୍ଟ
ପ୍ରଣପତ୍ୟ ହୋଇଲା ଦରଦସେନର ପାଦପୃଷ୍ଟ ।୨୩୨।
କୋଳାଗ୍ରତ କରିଣ ରାଜା ଦରଦସେନ
ଅନ୍ତେଶ୍ୱର ପୁରେ ବିଜୟେ କଲେ ବେନି ଯେ ରାଜନ ।୨୩୩।
ଅନେକ ବଇକୁଳ୍ୟ ହୋଇ କହଇ ଦରଦ ନୃପମଣି
ବାବୁ ଅନମିତେ ହରାଇଲି ବଳ ବାଇଶି ଷଉଣୀ ।୨୩୪।
ମ୍ଭେ ଭୂବ ଭୂବନର ମଧ୍ୟେ ତାର ଅନେକ ମହିମାଂ
ପ୍ରତକ୍ଷେ ନାରାୟଣ କି ସେ ଅଟଇ ବେଦବ୍ରହ୍ମା ।୨୩୫।

ଅସ୍ତ୍ର ଶସ୍ତ୍ର ତାହାର ଶରୀରେ ନୋହେ ଭେଦୀ
ଅଲେଖ ପୁରୁଷ ସଙ୍ଗେ ମୁଂ ନ ଜାଣି ହୋଇଲି ବିବାଦୀ ।୨୩୬।
ଯେତେ ବଡ ଥାଠ ମୋର ଅଖଣ୍ଡେ ନାଶଗଲା
ରଣଯାଗ କରିବାକୁ ମୋର ସତ୍ତ୍ୱଂ ନ ବଳିଲା ।୨୩୭।
ଜଗତୀରେ ବସି କଥା ହ୍ୱନ୍ତେ ବେନିରାଏ
ଋତୁଧ୍ୱଜ ପର୍ବତେ ବିଜଏ ଧନୁର୍ଜୟେ ।୨୩୮।
ଯମାଗୋଷ୍ଠ ରାଏ ହକାରିଲେ ଯେକାଳେ ମୁନେନ୍ଦ୍ର
ଆରେ ଦେବ କି ଦାନବ ରେ ଗୁପତେ ବୁଝି ଯାଇଂ ।୨୩୯।
ରଥ ଗଜ ଅଶ୍ୱ ତାର କେତେକ ପାଦାନ୍ତ
ସଞ୍ଚରି ଆସିଣ ମୋତେ କହନ୍ତି ନିଶାଗନ୍ତ ।୨୪୦।
ରାଜାର ଆଜ୍ଞାଂଏ ଦୂତେ ଚଳିଲେ ଗୁପତେ
ରାତ୍ରକାଳେ ପଶିଲେ ଋତୁଧ୍ୱଜ ପର୍ବତେ ।୨୪୧।
ଗୁପତେ ପଶିଲେ ଯାଇଂ ଅର୍ଜୁନର ଥାଟେ
କଳନ୍ତି ସୈନ୍ୟ ତାହାର ବୁଲନ୍ତି କପଟେ ।୨୪୨।
ଅର୍ଜୁନ ଆଜ୍ଞାଂ ଦେଲେ ଦୂତପନ୍ତିନ୍ତ ହକାରି
ଆରେ ଶ୍ରୀମୁଖ ଆଜ୍ଞାଂ ଘେନି ଯାଅ ଶାଖାନଗ୍ର ପୁରୀ ।୨୪୩।
ଦରଦସେନକୁ ଘେନି ଯମାଗୋଷ୍ଠ ରାଏ
ବନ୍ଧନ ହୋଇ ଗୃମୁକୁ ଆସୁ ଆଜ୍ଞାଂ ଦେଲେ ଧନୁର୍ଜୟେ ।୨୪୪।
ଶ୍ରୀମୁଖ ଘେନିଣ ତହୁଂ ବେଗେ ଚଳିଲେ ଦୂତପନ୍ତି
ଯମାଗୋଷ୍ଠ ରାଜ୍ୟ ପ୍ରବେଶ ହୋଇଲେ ସାତରଥୀ ।୨୪୫।
ଶଖାପୁର ନଗ୍ର ଜାଣି ପଶିଲେ ଯେ ଦୂତମାନେ
ଉଡନ୍ତି ତୁରଙ୍ଗମ ଯେ କ୍ଷେପନ୍ତି ପଥଶୂନ୍ୟେ ।୨୪୬।
ଜଗତୀରେ ଥାଇଂ ତାହା ଦରଦସେନ ଦେଖି
ବାବୁ ଯମାଗୋଷ୍ଠ ଯେତେ ଦୂତମାନେ ଆସୁଛନ୍ତି ତୋହୋର
ତତ୍ତ୍ୱଂକ ।୨୪୭।
ଦୃଷ୍ଟି ପ୍ରମାଣେ ଯାଇଂ ପ୍ରବେଶ ହୋଇଲେ ଦୂତେ
ଦେଖିଣ ଆଶ୍ରିଜ ହୋଇଲେ ଯମାଗୋଷ୍ଠ ପାତ୍ର ଅମାତ୍ୟେ ।୨୪୮।

---

୨୪୧।୨ ରାତ୍ରକାଳେ ଗୁପତେ ପଶିଲେ ଋତୁପର୍ଣ୍ଣ ବନସ୍ତେ । (ଝ,କ,ଛ)

*

ରଥରୁ ଓହ୍ଲାଇ ହାକ ଦଅନ୍ତି ଦୂତମାନେ
ଆହେ। ସମାଗୋଷ୍ଠ ପାସ୍ୟେତ୍ତା ପାତ୍ର ଶ୍ରୀମୁଖ ଘେନସି ବଦନେ ।୨୪୯।
ମନ୍ତ୍ରୀ ପଚାରଇ ଆହେ। ଶୁଣ ଦୂତକାରୀ
କାହାର ଶ୍ରୀମୁଖ ବୋଲି ମନ୍ତ୍ରୀବର ପୃଚ୍ଛାକରି ।୨୫୦।
ଦୂତଗଣେ କହନ୍ତି ହେ। ତୁ ନ ଜାଣୁ କି ନରେନ୍ଦ୍ର
ଅମରାଧି ନାଥ ଯେ ଦେବ ଅସକନ୍ଦ ।୨୫୧।
ବାସେବର ସୁତ ହେ। ସେ ପାଣ୍ଡବ ଫାଲଗୁନି
ଖାଣ୍ଡବ ବନ ଦହନ କରି ମଉଷଧି ଦେଲି ଅଗ୍ନି ।୨୫୨।
ଅଭଯ୍ୟେ ସୋମବଂଶୀ ସେ ପାର୍ଥିବ ସବ୍ୟସାଚୀ
ଶରେ ଶରେ ସାଗର ବାନ୍ଧେ ସେତୁବନ୍ଧ ପ୍ରାଚୀ ।୨୫୩।
ହନୁମନ୍ତର ମାନ ଯେ ମର୍ଦ୍ଦିଲି କୂଟବୁଦ୍ଧି
ସୁଭଦ୍ରା ହରଣେ ସେ ସାତବଂଶ ଯାଦବ ବଳ କଲି ସାଧି ।୨୫୪।
ଶ୍ରୀ ଜଗନ୍ନାଥ ଦେବ ଯାହାର ଚରଣେ ପରଣାମି
ଅଦ୍ଭୟେ ନିରଞ୍ଜନ ସେ ଯୁଧିଷ୍ଠିର ଦେବ ସ୍ୱାମୀ ।୨୫୫।
ତାହାଂକର ଅନୁଜ ଯେ କାଳେବର ଦଣ୍ଡପାଣି
ଭୀମସେନଂକ ଅନୁଜ ଯେ ଧାନୁଷ୍କୀ ଚୂଡ଼ାମଣି ।୨୫୬।
ସୋମବଂଶ ଆଧିପତି ପଣ୍ଡୁ ମହାରାଜାଂକର କାର୍ଯ୍ୟେ
ଶ୍ରୀ ଅର୍ଜୁନ ଦେବ ସ୍ୱାମୀ ଉତ୍ତର ଦିଗବଳେ ।୨୫୭।
ଗୃଳଶି ସହସ୍ର ରାଜା ସାଧିବେ ଯେଉଁକାଳଣେ
ଦୁଷ୍ଟ ହେଲେ ନ ବ୍ରତନ୍ତି କେହୁ ରାଜାମାନେ ।୨୫୮।
ବହନ ହୋଇ ଶ୍ରୀମୁଖ ଘେନ ହେ। ଶାଖାପୁର ଅଧିକାରୀ
ନିଜଗ୍ଧଳ ହୋଇକରି ଘେନ ପ୍ରଣପତ୍ୟ ପାସ୍ୟେତ୍ତା ପାତ୍ର ।୨୫୯।
ଶୁଣିଣ କୋପକଲି ନୃପତି ସମାଗୋଷ୍ଠ
ଯେ ଉତ୍ତର କୋଶଳେ ମୁଂ ନୃପତି ପଣେ ଶ୍ରେଷ୍ଠ ।୨୬୦।
ମୁହିଂ ଆନକଇଂ ଶ୍ରୀମୁଖ ଦଅଇ ଉତ୍ତର କୋଶଳେ
ଯେ ଉତ୍ତରଦିଗ ରାଜା ସମ କେ ମୋତେ ଗେଲେ ।୨୬୧।
କହୁଂ କହୁଂ ନୃପତି ଯେ ଉଠିଲି ମହାରାଗେ
କେଉଂଣ ପାମର ରେ ପ୍ରତାପ୍ୟାଂ କହୁ ମୋର ଆଗେ ।୨୬୨।

୨୫୦। ଦୂତକାରୀ—ଦୌତ୍ୟକାରୀ ।

ଆସଇ କନା ସେ ମୋହୋର ଘୁମୁକୁ ଥାଠ ବାନ୍ଧି
ନିଅ ଯା ତାହାର ରେ ଶ୍ରୀମୁଖ ବାହୁଡାଇ ।୨୬୩।
ଅଧର କମ୍ପାଇଣ କହଇ ରାଯ୍ୟେ ଅତି କୋପେ
ଶ୍ରୀଭୁଜେ କୃପାଣ ସେ ଧଇଲ ପଶତାପେ ।୨୬୪।
ଯେତେକ ପ୍ରତଗ୍ୟାଂ ମୋ ଘୁମୁରେ କହିଲୁ ରେ ବଖଣ୍ଡି
ରାଯ୍ୟେବାର ନୋହିଲେ କାଟନ୍ତି ତୋର ମୁଣ୍ଡ ।୨୬୫।
ମୋହୋର ଘୁମୁରୁ ବହନ ହୋଇଣ ରେ ପଳା
କରୁ ଆସି ସଂଗ୍ରାମ ସେ ବୋଲଇ ମହାବଳା ।୨୬୬।
ରାଜାର ବଚନେ କହନ୍ତି ଅରୁଣ ଉଲ୍ଲୋଳ ଦୂତପତି
ସଂପୋଡେ ରାଜା ତୋହୋର ବୁଡାଇବୁ ଯେତେକ ବିଭୂତି ।୨୬୭।
ନାଶନ୍ତ କାଳେ ପ୍ରାଣୀଂକ ଯେ ବିପରୀତ ବୁଦ୍ଧି
କଣ୍ଠିତ ଦୋଷେ ରାଯ୍ୟେ ହରାଇଲୁ ଯେତେକ ସମ୍ପ୍ରିଧି ।୨୬୮।
ଯ୍ୟେଣ୍ଟମନ୍ତେ ପ୍ରତଗ୍ୟାଂ କରିଥିଲ୍ ଦରଦ
କଣ୍ଠିତ ଦୋଷେ ନାଶଗଲା ତାହାର ଯେତେକ ସମ୍ପଦ ।୨୬୯।
ପ୍ରତଗ୍ୟାଂ ସାର୍ଥୁକ ସେ କଇଛା ଜଗଜେଠୀ
ତ୍ରିଭୁବନେ ଚମକ ପଡଇ ଯାହାର ନାମଗୋଟି ।୨୭୦।
ଦୁର୍ଲଭ ପ୍ରତଗ୍ୟାଂ ସେ ଦେଖିଣ ନୃପମଣି
ପାଇକନ୍ତ ହକାର ଆଗ୍ୟାଂହଲା ଯେହାନ୍ତ ପକାଅ ବେଗେ ହାଣି ।୨୭୧।
ରାଜାର ଆଗ୍ୟାଂଯ୍ୟେ ଯେ ଉଠିଲେ କଟୁଆଳ
ଝାଙ୍କିକାରେ ଧଇଲେ ସେହି ଦୂତପତିଂକ ବାଳ ।୨୭୨।
ନଗ୍ର ବାହାରେ ତାହାନ୍ତ ନେଲେ ବାଳ ଧରି
ବଜେକର୍ଣ୍ଣକଟାରି ଧରି ଶିର ତାଂକର ଉପ୍ରରି ।୨୭୩।
ଅନନ୍ତ ଅନିରୁଦ୍ଧ ମଧୁକର ମଧୁବନ୍ତ
ସୁର ନର ଅଞ୍ଜନ କେତୁ ଯ୍ୟେ ସପତ ଦୂତ ।୨୭୪।
ଯ୍ୟେ ସାତଦୂତଂକୁ ନଗ୍ର ବାହାର ଦକ୍ଷିଣ ଦ୍ୱାରେ ଆଣି
ରାଜା ଆଗ୍ୟାଂ ପ୍ରମାଣେ ଦୂତଂକୁ ପକାଇଲେ ହାଣି ।୨୭୫।

---

୨୬୫।୨ ରାଯ୍ୟେବାର—ରାଜଦୂତ ।

ଗୁପତେ ଦୂତେ ଯେ ଯାଇଥିଲେ ଅର୍ଜୁନ ଥାଠକୁ
ବାରତା ଜଣାଇଲେ ଆସି ସମାଗୋଷ୍ଠ ରାଜାଂକୁ ।୨୭୬।
ସ୍ୱାମୀ ସହସ୍ରେକ ରଥ ଯେ ଗୃର ସହସ୍ର ହାଥୀ
ପାଞ୍ଚ ଅହ୍ୱବ୍ରତ ତୁରଙ୍ଗମ ନବଲକ୍ଷ ପାଦାନ୍ତ ।୨୭୭।
ବୀର ତୂର ଢୋଲ ଦାଉଣ୍ଡି ଯେ ଝମକ ନିଶାଣ
ପାଝଛଣ ବେଣ୍ଣାଲକ୍ଷ ଉଦଣ୍ଡ ଲକ୍ଷେ ଜାଣ ।୨୭୮।
ଗୁପତ ଦୂତେ କହନ୍ତେ ରାଜା ଲିହଇ ଭୂମିଗତେ
ପତ୍ରରେ ଲେଖନ କଲ ଅର୍ଜୁନ ନାମ ସମେତେ ।୨୭୯।
ମନ୍ତ୍ରୀକି ପଗ୍ଚରଇ ସମାଗୋଷ୍ଠ ନୃପବର
କେଉଂଣ ନାମ ସେ ଅଝଇ ଯୋଦ୍ଧାର ।୨୮୦।
ମନ୍ତ୍ରୀ ବୋଇଲ୍ଲ ସେ ଦଶନାମ ବହଇ
ପାଣ୍ଡବ ଅର୍ଜୁନ ସେ ମାନେବ ଜନ୍ମ ନୋହଇ ।୨୮୧।
ଶୁଣି ଚକଚ ଯେ ହୋଇଲ୍ଲ ମହାରାଯ୍ୱେ
କେଉଂଣ କେଉଂଣ ନାମ କହନ୍ତ ଉପାଯ୍ୱେ ।୨୮୨।
ମନ୍ତ୍ରୀ ବୋଇଲ୍ଲ ଦେବ ଶୁଣିମା ସାବଧାନେ
ଦଶନାମ ତାହାର ଯେ କହିବା ସାକ୍ଷୁଧାନେ ।୨୮୩।
ଅର୍ଜୁନ ଫାଲଗୁନ କୃଷ୍ଣ କରୀଟୀ ଶ୍ୱେତବାହନ
ବିଲକ୍ସ ବିଜୟ ପାଥ ସବ୍ୟସାଚ ଧନଞ୍ଜୟ ।୨୮୪।
ଶୁଣି ଆଗ୍ରିଜ ଯେ ସମାଗୋଷ୍ଠ ହୋଇଲ
ଯ୍ୱେତେ ଛତ୍ରୀ କଂପା ବିବନ୍ତ୍ର ନାମ ବହିଲ୍ଲ ।୨୮୫।
ଯେଉଂଣ କ୍ଷତ୍ରୀମାନେ ସଂଗ୍ରାମେ ଦିଅନ୍ତ ପିଠି
ତାହାକୁ ସେ ହୋଇବନା ବିବନ୍ତ୍ର ନାମଗୋଟି ।୨୮୬।
ମହାଯୋଦ୍ଧା ଅଝଇ ସେ ପଣ୍ଡୁ ରାଜାର ବନ୍ତ୍ର
କେମନ୍ତେ ଯ୍ୱେହାର ନାମ ହୋଇବ ବିବନ୍ତ୍ର ।୨୮୭।
ବିବନ୍ତ୍ର ନାମ ନୋହଇ ବୋଇଲ ସମାଗୋଷ୍ଠ
ନବନାମ ପଂକ୍ତିରେ ଯେ ଲିହିଲ୍ଲ ମହାଦୁଷ୍ଟ ।୨୮୮।
କାଳଚକ୍ର ଶଙ୍ଖ ଭେନ ଯେ ପୋତ୍ଥିଲ୍ଲ ଦଣ୍ଡଧାରୀ
ରଥ ଗଜ ଅଶ୍ୱ ପାଦାନ୍ତ ସର୍ବେ ବେଣ୍ଣଖଣ୍ଡେ ଛୁଡ଼ି ।୨୮୯।

ସେକାମାନଙ୍କ ରଥେ ରହିଲା ଫାଲ୍‌ଗୁନି
ଅର୍ଜୁନ ଦେଖନ୍ତେ ଭୁଜି ପଡ଼ିଲେ ତାହାର ସମସ୍ତ ସଇନି ।୨୯୦।
ଦେଖିଣ ଆଶ୍ରିଜ ସେ ହୋଇଲେ ସର୍ବସାଚୀ
ଅସ୍ଥିଭୂତ ହୋଇ ରହିଲେ ନ ସ୍ଫୁରଇ କନ୍ଥ ।୨୯୧।
ସୁମରଇ ବାସୁଦେବ ସେ ତୁଳସୀର ପ୍ରାଣନାହା
କେଉଂଣ ଦୋଷେ ସ୍ୱାମୀ ମୋତେ ହୋଇଲୁ ଅସାହା ।୨୯୨।
ସମସ୍ତ କାଳେ ହରି ଆମ୍ଭନ୍ତ ରକ୍ଷାକଲୁ ତୁ
ସଂସାରେ ବଦନ୍ତି ଜଗନ୍ନାଥଂକ ପ୍ରସାଦେ ପାଣ୍ଡବଂକର ବର୍ତ୍ତି
ହେତୁ ।୨୯୩।
ସେତେ ବଡ଼ ସୁଲଭ କଥା ଦେବ ହୋଇଲା ଅମାନ୍ତ
ଅର୍ଜୁନ ବୋଇଲେ ମୋହୋର ରଥ ବାହା ମାତଳ ସାରଥି ।୨୯୪।
ମହାକୋପେ ଆଗ୍ୟାଂଦିଲେ ସୁଭଦ୍ରାର ନାହା
ଧିକ ଧିକ ପ୍ରତଗ୍ୟାଂ ମୋହୋର ଧିକ ବେଳବାହା ।୨୯୫।
ଗେବଇ ଜଗୁସୋଦର ସଇନ ହତଗତେ
ବାଂଛୁଣ ଜଗନ୍ନାଥେ ସେହୁ ହାନ୍ତ ଦିଲେ ମୋତେ ।୨୯୬।
ହା ହା ସୋହୋଦ୍ର ରେ ମମ କାର୍ଯ୍ୟେ ଦୁଖୀ
ଶରୀର କଂପା ନ ତୁଟଇ ତୁମ୍ଭର କଷ୍ଟ ଦେଖି ।୨୯୭।
ସୋହଜ ସୁନ୍ଦର ରେ ଛତ୍ରିଗୁଣେ ଗୁଣବନ୍ତା
ଅଯୁଦ୍ଧେ ନାଶଗଲ ବାବୁରେ ଅଭୟେ ଶକତା ।୨୯୮।
ପର୍ବତ ଡଙ୍ଗର ତୁମ୍ଭନ୍ତ ହେନି ମୁଂ ସାଧିଲି ସର୍ବଭୂମି
ତୁମ୍ଭ ପୁଣ୍ୟବଳେ ଶକତା ପୁଣ ଆମି ।୨୯୯।
ମମ ପୁଣ୍ୟବଳେ ତୁମ୍ଭେ ସମରେ ଶକତା
ମମ ପ୍ରାକର୍ମେ ତୁମ୍ଭେ ରେ ହୋଇଲ ନାଶାଂଗତା ।୩୦୦।
ଜୟନ୍ତ ଜୟସେନ ଜୟ ବିଜୟସେନ ଚନ୍ଦ୍ରଧ୍ୱଜ
ହସ୍ତିନା ରାଜ୍ୟରେ ତୁମ୍ଭେ ବରତ ଅଇଶ୍ୱର୍ଯ୍ୟ ।୩୦୧।

---

୨୯୩।୨ ବର୍ତ୍ତି—ବୃତ—ସ୍ଥିତି ବା ବଞ୍ଚିବା ।
୨୯୯।୧ ମମ ପୁଣ୍ୟବଳେ ତୁମ୍ଭେ ଶକତା ସେ ପୃଥିବୀ । (ଅ,ଘ,ଛ)

ଶକଟା ବଳବନ୍ତା କର ମୋତେ ଶ୍ରୀ ଜଗନ୍ନାଥେ ଦଲେ ବାଣ୍ଟି
ମମ ପାପକର୍ମେ ଭୁମ୍ନନ୍ତ ପକାଇଲ ପୋଛି ।୩୦୨।
ଧିକ ଧିକ ଜୀବନ ମୋହୋର କ୍ଷତ୍ରୀକୁଳେ ଲଜ
ଅନେକ ଉପହାସ କରବେ ମୋତେ କଉରବେ ରାଜ ।୩୦୩।
ଭୀଷ୍ମ ଦ୍ରୋଣ କର୍ଣ୍ଣ ମୁଖ ଚାହିଁବ କେମନ୍ତେ
ଅଶ୍ୱତ୍ଥମା ଶୁଣିଲେଟି କ ବୋଲିବେ ମୋତେ ।୩୦୪।
ବୋଲିବେ ପାର୍ଥ ଗଲା ଉତ୍ତର ରାଜା ଆଣି
ଥାଠସନ୍ୟ ମରାଇ ଅଇଲା ଦେହ ଘେନି ।୩୦୫।
ହସ୍ତିନା ସଭାରେ ଯାଇ ଚାହିଁବଇ କାହା ମୁଖ
ଧିକ ମୋହୋର ଜୀବନ ମରଣ ବଡ ସୁଖ ।୩୦୬।
ସଇନ୍ୟ ଗୁଣ ସୁମର ରୋବଇ କଣ୍ଠାଟୀ
ରଥରୁ ପଡ ଭୂମିରେ ଦଅଇ ଘୋଡାଲେଟି ।୩୦୭।
ଆମ୍ଭାର ସଖାଂକର ହତଜୀବନ ଦେଖି
କେଣିକ ଯିବଇଂ ମୁଂ ହୋଇଲି ନିରମାଖି ।୩୦୮।
ରେ ରେ ଯମାଗୋଷ୍ଠ ମହ୍ୱମାଂ ଚୋର ଧନ୍ୟ
ମୋତେ କଂପା ଥୋଇ ନାଶକଲୁ ମୋ ସଇନ୍ୟ ।୩୦୯।
ମାନହୀନେ ବ୍ରତିବା ଜୀବନେ କସ କାର୍ଯ୍ୟ
କ୍ଷତ୍ରୀକୁଳ ମୁଖ ଚାହିଁବାକୁ ମୋର ବଡ ଲଜ ।୩୧୦।
ମୋହୋର ନାମ ଧର କଂପେ ରେ ନ ପୋଛିଲୁ ଯମାଗୋଷ୍ଠ
ଜୀବନ ଥିବାଯାଏ ମୋତେ ହୋଇଲା ବଡ କଷ୍ଟ ।୩୧୧।
ଜୀଇଂଣ କସ କରବ ମୁଂ ସଖାଂକର ଅଭାବେ
ସଅପ୍ରେ ଶରୀର ମୋର ବିସର୍ଜିବ ଯେହ୍ନେଠାବେ ।୩୧୨।
ଦଶଦିଶ ମୋତେ ତ ଅନ୍ଧାର ଦିଶିଲା
ନିଲଜ୍ଜ ଆତ୍ମା ମୋର ନ ଯାଇ କେମନ୍ତେ ରହିଲା ।୩୧୩।
ଯେତେକ ବଚ୍ଚରଣ ସେ ବସିଲା ଜୀବନ ନିଆସି
ସୁମରଇ ମାଧବ ଯେ ଦେବ ହୃଷିକେଶି ।୩୧୪।

---

୩୦୭ । ୨ ଘୋଡାଲେଟି—ଘୋଡା ପରି ଛଟପଟ ହୋଇ ଗଡବା ।

ଭକତ ବତ୍ସଳ ନାଥ ଦୟାର ସାଗର
ଏ ଦୁସହ ସଙ୍କଟୁ ମୋତେ ଉଦ୍ଧର ଦାମୋଦର ।୩୧୫।
ନୀଳେନ୍ଦୀ ଦଳ ନୟନ ନାଥ ଅଭୟ ପରଂବ୍ରହ୍ମ
ତବ ଲୟେ ଭାବ ମୋହୋର ନାଆସିଲ ପଞ୍ଚୁମନ ।୩୧୬।
ଜନମ ମରଣକୁ ଛଣ୍ଡ ତୁମ୍ଭ ସେ ସପକ୍ଷ
କମଳାର ବଲ୍ଲଭ ମୋତେ ସାହ୍ୱକର ଶ୍ରୀବତ୍ସ ।୩୧୭।
ଜଗତ୍‌ଜନ ଜୀବନ ନାଥ ତୁ ଜଗତ ଅଧିକାରୀ
ଆମ୍ଭ ବିସର୍ଜୁଅଛୁ ଦେବ ତବ ନାମ ଲୟେକରି ।୩୧୮।
ଅର୍ଜୁନ ଚିନ୍ତାକଲା ସହ୍ନଂ କେଶବଂକୁ ହୃଦଗତେ
ଆସନ କଂପିଲା ସ୍ୱାମୀଂକର ସେ ଥିଲେ ନନ୍ଦନ ବନସ୍ତେ ।୩୧୯।
ପଶିବା ଫଳମାନନ୍ତ ନାବରେ ପୂରାଇ
ଗଙ୍ଗା ଧାରେ ଧାରେ ସେ ସମସ୍ତ ଦେଉଛନ୍ତି ଚଳାଇ ।୩୨୦।
ଜାଣିଲେ ନାରାୟଣ ଯେ ଅର୍ଜୁନ ଅବସ୍ଥା
ଅଭ୍‌ମାନେ ପ୍ରାଣତ୍ୟାଗ ହୋଉଛୁ ଛତ୍ରୀ ବଳବନ୍ତା ।୩୨୧।
ଖଗେଶ୍ୱର ପିଠିରେ ବିଜୟେ ମଧୁରିପୁ
ଚଳନ୍ତି ନାରାୟଣ ବେଗେ ଶାଖାନଗ୍ର ପୁରକୁ ।୩୨୨।
ଆକାଶ ଭୁବନୁ ଦେବ ଅଇଲେ ଯେକ ଦଣ୍ଡ
ଅର୍ଜୁନ ସମ୍ମୁଖରେ ଆସି ବିଜୟେ ଚକ୍ରଧାରୀ ।୩୨୩।
ଉଠିଣ ଧନୁର୍ଜୟେ ଜଗନ୍ନାଥଂକ ଚରଣେ ବନ୍ଦି
ସ୍ୱାମୀ ସଇନଂକ ଅବସ୍ଥା ମୋର ଦେଖ ବୋଲି ଉଚ୍ଚସ୍ୱରେ କାନ୍ଦି।୩୨୪।
ଗୋବିନ୍ଦ ବୋଇଲେ ପାର୍ଥ ତୁ କ ହୋଇଲୁ ଅଗ୍ୟାନ
ସାଂଗ୍ରାମେ ପଶିଲୁ ଯେବେ ତୋର ନାଶଗଲେ ସନ୍ୟ ।୩୨୫।
ହାରିବା ଜିଣିମା ଯେ ଅଟଇ ଛତ୍ରୀଂକର ମୂଳଧର୍ମ
ରାବଣର ସାଂଗ୍ରାମେ ଅନେକ ଅପ୍ରାଂଜୟେ ପାଇଲେ ଶ୍ରୀରାମ ।୩୨୬।
ସାଂଗ୍ରାମ କଲେ ଅବଶ୍ୟ ପାଇଟି ଅପ୍ରାଂଜୟେ
ତହ୍ନଂକ ଅପମାନ କିମ୍ପା ହୋ ବହିଲୁ ଧନଞ୍ଜୟେ ।୩୨୭।

---

୩୨୬। ଅପ୍ରାଂଜୟେ—ପରାଭବ ।

ଆପଣେ ବୁଝିଥିଲେ ହୋ ସକଳ କଥା ସୁଲଭ
କିଷ୍କାପର ଯୋଦ୍ଧା ହୋଇଣ ଦେଖିଲୁ ତ ମହାଭାବ ।୩୨୮।
କରପଦ୍ମ ଯୋଡ଼ଣ ଯେ ବୋଲଇ ଫାଲଗୁନ
ସ୍ୱାମୀ ସାଂଗ୍ରାମେ ପଡ଼ଲେ ହାଦେ ମୋହୋର ସଇନ ।୩୨୯।
ଅନମିତେ ସନ୍ୟ ମୋର ନାଶଗଲେ ବନାଯୁଦ୍ଧେ
ମୋହୋର ଶସ୍ତ୍ରର କର୍ମା ନ ଛୁଟଇ ଅଭିମାନ କୋଧେ ।୩୩୦।
ସ୍ୱାମୀ ଯେ ମୋହୋର ଶସ୍ତ୍ରର ରକ୍ଷାଅଛୁ କେବଣ ଧର୍ମେ
ଯେତ୍ଥିର ଚରିତ ମୋତେ କହିବା ପୁରୁଷଂକ ଉତ୍ତମେ ।୩୩୧।
ଗୋବିନ୍ଦେ ବୋଇଲେ ସେ ଯମାଗୋଷ୍ଟ ବୋଲଣ ଯେବଣ ରାଜା
ଅନେକ କାଳରୁ ସେ ଯମ ଦେବତାକଇଂ କରଇ ପୂଜା ।୩୩୨।
କରେଣ ଯବଚନ୍ଦ୍ର ଆବହୁଂ ଅଛଇ ତାହାର
କାଳଚକ୍ର ଚନ୍ଦ୍ରଗୁଣ ବହଇ ବାମକର ।୩୩୩।
ଦକ୍ଷିଣ କରେ ଲାହ୍ୱ ଯେବେ ବାମକରେ ପୋତୁ
ଛୁଡ଼ନ୍ତ ବେନିଖଣ୍ଡ ହୋଇ ଯେ ନ ରହନ୍ତ କଛୁ ।୩୩୪।
ମାତଳ ସାରଥି ତ ମଂଚଲେକନ୍ତ ଅଦୃଶ୍ୟ
ତେଣୁକର ରକ୍ଷା ହୋଇଲା ନ ଗଲା ସେହୁ ନାଶ ।୩୩୫।
ତୋହୋର ନାମ ଧରି ପୋତୁଲା ଧନଞ୍ଜୟେ
ତୋ ଦଶନାମ ନ ଜାଣଇ ଯମାଗୋଷ୍ଟ ରାଏ ।୩୩୬।
ଦଶନାମ ଯାକ ଯେବେ ସେ ତୋହୋର ଜାଣନ୍ତା
ତେବେ ସେ ଅର୍ଜୁନ ହୋ ତୋହୋର ଶସ୍ତ୍ର ଛୁଡ଼ନ୍ତା ।୩୩୭।
କରପଦ୍ମ ଯୋଡ଼ଣ ଯେ କହଇ ଫାଲଗୁନ
ତୋହୋର ଆଗ୍ୟାଂଏ ହୋଇଲ ଯେତେକ ମାନହୀନ ।୩୩୮।
ସ୍ୱାମୀ ରାଜାନ୍ତ ନ ମାରିବ ବୋଲି ଯେ ଆପଣେ ଦେଲୁ ଆଗ୍ୟାଂ
ତୋହୋର ବଚନ କେହ୍ନେ ମୁଂ କରିବ ଅବଗ୍ୟାଂ ।୩୩୯।
ତେଣୁକର ହାସ ସ୍ୱାମୀ ଲାଗିଲାକ ମୋତେ
ନୋହିଲେକ ଯମାଗୋଷ୍ଟ ବୁଡ଼ଇ କ ଯେତେବେଳ ପରଯନ୍ତେ ।୩୪୦।
ସ୍ୱାମୀ ମାରିବ ଯମାଗୋଷ୍ଟ ତୋତେ ଯେ ପଚାରେ
ସୁବର୍ଣ୍ଣ ରାଜାଏ ଦେବଇଂ ତାର ଆଠସନ୍ୟ ଆଦକର ।୩୪୧।

୩୨୮।୨ କଷ୍ଟାର ଯୋଦ୍ଧାହୋଇ ପାଇଲୁ ପରାଭବ । (ଥ,ଙ)

ଅର୍ଜୁନ ବଚନେ ଯେ ବଦପୃନ୍ତ ଚକ୍ରପାଣି
କରନ୍ତି ଅନେକ ଦୋଷ ଅଗ୍ୟାନେ ନୃପମଣି ।୩୪୨।
ଦୋଷ ଧରି ଯେବେ ମାରିବୁ ସମସ୍ତ ରାଜାଂକୁ
ବ୍ରହ୍ମହତ୍ୟା ଦୋଷ ପାରିଯିବ କି ପଣ୍ଡୁ ଯେ ରାଜାଂକୁ ।୩୪୩।
ବଦପୃନ୍ତ ଜଗନ୍ନାଥ ଯମାଟଗୋଷ୍ଟେ ନ କର ତୁ କୋପ
ଆପଣାର କାର୍ଯ୍ୟ ଅର୍ଥେ ତାହାକୁ ଛାଡ଼ିବୁ ନା ପରିତାପ ।୩୪୪।
ଯଦ୍ୟପି ଦୋଷକଲା ହୋ ଯମାଗୋଷ୍ଟ ନୃପତି
ରାଜସୂ ଯାଗ ସରିଲେ ପଛେ ଦେବ ସିନା ଶାସ୍ତି ।୩୪୫।
ରାଜା ଗୋଟିଏ ଯେବେ ମାରିବୁ ଦୋଷ ବରିର
ସମସ୍ତ ରାଜାଏ ପଳାଇବେ ତୋତେ ହାସକରି ।୩୪୬।
ଅର୍ଜୁନ ବଚନେ ବଦପୃନ୍ତ ପୁଣ ଚକ୍ରପାଣି
ଶୁଣ ହୋ ଧନୁର୍ଜୟେ ଧର୍ମଶାସ୍ତ୍ର ବାଣୀ ।୩୪୭।
କାର୍ଯ୍ୟର ନିମନ୍ତେ ଦୋଷ ସହିବାର ଅଛୁ
ତୋହୋର କୋପକଲେ କାର୍ଯ୍ୟ ନୋହଇଟି କିଛୁ ।୩୪୮।
ସମସ୍ତେହେଂ ମୂର୍ଖ ବାବୁ ତୁହି ସେ ପଣ୍ଡିତ
ତୁ ଆପଣେ ରଗି ହୋଇଲେ ନାଶିଯିବ ସମସ୍ତ ଧର୍ମକୃତ ।୩୪୯।
କ୍ଷଣେକ ବିଶ୍ରାମ ତୁ ନ କର ହବା ଯେ ରଘୁଣୀ
ବହନ ପ୍ରବେଶ ହୁଅ ତୁ ଉତ୍ତର ଦିଗ ରାଜାମାନନ୍ତ ସେନି ।୩୫୦।
ପଚ୍ଛିମ କୋଶଳରୁ ଅଇଲେନି ଅନେକ ଯୋଧୀ
ରାଜାନ୍ତ ନିମନ୍ତ୍ରଣ କଲାନି ବ୍ରିକୋଦର ସର୍ବସାଧି ।୩୫୧।
ପଢ଼ିଲା ସଇନ୍ୟଂକ କଂପେ ତୁ ହୋଉ ବଇରାଗୀ
ପୃଥୀ ଭାରଭର ନିବାରଣ କରିବା ନାହିଂକ ଆମ୍ଭେ ବେଗି ।୩୫୨।
ଆହୋ ଯମାଗୋଷ୍ଟ ରାଜାକୁ ତୁ କୋପ ଶାନ୍ତକର
ମୋହୋର ଶପଥ.ତୋତେ ଆନେ ଯୁଦ୍ଧେଷ୍ଟି ଠାକୁରଂକର ।୩୫୩।
ତୁ ବହନ ହୋଇ ଯାଅ ଆମ୍ଭେ ଯାଉଛୁଂ ଯେହ୍ନକ୍ଷଣ
ଦୁସହ ଭାରଏ ପଶିଲଇଂ ସର୍ବେ ଛଡ଼ିଜଣ ।୩୫୪।
ଅର୍ଜୁନ ବୋଇଲା ସ୍ୱାମୀ ଆମ୍ଭେ କି ତାହା ଜାଣୁ
ରାଜସୂ ଯଗ୍ୟଂ କେମନ୍ତଟି ତାହା ଆମ୍ଭେ ଶ୍ରବଣେ ନ ଶୁଣୁ ।୩୫୫।

*

ତୋହୋର ପ୍ରସାଦେ ଆମ୍ଭେ ଜଗତେ ପାଉଂ ପୂଜା
ଅଭଗତେ ଆମ୍ଭନ୍ତ ପ୍ରାପତ ହୋଇଲୁ ଦେବରାଜା ।୩୫୬।
ଅନେକ ଲୁଆରଣ କହିଲେ ତାଙ୍କୁ ଦେବ ଯେ ଅଚ୍ୟୁତେ
ଚଳିଲେ ଜଗୁସୋଦର କଣ୍ଟକ ବାରୁଣାବନ୍ତେ ।୩୫୭।
ମାତଳିକ ହକାରି ବୋଇଲେ ଫାଲଗୁନ
ଯମାଗୋଷ୍ଠ ଗ୍ରାମୁକୁ ଯାଅସି ମୋତେ ଘେନି ।୩୫୮।
ବାସେବର ଆଜ୍ଞାଂଏ ଯେ ମାତଳି ସାରଥି
ଉଡାନ୍ତି ତୁରଙ୍ଗମ ଯେ ପବନୁଂ ବେଗ ଗତି ।୩୫୯।
ଆସ୍ତାନେ ହଜେ କରଅଛୁ ଯମାଗୋଷ୍ଠ ରାଏ
ଅର୍ଜ୍ଜୁନର ରଥ ଯାଇଂ ଭେଟିଲା ଅନ୍ତର୍ଦ୍ଧାଏ ।୩୬୦।
ଝାଣ୍ଟକାରେ ଗ୍ରାମୁରେ ଠେକିଲା ନେଇ ରଥ
ଦେଖିଣ ଆଶ୍ଚର୍ଜ୍ଜ ବଡ ହୋଇଲା ନରନାଥ ।୩୬୧।
ଯମାଗୋଷ୍ଠ ପୁଚ୍ଛାକଲା ମକରନ୍ଦ ମନ୍ତ୍ରୀକ
ଏ କେବଣ ଯୋଦ୍ଧା ବାହିଲା ମୋହୋର ଚହ୍ନଂକ ।୩୬୨।
ରାଜାର ଆଜ୍ଞାଂଏ ଯେ କହିଲା ମନ୍ତ୍ରୀମଣି
ତୋହୋର ଚହ୍ନଂକ ବାହିଲା ଦେବ ଦୁଷ୍ଟଏ ଚକ୍ରପାଣି ।୩୬୩।
ଯମାଗୋଷ୍ଠ ବୋଇଲା ମୁଂ ଲହିଲି ତାହାର ନାମ ଧରି
ପୋଚ୍ଛିଲି ନ ମଲା ଏ କେଉଂଣ ଚରିତ ଏହାର ।୩୬୪।
ମନ୍ତ୍ରୀ ବୋଇଲା ଯେ ନ ଜାଣିଲୁ ନାମ
ତେଣୁ ସେ ନ ମଲା ଯେ କ୍ଷେତ୍ରିଏ ଉତ୍ତମ ।୩୬୫।
ଦଶନାମ ଲହି ଯେବେ ପୋଚ୍ଛନ୍ତୁ ନରନାଥ
ନିଚଏ ପାଣ୍ଡବ ହାଦେ ହୁଅନ୍ତେ ପ୍ରାଣେ ହତ ।୩୬୬।
ମୋହୋର ବଚନ ନ କଲେ ମହାରାଏ
ନିଚଏ ନାଶଗଲୁ ପାଣ୍ଡବର ଭଏ ।୩୬୭।
ରାଜା ମନ୍ତ୍ରୀ ଦୁହେଂ କଥା ହୋଇବାର ସମଏ
ସନ୍ନିଧିରେ ରଥ ଠେକିଲା ବାସବର ତନଏ ।୩୬୮।

---

୩୬୦।୨ ଅର୍ଜ୍ଜୁନର ରଥ ଯାଇଂ ଭେଟିଲା ସେଠାଏ । (ନ,ଠ,ଖ)

ଅଦଭୁତେ ଦେଖି ତାଙ୍କୁ ଯମାଗୋଷ୍ଟ ରାଯେ
ଆସ୍ଥାନ ତେଜ୍ୟାକରି ପଳାଇଲ୍ଲ ମହାଭୟେ ।୩୬୯।
କୁମ୍ଭ ନିକୁମ୍ଭ ବୋଲି ବେନିପୁତ୍ରେ ଥିଲେ ତାର ଜତି
ଝାଣ୍ଟକାରେ କେଶ ଧଇଲେ ବିଚସବୀର୍ଯ୍ୟର ନାତି ।୩୭୦।
ବେନି କୁମରଂକ କେଶ ଧଇଲେ ବାମକରେ
ବିଜେକର୍ଣ୍ଣିକଟାର ପ୍ରହାର କଲାକ ଉପରେ ।୩୭୧।
ବେନି କୁମରଂକ ଶିର ପଡିଲାକ ଯହୁଂ ଛିଡି
ପଳାବନ୍ତେ ନୃପତି ଜଗଖାରୁ ପଡିଲ୍ଲ ମୁହଂ ମାଡି ।୩୭୨।
ରଥରୁ ଡେଇଂ ପଡିଲ୍ଲ ସେ ବାସବର ନାନ
ଯମାଗୋଷ୍ଟ କେଶ ଯାଇଂ ଧଇଲ୍ଲ ଅର୍ଜୁନ ।୩୭୩।
ବାମକରେ କେଶ ଧରି ରାଗେଣ ପରଚଣ୍ଡା
ଦକ୍ଷିଣ କରେ ଅର୍ଜୁନ ଧଇଲେ ବେଗେ ଖଣ୍ଡା ।୩୭୪।
ବୁଲାଇ ଅସିପତ୍ର ପ୍ରହାର କରନ୍ତେ
ମାତଳି ସାରଥି ଧଇଲ୍ଲ ଅର୍ଜୁନର ବେନିହାଥେ ।୩୭୫।
ରହ ରହ ଅର୍ଜୁନ ତୁ କାହାକୁ ହେଉ ରାଗୀ
ନାରାୟଣଂକର ଆଗ୍ୟାଂ କମ୍ପା କରୁ ପରିତ୍ୟାଗି ।୩୭୬।
ଆଉର ବିଶେଷେ ତ ରାଜସୂୟି ଯାଗ ତୋହୋର ପିତା ପଣ୍ଡୁଂକର କାର୍ଯ୍ୟ
ଅନେକ ଭିଆଣ ତୋତେ କହିଗଲେ ଦେବରାଜ ।୩୭୭।
ମାତଳି ସାରଥି ବଚନେ ଅର୍ଜୁନ ହୋଇଲାକ ପରମ ଶାନ୍ତ
ଯମାଗୋଷ୍ଟ କେଶ ଧରି ରଥେ ବସିଲ୍ଲ ତତକ୍ଷଣାନ୍ତ ।୩୭୮।
ପାଟଡୋରେକ ଘେନି ତାଙ୍କୁ ବାନ୍ଧିଲାକ ରଥେ
ତ୍ରାସେ ପଳାଇଲେ ତାର ପାତ୍ର ଅମାତ୍ୟେ ।୩୭୯।
ମକରନ୍ଦ ବୋଲି ଯମାଗୋଷ୍ଟର ମନ୍ତ୍ରୀଯେ
ପଳାବନ୍ତେ ସଇନିକ ସମାର୍ଜନା କଯେ ।୩୮୦।
ସମସ୍ତ ପାତ୍ରଦଣ୍ଡ ରାଜାଯେ ରୁଣ୍ଡକରି
ମନ୍ତ୍ରୀବର ପଚ୍ଚରଇ ସବୃତ୍ତ ଭିଆଣି ।୩୮୧।
ଆହୋ ରାଜା ଯେବେ ବନ୍ଦୀ ପଡିଲ୍ଲ ଆମ୍ଭର
ଆମ୍ଭର ପଳାଇଯିବା ଯେ କେଉଣ ବେଭାର ।୩୮୨।

ଦସ୍ୟୁ ଉପୁଜାଇ ପାରଲେ ସେ ସମସ୍ତ ଉଦ୍ଧାର
ନଜରେତ କୋପକଲେ ସବୁନ୍ତ ନାଶକର ।୩୮୩।
ରାଜ୍ୟର କାରଣି ରଜାର ବେଣ୍ଣପୁଣ ନାଶଗଲ
ଯେତେ ବଡ ରଜାତ ଆପଣେ ବନ୍ଦୀହେଲ ।୩୮୪।
ମନ୍ତ୍ରୀର ବଚନେ ସମସ୍ତ ପାରଦଣ୍ଡ ରଯେ
ଗଳାରେ କୋଠାର ଦନ୍ତେଣ ତରଣ ଲଯେ ।୩୮୫।
ଦଶଲକ୍ଷ ମୁଖେ ଭର ସମସ୍ତ ସଇନ
ସ୍ୱାମୀ ତ୍ରାହି ତ୍ରାହି ବୋଲ ଶୁଭଇ ମୁଖଧୂନ ।୩୮୬।
ତୁ ଦେବ ସକଳ ଭୁବନ ଅଧିକାରୀ
ଯେ ସମାଗୋଷ୍ଠ ନୃପତ୍ତ ତୋତେ ନ ଜାଣି ଦ୍ରୋହକର ।୩୮୭।
ତୁ ଦେବ ଜଗତଈଶ୍ୱର ପରଲୋକ ବନ୍ଧୁ
ଯେ ଭୂବ ଭୁବନ ମଧ୍ୟେ ମହିମାଂ ତୋହୋର ସାଧୁ ।୩୮୮।
ଶରଣ ପଞ୍ଜର ସ୍ୱାମୀ ଛତ୍ରୀଂକର ଚୂଡାମଣି
ଅନେକ ଦ୍ରୋହ ତୋତେ ନ ଜାଣି କଲୁ ମୂଢପ୍ରାଣୀ ।୩୮୯।
କେଉଣ ଦେଶୁଂ ବଜେକଲୁ ତୁହି ମହାତମା
ଦଶଦୋଷ ଅପ୍ରାଧ ଆମ୍ଭର କରିବାକ କ୍ଷମା ।୩୯୦।
ରେବନ୍ତ ସଇନ ମୁଖେ ଅଙ୍ଗୁଳି ଲଇ କ୍ରୋଧେ
ରଜା ଆମ୍ଭର ନାଶଗଲ ଅଗ୍ୟାନେ କର ଯୁଦ୍ଧେ ।୩୯୧।
ସ୍ୱାମୀଦାନ ଆମ୍ଭନ୍ତ ଦେବାକ ଦେବସ୍ୱାମୀ
ଅନେକ କ୍ରୋଧ କର ସଇନ୍ୟେ ଶୁତଲେ ପରଣାମି ।୩୯୨।
ସଇନ୍ୟଂକର କଷ୍ଟ ଦେଖି ଅର୍ଜୁନକଇଂ ତଥାରଇ ମାତଳ
ଶରଣପଞ୍ଜର ବୀରଧୂ ତୁ ଭଗତେ ପରପାଳ ।୩୯୩।
ଗଗକର କଂପେ ଦେବ ମଉନବ୍ରତେ ବସି
ସଂସାରଜନ କଷ୍ଟ ତୁ କରବୁ ନା ସମ୍ଭାଷି ।୩୯୪।
ସାରଥିର ବଚନେ ଯେ ବୋଲଇ ଧନୁର୍ଜ୍ୟେ
ସୋମବଂଶର ଆଧିପତି ହୋ ପଣ୍ଡୁ ମହାରାଯେ ।୩୯୫।
ତାହାଂକର ନନ୍ଦନ ଧର୍ମ ଯୁଧିଷ୍ଠି ଦେବ ନୃପତ୍ତ
ରାଜସୂୟ ଯାଗକଇଂ ସେ ବଳାଇଲେ ମତ୍ତ ।୩୯୬।

୩୮୫।୨ ଗଳାରେ କୋଠାର ଦନ୍ତେଣ ଚରଣ ଲେଗୃଯେ । (ଅ,ଟ)

ଲକ୍ଷେ ରାଜାନ୍ତ ନିମନ୍ତ୍ରଣ କରିବା ନିମନ୍ତେ
ଜରାସନ୍ଧକୁ ବଧକଲୁ ମଗଧ ଦେଶ ପ୍ରଶସ୍ତେ ।୩୯୭।
ଛୟାଣୋଇ ସହସ୍ର ରାଜା ଥିଲେ ବନ୍ଦୀ ହୋଇ
ଜରାସନ୍ଧକୁ ମାରି ତାହାନ୍ତ ବନ୍ଦୀରୁ ମୁକୁଳାଇ ।୩୯୮।
ଯେବେ ସମସ୍ତ ରାଜାନ୍ତ କରୁଛୁଂ ନିମନ୍ତ୍ରଣେ
ଯେ ମୋହୋର ସଇନ କିଂପା ନାଶ କଲକ ଅକାରଣେ ।୩୯୯।
କି ଅବା ଆମ୍ଭେ ଯେହ୍ନାର ଅଟୁ ହୋ ବଇରି
ଅକ୍ଷତ ଭୋଜନ ଦେବୁ ରାଜସୂୟାଗ କରି ।୪୦୦।
ଯେଥକୁ ଆମ୍ଭର ଭୁଲେ ହୋଇଲେ ବବାଦ
ଅଦଭୂତେ ଯୁଦ୍ଧ କରନ୍ତ ଅକାରଣେ ହୋନ୍ତ ବନ୍ଦୀ ।୪୦୧।
ଦରଦସେନ ରାଜା ଯେ ମୋତେ ନୁଆରିଲ ଚିହ୍ନି
ଅଦୋଷେ ନାଶଗଲ ତାହାର ସମସ୍ତ ସଇନ ।୪୦୨।
ଯେ ମୋହୋର ସଇନ ମାଇଲ ଅଦଭୂତେ
ସମାଗୋଷ୍ଠ ରାଜାକୁ ମୁଂ ସହିବି କେମନ୍ତେ ।୪୦୩।
ଦରଦସେନ ରାଜା ଯେ ଅଇଲ ପଳାଇ
ତାହାକୁ ଗ୍ଳୁମୁକୁ ଆଣ ସେ ଲୁଚିଅଛି କାହିଂ ।୪୦୪।
ଅର୍ଜୁନର ବଚନେ ସେ ବୋଇଲ ମନ୍ତ୍ରୀବର
ଯେହ୍ୱକ୍ଷଣି ଦରଦସେନ ହୋଇବ ଗ୍ଳୁମୁର ।୪୦୫।
ଅର୍ଜୁନ ଆଗ୍ୟାଂହଲେ ଶୁଣ ହୋ ସର୍ବସିଦ୍ଧି
ଆଗହୁଂ ରାଜାକୁ କର୍ମେ ନ କହିଲ ଯେ ବୁଦ୍ଧି ।୪୦୬।
ଆଗ୍ୟାଂ ପ୍ରମାଣେ ଚଳନ୍ତ ପାତ୍ର ଅମନାତ୍ୟେ
ଦରଦସେନ ରାଜାଂକୁ ଆଣିଲେ ଅର୍ଜୁନ ଅଗ୍ରତେ ।୪୦୭।
ରାଜା ଆସେ ଶତେକ ତାର ପାଣିଦ୍ରବ୍ୟ ଘେନି
ଗ୍ଳୁମୁକୁ ଆଣିଲ ସେ ଯେ ଦେଖା ଦରଶନି ।୪୦୮।
ଅନେକ ଦୂରହୁଂ ସେ ଦରଦସେନ ନୃପତି
ନିଉଛୁଳ ହୋଇ ପ୍ରଣପତ୍ୟ ହୋଇଲକ ଝାନ୍ତି ।୪୦୯।

---

୪୦୦।୨ ଅକ୍ଷତ ତାମ୍ବୋଳ ଦେଇ ରାଜସୂ ଯାଗକୁ ନେବୁ ବରି । (କ)
୪୦୬।୧ ଅର୍ଜୁନ ଆଗ୍ୟାଂ ଦଲେ ଶୁଣ ହୋ ସର୍ବଯୋଧୀ । (ଘ,ଙ,ନକ)

ଦଶନହ ମୁଖେ ଭରି ଯେ ଶୁଣିଲ ଦଣ୍ଡଳରି
ଜଗୁଜନ ଯୋଦରି ନାଥ କରିବା ମୋତେ ସାହ୍ନି ସାହ୍ନି ।୪୧୦।
ଅର୍ଜୁନ ବୋଇଲେ ତୋର କିଛିହିଁ ନାହିଁ ଦୋଷ
ହନା ଅପରାଧେ ତୋର ଥାଠ କଲୁ ଧ୍ୱଂସ ।୪୧୧।
ଦରଦସେନ ବୋଇଲା ତୁ ସ୍ୱାମୀ କଇଛା ଜଗତ୍ପେଠୀ
ତୋର ଅନଗ୍ରହେ ମୋର ଦୁର୍ଗତି ଯିବ ଫିଟି ।୪୧୨।
ପ୍ରତକ୍ଷେ ନାରାୟଣ ମୁଂ ଦେଖିଲି ନୟନେ
ସ୍ୱାମୀ ତୋତେ ଦ୍ରୋହ କଲି ନ ଜାଣି ଅଗ୍ୟାନେ ।୪୧୩।
ନିର୍ଦ୍ଦୟାକରି ସ୍ୱାମୀ ମୋହୋର ସନ୍ୟକଲୁ ନାଶ
ଅନୁଗ୍ରହ କରି ନାଥ ମୋତେ କ୍ଷମା କର ଦୋଷ ।୪୧୪।
ଅର୍ଜୁନ ବୋଇଲେ ନିମନ୍ତ୍ରଣ ଯୋଗାଉନ୍ତ ଦେଇ
ରାଜସୂ ସଭାକୁ ତୁ ଯାଅସି ବେଗ ହୋଇ ।୪୧୫।
ଦରଦସେନ ବୋଇଲା ମୁଂ ହବାଘା ଜଗତେ
ଥାଠ ସନ୍ୟ ନାହିଁ ମୋର ମୁଂ ଯିବଇଂ କେମନ୍ତେ ।୪୧୬।
ଅର୍ଜୁନ ବୋଇଲା ଯେ ଓଗାଳଇ ତୋତେ ପଥେ
ସମସ୍ତେ ହାସିବେ ତୋତେ ତୁ ମୋର ନାମ ଧରନ୍ତେ ।୪୧୭।
ଯେ ଅବା ପଥରେ ତୋତେ ଲଂଘିବଟି ରାୟେ
ସେହିଠାରେ ଶିରଚ୍ଛେଦନ ହୋଇବ ମୋହୋର ଶରଘାୟେ ।୪୧୮।
ଦରଦସେନ ବୋଇଲା ସ୍ୱାମୀ ମୋହୋର ଜୀବନ ସୁଫଳ
ଜଗବନ୍ଦନ ନାଥଂକୁ ମୁଂ ଭେଟିଲି ହୋଇବ କି ନିଷ୍ଫଳ ।୪୧୯।
ଯେତେକ ସଇନି ମୋର ମାଇଲୁ ଫାଲଗୁନ୍ୟ
ମୋହୋର ଭଗତେଣ ସମସ୍ତଂକୁ ଦେବୁ ଜୀବଦାନ ।୪୨୦।
ଅର୍ଜୁନ ବୋଇଲେ ତୋର ପଡଲେ ସଇନି
କେ ତାହାନ୍ତ ଜୀଆଂଇବ ମହାମନ୍ତ୍ର ଘେନି ।୪୨୧।
ଦରଦସେନ ବୋଇଲା ସ୍ୱାମୀ ବ୍ରତବେ ତୁମ୍ଭର ବୋଇଲେ
ସମସ୍ତେ ବ୍ରତବେ ତୋହୋର ମୋତେ ପ୍ରସନ୍ନ ହୋଇଲେ ।୪୨୨।

୪୧୦।୧ ଦଶନହ ମୁଖେ ଭରି ଯେ ଶୁଣିଲି ନରସାଇଂ ।
(ଝ,ଘ,ଢ,ଥ,ଛ,ନ)

ଯେ ମଧ୍ୟସ୍ୱର୍ଗେ ଉପୁଜଇ ବାଦ୍ୟର ସାଧୁ ଧ୍ୱନି
ଅମୃତ ଦୃଷ୍ଟିରେ ତୁ ଗୃହାଂ ମୋର ବୃତାନ୍ତ ସଇନି ।୪୨୩।
ରାଜାର କଟାଳନ୍ତେ ପାଣ୍ଡବ ଦଳସ୍ତ
ଅର୍ଜୁନ ଗୃହ୍ୱାଂଲେ ସେ ମାତଳି ସାରଥିର ମୁଖ ।୪୨୪।
ମାତଳି ବୋଇଲା ତୁ ହୋ ଜାଣୁ ସର୍ବବୁଦ୍ଧି
ଖାଣ୍ଡବ ବନ ଦହନେ ଅଗ୍ନି ଦେବତାଏ ଦେଇଛନ୍ତି ମଉଷଧି ।୪୨୫।
ହାବୋଡ଼ା ଶରଘାଏ ଯେ ପଡ଼ିଛନ୍ତି ସଇନି
ଦରଦସେନ ଅନେକ ବଳଲେ କରୁଛନ୍ତି ଦର୍ପିନି ।୪୨୬।
ସାରଥିର ବଚନେ ଅର୍ଜୁନ ପରମ ଶାନ୍ତ
ଜୀବନ୍ୟାସ ଶର ଯୋଣ୍ଟ୍ଂ କାଢ଼ିଲେ ତତକ୍ଷଣାନ୍ତ ।୪୨୭।
ଦରଦସେନ ରାଜାର ସନ୍ୟକଇଂ ବାନ୍ଧ
ଅବଛନ୍ନେ ଶରୁଂ ଧାରବୃଷ୍ଟି ହୋଇଲାକ ଅମୃତ ମଉଷଧି ।୪୨୮।
ମୋହନ ଶରଘାଏ ଯେ ପଡ଼ିଥିଲେ ସକଳ ସଇନି
ଚେତନା ପାଇଣ ସେ ଉଠିଲେ ନିଜ ପ୍ରାଣ ଘେନି ।୪୨୯।
ବାହାନାଦ କରଣ ଯେ ଉଠିଲେ ସର୍ବବଳ
ମୁଖରବ ଶବଦ ଯେ ଶୁଭଇ ମହାଗୋଳ ।୪୩୦।
ବାଇଶି କ୍ଷଉଣୀ ବଳ ତହ୍ନଂ ପଡ଼ିଥିଲେ
ଚେତନା ଶରେ ଅର୍ଜୁନ ସବୁନ୍ତ ଜୀଆଂଇଲେ ।୪୩୧।
ଦନ୍ତେ ତୃଣ ଘେନିଣ ସମସ୍ତ ପାତ୍ରମନ୍ତ୍ରୀ
ତାହ୍ନି ତାହ୍ନି ବୋଲଣ ଆସ୍ଥାନର ତଳେ ସର୍ବେ ପ୍ରଣିପତ୍ୟ ହୁଅନ୍ତି ।୪୩୨।
ଦୁର୍ଗତିତାରଣ ନାଥ ଗାଣ୍ଡିମ ଧାଷାଗୁରୁ
ଭଗତବତ୍ସଳ ନାଥ ଶରଣ ରକ୍ଷାକରୁ ।୪୩୩।
ଜୟ ଜୟ ମଙ୍ଗଳ ଯେ ଶୁଭିଲା ବାଦ୍ୟର ଧ୍ୱନି
ଦରଦସେନ ନୃପତି ପ୍ରଣିପତ୍ୟ ହୋଇଲା ଅମନାତ୍ୟନ୍ତ ଘେନି ।୪୩୪।
ଅନେକ ବନୋସ୍ତୀ ବୋଲଇ ଭୂଖାମଣ୍ଡଳ ଅଧିକାରୀ
ପୁଣ ପୁଣ ପଚ୍ଚାରଇ ବନସ୍ତେ କରପଦ ଯୋଡ଼ି ।୪୩୫।
ତୁ ଦେବ ଭଗତଜନ ବତ୍ସଳ ପ୍ରଚଣ୍ଡ ନାଥ ସ୍ୱାମୀ
ଯମାଗୋଷ୍ଟି ରାଜାକୁ ମାଗୁଛୁଂ ହୋଇଣ ପରଣାମି ।୪୩୬।

ବନ୍ଧନ ଫେଡ଼ ସ୍ୱାମୀ ଯମାଗୋଷ୍ଠୁଙ୍କୁ କର ରକ୍ଷା
ଏ ତ୍ରିଭୁବନ ଭୁବନ ମଧ୍ୟେ ରହୁ ତୁମ୍ଭ କକ୍ଷା ।୪୩୭।
ଅର୍ଜ୍ଜୁନ ବୋଇଲେ ତୁ ଏହାପାଇଁ ନ ବୋଲ ଦରଦ
ଏ ତ୍ରିଭୁବନ ମଧ୍ୟେ ମୋତେ ଏ ଶକ୍ତିଲ୍ଲ ପରମାଦ ।୪୩୮।
ପ୍ରାଣେ ନ ମାର ଏହାଙ୍କୁ ବନ୍ଧନ କରି ନେବ
ରାଜସୂୟ ଯାଗ ସଭାରେ ଭୀମସେନ ଠାକୁରଙ୍କର ଗୋଚରରେ ନେଇ
ଦେବ ।୪୩୯।
ସେ ଏହାନ୍ତ ବଳୁର ଯେ ଗୁଣ୍ଡବେ ସଭାଏ
କୋପେ ଦଣ୍ଡନ୍ତୁ କ କରନ୍ତୁ ସଦଏ ।୪୪୦।
ଅର୍ଜ୍ଜୁନର ବଚନେ ସେ ଯମାଗୋଷ୍ଠ ପାଟ ମନ୍ତ୍ରୀ
ମକରନ୍ଦ ମାଗଇ ସ୍ୱାମୀ ରାଜାଙ୍କୁ କୋପକର ଶାନ୍ତ ।୪୪୧।
ବଳୁରେ ବୃକୋଦର ଯେ ପ୍ରତଗ୍ୟାଂ କାଳେବର
ଜରାସନ୍ଧ ନାଶଗଲ୍ଲ ଯାହାର କୁତୂହୋଳ ସମର ।୪୪୨।
ତାହାର ବଳୁରନ୍ତେ କ ଏ ବ୍ରତଇ ନୃପମଣି
ସ୍ୱାମୀ ଯେବେ ଦୟା ନ କରିବୁ ତାଙ୍କୁ ନାଶକର ଏହିକ୍ଷଣି ।୪୪୩।
ଅର୍ଜ୍ଜୁନ ବୋଇଲେ ମନ୍ତ୍ରୀ ନୋହଇ ଏମନ୍ତ
ଏ ଯେ ନାଶକଲ୍ଲ ମୋହୋର ସଇନ ସମସ୍ତ ।୪୪୪।
ମୁହିଂ ଏହାଙ୍କୁ ବାନ୍ଧିଥିବ ଏ ମୋହୋର ରଥେ
ଲକ୍ଷେରାଜା ଦେଖିବେ ଯେ ସଭାର ମଧ୍ୟଗତେ ।୪୪୫।
ଏହାଙ୍କୁ ପ୍ରମାଦ ନାହିଂ ମୋହୋର ସତ୍ୟ ସତ୍ୟ ବଚନବାର
ସନ୍ୟ ଘେନି ଯାଅ ତୁମ୍ଭେ କଟୁହିଂ ନ ବଳୁର ।୪୪୬।
ନିମନ୍ତ୍ରଣ ଯୋଗାଡ଼ ଯେ ହଳକ ଫାଲଗୁନି
ଦରଦସେନ ଘେନିଗଲ୍ଲ ଓହୋବଳ ସଇନ ।୪୪୭।
ଶାଖାପୁର ଭାଖାପୁର ଜିଣି ସବ୍ୟସାଚୀ
ହିରଣଗର୍ଭ ପୁରେ ପ୍ରବେଶ ହୋଇଲେ ଯହିଂ ବଜଏ ଦେବୀ
ହିରଣାକ୍ଷୀ ।୪୪୮।
ଶୁମ୍ଭ ନିଶୁମ୍ଭ ବୋଲ ଦେନି ପର୍ବତ ଗୋଟି
ସେ ଦୁଇ ପର୍ବତ ମଧ୍ୟୁଂ ବହଇ ସରସ୍ୱତୀ ଧାର ଫୁଟି ।୪୪୯।

୪୪୯।୧ ଶ୍ଳୋ ନଶଲ୍ଲ ବୋଲିକରି ଦେନିପର୍ବତ ଗୋଟି । (ଙ,ଡ,ଡ)

ସେ ନଗ୍ରରେ ସ୍ତ୍ରୀହାନ ନିତ୍ୟକର୍ମ ସାରି
ବିଜୟେ ଫାଲଗୁନି ଯାଇଂ ଶୁମ୍ଭ ନାମେ ଗିରି ।୪୫୦।
ସେ ପର୍ବତ ଉପରେ ଯେ ବିଜୟେ ହରିଣାକ୍ଷୀ
ଦର୍ଶନ କଲି ଅର୍ଜୁନ ଅଭୟେ କାମାକ୍ଷୀ ।୪୫୧।
ଚଣ୍ଡ ମୁଣ୍ଡ ବଧକଲୁ ଗୋ କଥାରି ଫପୋଡ଼େ
ଶୁମ୍ଭ ନିଶୁମ୍ଭ ନାଶିଲୁ ଗୋ ନୃତ୍ୟରଂଗ ଖେଡ଼େ ।୪୫୨।
ପଡ଼ିଲେ ଦାନବେ ମାଗୋ କଥାରି କୁଚ୍ଛୁହୋଲେ
କାମସେଣା ମୂର୍ତ୍ତି ଧରି ନାଶିଲୁ ତାଂକୁ ହେଲେ ।୪୫୩।
ଶୁମ୍ଭ ନିଶୁମ୍ଭ ନାଶିଲୁ ଗୋ ଅସୁରକୁଳ ଧ୍ୱଂସି
ମହିଷାସୁର ଦାନେବ ଗୋ ନାଶିଲୁ ବକ୍ଷସ୍ଥଳେ ମାଡ଼ବସି ।୪୫୪।
ଶୁମ୍ଭ ନିଶୁମ୍ଭର ମୁଣ୍ଡ ଯେ ବେନି ପରବତ
ଅନେକ ଦୂର ବିସ୍ତାର ସେ ଯୋଜନ ଶତେଶତ ।୪୫୫।
ପୁଣ ପୁଣ ବ୍ରତନ୍ତି ବୋଲି ଅସୁର ମହାବଳୀ
ଦୁଇପାଦେ ଦୁଇମୁଣ୍ଡ ମାଡ଼ି ବସିଲୁ ମତ୍ତହେଲି ।୪୫୬।
ଆପଣେ ଦୁଃଖୀ ହୋଇଲୁ ଦେବତାଂକ କାର୍ଯ୍ୟେ
ତବ ନାମ ଧରନ୍ତେ ଭୟେ ପଳାନ୍ତି ଦନୁଜେ ।୪୫୭।
ଦେବତାଂକୁ ଅଭୟେ କଲୁ ଗୋ ଅସୁର ବଳ ଭଂଜି
ଭଗତଜନ ମହିଳୀ ଗୋ କୃତାନ୍ତେକ ଦର୍ପ ଗଂଜି ।୪୫୮।
ପାତେକ ଦୁରନ୍ତେକ ପଳାନ୍ତି ମାଗୋ ତୋ ନାମ ଧରନ୍ତେ
ଫିଟଇ ଦୁର୍ଗତି ମାଗୋ ତୋହୋର ନାମ ସୁମରନ୍ତେ ।୪୫୯।

---

୪୫୧।୧ "ଦର୍ଶନ କଲି ଅର୍ଜୁନ ଅଭୟେ କାମାକ୍ଷୀ" ପରେ
'ଛ' ପୋଥିରେ ଅଧିକା ପାଠ—

ସ୍ତୁତିକରି ପାଥ ଚଣ୍ଡୀପାଠ ପଢ଼ି
ଅପରାଜିତା ସ୍ତୁତି ପଢ଼ଇ ମନେ ଧରି ।
ଚଣ୍ଡିକା ପୁରାଣେ ଶମ୍ଭୁ ନିଶମ୍ଭୁ ରାଜା
ଚଣ୍ଡମୁଣ୍ଡ ନାଶକଲୁ ରୂପେଣ ଗିରିଜା ।

୪୫୧।୨ "ଦର୍ଶନ କଲି ଅର୍ଜୁନ ଅଭୟେ କାମାକ୍ଷୀ" ପରେ
'କ' ପୋଥିରେ ଅଧିକା ପାଠ—

ଜୟତୁ ଦୁର୍ଗା ମାଗୋ ଦୁର୍ଗତି ତାରିଣୀ
ମହାଘୋର ଦୁଃଖ ଖଣ୍ଡଣୀ ଗୋ ସଙ୍କଟ ବାରେଣୀ ।

*

ଡାକ ଡମ୍ବରୁ ଗୋ ଡବ ଡବ ବାଦ୍ୟ ବାଇ
ଶମଶାନ କ୍ଷେପଣୀ ଗୋ ଭରହରଷ ଗୀତ ଗାଇ ।୪୬୦।
କଣ୍ଠେ ମୁଣ୍ଡମାଳ ଗୋ ମନ୍ଦାର କୁସୁମେଣ ପୂଜା
ବହଡ ଦାନ୍ତ ବନ୍ଧନସ୍ତନୀ ଗୋ ଅଭୟା ଶଇଳଜା ।୪୬୧।
ରକ୍ତ ବସ୍ତ୍ର ପରିଧାପନୀ ଗୋ ପାଦ୍‌କେ ଗଗନ କ୍ଷେପି
ଅଭୟେ ହିଙ୍ଗୁଳା ମାଗୋ ପ୍ରସନ୍ନେ କାମରୂପୀ ।୪୬୨।
ମର୍ଦ୍ଦଳ ତାଳ କଂସାଳ କମ କଡା କାହାଳୀ ବାଦ୍ୟେ
ଚଣ୍ଡପୁଟ ଗୃଷ୍ଟପୁଟ ଉଦଘଟିତ ମଦିରା ରସ ଖାଦ୍ୟେ ।୪୬୩।
ରୁଧିର ବିଲେପନୀ ମାଗୋ ପୋଡା ମାଂସ ଭୋଜ
ଶ୍ରୋଣେହା ପିଶୁଣୀ ଗୋ ପ୍ରେତ ଭୂତ ଭୁଲେ ମଜି ।୪୬୪।
ଲହ ଲହ ରସନା ଋଟମଟ ଦଶନର ଅସ୍ଥି ଖଣ୍ଡ
ସ୍ୱର୍ଗ ମଂତ ବେନି ଭୁବନ ଘୋଟଇ ଯାହାର ତୁଣ୍ଡ ।୪୬୫।
ସୁରବର ସୁନ୍ଦରୀ ଗୋ ମଧୁ ପିଙ୍ଗଳାକ୍ଷୀ
ହୁଂକାର ଶବଦେଣ ଯେ ଗର୍ଜନ୍ତ ଘୋର ରାଖୀ ।୪୬୬।
ରେ ରେ କାର ଶବଦେଣ ଗୋ କହ କହ ଭାଷି
ଝମ ଝମ ଝମକ ଗୋ ଝୁମାଣ ପ୍ରକାଶି ।୪୬୭।
ଦଲ ଦଲିତ ମେଦିନୀ ଗୋ ଟଳ ଟଳିତ ଅଚଳା
ମତ୍ତରଙ୍ଗ ନାଚେ ସେ ଖେଳଇ ମେଖଳା ମହାଖଳା ।୪୬୮।
ସରୂପ ସିଦ୍ଧାଙ୍ଗୀ ଗୋ କାମାକ୍ଷୀ ସଉଭାଗୀ
ଶିଷୁମୁନା ବେଦ ସାଧନୀ ଗୋ ସୁରସାଙ୍ଗୀ ମାତାଙ୍ଗୀ ।୪୬୯।
ବିଚିତ୍ର କୁତୂହଳେ ଗୋ ଊର୍ଦ୍ଧ ପାଦ ଗତା
ଧବଳାଙ୍ଗୀ ପାଦୁକା ଅଭିଷେକ କଲା ପିତାମହ ଦେବତା ।୪୭୦।
ଯା ଯା ଧାଆଂ ଧାଆଂ ଧର ଧର ବୋଲି ଡାକ
ମାର ମାର ଭକ୍ଷ ଭକ୍ଷ ବୋଲି ଉଚ୍ଛଳନ୍ତ ଉଚବାକ ।୪୭୧।

---

୪୬୧।୨ ବିହଡନ୍ତ ବିଚକ୍ଷଣୀ ଅଭୟେ ଶଇଳଜା । (କ ଠ,ଖ,ଘ)
୪୬୩।୧ କମ—ବାଦ୍ୟ ବିଶେଷ, ଦେଖିବାକୁ ଢୋଲ ଭଳି ।
୪୬୭।୨ ଝମ ଝମ ଝୁମାଣ ଗୋ ଝୁଝୁକାର ଭାଷି । (ଙ)
୪୬୭।୨ ଝମ ଝମ ଝୁମାଣ ଗୋ ଝୁଝୁକାର ପାଶି । (କ,ଠ)

ଶଂକର ଅର୍ଦ୍ଧାଙ୍ଗୀ ଗୋ ଶୁଭାଙ୍ଗୀ ଶୁଦ୍ଧମୁଦ୍ରା
ବିପୁଳ ପୁଲକ ବୃନ୍ଦାରକା ଗୋ କାମାକ୍ଷୀ ମନ୍ତ୍ର ମୁଦ୍ରା ।୪୭୨।
ଭବାନୀ ଭଇରବୀ ଗୋ ଭୟଂକରୀ ଘୋରରୂପା
ତ୍ରିମୁଣ୍ଡା ଚଣ୍ଡମୁଣ୍ଡ ଚଣ୍ଡଘଣ୍ଟ ମହାତପା ।୪୭୩।
ପଟ୍ଟିଶ ଶକ୍ତି ମାଗୋ କୃପାଣ ଗଦା ମୁଦ୍ଗର
ଛେଲ ଚକ୍ର ତ୍ରିଶୂଳ କୋନ୍ତ ବଜ୍ରକର୍ଣ୍ଣିକଟାର ।୪୭୪।
ଅକ୍ଷୟେ ତୂଣ କଷଣୀ କୋଦଣ୍ଡ ପିନାକୀ
କ୍ଷଣକେ ତ୍ରଇଲୋକ୍ୟ ମୋହିନୀ ଗୋ କ୍ଷଣକେ ସର୍ବବ୍ୟାପି ।୪୭୫।
ରଣରଙ୍ଗ କୁତୂହଳେ ଗୋ ବକ୍ଷେଣ ମୁଣ୍ଡମାଳୀ
ରୋଧିର ସ୍ୱାହାନୀ ମାଗୋ ଶବଦ କଳ କଳ ।୪୭୬।
କମଳା ଚଞ୍ଚଳା ଗୋ ଡାକିନୀ ଡାକେଶ୍ୱରୀ
ଭଗତ ଜନ ମଙ୍ଗଳୀ ଗୋ ଦୁଷ୍ଟକୃତ ଅପହରି ।୪୭୭।
ମାଳତୀ ମାନିନୀ ମାଗୋ ମାଳିନୀ ମାୟା କୁଣ୍ଡଳୀ
ମହା ନିଶାୟେ ଭ୍ରମଣି ଗୋ ବହୁତ ହୁଳହୁଳି ।୪୭୮।
ଅଭୟେ ବରଦାୟିନୀ ଗୋ ଶ୍ରୀ ସର୍ବମଙ୍ଗଳେ
ଶରଣ ଉଦ୍ଧାରଣୀ ମାଗୋ ତାରଣୀ ସର୍ବକାଳେ ।୪୭୯।
ନମୋ ଭୁବନେଶ୍ୱରୀ ଗୋ ଯେକାକ୍ଷର ମନ୍ତ୍ରେ ମାତ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଗୋ ତୋହୋର ଗର୍ଭରୁ ସମ୍ଭୂତ ।୪୮୦।
ପୃଥ୍ୱୀର ଭାର ତୁ ଯେ ଖେଚରୀ ରୂପେ ଧଇଲୁ
ମହାଖଳା ଦେଖାଇ ତୁ ଅସୁରନ୍ତ ମାଇଲୁ ।୪୮୧।
ପରମ ସାଧବୀ ତୋତେ ସର୍ବଦା ଉଛବେ ପୂଜା
ଭଗତଭାବ ହେନି ଗୋ ଭଜଲୁ ଦେବରାଜା ।୪୮୨।
ମଙ୍ଗଳେ ସର୍ବମଙ୍ଗଳେ ଗୋ ସର୍ବକାର୍ଯ୍ୟ କରୁ ସିଦ୍ଧି
ମଙ୍ଗଳ ସର୍ବେଶ୍ୱରୀ ଗୋ ଭବାନୀ ଭୂତରୁଦ୍ଧି ।୪୮୩।

---

୪୭୨।୧ ଶଂକର ହୃଦୟେ ନୀ ସୁଧାଙ୍ଗୀ ଶୁଦ୍ଧମୁଦ୍ରା । (ଚ,ପ)
୪୭୨।୨ ବିପୁଳ ପୁଲକେ ବଦାର କାଟିଲୁ କାମାକ୍ଷୀ ମନ୍ତ୍ରମୁଦ୍ରା । (ପ,ଡ)
୪୭୩।୨ ତ୍ରିମୁଣ୍ଡେ ମୁଣ୍ଡ ଗୋ ଘଣ୍ଟ ଘଣ୍ଟି ମହାତମା । (ଘ,ନ,ଠ,ଖ)
୪୭୫।୧ ଅକ୍ଷୟ ଦ୍ରୋଣ ପିନାକୀ କଷଣୀ କୋନ୍ତ ଖୋପି । (ଘ)

ପ୍ରସନ୍ନେ ଯୋଗେଶ୍ୱରୀ ଗୋ କଳିକାଳ ଦର୍ପ ଧ୍ୱଂସି
ଲୋକତ ଲୋକେଶ୍ୱରୀ ଗୋ ହିମଗିରି ବାସୀ ।୪୮୪।
ମଙ୍ଗଳ ପରମ ବ୍ରହ୍ମ ସ୍ୱରୂପା ଗୋ ସମୂଳ ଜନ ଚିନ୍ତା
ଦୁଖୀଜନ ଉଦ୍ଧାରଣୀ ସମସ୍ତ ସୁଖଦାତା ।୪୮୫।
ସଦା ସମ୍ପଦ ଦାୟିନୀ ଗୋ ସର୍ବମଙ୍ଗଳେ
ଚଣ୍ଡୀକାର ସ୍ତୋତ୍ର ମୁଂ ଭାବଇ ବକ୍ଷଥଳେ ।୪୮୬।
ଅପର୍ଣ୍ଣା ଅନ୍ନପୂର୍ଣ୍ଣା ମାଗୋ ଅଟୁ ଜଗତଧାତ୍ରୀ
କାଳାନ୍ତକା କୃତାନ୍ତକା କାଳିକା କାଳରାତ୍ରି ।୪୮୭।
ଚହ ଚହ ହାସିନୀ ଗୋ ପ୍ରସନ୍ନ ଚନ୍ଦ୍ରମୁଖୀ
ଦୁଷ୍କୃତ ମେଣ୍ଟଣୀ କାତ୍ୟାନୀ ଗୋ ଅଟୁ ସର୍ବସାକ୍ଷୀ ।୪୮୮।
ଅମିତ ସଂସାର ଯେ ଲୋଭ ମୋହ ମହାଗରୁ
ଧନହାନ କ୍ରୋଧଚିନ୍ତା ମାଗୋ ସର୍ବମଙ୍ଗଳା ପାରି କରୁ ।୪୮୯।
ଇତିଶ୍ରୀ ମହାଭାରତେ କାଳିକା ପୁରାଣ ମତେ
ମୁହିଂ ଯେହା ବଖାଣିଲି ସଂସାର ଜନ ହିତେ ।୪୯୦।
ସଦା ଭଗତି ମୋହୋର ଭୂଖଣ୍ଡ ମଣ୍ଡଳେ
ମାନବରୂପେ ଜନ୍ମ ବହିଲି ସର୍ବମେଳେ ।୪୯୧।
କିଛୁ ପ୍ରସନ୍ନ ମୋତେ ହୋଇଲେ ସର୍ବମଙ୍ଗଳା ଅଭୟା
ଜଙ୍ଘେରପୁର ବାସିନୀ ଗୋ କ୍ଷମାକର ବିଜୟା ।୪୯୨।
ପରଲୋକେ ସୋଦର ଗୋ ଇହଲୋକେ ବରଦାତ୍ରୀ
ଇହଲୋକ ପରଲୋକକଇଂ ତୁମ୍ଭ ସେ ସର୍ବ ସ୍ଥିତି ।୪୯୩।
ଶ୍ରୀ ଚଣ୍ଡୀ ସାରୋଳା ଦେବୀ ଚରଣେ ବିନୟେ
ଶୂଦ୍ରମୁନି ସାରୋଳା ଦାସ ଭଗତି ଯେ କଲଯେ ।୪୯୪-୫୪୩୭।

---

## ଅର୍ଜୁନଙ୍କର ମୃତସୈନ୍ୟ ଜୀବିତ ଓ ସଂକଳ୍ପ; ଭୈରବ, ଉଦୟଗିରି, ଉତ୍ତର କୋଶଳ ଏବଂ ନନ୍ଦିଗ୍ରାମ ରାଜାମାନଙ୍କୁ ନିମନ୍ତ୍ରଣ ଓ କଳ୍ପରାଜା ସହିତ ଯୁଦ୍ଧ

ବଦଯନ୍ତି ଅଗସ୍ତି ଯେ କୁମ୍ଭଋଷିଂକର ବାଳେ
କ୍ଷୀରୋଦ୍ଧି ଗଣ୍ଡୁଷ କଲେ ଯେ ବାଳୁତ କୁତୂହୋଳେ ।୧।

ସେ ମୁନି ପ୍ରସନ୍ନେ ବିଷ୍ଣୁ ପୁରାଣର ବାଣୀ
ଦୁରନ୍ତକ ପାତକ ଖଣ୍ଡଇ ଯେଉଂଣ ଶାସ୍ତ୍ର ଶୁଣି ।୨।
କଳିକାଳ ଧ୍ୱଂସିବାକୁ ଯେ ଅମୃତ କଲେ କୃଷ୍ଣି
ସଂସାର ସାଗର ତରିବାକୁ ବୁହାଇଲେ ଯେ ଧର୍ମନାବ ଗୋଟି ।୩।
ଯମର ଅର୍ଗଳ ଭାଞ୍ଜିବାକୁ ଯେଉଂଣ ମହାତ୍ମା କଲା ଇଚ୍ଛା
ଖଣ୍ଡିଲା ଯମର ଅର୍ଗଳ ଯେ ଯୁଗାନ୍ତକ କାଳ ବଞ୍ଚା ।୪।
ଆହେ। ଅର୍ଜୁନ ସ୍ତୁତି କଲା ଅଭୟେ ହରିଣାକ୍ଷୀ
ପ୍ରସନ୍ନ ହୋଇ ବୋଇଲେ କିସ ତୁ ମନେ ଇଚ୍ଛି ।୫।
କେଶରୀ ବାହନେ ଯେ ବିଜୟେ ଶାକାମ୍ଭରୀ
ଦେଖିଣ ଧନୁର୍ଜୟେ ଶତେ ସହସ୍ର ଦଣ୍ଡ ପ୍ରଲମ୍ବିତ କରି ।୬।
ତୁ ଯେବେ ପ୍ରସନ୍ନ ମୋତେ ହୋଇଲୁ ଗୋ ହିଙ୍ଗୁଳେ
ମମ ବାଞ୍ଛା ସିଦ୍ଧ ଯେହ୍ନେ ହୋଇବ ସର୍ବକାଳେ ।୭।
ମାଗୋ ଯମାଗୋଷ୍ଠ ବୋଲି ଶାଖାମଣ୍ଡଳ ଆଧିପତି
ସେ ମୋହୋର ସୈନ୍ୟସବୁ କଲାକ ବିନଶ୍ୟତି ।୮।
ଲକ୍ଷି ପୋଛନ୍ତେ ମୋହୋର ସକଳ ସୈନ୍ୟ ଗଲେ ନାଶ
ଏକସରେ ବୁଲଇ ମାଗୋ ହୋଇଣ ନିରାଶ ।୯।
ବାଚ୍ଛିଣ ବାସୁଦେବ ଯେତେ ସୈନ୍ୟ ଦିଲେ ମୋତେ
ଭୀମସେନ ଠାକୁରଂକ କୋପ ମୁଂ ବଞ୍ଚାଇବି କେମନ୍ତେ ।୧୦।
ଡିନାଭାଇ ଆସିବେ ଯେ ଯାହା ଥାଠ ଘେନି
ମୁହିଂ କେମନ୍ତେ ଏକା ହୋଇ ରାଜ୍ୟକୁ ଯିବି ମରାଇ ସଇନି ।୧୧।
ଯେବେ ସର୍ବମଙ୍ଗଳେ ଗୋ ମହିମାଂ ତୋର ସତ
ମୃତ୍ତୁ ସୈନ୍ୟଗୁଡିକ ମୋର ଜୀଆଇଂ ଦେବୁ ଜଗତ ମାତ ।୧୨।
ଶୁଣିଣ ଦୟା ଯେ ବସିଲା ହରିଣାକ୍ଷୀ
ଆହେ। ଅର୍ଜୁନ ତୁ ହୁସହ ବର ବାଞ୍ଛି ।୧୩।
ଅର୍ଜୁନ ବୋଇଲା ମାଗୋ ତୋହୋରେ ହୋଇ ସିଦ୍ଧି
ମୃତ୍ତୁ ଜୀବନ୍ୟାସୀ ତୁହି ଅକ୍ଷୟେ କଲୁ ବୃଦ୍ଧି ।୧୪।
ଗୋସାମଣି ବୋଇଲେ ତୁ ଶୁଣ ଧନୁର୍ଜୟେ
ତୋହୋର ସୈନ୍ୟ ସାରକ୍ଷେ ରଂଚ ଯେ ଶବପଟଳ ଗୋଟିଏ ।୧୫।

କରେଣ ଲେଖନ ସେ ଧଇଲ୍ଲ ଅର୍ଜୁନ
ଭୂମିରେ ଚଡପଟ ହେ କରଇ ଲେଖନ ।୧୬।
ସହସ୍ରେକ ରଥ ଦୁଇ ଅୟୁତ ହାଥୀ
ଆଠ ଅୟୁତ ଅଶ୍ୱ ଯେ ବେନଲକ୍ଷ ପାଦାନ୍ତି ।୧୭।
ଚଡ ଲେଖନ କରି ଲିହ୍ଲ ସବ୍ୟସାଚୀ
ସେ ଚଡ ପିଣ୍ଡୁଳ ଉପରେ ମଜୁଷଧି ନେଇ ଛୁଞ୍ଚଲେ ହରିଣାକ୍ଷୀ ।୧୮।
ଉଠରେ ବୋଲି ମହା ମନ୍ତ୍ରେଣ ଡାକ ଦେଲେ ଶାକାମ୍ବେଷୀ
ଜୀବନ ପାଇଣ ସନ୍ୟ ଉଠିଲେ ବାହାନାଦ କରି ।୧୯।
ଅର୍ଜୁନଙ୍କୁ ଚାହିଁଲେ ସେ ସକଳ ସଇନ
ପୂର୍ବର ଭଗତଭାବେ କରନ୍ତି ଯାଇଂ ମାନ ।୨୦।
ଅର୍ଜୁନ ଦେଖିଲେ ଯେ ଯାହାର ସରୂପ
ସ୍ତ୍ରିପୁଭାବ କୁଟୁମ୍ବ ଯେ ଯାହାର ପୂର୍ବ ଅନୁରୂପ ।୨୧।
ତର୍ଜନ୍ତି ଗର୍ଜନ୍ତି ଯାନ ବାହାନ ଚଂପାଇ
ଯେ ଯାହାର ଶସ୍ତ୍ର ଘେନି ଅଛନ୍ତି ଦ୍ୱାରେ ରହି ।୨୨।
ଆପଣାର ସଇନ ପାଇଣ ଧନୁଜୟେ
ଝାଡକାରେ ଗୋସାମଣି ତହୁଂ ହୋଇଲେ ଅନ୍ତର୍ଦ୍ଧାୟେ ।୨୩।
ଆପଣା ସଇନ ଘେନି ବହଡଇ ବୀର ପାଥ
ବିଜୟେ ସବ୍ୟସାଚୀ ଶାକଲ୍ୟ ବନସ୍ତ ।୨୪।
ସର୍ବେଶ୍ୱର ବୋଲିକରି ସେ୍ୱକଇ ପର୍ବତେ
ଶାକଲ୍ୟ ଦ୍ୱୀପ ବୋଲିକରି ସାରଗଣ୍ଡ ବନସ୍ତେ ।୨୫।
ସେ ଶାକଲ୍ୟ ଦେଶେ ଯାଇଂ ବିଜୟେ ଫାଲଗୁନ
ରଥ ଗଜ ଅଶ୍ୱ ଚମ୍ପାଇ କଟକେ ପଶିଲେ ସଇନ ।୨୬।
ସେ ଦେଶର ରାଜା ଅଟଇ ଶାଲୁ ଯେ ନୃପତି
ଗଜ ଅଶ୍ୱ ନାହିଂ ତାର ସଇନ ପାଦାନ୍ତି ।୨୭।
କୋଟିଏ ରଥ ଘେନି ଶାଲୁ ଚଳଇ ଅନ୍ତରୀକ୍ଷେ
ଗନ୍ଧର୍ବ ରାଜା ସାରକ୍ଷେ ଅଟଇ ସେ ପ୍ରତକ୍ଷେ ।୨୮।
ଅର୍ଜୁନ ବିଜୟେ କଲେ ଶାଲୁରାଜାର ରାଜ୍ୟେ
ବୀରତୂର ଦମା ନିଶାଣ ଢୋଲ ଟମକ ଘୋର ବାଜେ ।୨୯।

---

୨୫।୨ ଶାକଲ୍ୟ ଦ୍ୱୀପ ବୋଲିକରି ଶେଷାପଡ ବନସ୍ତ । (ଘ,ଫ)

କାହ୍ନଂରରେ ଶବଦ ଉଲ୍କାପାତ ଜାଣି
ପର୍ଯ୍ୟୁଧ ନାମେ ମନ୍ତ୍ରୀ ପଚ୍ଚରଇ ଶାଲୁ ନୃପମଣି ।୩୦।
ମନ୍ତ୍ରୀ ବୋଇଲ ସ୍ୱାମୀ ରାଜସୂୟ ଯାଗ କାର୍ଯ୍ୟେ
ପାଣ୍ଡବ ଅର୍ଜୁନ ସେ ଉତ୍ତର ଦିଗବଜେ ।୩୧।
ଆଜ୍ଞାଂ ଦେଇଛନ୍ତ ତାକୁ ଚଞ୍ଚଳା ବଲ୍ଲଭ
ମୁହିଂ ଜାଣଇ ସେ ଅର୍ଜୁନ ପ୍ରତକ୍ଷେ ବାସୁଦେବ ।୩୨।
ମନ୍ତ୍ରୀବର ବୋଇଲ ଦେବ ତାହାର ଅସଂଖ୍ୟ ମହିମା
ଧନୁର୍ଦ୍ଧର ଶିରୋମଣି ସେ ଅଭୟେ ମହାତ୍ମା ।୩୩।
ରାଜାଧି ରାଜେଶ୍ୱର ସେ ଉତ୍ତର ଦିଗ ମଧ୍ୟେ
ସମାଗୋଷ୍ଠ ରାଜାଙ୍କଇଂ କେହି ଜିଣନ୍ତା ନାହିଂ ଯୁଦ୍ଧେ ।୩୪।
ତାହାଙ୍କଇଂ ବନ୍ଧନ ସେ କରନ୍ତି ଦେବରଥେ
ଆବର ରାଜାଏ କ ବ୍ରତବେ ଅର୍ଜୁନର ଅଭଗହତ ।୩୫।
ସମଦଣ୍ଡ ଘେନି ଦେବ ପାଗ୍ରେତି ଚାଲ ଯିବା
ବନୟ ଭଗତ ହୋଇ ଅର୍ଜୁନକୁ ଆଣିବା ।୩୬।
ମନ୍ତ୍ରୀବର ବଚନେ ସେ ସାନନ୍ଦ ମହାରାଏ
ସମଦଣ୍ଡ ଘେନିଣ ନୃପତ ପାଗ୍ରେତି ବେଗେ ଆଏ ।୩୭।
ବହୁତ ସମ୍ଭବେ ସେ ଶାଲୁ ମହାରାଜା
ଅର୍ଜୁନର ପାଦପଦ୍ମେ ସେ କରଇ ଦିବ୍ୟ ପୂଜା ।୩୮।
ପୁତ୍ର କୁଟୁମ୍ବ ଘେନି ସେ ଶାଲୁ ଆଧିପତ
ପୁଣ ପୁଣ ନିଉଚ୍ଛୁଳ କରଇ ତୋଷମତ ।୩୯।
ରାଜାର ଭଗତଭାବ ଦେଖିଣ ବୀର ପାଥ
ରଥୁଂ ଓହ୍ଲାଇ ଅର୍ଜୁନ ତାକୁ କଲକ କୋଳାଗ୍ରତ ।୪୦।
ଅନେକ ଭାବେଣ ଯେ ବଢ଼ାଇଲେ ପୀରତ
ପୁରେଣ ଉତ୍ସବ କରାଇଲ ଶାଲୁ ନରପତ ।୪୧।
ଅର୍ଜୁନ ବଜଏ କଲେ ଚନ୍ଦ୍ରଶାଳା ଭୁବନେ
ଶାଲୁଙ୍କଇଂ ନିମନ୍ତ୍ରଣ ସେ କଲେକ ଫାଲଗୁନେ୍ୟ ।୪୨।
ବାରୁଣୀବନ୍ତକୁ ଯାଅ ରାଜା ତୋର ଥାଠ ସନ୍ୟ ଘେନି
ବହନ ହୋଇ ଚଳ ହବା ଯେ ରଯୂଣୀ ।୪୩।

ଶାଲୁ ବୋଇଲା ତୁ ଅଭୟେ କିରୀଟୀକାର
ଆଜକ ରକ୍ଷିବା ସ୍ୱାମୀ ମୋହୋର ରାଜ୍ୟର ।୪୪।
ଅର୍ଜୁନ ବୋଇଲେ ନ ପାରୁଂ ଆମ୍ଭେ ରକ୍ଷି
ବିଳମ୍ବ କରିବାକୁ ଆମ୍ଭର ଆଉ ଦିନ ନାହିଂ ।୪୫।
ପଞ୍ଚାଶ ଦିବସ ଆଉ ଅଛଇ ସର୍ବେ ପୁଣ
ଅନେକ ଛନ୍ତି ହୋ ଆଉ ଦୁଷ୍ଟ ରାଜାମାନ ।୪୬।
ଶାଲୁରାଜା ପ୍ରଣିପତ୍ୟ ସେ ଅର୍ଜୁନର ପାଦ ତଳେ
ସ୍ୱାମୀ ଯମାଗୋଷ୍ଟ ବନ୍ଧନ ହୋଇଲା ମନ୍ଦବୁଦ୍ଧି ବଳେ ।୪୭।
ଯାହା ଅରଜିଲା ତାହା ସେ ପାଇଲା ଯୁଗତେ
ୟେହାକୁ ବନ୍ଧନରୁ ମୁକତ କର ମୋହୋର ଅଗ୍ରତେ ।୪୮।
ମୁଂ ୟେହାକୁ ଘେନିଯିବି ହସ୍ତିନା ରାଜ୍ୟକୁ
ୟେହାର ଅମାତ୍ୟ ହୋ ଲାଗଇ ଦେବ ହାଦେ ମୁକୁ ।୪୯।
ଅର୍ଜୁନ ବୋଇଲେ ତୁ ମହାରାଜା ଅଟୁ ଶାଲୁ
ଯମାଗୋଷ୍ଟ ରାଜା ପାଇଂ ତୁ ଆମ୍ଭନ୍ତ କଂପେ ବୋଲୁ ।୫୦।
ୟେ ମୋହୋର ସନ୍ୟ ନାଶକଲା ଅନମିତେ
ମୁଂ ୟେହାର ବନ୍ଧନ ହୋ ଫେଇବି କେମନ୍ତେ ।୫୧।
ତୁ ୟେବେ ଚଳଯାଅ ବାରୁଣାବନ୍ତକଇଂ
ଅବଶ୍ୟ ଯମାଗୋଷ୍ଟକୁ ବନ୍ଧନ କରିନେବି ହସ୍ତିନାକୁ ମୁହିଂ ।୫୨।
ଶାଲୁକୁ ଚଳାଇଣ ଯେ ୟେଣେ ଚଳଇ ଧନୁର୍ଜୟେ
ଦଣ୍ଡ ଘେନି ଶାଲୁରାଜା ହସ୍ତିନା ରାଜ୍ୟେ ଆୟେ ।୫୩।
ତହୁଂ ବୀର ଅରଜୁନ ଗଲେ ଥାଠ ଯେ ଚଳାଇ
ଭଇରୋବ ଦେଶରେ ବିଜୟେ କଲେ ଦେବ ଯାଇଂ ।୫୪।
ଭଇରୋବ ଦେଶରେ ମହା ଭଇରୋବ ନୃପତି
ରୁଦ୍ର ଦେବତାକଇଂ ଖଟି ସେ ଅଟଇ ମହାଯତି ।୫୫।
ଯେତେକ ଲୋକ ବସଇ ତାହାର ରାଜ୍ୟେ
ସବୁକୁହିଂ ୟେକପାଦେ ପ୍ରସନ୍ନ ଦେବରାଜେ ।୫୬।

---

୪୭।୨ ସ୍ୱାମୀ ଯମାଗୋଷ୍ଟ ବନ୍ଧନ ହୋଇଲା କର୍ମର ଅବଳେ ।
(କ,ଟ,ଛ,ପ,ଡ)

ଶୁକ୍ଳାମ୍ବର ଶରୀର ଯେ ମାଥେ ଜଟା ଭାର
ଭସ୍ମ ବିଲେପନ ସେ ଯେ କରେଣ ଶୂଳଧାରୀ ।୫୭।
କଟିରେ କାଛେଣି ଯେ କଣ୍ଟେଣ ଶକୁର୍ଣ୍ଟୀ
ସାଧନ୍ତି ଯୋଗରୁଦ୍ର ମନ୍ତ୍ର ସେ ପ୍ରକଟି ।୫୮।
ବିଶ୍ୱନାଥ ସରୂପଟି ସେ ଅଟନ୍ତି ମହାଯୋଗୀ
ଚତୁର୍ଭୁଜେ ଡମ୍ବରୁ ଯେ ଘନ ଘନ ବାଜ ।୫୯।
ରଥ ଗଜ ଅଶ୍ୱ ତାହାର ବାହାନ ନାହିଂ କିଛି
ପେଦ୍ଦକ ଚରଣେ ଗମନ୍ତି ସେ କନ୍ଦମୂଳ ଭକ୍ଷି ।୬୦।
ଅର୍ଜୁନ ବିଜୟେ କଲେ ଭଇରୋବ ଦେଶେ
ଦେଶାଉରେ ଜଣାଇଲେ ମହା ଭଇରୋବ ରାଜା ପାଶେ ।୬୧।
ଶୁଣ ଦେବ ସାବଧାନେ ସମ୍ଭାଳ ତୋର ରାଷ୍ଟ୍ର
କେଉଂଣ ଦେଶରୁ ଦେବ ପଶିଲା ଆସି ପର ଥାଟ ।୬୨।
ଦେଶାଉର ମୁଖୁଂ ଯହୁଂ ଶୁଣିଲା ବାରତ
ଦଣ୍ଡ ଘେନି ମହା ଭଇରୋବ କଟକୁଂ ଆଗତ ।୬୩।
ଆସନ୍ତେ ଅର୍ଜୁନକୁ ବାଟେ ଭେଟିଲେ ଭଇରୋବେ
ଅର୍ଜୁନର ସଇନି କ୍ଷେପନ୍ତି ଅତି ବେଗେ ।୬୪।
ଭଇରୋବ ଡାକ ଦିଅନ୍ତି ନିଜ ରଥେ ବସି
ଅଦଭୁତେ କଟକେ ମୋହୋର ପଶିଲୁ କାହୁଂ ଆସି ।୬୫।
ପରରାଷ୍ଟ୍ର ଥାଟ କ ପ୍ରୀତିପଣେ ଆସୁ
ଉଗ୍ରହୋଳ ବାଦ୍ୟକରି କଟକେ କଂପେ ମୋର ପଶୁ ।୬୬।
ଆଗିଆଣି ଥାଟେ ଥିଲେ ଜୟେ ଯେ ବିଜୟେ
ଆହୋ ଭଇରୋବ ତୁ ଶୁଣ ମହାରାୟେ ।୬୭।
ପାଣ୍ଡବ ସୋମବଂଶେ ଯୁଧିଷ୍ଠି ଦେବରାୟେ
ତାହାଂକ ସୋହୋଦ୍ର ଯେ ବୀର ଧନୁର୍ଜୟେ ।୬୮।
ରାଜସୂୟ ଯାଗ କରିବେ ପଣ୍ଡୁ ରାଜାଂକର କାର୍ଯ୍ୟେ
ରାଜାନ୍ତି ନିମନ୍ତ୍ରଣେ ପାର୍ଥ ଉତ୍ତର ଦିଗବିଜେ ।୬୯।

---

୬୬।୨ ଉଲୁକାପାତ ଜାଣି ବାଦ୍ୟକର କଟକେ କଂପେ ମୋର ପଶୁ ।
(ଘ,ଙ,ନ,ଥ,ଛ,ଖ)

*

ଶୁଣିଣ ଭଇରେବ ଦୂରୁଂ ହୋଇଲା ପରଣାମି
ହାସେଣ ବୋଇଲା ନାସ୍ତରଲ ନାସ୍ତରଲ ଦେବସ୍ୱାମୀ ।୭୦।
ରଥରେ ଦେଖିଲା ଯମାଗୋଷ୍ଟ ରାଜା ବନ୍ଧ
ଦେଖିଣ ବସ୍ମୟ ଯେ ହୋଇଲେ ସର୍ବଯୋଧୀ ।୭୧।
ହାସେଣ ନୃପତ ଯମାଗୋଷ୍ଟ ମହାବଳୀ
ବନ୍ଧନ ହୋଇ ରହେ ମନେ ମନେ ଭାଳ ।୭୨।
ଭଇରେବ ପ୍ରଣପତ୍ୟ ଅର୍ଜୁନର ପାଦତଳେ
ମୁହିଂ ତୋର ଚରଣେ ଶରଣ ପଶଇ ସର୍ବକାଳେ ।୭୩।
ସ୍ୱାମୀ ଅଗ୍ୟାନେ ଯମାଗୋଷ୍ଟ କଲକ ଯେବେ ଦୋଷ
ଶରଣମହାଲ ତୋହୋର ନାମ ଯେ ବବସ୍ର ।୭୪।
ମୋହୋର ଗୋଚରେ ଦେବା ଯମାଗୋଷ୍ଟ ରାଜାକୁ
ମୁହିଂ ଘେନିଯିବ ସ୍ୱେହାଂକୁ ବାରୁଣାବନ୍ତ ସଭାକୁ ।୭୫।
ଅର୍ଜୁନ ବୋଇଲେ ଶୁଣ ହୋ ଭଇରେବ
ଉତ୍ତରଦ୍ଧଗ ସାଧ ପରଯନ୍ତେ ସ୍ୱେ ମୋହୋର ରଥେ ବନ୍ଧନ
ହୋଇଥିବ ।୭୬।
ଭଇରେବ ଭକ୍ତ ଦେଖି ଦୁଇ ସେନାପତ
କୋଳକର ଗ୍ରୀମୁରେ ଭେଟାଇଲେ ତତକ୍ଷଣାନ୍ତ ।୭୭।
ଦେଖିକର ଶ୍ରୀକରେ ବାସବ ଯେ ଘେନିଣ ରତ୍ନମାଳା
ହୃଦେ ଲମ୍ବାଇଲେ ନେଇ କୋଇନ୍ତା ଦେବୀର ବଳା ।୭୮।
ନିମନ୍ତ୍ରଣ ଯୋଗାଡମାନ ଢଳେକ ସର୍ବସାଚୀ
ରାଜସୂୟ ଯାଗ ସଭାକୁ ବଦନ ତୋର ଦଣ୍ଡ ଘେନି ଯାଅସି ।୭୯।
ଭଇରେବ ବୋଇଲା ଆଗ୍ୟାଂ ପ୍ରମାଣେ ମୁଂ ଯିବ ସ୍ୱେହ୍ୱକ୍ଷଣ
ସ୍ୱାମୀ ଆଜକ ରହିଯିବା ମୋହୋର ଭୁବନ ।୮୦।
ମୁଣୋହ୍ୱ ଯୋଗାଡ ଦେହ୍ୱ ଯେତେମାନ ପାରଇ
ବନ୍ଧୁବର୍ଗ ଘେନି ତୋର ଚରଣେ ସେବଇ ।୮୧।
ଅର୍ଜୁନ ବୋଇଲେ ହୋ ଅନେକ ଦୁର୍ଗମ ଅଛି ମୋତେ
ଭୋଜନକଇଂ ଇଚ୍ଛାନାହିଂ ରାଜାନ୍ତ ନିମନ୍ତ୍ରଣ ପରଯନ୍ତେ ।୮୨।

---

୭୯।୨ ରାଜସୂୟଯାଗ ସଭାକୁ ଅନକୂଳ କର ପ୍ରାତ । (କ,ଡ,ଡ,ଖ)

ଦଣ୍ଡ ଘେନି ଯାଅ ଯା ହସ୍ତିନା ଭୁବନକୁ
ଦଣ୍ଡେକ ବିଶ୍ରାମ ନାହିଂ ତୋର ପୁରେ ରହିବାକୁ ।୮୩।
ଅର୍ଜୁନ ନିମନ୍ତ୍ରଣ ଯୋଗାଡ଼ନ୍ତି ଘେନି
ଅଶି ସହସ୍ର ବଳ ପୂରେଇଲ୍ଲ ଦେଖା ଦରଶନି ।୮୪।
ଚଳଇ ଭଇରୋବ ନୃପତି ତାର ଥାଠ ଯେ ପଲ୍ଲଣି
ଅନେକ ଶବଦେ ବାଜଇ ବୀରତୂର ଧୁନି ।୮୫।
ଭଇରୋବକୁ ଚଳାଇ ତହୁଂ ଚଳଇ ଅର୍ଜୁନ
ଉଦୟ ମଣ୍ଡଳେ ପ୍ରବେଶ ହୋଇଲ୍ଲ ଯାଇଂ ବାସବର ନାନ ।୮୬।
ଉଦୟଗିରି ବୋଲିଣ ତହିଂ ଯେକଇ ପର୍ବତ ଗୋଟିଏ
ସେ ପର୍ବତେ ବଜେକଲେ ଯାଇଂ ଧନୁର୍ଜୟେ ।୮୭।
ବାଜଇ ବୀରତୂର ଦେବଗଣ ଦୁନ୍ଦୁଭି
ଆକାଶ କର୍ମିଲ୍ଲ ଟଳମଳ ମହୀଦେବୀ ।୮୮।
ସେ ଉଦୟ ମଣ୍ଡଳ ରାଜା ସୁମନ୍ତକ ନୃପତି
ରାମ ବୈଷ୍ଣବନୋଦେ ସେ ବୁଲଇ ନିଶାରାତି ।୮୯।
ତାରେଣୀ ନଦୀକୂଳେ ସେ ଜଗିଣ ପାଣିଘାଟି
ଦେଖିଲେ ଯୋଦ୍ଧାୟେ ସେ ମାରନ୍ତି ଜୀବଗୋଟି ।୯୦।
ବୀରତୂର ଦାଉଣ୍ଡି ଶବଦ ଶୁଭିଲ୍ଲ ଉଦୟଗିରି ପର୍ବତେ
ଦେଖିଣ ନୃପତି ଯେ ରହିଲ୍ଲ ଅମ୍ଭୀଭୂତେ ।୯୧।
ମନ୍ତ୍ରୀକ ରାଇଣ ପଚାରଇ ନୃପମଣି
ବନସ୍ତେ କିସ ଶବଦ ଶୁଭଇ ଉଲ୍କାପାତ ଜାଣି ।୯୨।
ରାଜାର ଆଜ୍ଞାଂୟେ ସେ ଧାଇଂଲେ ଚରଗଣେ
ଭେଟିଲେ ବନସ୍ତରେ ଯାଇଂ ପାଣ୍ଡବ ପଞ୍ଚାଣେ ।୯୩।
ଚରଗଣେ ପଚାରିଲେ ତୁମ୍ଭେ କେଉଂଣ ଦେଶର ରାଜା
ପରରାଜ୍ୟେ ପଶି କିଂକେ ତୁମ୍ଭେ ବୀରତୂର ବଜା ।୯୪।
ଶୁଣ ହୋ ଚରଗଣେ ବଦୟନ୍ତି ସେନାପତି
ଏ ସେ ବୀର ଧନୁର୍ଜୟେ ପାଣ୍ଡବ ମହାଛତ୍ରୀ ।୯୫।

---

୯୦। ତାରେଣୀ ନଦୀକୂଳେ ସେ ଜଗଇ ଜଳଘାଟ
ବୁଲନ୍ତି ଯୋଦ୍ଧାୟେ ଯେ ମହା ମହା ଗରଷ୍ଟ । (ପ,ଛ,ଟ)

ଉତ୍ତରଦିଗ ବଜପୟେ ରାଜାନ୍ତ ନିମନ୍ତ୍ରଣେ
ଉତ୍ତର କୋଶଳର ଯିବେ ସମସ୍ତ ରାଜାଗଣମାନେ ।୯୬।
ରାଜସୂୟ ଯାଗ ସଭାରେ ଥିବେ ଷୋଳହ ଦିବସ ପର୍ଯ୍ୟନ୍ତେ
ଉତ୍ସବ ସାରି ଆସିବେ ସକଳ ନରପତ୍ତେ୍ୟ ।୯୭।
ସେନାପତିଙ୍କର ମୁଖୁଂ ଯେସନେକ ବାକ୍ୟ ଶୁଣି
ବାରତା କହିଲେ ଯାଇଂ ସୁମନ୍ତକ ନୃପମଣି ।୯୮।
ଶୁଣ ହୋ ସାବଧାନେ ଉଦେମଣ୍ଡଳ ଅଧିକାରି
ଅର୍ଜୁନ ଠାକୁର ସେ ଉତ୍ତରଦିଗ ରାଜାନ୍ତ ନିମନ୍ତ୍ରଣ କରି ।୯୯।
ଗୃଳଣ ସହସ୍ର ରାଜାନ୍ତ ନିମନ୍ତ୍ରିବେ ରାଜସୂୟଯାଗ ଅର୍ଥେ
ସମାଗୋଷ୍ଠି ରାଜାଙ୍କୁ ବନ୍ଧନ କରିଛନ୍ତି ରଥେ ।୧୦୦।
ଯେସନେକ ବାରତା ଶୁଣି ଉଦେମଣ୍ଡଳ ଅଧିକାରି
ବୋଇଲା ପରରାଷ୍ଟ୍ର ଭୂମିରେ ପଶିଲେ ସେ କେହ୍ନେକ ବୀର୍ଯ୍ୟର ।୧୦୧।
ରାଜାର ବଚନେ ସେ କହଇ ମନ୍ତ୍ରୀବର
ସ୍ୱାମୀ ଦୂତିକୃଷ୍ଣ ଅବତାର ସେ ପ୍ରତକ୍ଷେ ଦାମୋଦର ।୧୦୨।
ପ୍ରୀତି ହୋଇଲେ ତାଙ୍କୁ ପାଇବା କାରଣ
ଦୁଷ୍ଟ ହୋଇଲେ ଦେବ ସେ ଅବଶ୍ୟ କରଇ ନିବାରଣ ।୧୦୩।
ସ୍ୱାମୀ ସନ୍ଧାନ ଯୋଗାଡ଼ନ୍ତ ଗୃଳ ଘେନିଯିବା ମହୀପତ୍ତେ୍ୟ
ଯେ ମହାରାଜ୍ୟ ଧ୍ୱଂସ ନ କରିଅ ଅର୍ଜୁନର ହାଥେ ।୧୦୪।
ଦ୍ୱାରନେ ପ୍ରସନ୍ନ ହେଲେ ପାଇବା ପରମ ଗତି
ଅସାଧ୍ୟ ହୋଇଲେ ଅବଶ୍ୟ ସାଧିବ ସବୁନ୍ତି ।୧୦୫।
ମନ୍ତ୍ରୀର ବଚନେ ରାଜା ପରମ ସାନନ୍ଦେ
ଚଳଇ ନରେନ୍ଦ୍ର ସେ ଘେନିଣ ସନ୍ୟବୃନ୍ଦେ ।୧୦୬।

---

୧୦୦।୨ ସ୍ୱେଚ୍ଛକଣି ରାଜ୍ୟେ ପଶିବେ ସେ ପ୍ରତଗ୍ୟାଂ ସାମରଥେ ।
(ଙ,ଅ,ଛ)

୧୦୫।୨ ଅସାଧ୍ୟ ହୋଇଲେ ଅବଶ୍ୟ ଧ୍ୱଂସିବ ସବୁନ୍ତି । (ଝ,ଛ,ଙ,ଚ)

୧୦୬।୨ "ଚଳଇ ନରେନ୍ଦ୍ର ସେ ଘେନଣ ସନ୍ୟବୃନ୍ଦେ" ପରେ
'କ' ପୋଥିରେ ଭିନ୍ନ ପାଠ—
(ପର ପୃଷ୍ଠାରେ ପାଠାନ୍ତର)

ସହସ୍ରେକ ଘୋର ରାଜା ଘେନଇ ପାଣିଦ୍ରବ୍ୟ
ଅର୍ଜୁନର ଚ୍ଛାମୁକୁ ଆସଇ ନୃପଦେବ ।୧୦୭।
ଦର୍ଶନ କଲା ଆସି ଉଦେଗିରି ପର୍ବତେ
ଆହ୍ଲାଦକ ସାରବାବେଳେ ଆସି ହୋଇଲା ପ୍ରଣପତ୍ୟେ ।୧୦୮।

---

(ପୂର୍ବପୃଷ୍ଠାର ପାଠାନ୍ତର )

ପାଞ୍ଚ ସାତଘୋର ଘେନିଣ ଗଜ ମୁକୁତା
ବାସଙ୍ଗୀ ଦାସେଙ୍ଗୀ ସଙ୍ଗେ ସ୍ତେ ବେନି ଭ୍ରମଯା ସର୍ଜିତା ।
ଅର୍ଜୁନ ବଳେ କରିଅଛୁ ତାରେଣୀ ନଦୀକୂଳେ
ଉଦୟ ମଣ୍ଡଳାଧି ଦର୍ଶନ କଲେ ଶୁଭବେଳେ ।
ଶତ ସହସ୍ର ଦଣ୍ଡ ହୋଇଣ ପଣପତ୍ୟ
ଜହଗ୍ରାଲ କରିଣ ଶୁଚଲେ ନରନାଥ ।
ଦେଖିଣ ଦହସିତ ହୋଇଲେ ଧନୁର୍ଜସ୍ତେ
ଜମନ୍ତ୍ରଣ ଯୋଗାଡ ଚ୍ଛାମୁରେ ନେଇ ଦସ୍ତେ ।
ବାବୁ ତୁମ୍ଭେ ଯାଅ ହସ୍ତିନା ଭୁବନକୁ
ଏନକେ ବାଟେ ନ ରହିବ ଯେ ବଗ୍ରାମ କରିବାକୁ ।
ଉଦେମଣ୍ଡଳ ବୋଇଲା ଶୁଣିମା ଗୋସାଇଂ
ଆଜକ ରହିବା ମୋର ପ୍ରରେ କରିବା ମୁଣୋହ୍ନ ।
ଅର୍ଜୁନ ବୋଇଲେ ମୋତେ ରହିବାକୁ ବେଲ ନାହିଂ
ଗ୍ଭଳିଶ ସହସ୍ର ରାଜା ଜମନ୍ତ୍ରଣେ ଯିବ ମୁହିଂ ।
ତୁ ବହନ ହୋଇ ଚଲ ବାବୁ ହସ୍ତିନା ପ୍ରରସ୍ତେ
ଯେମନ୍ତେ ଜଗନ୍ନାଥେ ବାଚ ନ କରନ୍ତୁ ମୋତେ ।
ସୁମନ୍ତ୍ରକ ଚଳାଇ ଚଳିଲେ ବୀରମଣି
ଅରବନ୍ଦ ଦେଶକୁ ଚଲଇ ଆଠ ଘେନି ପଲ୍ଲିଣୀ ।
ସେ ଅରବନ୍ଦ ଦେଶର ରାଜା ଅଟଇ ତରୁଣସେନ
ବାସ୍ତୋର ଛୁହଣୀ ଯେ ଅଟଇ ତାହାର ସନ୍ୟ ।
ରଥ ମତ୍ତଗଜ ପନ୍ଦର ମେବଚ୍ଛ ଖଟଇ
ଉତ୍ତର କୋଶଳେ ରାଜା ମହା ଗରିଷ୍ଟଇ ।
ବୃଦ୍ଧମାତା ନଦୀତୀରେ ଅଟଇ ବାସ
ତାହାର ପୁରେ ଆଠ ହୋଇଲେ ପ୍ରବେଶ ।

(ପର ପୃଷ୍ଠାରେ ଅବଶିଷ୍ଟାଂଶ)

୧୦୭।୨ ଅର୍ଜୁନର ଚ୍ଛାମୁକୁ ଚଲଇ ନୃପଥ ସଦାଶିବ। (ଝ,ପ,ଙ,ଢ,ଚ)

ଦୂତପତିମାନେ ବୋଇଲେ ଭୁ ହୋ ଥାଅସି ଦଣ୍ଡଧରେ
ଦ୍ରଶନ କରାଇବା ପ୍ରସନ୍ନବେଳେ ମୁଣୋହ୍ନ ଉତ୍ତରେ ।୧୦୯।
ଅନ୍ତର ହୋଇଣ ସେ ରହିଲେ ନୃପମଣି
ଆହ୍ୱାନକ ସାର ଅର୍ଜୁନ ସୁମରଇ ଚକ୍ରପାଣି ।୧୧୦।

---

(ପୂର୍ବପୃଷ୍ଠାର ପାଠାନ୍ତର )

ଡଗରେ ବାରତା କହିଲେ ଆସ୍ଥାନ
ଉତ୍ତର ଦଗବଳେ କଲ ପାଣ୍ଡବ ଅରଜୁନ ।
ଡଗର ମୁଖେ ରାଜା ପାଇଣ ବାରତ
ମନ୍ତ୍ରୀକି ଆଗ୍ୟାଂ ଦେଲ ସାଜ ସନ୍ୟବଳ ଥାଠରଥ ।
ଆରେ ଯେତେ ମୋହୋର ରାଜ୍ୟେ ଅଛ ସ୍ତ୍ରି ସ୍ୱ ପୁରୁଷ
ସର୍ବ ଅଲଂକାର ହୋଇ ବହନ ହୋଇ ଆସ ।
ନଗ୍ରରେ ପାତ୍ସେଡା ଯେ ପାଶଣ ବୃରଗଣ
ହୁଳହୁଳି ଶବଦ ଶୁଭଇ ଚହ୍ପାଶେଣ ।
ଗ୍ୟାନଶିବ ମନ୍ତ୍ରୀ ଜଣାଇଲ ଯେ ରାଜାଂକୁ
ଦେବ ଦ୍ରଶନ କରିବା ଚାଲ ଦୁଖକୃଷ୍ଣଂକୁ ।
ସହସ୍ରେ ମାଣିକ୍ୟ ଘେନିଣ ନରପତି
ସହସ୍ରେ ଭାର ଘେନିଲ ଅବନ୍ଧା ଗଜମୋତି ।
ଆପଣେ ପାଟଛତ୍ର ଘେନିଣ ନିଜ କରେ
ରାଜ୍ୟଂ ବାହାର ସେ ହୋଇଲ ରାଜ୍ୟେଶ୍ୱର ।
ଯେତେ ଦୂରୁଂ ଅର୍ଜୁନର ଦିଶଇ ବଦନ
ନିହୁଳି କରିଣ ଶୁଭିଲ ତରୁଣସେନ ।
ଶତ ସହସ୍ର ଦଣ୍ଡ ହୋଇଣ ପରଣାମି
ଦୁଖ ବାସୁଦେବ ଦେଖିଲ ମନୁଷ୍ୟ ଜନ୍ମେ ଜନ୍ମି ।
ଦେଖିଣ ଦୟା ତାଙ୍କୁ କଲେକ ଫାଲଗୁନ
ରତ୍ନ ମାଳାଟେ ଲମ୍ବାଇଲେ ଶ୍ରୀକରେ ଦେବ ଘେନ ।
ଅକ୍ଷତ ଗୁଆ ତାଙ୍କୁ ଦଲେକ ତୋଷମନେ
ଦଣ୍ଡ ଘେନ ତରୁଣସେନ ଚଲ ହସ୍ତିନା ଭୁବନେ ।
ଆଗ୍ୟାଂ ପ୍ରମାଣେ ସେ ଯେ ଚଳିଲ ଦଣ୍ଡପତି
ଅର୍ଜୁନକୁ ପୁଣ ପୁଣ ହୋଇଣ ଭଗତି ।

(ପରପୃଷ୍ଠାରେ ଅବଶିଷ୍ଟାଂଶ)

ମୁଣୋଦ୍ଧରେ ବଜାୟେ ବେଗେ କଲେକ ଅରଜୁନ
ବେଗେଣ ସାରଲେ ସେ ଅମୃତ ରସ ଭୋଜନ ।୧୧୧।
ମୁଣୋଦ୍ଧ ସାରଣ ସେ ଆଂଗ୍ରେବନେ ବଟଜ
ବ୍ରଜଘୋଷ ଦେବଦତ୍ତ ଶଙ୍ଖ ଗ୍ରୁମୁରେଣ ଘନ ଘନ ବାଜେ ।୧୧୨।
ଆଂଗ୍ରେବନ ସାରଣ ବଜାୟେ ସିଂହାସନେ
ସମାଗୋଷ୍ଠ ମୁଣୋଦ୍ଧ କଲ୍ଲ ତାହା ନିତ୍ୟକର୍ମ ବିଧାନେ ।୧୧୩।
ସମ୍ମୁଖେ ବସାଇ ତାଙ୍କୁ ବାସବର ସୁତ
କର୍ପୂର ତାମ୍ବୁଲ ଯେ ଭୁଂଜନ୍ତ ତୋଷଚତ୍ତ ।୧୧୪।
ସୁଖାସନେ ବଜାୟେ କୃଷ୍ଣ ଅବତାରେ
ସୁମନ୍ତକ ନୃପତ ଆସି ଦ୍ରଶନ କଲକ ଗ୍ରୁମୁରେ ।୧୧୫।
ଗ୍ରୁମୁରେ ଜଣାଇଲେ ଯାଇଂ ଜୟ୍ଯୁ ବଜୟ୍ଯୁ ସେନାପତ
ଦ୍ରଶନ କରୁଅଛୁ ଦେବ ଉଦେମଣ୍ଡଳ ଆଧିପତ ।୧୧୬।
ଆସ୍ଥାନେ ବସିଣ ପାର୍ଥ ଆଗ୍ୟାଂ ଅବଧାର
ସନ୍ନିଧିକୁ ଆସ ହୋ ଉଦୟମଣ୍ଡଳ ଅଧିକାରୀ ।୧୧୭।
ନିର୍ବ୍ଧାର ବଚନ ସେ କହିଲେ ଫାଲଗୁନ
ରାଜସୂୟ ଯାଗକୁ ଚଳ ତୁ ଦବା ଯେ ରତ୍ନୂଣୀ ।୧୧୮।
ଅକ୍ଷତ ଗୁଆ ତାଙ୍କୁ ଦଲେକ ଫାଲଗୁନ
ରାଜସୂୟ ଯାଗକୁ ଚଳ ହୋ ତୋହୋର ଥାଠ ସନ୍ୟ ଘେନି ।୧୧୯।
ରାଜାଂକର ମେଳେ ତୁ ଥାଅ ବାରୁଣାବନ୍ତେ
ରାଜାମାନନ୍ତ ଘେନି ମୁଂ ବାହୁଡବା ପଶ୍ଚସନ୍ତେ ।୧୨୦।
ସୁମନ୍ତେକ ବୋଇଲ ସ୍ୱାମୀ ମୋହୋର ବଡ ଭାଗ୍ୟ
ଯେଉଂଣ ଯାଗ ଦେଖନ୍ତେ ହୋ ପ୍ରାପତ ହୋଇୟେ ସ୍ୱର୍ଗ ।୧୨୧।
ପୂର୍ବର ତପ ଯାହାର ଅଛଇ ଅରଜଲ
ଦ୍ରଶନେ ଇହଜନ୍ମର ପାତେକ କ୍ଷୟୁଗଲ ।୧୨୨।

---

(ପୂର୍ବପୁସ୍ତକର ପାଠାନ୍ତର )

ତତ୍କ୍ଷଂଣ ଅର୍ଜୁନ ଚଳଇ ଦଗବଜେ
ପ୍ରବେଶ ଅର୍ଜୁନ ଯାଇଂ ବଜେ ମଣ୍ଡଳ ରାଜ୍ୟେ ।
ସେ ନଗରେ ପଶିଲେ ଯାଇଂ ଅର୍ଜୁନର ସଇନ୍ୟ ।

ଶୁଣନ୍ତେ ଅନେକ ଜନ୍ମ ପାତେକ ହୋଇ ହତ
ଦ୍ରଶନେ ବଇକୁଣ୍ଠ ଯେ ମିଳଇ ସ୍ୱରୂପ ।୧୨୩।
ଅନେକ ସାନନ୍ଦେଣ ସୁମନ୍ତେକ ନରପତି
ବହୁତ ସମ୍ଭରେ ରାଜା ଚଳଇ ତତ୍‌ପତି ।୧୨୪।
ଚତୁରଂଗ ପସ୍ଥାଣେ ଚଳଇ ଅର୍ଜୁନ ମହାବୀର
ବଜ୍ରପୁମଣ୍ଡଳ ବୋଲି ପ୍ରେବଇ ନଗର ।୧୨୫।
ସେ ରାଜ୍ୟ ଭିତରେ ଯାଇଂ ପଶିଲେ ସଇନ
ବାରତା ପାଇଣ ରାଜା ଆସଇ ସନ୍ୟ ଘେନି ।୧୨୬।
ବଜ୍ରପୁକେତନ ବୋଲି ସେ ନୃପତିର ନାମ
ଅର୍ଜୁନ ଗ୍ରମୁରେ ଆସି କରଇ ପରଣାମ ।୧୨୭।
ରାଜା ବୋଇଲା ସ୍ୱାମୀ ଧନ୍ୟ ଧନ୍ୟ ପ୍ରେହୁ ମୋହୋର ବେନି ଆଖି
ଶ୍ରବଣେ ଯାହା ଶୁଣିଥିଲି ତାହା ଚକ୍ଷୁରେଣ ମୁହିଂ ଦେଖି ।୧୨୮।
ଦୁଷ୍ଟ ନିରଞ୍ଜନ ଭୁ ହୋ ଆସି ବଜ୍ରପୁ ମୋର ପୁରୀ
ଜନ୍ମର ପାତକ ଖଣ୍ଡନ୍ତୁ ଦେଖିଣ ମୋହୋର ନଗ୍ର ନରନାରୀ ।୧୨୯।
ଆପଣେ ଗ୍ରମର ଧରି ଚାଳଇ ନରପତି
ବହୁତର କୁତୂହୋଳେ ରାଜା ନଗରେ ପଶନ୍ତି ।୧୩୦।
ବଜ୍ରପୁମଣ୍ଡଳ ରାଜ୍ୟରେ ପଶନ୍ତେଣ ଶୋହିଲା
ଆକାଶ ତେଜିଣ କି ବାସେବ ବିଜେକଲା ।୧୩୧।
କେଶବାସ ଅସମ୍ଭାଳେ ଧାମନ୍ତି ସର୍ବଜନେ
ଗୁରୁ ଗଉରବ ଉପେଖି ଧାମନ୍ତି ସର୍ବ ନାରୀଗଣମାନେ ।୧୩୨।
ମୋହେ ବଶ ହୋଇଲେ ଦୁଷ୍ଟଙ୍କୃଷ୍ଣ ମୁଖ ଗ୍ଳହିଂ
ପ୍ରତକ୍ଷେ ଅନଙ୍ଗ ପ୍ରେହାକୁ ସରସମ ନୋହଇ ।୧୩୩।
ଅର୍ଜୁନ ବିଜେକଲେ ଯାଇଂଣ ଜଗଷ୍ଟି ଉପରେ
ଶତେକ ଭରଯା ଘେନିଣ ରାଜା ଖଟଇ ପସ୍ଥରେ ।୧୩୪।
ଆଲଟ ଗ୍ରମର ଯେ ଚାଳଇ ନୃପତି
ସ୍ୱାମୀ ସଦା ଅନୁଗ୍ରହ ମୋତେ ହୋଇଥିବା ସୁତ କୋନ୍ତୀ ।୧୩୫।
ସୁବର୍ଣ୍ଣର କଳସ ସେ ପାତାଙ୍ଗ ଦ୍ରବ୍ୟ ଚନ୍ଦ୍ର
ଉତ୍ସବ କରାଇଲା ରାଜା ଆପଣା ଭୁବନ ।୧୩୬।

ନିମନ୍ତ୍ରଣ ହେଲେ ତାହାଙ୍କୁ ସୁଭଦ୍ରାର ନାହା
ହସ୍ତିନା ରାଜ୍ୟକୁ ରାଜା ଦଣ୍ଡ ଘେନି ବହନ ହୋଇ ଯା ଯା ।୧୩୭।
ସ୍ୱାମୀର ଆଗ୍ୟାଂ ନିରଧାର ଶିରେ ଘେନି
ତକ୍ଷଣେ ଅନକୂଳ ଘେନି ରାଜା ସାଜିଲେ ସଇନି ।୧୩୮।
ଆପଣେ ଥାଇଂ ତାହାଙ୍କୁ ଚଳାଇ ଅର୍ଜୁନ
ଦଣ୍ଡ ଘେନି ହଜେକଲେ ବଜସ୍ତୂକେତନ ।୧୩୯।
ଚଳଇ ବାସବ ଯେ ଘେନିଣ ନିଜ ଥାଟ
ସେ ରାଜ୍ୟ ଜିଣି ପ୍ରବେଶ ହୋଇଲେ ସଉରାଷ୍ଟ୍ର ।୧୪୦।
ସେ ରାଜ୍ୟର ରାଜା ନାମ ଅଟଇ କୃତ ଯେ କେଶରୀ
ଅନେକ ରାଜ୍ୟ ଜିଣି ସେ ପ୍ରତାପେ ରାଜ୍ୟକର ।୧୪୧।
ଅନେକ ରାଜାଂକର ଭୁଲେ ସେ ଅନୁବ୍ରତେ ବିବାଧି
ପ୍ରତାପକେଶରୀ ସେ ବହୁତ ଦେଶ ସାଧି ।୧୪୨।
ଅନୁବ୍ରତେ ସେ ନୃପତି ପଳାଣି ଥାଇ ଥାଟ
ଉତ୍ତର କୋଶଳେ ସେ ବୀର ଅଟଇ ମହାଆଣ୍ଠ ।୧୪୩।
ଗଙ୍ଗା ଯମୁନା ନଦୀର ମଧ୍ୟେ ତାର ରାଜ୍ୟ
ବଡାଇ ଧାର୍ମିକ ନୃପତି ସେ ରାଜ୍ୟଲୋକେ ବ୍ରତନ୍ତ ଅଇଶ୍ୱର୍ଯ୍ୟ ।୧୪୪।
ପନ୍ଦର କ୍ଷଉଣୀ ତାକୁ ସନ୍ୟବଳ ଖଟଇ
ପଞ୍ଚୁଧାର ପର୍ବତ ବେଢି ରାଜ୍ୟ ତାର ଅଟଇ ।୧୪୫।
ପଞ୍ଚଦଶ ପାରଦଣ୍ଡ ଖଟଇ ନୃପତି
ଉତ୍ତର କୋଶଳେ ସେ ଅଟଇ ବଡାଇ ବିଖ୍ୟାତି ।୧୪୬।
ବାସେବ ପ୍ରବେଶ ଯାଇଂ ହୋଇଲେ ତାର ରାଜ୍ୟେ
ବୀରତୂର ଶବଦ ଯେ ଗହନ ଢୋଲ ବାଜେ ।୧୪୭।
ହେଶାଉରେ ବାରତା ଜଣାଇଲେ କୃତକେଶୀ ନୃପମଣି
ଅର୍ଜୁନ ତୋହୋର ରାଜ୍ୟେ ପଶେ ଥାଟ ଯେ ପଳାଣି ।୧୪୮।
ସକଳ ରାଜ୍ୟର ରାଜା ଦେବ ଆସୁଅଛି ସାଧି
ଯମାଗୋଷ୍ଠ ରାଜାକୁ ସେ ରଥରେ ଅଛି ବାନ୍ଧି ।୧୪୯।
ଛତ୍ରୀବର ସୋହଡ ସେ ବଡାଇ ପ୍ରତାପୀ
ସାଂଗ୍ରାମେ ଜଗୁଜତା ସେ ଅଟଇ ମହାକୋପୀ ।୧୫୦।

---

୧୫୦।୨ ସାଂଗ୍ରାମେ ଜଗୁଜିତା ସେ ପ୍ରଶୁରାମ ଜାଣି କୋପୀ । (ଚ,ପ)

❋

ଦେଶାଜର ବଚନେ ରାଜା କୋପେଣ ପରଚଣ୍ଡ
ସନ୍ନଧେ ହକାରିଲା ରାଜା ଶ୍ରୁତଶତ ପାରିଦଣ୍ଡ ।୧୫୧।
ଆରେ କେଉଁ ପଶିଲା ମୋର ରାଜ୍ୟେ ନ ବଗୁରି
ବେଗକରି ମୋ ଗ୍ରାମୁକୁ ଆଣ ତାକୁ ଧରି ।୧୫୨।
ପ୍ରାଣେ ନ ମାର ରେ ତାକୁ ବନ୍ଧନ କରି ଆଣ
କେବଣ ଦେଶୁଂ ଆସିଛି ତାହା ତଦନ୍ତ କରି ଜାଣ ।୧୫୩।
ରାଜାର ବଚନେ ପାରିଦଣ୍ଡ ରାଜାମାନେ
ସମଦଣ୍ଡ ସାଜଣ ସେ ଧାମନ୍ତି କୋପମନେ ।୧୫୪।
ରଥଗଜ ଅଶ୍ୱ ପାଦାନ୍ତି ନ ଯାଇ କଳନ
ବେଢିଣ ସଇନ ଯାଇଂ ପ୍ରହାରିଲେ ବଜ୍ରବାଣ ।୧୫୫।
ଆଗିଆଣି ଥାଠ ଅନେକ ବଳ ଦେଖି
ଗହଳ ସଇନ ଭାଜଲେ ସଂଗ୍ରାମ ଉପେକ୍ଷି ।୧୫୬।
ଥାଠ ଭାଜନ୍ତେ ଜୟେ ବିଜୟେ ସେନାପତି
ଧନୁରେ ନାରାଜ ପୂରେଇ ଉଗାଳିଲେ ଝାଣ୍ଟି ।୧୫୭।
ଦେଖିଣ କୋପାନଳ ଯେ କୃତକେଶୀର ସଇନ
ଆକ୍ଷେପିଣ ନାରାଜ ଯେ ବିନ୍ଧନ୍ତି କୋପେ ଘେନ ।୧୫୮।
ଶହସ୍ର ବିଧାତେଣ ଗଗନ ଅନ୍ଧକାରମୟେ
ପଡନ୍ତି ନାରାଜମାନେ କକଡା ବୃଷ୍ଟି ପ୍ରାୟେ ।୧୫୯।
ଅବଛନ୍ନେ ନାରାଜ ପଡନ୍ତେ କେହୁ ତା ପରିମାଣି
ଆକାଶେ ଅଦୃଶ୍ୟ ହୋଇଲେ ଗଗନ ଚୂଡାମଣି ।୧୬୦।
ଘୋର ଯୁଦ୍ଧ ଦେଖିଣ ଉଠିଲେ ବୀର ପାଥ
ଲକ୍ଷେ ବଳ ଗାଣ୍ଡିମ ଧନୁ ଶୋଭିତ ବାମହାଥ ।୧୬୧।
ଅକ୍ଷୟ ତୋଣୁଂ ନାରାଜ ଧନୁରେ ପୂରେଇ
କୃତକେଶୀ ସଇନଂକ ସେ ବିନ୍ଧିଲେ ଭୁହାଇ ।୧୬୨।
ଅବଛନ୍ନେ ଥାଠେ ଶର ହୋଇଲା ଯେ ବୃଷ୍ଟି
କବଚ ମଣି କୁଣ୍ଡଳ ଛୁଡ ପଡିଲା ବଜ୍ରଘୋଟି ।୧୬୩।
ଗଜ କୁମ୍ଭସ୍ଥଳେ ପଡି ନାରାଜ ନିକଳ
ମହା ମହା ମତ୍ତହାଥୀମାନେ ଭୂମିରେଣ ପଡୁଛନ୍ତି ଢଳ ।୧୬୪।

କୃତକେଶୀର ସନ୍ୟ ମହା ବନସ୍ତର ପ୍ରାୟେ
କାଳ ଅନଳ ବହନ୍ତି ତହିଁ ହୋଇଲା ଧନୁର୍ଜୟେ ।୧୬୫।
ପବନ ବାଘାତେ ଯେହ୍ନେ ବୃକ୍ଷେ ପଡନ୍ତି ଲୋଟି
କାଳାନଳ ତେଜ ଯେ ଅର୍ଜୁନର ଶରବୃଷ୍ଟି ।୧୬୬।
ସମ୍ମୁଖେ ନାରାଜ ଯେ ବନ୍ଧଇ ସର୍ବସାରୀ
ଯେସନେ ଅନଳ ଶୁଖିଲା ତରୁବର ଦହନ କରୁଅଛି ।୧୬୭।
ପଡିଲେ ସଇନ ଯେ ଅର୍ଜୁନର ଶରଘାତେ
ଭଜିଣ ଚୂର ହୋଇଲେ ଗଜ ଅଶ୍ୱ ରଥେ ।୧୬୮।
ରାଜାର ସ୍ମୁରେ ଯାଇଂ କହିଲେ ଦୂତପନ୍ତ
ସ୍ୱାମୀ ଅନେକ ସଇନ ତୋର ସଂଗ୍ରାମେ ହୋଇଲେ ବିନଶ୍ୟନ୍ତ ।୧୬୯।
ଦୂତପନ୍ତର ବଚନ ଶୁଣି କୃତକେଶୀ ମହାରାୟେ
କୋପେଣ ଗର୍ଜଇ ରାଜା କାଳସର୍ପ ପ୍ରାୟେ ।୧୭୦।
ଅଧର ପୃଷ୍ଠ କରି ଅଧରେ ଦନ୍ତ ଚାପି
ଆସ୍ଥାନ ତେଜିଣ ରାଜା ଭୂମିକି ପଡଇ ଝପି ।୧୭୧।
ଲୋହସାର ବେନି ଗଦା ଘେନିଣ ରାୟେ ହାଥେ
ରେ ରେ କାର କରି ରାଜା ଧାମଇଂ ପାଦଗତେ ।୧୭୨।
ମହା ବଳବନ୍ତା ସେ ପ୍ରତାପୀଂ ମହାଗରୁ
କନ୍ଧାଳେଣ କାଳସର୍ପ ଯେସନେକ ଗର୍ଜିଣ ଟେକଇ ଫେରୁ ।୧୭୩।
ରାଜାର ଧାମନ୍ତେ ଗୋଡାବନ୍ତି ସର୍ବଯୋଧୀ
ରେ ରେ କାର କରଣ ନାରାଜ ବେଗେ ବାନ୍ଧି ।୧୭୪।
ରାଜାକୁ ଦେଖି ଜୟେ ବିଜୟେ ସେନାପନ୍ତ
ରଥ ଚମ୍ପାଇଣ ସେ ଉଠିଲେ କୋପମୂର୍ତ୍ତି ।୧୭୫।
ସେନାଂକର ଧାମନ୍ତେ ସମାର୍ଜଇ ଫାଲଗୁନି
ରହ ରହ ବୋଲଣ ଯେ କରଇ ମଧୁର ଧ୍ୱନି ।୧୭୬।
ଅର୍ଜୁନ ବୋଇଲେ ରେ ମ୍ଲେ ଅଗ୍ୟାନ ମୂର୍ଖ ନୃପମଣି
ସମଦଣ୍ଡ ନାଶ କରାଇବୁ ବାରତା ନ ଜାଣି ।୧୭୭।

---

୧୭୦।୨ କୋପେଣ ଗର୍ଜଇ ରାଜା ଶରଦ ମେଘପ୍ରାୟେ । (ଭ,ଥ,ଙ,କ,ଛ)
୧୭୦।୨ କୋପେଣ ଗର୍ଜଇ ରାଜା ମତ୍ତନାଗ ପ୍ରାୟେ । (ଝ,ପ,ଢ)

ମାତଳିଙ୍କ ବୋଇଲେ ସେ ସୋହଦ୍ରାର ନାହା
କୃତକେଶୀ ସମ୍ମୁଖକୁ ରଥ ମୋର ବେଗେ ବାହା ।୧୭୮।
ଅର୍ଜୁନର ବଚନେ ଅଶ୍ଵନ୍ତ ଚଳାଇଲା ସାରଥି
କୃତକେଶୀର ସମ୍ମୁଖରେ ରଥ ଉଭାରିଲା ତତକ୍ଷଣାନ୍ତ ।୧୭୯।
ରଥ ଦେଖି କୃତକେଶୀ ଗଦାବରକୁ ବୁଲାଇ
ଅର୍ଜୁନ ଉପରେ ଯେ ପ୍ରହାର କଲା ନେଇ ।୧୮୦।
ଅର୍ଜୁନ ବୋଇଲା ଆହୋ ଅଜ୍ଞାନ ତୁ ଭୂପ
କାହାର ଠାରେ ପ୍ରତଗ୍ୟାଂ କରୁ ତୁ ସରୂପ ।୧୮୧।
କାଳସର୍ପ ମୁଖେ ଯେହ୍ନେ ନ ବ୍ରତଇ ପ୍ରାଣୀ
ରାଜସୂୟ ଯାଗର ବାରତା ତୁ ନଜାଣି ନଶୁଣି ।୧୮୨।
ଷୋଳଶି ସହସ୍ର ରାଜା ନିମନ୍ତ୍ରିବ ଉତ୍ତର କୋଶଳେ
ସମସ୍ତ ଦେଶରୁ ଯିବେ ଅନେକ ମହୀପାଳେ ।୧୮୩।
ଆମ୍ଭେତ ତୋହୋର ନୋହୁନା ବଇରି ବିବାଦୀ
କାହା ତୁଳେ ଆମ୍ଭେ କଦାଚିତେ ନୋହୁନା ଦ୍ୱନ୍ଦୀ ।୧୮୪।
ନିମନ୍ତ୍ରି ଅଇଲୁ ହୋ ଉତ୍ତର ଦିଗେ ଆମ୍ଭେ
ଅଜ୍ଞାନେ ସଇନ୍ୟ କାଂକେ ନାଶକର ତୁମ୍ଭେ ।୧୮୫।
ଆହୋ ଉତ୍ତରଦିଗ ରାଜାମାନେ ତୁମ୍ଭେ ଯେତେକ ମୂର୍ଖ କ
ବିଗ୍ରହ ନକର କାଂପା ଯମାଗୋଷ୍ଠି ବନ୍ଧନ ଦେଖି ।୧୮୬।
ଆହୋ ଜରାସନ୍ଧ ବଧ ହେଲା ମେଉଂଣ ଯାଗର ନିମନ୍ତେ
ତହିଂର ବାରତା କ ନ କହିଲେ ତୁମ୍ଭର ଦୂତେ ।୧୮୭।
ଆମ୍ଭର ତୁଲେ କାଂପାଇଂ ତୁ ସଂଗ୍ରାମ କରିବୁ
ଯେତେକ ବଡ ସମ୍ପଦ ବୁଡାଇ ସପୋଡ଼େ ମରିବୁ ।୧୮୮।
ଅର୍ଜୁନର ବଚନେ କୃତକେଶୀର ମନ୍ତ୍ରୀ
ରାଜାକୁ ପଛକରି ଆଗ ହୋଇଲା ତତକ୍ଷଣାନ୍ତ ।୧୮୯।

---

୧୮୧। ଅର୍ଜୁନ ବୋଇଲା ରେ ଅଜ୍ଞାନ କୃତକେଶୀ
କାହାର ଉପରକୁ ଆସୁଅଛୁ କରିଣ ତାମସୀ । (କ)
ଅର୍ଜୁନ ବୋଇଲା ରେ ଅଜ୍ଞାନ କେଶରୀ କୃତକ
କାହାର ଉପରକୁ ତୋର ପ୍ରତଗ୍ୟାଂ ଯେତେହେନେକ । (ଙ,ବ)

ଅର୍ଜୁନ ପାଦପଦ୍ମେ ମନ୍ତ୍ରୀ ହୋଇଲା ପରଣାମି
ନଜାଣି ଦ୍ୱନ୍ଦକଲୁ ଆମ୍ଭେ ଉଦ୍ଧରିବା ଦେବ ସ୍ୱାମୀ ।୧୯୦।
କୃତକେଶୀ ଦେଖିଲା ଯେ ଅର୍ଜୁନ ତେଜ
ରଥେଣ ବସିଅଛୁ ଅର୍ଜୁନ ହୋଇଣ ଚତୁର୍ଭୁଜ ।୧୯୧।
ଆପଣାର ରଥ ତେଜ୍ୟାକରି କୃତକେଶୀ ନୃପମଣି
ପାଥ ରଥତଳେ ଶତ ସହସ୍ର ଦଣ୍ଡ ପରଣାମି ।୧୯୨।
ପ୍ରତକ୍ଷେ ନାରାୟଣ ତୁ ଯେ ଅଟୁ ଫାଲଗୁନ
ମୁଂ ହୀନ ପାମର ତୋତେ ନୁଆରିଲି ଚିହ୍ନି ।୧୯୩।
ସ୍ୱାମୀ ଅଗ୍ୟାନ ଲୋକର ଦୋଷ କରିବା ଉପେକ୍ଷା
ଦୋଷୀଲୋକ ଭଗତ ହୋଇଲେ ଅବଶ୍ୟ କରିବାକ ରକ୍ଷା ।୧୯୪।
ତୁ ଦେବ ଆନନ୍ଦେଶ୍ୱର ଯେ ଭଗତ ମହ୍ଲା
ତୁ ଦେବ ମହାଦେବ ପ୍ରତକ୍ଷେ ବିଷ୍ଣୁକଳା ।୧୯୫।
ଅନେକ ବିନେ ସ୍ତୀ କହିଲ କୃତକେଶୀ ନୃପତି
ଆନନ୍ଦେ ଅଶ୍ରୁଜଳ ବେନି ନୟନୁଂ ବହନ୍ତି ।୧୯୬।
ନିଉଚ୍ଛୁଳ କରି ପ୍ରଲମ୍ବ ଶତେ ସହସ୍ର ଦଣ୍ଡ
ତୁ ଦେବ ଠାକୁର ଯେ ସୋମବଂଶ ଭୁଅଖଣ୍ଡ ।୧୯୭।
ଅର୍ଜୁନ ବୋଇଲା ତୁ ଉଠ ଉଠ କୃତକେଶୀ ରାୟେ
ବାଞ୍ଛା ତୋହୋର ସିଦ୍ଧହୋଉ ସର୍ବଦାୟେ ।୧୯୮।
ତୁ ଅଟୁ ବିଜୟମଣ୍ଡଳର ଯେ ଆଧିପତି
ଧର୍ମବନ୍ତ ରାଜା ତୁମ୍ଭ ଜଗତେ ବିଖ୍ୟାତି ।୧୯୯।
ଅଦୋଷେ ମରାଇଲୁ ତୁ ସଇନ ଲୋକଙ୍କୟେ
ସନ୍ନିଧେ ବସାଇ ତାଂକୁ ନିମନ୍ତ୍ରଣ କରୟେ ଧନୁର୍ଜୟେ ।୨୦୦।
କଟକରେ ଉତ୍ସବ ଯେ କରାଇଲା ନରପତି
ଅର୍ଜୁନ ବିଜେକଲେ ଯେ ଉତ୍ତର ଜଗତି ।୨୦୧।
ଅକ୍ଷତ ଯୋଗାଡ଼ ତାଙ୍କୁ ଦିଲେକ ଫାଲଗୁନ
ରାଜସୂୟ ଯାଗସଭାକୁ ଯାଅ ଯା ତୋର ଆଠସନ୍ୟ ଘେନି ।୨୦୨।
ବହୁତ ଦ୍ରବ୍ୟ ଘେନି ରାଜା ଦେଖା ଦରଶନ
କଟକୁଂ ବାହାର ହୋଇଲା ରାୟେ ଶୁଭଲଗ୍ନ ଘେନି ।୨୦୩।

ଚତୁଂର୍ଣ ଥାଠ ଚଳାଇ ଯେ ବୀରବର ପାଥ
ପଶିଲେ ଅର୍ଜୁନ ଯାଇ ଅସ୍କନ୍ଦ ବନସ୍ତ ।୨୦୪।
ଅସ୍କନ୍ଦ ବନେ ଅରୁଣ ଉଲ୍ଲୋଳ ବେଣି ପରବତ
ନନ୍ଦୀଗ୍ରାମ ବୋଲି ତହିଂ ନଗ୍ରେକ ବଡ଼ ସୁସ୍ଥ ।୨୦୫।
ବେନିଶତ ଯୋଜନ ସେ ରାଜ୍ୟର ଆୟେତନ
କଟକ ମାଡ଼ ବସି ଅଛଇ ସେ ଏକାଦଶ ଜୁଣ ।୨୦୬।
ସେ ରାଜ୍ୟର ରାଜା ନନ୍ଦୀକେଶ୍ୱର ବୋଲି ନାମ
ନନ୍ଦୀକେଶ୍ୱର ପ୍ରସାଦେ ତାକୁ ଜଣନ୍ତା ନାହିଂ ସାଂଗ୍ରାମ ।୨୦୭।
ଅର୍ଜୁନ ଭେଟେକଲେ ସେ ରାଜାର ଦେଶେ
ଜଣସ୍ତ୍ର ପାଚେଶ୍ୱ ସେ ସମସ୍ତ ଗୃହବାସେ ।୨୦୮।
ଅଣି ସାଗର ଘର ବସଇ ସେ କଟକ ଭିତର
ସୁବର୍ଣ୍ଣରେ ନିରମାଣ ସେ ସବୁଂକର ଘର ।୨୦୯।
ସୁବର୍ଣ୍ଣର କଳସ ବସଇ ପୀଡାର ଉପରେ
ନେତର ପାତାଙ୍ଗ ଯେ ଉଡ଼ଇ ଫରହରେ ।୨୧୦।
ପରରାଷ୍ଟ୍ରେ ଦବାଗ୍ନି ସେ ନୋହଇ ମହାରାଜା
କୁବେର ସମାନେ ସେ ନନ୍ଦୀକେଶ୍ୱରଂକୁ କରଇ ପୂଜା ।୨୧୧।
ଶତ୍ରୁ ଉପଦ୍ରବ ତାକୁ ନାହିଂ ଚତୁର୍ଦ୍ଦିଶେ
ସେ ରାଜାର ପାଳଣନ୍ତେ ଦେବେ ବାସନ୍ତ ଆକାଶେ ।୨୧୨।
ଭଗବନ୍ତେ କରଣ ସେ ବାସେବର ଆମ୍ଭଜେ
ସମଦଣ୍ଡ ଘେନି ପଶିଲେ ସେ ନନ୍ଦୀକେଶ୍ୱର ରାଜ୍ୟେ ।୨୧୩।
ନନ୍ଦୀସଦନ ବୋଲି ଯେ ଏକଇ ନଦୀ ଗୋଟିଏ
ସେ କଟକ ଦକ୍ଷିଣ ଆଡ଼େ ବହଇ ସୁବର୍ଣ୍ଣ ରଜୋମୟେ ।୨୧୪।
ସେ ନଦୀରେ ସ୍ନାହାନ ଯେ କରଇ ବୀର ଫାଲଗୁନି
ସୁବର୍ଣ୍ଣ କାନ୍ତି ପ୍ରାୟେ ଦିଶିଲେ ସମସ୍ତ ସଇନି ।୨୧୫।
ନିତ୍ୟକର୍ମ ସାରଣ ସେ ରାଜ୍ୟେ ପଇବେଶ
ବାଜଇ ଦୁନ୍ଦୁଭି ଯେ ଦାରୁଣି ବଜଘୋଷ ।୨୧୬।

---

୨୦୫।୧ ଅସ୍କନ୍ଦ ବନେ ଅରୁଣ ଉଦୟ ପରବତ । (ଠ,ନ,ଘ,ଖ)
୨୧୪।୧ ଜଣସ୍ତ୍ର ବାହ୍ମଣୀ ବୋଲି ଏକ ନଦୀ ଗୋଟିଏ । (ଛ.ପ)

ରାଜାର ଆସ୍ଥାନକୁ ଯେ ଶୁଭିଲା ଗରୁବାଦ୍ୟ
ନୃପତିଙ୍କ ଜଣାଇଲା ସେ ମନ୍ତ୍ରୀ ଶିବପାଦ ।୨୧୭।
ସ୍ୱାମୀ ରଥ ଗଜ ଅଶ୍ୱ ପାଦାନ୍ତ ଅଳପ ସଇନ
ରାଜ୍ୟେଣ ପଶିଲେ ଆସି ଦେବ ମୋହଇ ଭୁବନ ତିନ ।୨୧୮।
ମନ୍ତ୍ରୀର ବଚନେ ବୋଇଲା ନୃପତି ନନ୍ଦୀକେଶ୍ୱର
କେଉଂଣ ଦେଶର ରାଜା ହୋ ବୁଝିଣ ତଥ୍ୟକର ।୨୧୯।
ପରଥାଠ ହୋଇଲେ ଆଣ ମୋହୋର ଗ୍ରାମୁକୁ ଧରି
ବନ୍ଧୁପଣେ ଅଇଲେ ଆଣସିରେ ଗଉରୋବ କରି ।୨୨୦।
ରାଜାର ବଚନେ ସେ ମନ୍ତ୍ରୀ ଶିବପାଦ
ଅର୍ଜୁନ ଗ୍ରାମୁକୁ ଚଳଇ ସେ ମନର ସାନନ୍ଦ ।୨୨୧।
ଅର୍ଜୁନ ପଶି ଅଛନ୍ତି ଯେ ନନ୍ଦୀକେଶ୍ୱର ଦେଉଳେ
ବିନୟ ଭାବେ ସେବିଲେ ପ୍ରସନ୍ନ ସୁତଳେ ।୨୨୨।
ଶୁଦ୍ଧ ସଫ୍ଟିକ ପ୍ରାୟେ ଦିଶଇ ନନ୍ଦୀକେଶ୍ୱର ମୂରତି
ମର୍କତ ପଷାଣ ପ୍ରାୟେ ଦିଶଇ ଲିଙ୍ଗର ଆକୃତି ।୨୨୩।
ଜୟ ଜୟ ଦୁର୍ଜ୍ଜ ଈଶ୍ୱର ନନ୍ଦୀକେଶ ସ୍ୱାମୀ
ଦିଗାଙ୍ଗ ମୁ ରୁଧୁନା ଯାହାର ଚରଣେ ଭ୍ରମି ।୨୨୪।
କର୍ମିଣ୍ୟ ପୁରୁଷ ତୁ ଜୟତୁ ଧବଳା
ସର୍ବଦା ପ୍ରସନ୍ନ ମୋତେ ହୁଅ ମତ୍ତଖେଳା ।୨୨୫।
ଦକ୍ଷିଣେ ବଜେକର୍ଣ୍ଣିକଠାର ବାମକରେ ତ୍ରିଦଣ୍ଡ
ଉଦଣ୍ଡ ଲଲାଟ ପାଟି ଆସନ ତ୍ରିପୁଣ୍ଡ୍ର ।୨୨୬।
ଦୁସହ ଦୁରନ୍ତକ ତୁ ହରନ୍ତା ଦେବ ଶୂଳୀ
ନୃତ୍ୟରଙ୍ଗ ଖେଳେ ପ୍ରସନ୍ନ ତୋତେ ହୋଇଲେ କାପାଳୀ ।୨୨୭।
ଜଟାକୁଣ୍ଡଳ ଯେ ଶ୍ରୀକରେ ଅଧାନ୍ତି
ସପତସ୍ୱର ବୀଣାତାଳ ରସେଣ ଯେ ଖଟି ।୨୨୮।
କ୍ଷଣକେ ନୃତ୍ୟ କରଣ କ୍ଷଣକେ ଗୀତ ଗାଇ
ପାଇଲୁ ଅଭୟେ ବର ଶିବଂକୁ ମନାଇ ।୨୨୯।

୨୨୫।୨ ସଦୟେ ମୁଦ୍ରାରେ ପ୍ରସନ୍ନେ ମତଖେଳା । (ଚ)
୨୨୮।୧ ଜଟା କୁଣ୍ଡଳ ତୋର ହୃଦେ ଧାରଣଟି । (ଙ,ଚ)
୨୨୮।୨ ସପ୍ତଫେଣୀ ସର୍ପ ତୋର ହୃଦେ ଧାରଣଟି । (ଗ)

ବିଘ୍ନ ବିନାଶନ ନାଥ ସଦୟେ ବ୍ରହ୍ମବେତ୍ତ
ଭଗତଜନ ମଙ୍ଗଳ ପରଦୁଃଖେ କରୁ ଚିନ୍ତା ।୨୩୦।
କପିଳାସ କନ୍ଦରେ ତୁମ୍ଭ ସିଂହଦ୍ୱାରେ ଦ୍ୱାରପାଳ
ତୋହୋର ଭୟେ ପଶିତ ନୁଆରନ୍ତି ଦଇତ ଦିଗପାଳ ।୨୩୧।
ଦଣ୍ଡେକ ରହ ଯେ ବୋଇଲୁ ଦେବତାଂକୁ
ସତ୍ୟଯୁଗେ ସତର ଲକ୍ଷ ବରଷ ଗଲା ଦଣ୍ଡେଣ ତାହାଂକୁ ।୨୩୨।
ତୁ ଦେବ ପରମାନନ୍ଦ ଅଟୁ ପରମ ଯୋଗୀ
ଯାହାର ନାମ ଧରନ୍ତେ କୃତାନ୍ତେକ ଦର୍ପ ଭାଙ୍ଗି ।୨୩୩।
ତବ ଚରଣେ ଭଗତି ସର୍ବଦା ମୋର ସେବା
ଶ୍ରୀ ମହା ଭଇରବ ନାଥ ମୋତେ ପ୍ରସନ୍ନ ହୋଇବା ।୨୩୪।
ତୁ ଦେବ ଶରଣ ଉଦ୍ଧାରଣ ସର୍ବ କାଳେ
ଜନ୍ମେ ଜନ୍ମେ ସେବାଥାଉ ମୋର ନନ୍ଦୀକେଶ୍ୱର ପାଦତଳେ ।୨୩୫।
ସଦାଶିବର ନନ୍ଦନ ତୁ କଳ୍ପ କଳ୍ପ ଜତା
ଯେ ଭବ ସାଗରୁ ମୋତେ ତୁମ୍ଭ ସେ ଉଦ୍ଧାରନ୍ତା ।୨୩୬।
ଶ୍ରୀ ନନ୍ଦୀକେଶ୍ୱର ସ୍ୱାମୀ ନମସ୍ତେ ନମସ୍ତେ
ଶୂଦ୍ରମୁନି ସାରଳା ଦାସକୁ ଭଗତି ପ୍ରାପତେ ।୨୩୭।
ଆହୋ ଅନେକ ବିନୋଧୀ ଯେ ହୋଇଲେ ଫାଲଗୁନି
ଭଗତେ ପ୍ରସନ୍ନ ସ୍ୱାମୀ ତାକୁ ହୋଇଲେ ମହାଗ୍ୟାନୀ ।୨୩୮।
ବିଜୟେ ରୁଦ୍ରଗଣ ଘେନି ରୁଦ୍ର ଦେବତା
ଦେଖି ପାଦତଳେ ଅର୍ଜୁନ ହୋଇଲେ ପ୍ରଣମିତା ।୨୩୯।
ହାଥେ ମାଳାଏକ ଘେନି ଗିରଜାର ବାଳା
ଅର୍ଜୁନର କଣ୍ଠେ ନେଇ ଲମ୍ବାଇଲେ ଜୟମାଳା ।୨୪୦।

---

୨୩୦।୧ ବିଘ୍ନ ବାରଣ ନାଥ ସଦୟେ ଯୋଗଭେଳା । (ନ,ଘ)
୨୩୦।୨ ଭଗତଜନ ମଙ୍ଗଳ ପରଲେକେଣ ଲୀଳା । (ଘ)
୨୩୬। ସଦାଶିବର ନନ୍ଦନ ତୁ କଳ୍ପ କଳ୍ପ ଜୀବା
ଯେ ଭବ ସାଗରୁ ମୋତେ ଉଦ୍ଧାର ସଦାଶିବା । (କ,ଓ,ଘ,ଥ)
୨୩୭।୧ ଶ୍ରୀ ନନ୍ଦୀକେଶ୍ୱର ସ୍ୱାମୀ ସ୍ତୋତ୍ର ମନ୍ତ୍ର ପଢ଼ନ୍ତେ । (ଝ,ପ)
୨୪୦।୧ ହାଥେ ମାଳାଏକ ଘେନ ଭୂମିଜାର ବାଳା । (ଝ,ଛ,ଡ,ପ)

ପ୍ରସନ୍ନେ ଆଗ୍ୟାଂ ତାଂକୁ ହେଲେକ ଦୁଷ୍ଟ ବଣ୍ଵବାସୀ
ବାଞ୍ଛା ସିଦ୍ଧହୋଉ ତୋର କଲ୍ୟାଣ ହୁଅସି ।୨୪୧।
ସେ ନନ୍ଦୀଗ୍ରାମରେ ନନ୍ଦୀକେଶ୍ଵର ନୃପତି
ତାହୋର ପାଦପଦ୍ମେ ସର୍ବଦାସେ ହୋଉଥାଉ ଭଗତି ।୨୪୨।
ନନ୍ଦୀକେଶ୍ଵର ପ୍ରସନ୍ନେ ନନ୍ଦୀକେଶ୍ଵର ରାଜା
ଅର୍ଜୁନର ପାଦପଦ୍ମେ ଯାଇଂ ସେ ବନ୍ଦନ କରଇ ପୂଜା ।୨୪୩।
ଦେଖିଣ ସାନନ୍ଦ ସେ ପାଣ୍ଡବ ଫାଲଗୁନି
ନିମନ୍ତ୍ରଣ କଲେ ତାହାକଇଂ କରେଣ ଅର୍ଘ୍ୟ ଘେନି ।୨୪୪।
ବାବୁ ସମଦଣ୍ଡ ଘେନିଣ ତୁ ଯାଅସି ପରମ ଯୋଗୀ
ବାରଣାବନ୍ତ ସଭାକଇଂ ତୁ ଚଳିଣ ଯାଅ ବେଗି ।୨୪୫।
ଅର୍ଜୁନର ପାଦତଳେ ନନ୍ଦୀକେଶ୍ଵର ନୃପତି ପ୍ରଣମି
ଆଗ୍ୟାଂ ପରମାଣେ ସେହିକ୍ଷଣି ଯିବଇଂ ଦେବସ୍ଵାମୀ ।୨୪୬।
ଯଦ୍ୟପି ଅନୁଗ୍ରହ ମୋତେ କଲୁ ଦେବ ଫାଲଗୁନି
ଭଗତି ଭାବେ ମାଗିବ ଘେନିମା ଦଇନି ।୨୪୭।
ଅର୍ଜୁନ ବୋଇଲେ ମାଗ ଯେ ତୋହୋର ଇଚ୍ଛା
ସମାଗୋଷ୍ଟୁକୁ ଛାଡି ମାଗ ଯେ ତୋହୋର ମନବାଞ୍ଛା ।୨୪୮।
ଶୁଣିଣ ନୃପତି ଯେ ହୋଇଲା ମଉନବ୍ରତ
ଦଣ୍ଡ ଘେନି ବାହାର ହୋଇଲା ଆଗ୍ୟାଂ ନିବେଶିତ ମାଥ ।୨୪୯।
ଅର୍ଜୁନ ବୋଇଲା ହୋ ଚଳ ଯା ହବାରଣେ
ମୋହୋର ଯିବା ମାସେ ତୁ ଥିବୁଟି ବାରୁଣାବନ୍ତେ ।୨୫୦।
ତହୁଂଣ ଧନୁର୍ଜୟେ ଚଳଲେ ନନ୍ଦୀଗ୍ରାମ ଜିଣି
କଳପି ରାଜ୍ୟେ ଯାଇଂ ତଜସ୍ସେ ବୀରମଣି ।୨୫୧।
ଶୃଣୁରସେନ ବୋଲି ତହିଂର ନୃପତି
ଛାମୁରେଣ ଜଗରା ଯାଇଂ ଜଣାଇଲା ଝାଡି ।୨୫୨।
ସ୍ଵାମୀ କେଉଂଣ ଦେଶର ରାଜା ଦଣ୍ଡ ଗୋଟିଏକ ଘେନି
ରଥ ଗଜ ଅଶ୍ଵ ବହୁତ ନାହିଂନା ସଇନି ।୨୫୩।

---

୨୪୭।୨ ଭଗତ ଭାବେ ମାଗିବ କଥାସେ ମୋହୋର ଦେବ ଅଛୁ ।
(କ,ଡ,ଝ,ପ,ଭ,ଥ)

*

ଦେବଗଣ ଦୁନ୍ଦୁଭି ଯେ ବାଜଇ ଅପ୍ରମିତା
ବହୁତ ରାଜ୍ୟ ଜିଣି ସେ ପ୍ରତାପ୍ୟାଂ ବଳବନ୍ତା ।୨୫୪।
ଅନେକ ପ୍ରତାପ୍ୟାଂ ଯହୁଂ କହିଲେ ତାଗରେ
ଶୁଣି କୋପାନଳେ ସେ ଗୃଣୁର ନରବରେ ।୨୫୫।
ଯମର ଅର୍ଗଳ ଭାଂଜଇ ମୋହୋର କୋପକଲେ
ଆଦିତ୍ୟ ଲୁଚଇ ଯାହାର ଥାଠ ପଲଣିରେ ।୨୫୬।
ବରୁଣରଥହୁଂ ମୁହିଂ ଆଣୁଅଛଇଂ ସନ୍ଧାନ
ଉପ୍ତେଣ ନାଗଲୋକେ ହଅନ୍ତି ପଞ୍ଚାଶ ଭର ଧନ ।୨୫୭।
ପ୍ତେ ଉତ୍ତର କୋଶଳେ ମୁହିଂ ଅଟଇ ଜଗୁଜତା
ସଂଗ୍ରାମେ ଛତ୍ରୀ କେହି ମୋତେ ନାହିଂନା ଜଣନ୍ତା ।୨୫୮।
ରାଜାର ପ୍ରତାପ୍ୟାଂ କରୁଂ ଅର୍ଜୁନର ସଇନ୍ୟ
କଟକେ ପଶିଲେ ଯାଇଂ କରଣ ଘୋର ଧୂନ୍ୟ ।୨୫୯।
ଜଗଣ୍ଟରେ ଥାଇଂ ରାଜା ଦେଖିଲ୍ଲ ଯମଦଣ୍ଡ
କୋପେଣ ନୃପତି କରେ ଧେନିଲ୍ଲ କୋଦଣ୍ଡ ।୨୬୦।
ଦଶ ଅକ୍ଷୁହିତ ମାଲ୍ଲ ଧେନିଣ ମହାବୀର
ପ୍ରତାପ୍ୟାଂ ବାହାନାଦେ କଂପିଲ୍ଲ ବସୁନ୍ଧର ।୨୬୧।
ଧାମନ୍ତେ ଦୁର୍ଦ୍ଧର୍ଣ୍ଣ ବଳ ବାହାନନ୍ତ ତେଜ
ରେ ରେ କାର ଶବଦେ ଉଠିଲେ ଗଳଗାଜ ।୨୬୨।
ଯେସନେକେ ଗିରିବରେ ଆସନ୍ତି ଉପୁଡି
ଗିରିବର ସାଦୃଶ୍ୟେ ଶରୀର ଦିଶଇ ତାହାଂକର ।୨୬୩।
କରେଣ ଧେନିଛନ୍ତି ବୀରେ ଲୋହାର ବେନି ଗଦାବର
ପ୍ତେକ ପ୍ତେକ ଗଦା ଅଟେ ଅଶି ଅଶି ଭର ।୨୬୪।
ସନ୍ୟ ମଣ୍ଡଳ ଘୋଟିଅଛୁ ମାଲ୍ଲଂକର ବେନିବାହୁ
ଅଧର ବିକାଶନ୍ତେ ଦିଶଇ ଯେହ୍ନେ ରାହୁ ।୨୬୫।
ବୀରମର୍ଦ୍ଦଳ ବିଜଘୋଷ ବୀରଦାଣ୍ଡି ବଜାଇ
ବୀରଘଣ୍ଟ ବୀରବାଦ୍ୟ ବୀର କାହାଳ ଘୋରନାଦେ ଫୁରଇ ।୨୬୬।

୨୬୫। ଶୂନ୍ୟ ମଣ୍ଡଳ ଘୋଟିଅଛୁ ବୀରବାହୁ
ଶୂନ୍ୟ ମଣ୍ଡଳ ଘୋଟିଲ୍ଲ ପ୍ରାୟେ ଦିଶଇ ବେନିବାହୁ ।
(ଡ,ଙ,ଖ,ଛ)

ଘୋର ବାଦ୍ୟନାଦ ଶବଦେ ଯେ କୁରୁମ ଚମକଇ ।୨୬୭।
ଆରେ ଆରେ ବୋଲଣ ଧାଇଂଲେ ସର୍ବଙ୍ଗରେ
ଅର୍ଜୁନର ଆଗିଆଣି ଥାଠକୁ ଓଗାଳଲେ କଟକ ବାହାର

ଦ୍ଵାରେ ।୨୬୮।

ଗଦାନ୍ତ ବୁଲାଇଣ ଗରଜନ୍ତ ନୃପମଣି
ଭୁବ ଭୁବନ କମ୍ପିଲା ଉଲ୍କାପାତ ଜାଣି ।୨୬୯।
ଦୃଷ୍ଟର ବଳ ଦେଖି ଅର୍ଜୁନର ବେନି ସେନାପତି
ରଥ ଚଢି ବେନିଦ୍ଵାରେ ହୋଇଲେ କୋପମୂର୍ତ୍ତି ।୨୭୦।
ମହାଛତ୍ରୀ ବଳବନ୍ତା ସେ ଅଟନ୍ତି ଅରି ଦର୍ପ ଭଞ୍ଜା
ସମରେ ଅଭୟା ସେ ଦୁରନ୍ତେକ ଦର୍ପ ଗଞ୍ଜା ।୨୭୧।
ସମର ସମ୍ମୁଖେ ଯେ ହୋଇଲେ ବେନି କଚ୍ଛ
ଓହୋବଳ ଯାଗ୍ରାମେ ନୋହିଲେ କେହି ଓଚ୍ଛ ।୨୭୨।
ଧାଇଂଣ ପ୍ରହାର କଲେ ଗୃଷ୍ଟର ବଳମାନେ
ରଣେ ଅନିବାରଣ ସେ ପାଣ୍ଡବ ସଇନେ ।୨୭୩।
ମହାମଲ୍ଲମାନେ ଯେ ଦୁସହ ବେଷେ ଉଠି
ଅର୍ଜୁନର ସଇନକୁ ଗାଡେଣ ଆସି ଘୋଟି ।୨୭୪।
ସଇନର ନିଗ୍ରହ ଦେଖିଣ ପାର୍ଥିବ
ଗର୍ଜିଣ ସବ୍ୟସାଚୀ କରେ ଧଇଲେକ ଗ୍ରୀବ ।୨୭୫।
ବଜ୍ରମୁନା ନାରାଜ ଧଇଲେ ବୀର କରେ
ଆକ୍ଷେପି ପ୍ରହାର କଲେ ସେ ମାଲଂକ ଉପରେ ।୨୭୬।
ଆକ୍ଷେପି ଗାଡେ ବନ୍ଧନ୍ତେ ତାହାଂକ ଶରୀରେଣ ପଡ
ନ ବହଇ ନାରାଜ ଭୂମିରେ ପଡେ ଝଡ ।୨୭୭।
ଯହୁଂ ଶସ୍ତ୍ର ନ ଭେଦଲା ମାଲଂକର ବଜ୍ରସେହା
କୋପେଣ ବାସବ ଯେ ବନ୍ଧିଲା ଖ୍ଷମୁନା ।୨୭୮।
ହୃଦରେ ନାରାଜମାନ ଯହୁଂ ବହୁତ ହୋଇଲା ବୃଷ୍ଟି
ରୋମେ ରୋମେ ନିକଳ ଦେହେ ଯାଇଂ ଫୁଟି ।୨୭୯।

୨୭୨।୧ ମହା ଅନଳ ତେଜ ବାଣ ମାଲ୍ଲମାନଂକ ଉପରେଣ ପଡ଼

(ଟ,ପ,ଛ)

ରୋଧିରେ ବିପନ୍ତ ହୋଇଲେ ସବୁଂକର କାୟେ
ହଣନ୍ତ ସମସ୍ତେ ସେ ଯେ ଯୋଗୀବୃନ୍ଦ ପ୍ରାୟେ ।୨୮୦।
ଏକ ପଡନ୍ତେଣ ଆରେକ ଉଠନ୍ତ ଗଳଗାଜ
କେ ନିସତ ହୋଇଣ ଯେ ପଳାବନ୍ତ ରଣୁଂ ଭାଜି ।୨୮୧।
ବହୁତ ନାଗଜ ଯହୁଂ ବନ୍ଧିଲେ ବବସ୍ତ୍ର
ଦନ୍ତେଣ ତରଣ ଘେନି ସେ ବୋଲନ୍ତ ରଖ ରଖ ।୨୮୨।
ପ୍ରଚଣ୍ଡ ମାଲ ବୋଲଣ ସେ ଏକ ମହାବୀର
ମେଦନୀ ନ ସହଇ ସେ ଦୁଷ୍ଟ ମାଲଂକର ଭାର ।୨୮୩।
ବଜ୍ରାବଳୀ ବେଡ଼ାଗଦା ବୁଲାଇଣ ବୀର ଉଠି
ଅର୍ଜୁନ ନାରଚେ ତାର ଶରୀରୁ ହୋଅଇ ରୋଧିର ବୃଷ୍ଟି ।୨୮୪।
ରୋମ ରୋମକେ ନାରାଚ ଭେଦିଲେ ତାର କାୟେ
ଯେସନେକ ଶରୀର ହଣଇ ଝିଂକପଛୀ ପ୍ରାୟେ ।୨୮୫।
ଲକ୍ଷ ଲକ୍ଷ ନାରାଚ ଯେ ବନ୍ଧଇ ଫାଲଗୁନି
ତଦ୍ୟାପି ନ କମ୍ପଇ ସେ ବୀରବର ଅମାନ୍ୟ ।୨୮୬।
କରେଣ ଚକ୍ର ବୁଲାଇ ମାଇଲେ ବୀର ପାଥ
ମୁଣ୍ଡ ଛୁଡପଡିଲା ଯାଇଂ ଗୃଣୁର ରାଜାର ଅଗ୍ରତ ।୨୮୭।
.ଦେଖିଣ ମୃଷାଗତ ହୋଇଲା ସେ ଗୃଣୁର ମହାମଲ୍ଲ
ଅସାଷ୍ଟମ ହୋଇଣ ରଜା ପଡିଲା ମହୀତଳ ।୨୮୮।
ପ୍ରଚଣ୍ଡ ମାଲ ପଡନ୍ତେ ଭାଙ୍ଗିଲା ସନ୍ୟବଳ
ରଥରୁ ଓହ୍ଲାଇ ସେ ବାସବର ବାଳ ।୨୮୯।
ପାଦଗତ ହୋଇ ଧଇଲା ସେ ଗୃଣୁରର ବାଳ
ଆକ୍ଷେଷି ମାରନ୍ତେ ଖଣ୍ଡା ବାସବ ଦୁଲାଳ ।୨୯୦।
ଦଶନହ ଗୃଣୁର ସେନ ଭରିଲା ନେଇ ମୁଖ
କ୍ରୋଧେଣ ଡାକ ହଅଇ ଅର୍ଜୁନ ରଖ ରଖ ।୨୯୧।
ଅର୍ଜୁନ ଦୟାକଲେ ତାହାର ଅବସ୍ଥା ଦେଖି
ଛାଡିଲା କେଶ ପାଥ କୋପ ତାକୁ ଉପେକ୍ଷି ।୨୯୨।
ଶରଣ ରକ୍ଷଣ ପାଣ୍ଡବ ସେ ପରଦୁଖେ ଦୁଖୀ
ବରଥୀ ହଣହସ୍ତ ହୋଇଥିଲେ ଶରଣ ବୋଇଲେ ରଖି ।୨୯୩।

ଗୁଡ଼ଲା କେଶ ତାର ଫହରଲା ଅସିବର
ପ୍ରଣପତ୍ୟ ହୋଇ ଶୁଚେତ ଗୃଣୁରସେନ ନୃପବର ।୨୯୪।
ଅର୍ଜୁନକୁ ବିନୟ ହୋଇଣ ସର୍ବଯୋଧୀ
ପଞ୍ଚ ଅହ୍ୱବ୍ରତ ଯୋଦ୍ଧା ପଡ଼ିଲେ ରଣ ମଝି ।୨୯୫।
ଅର୍ଜୁନ ବୋଇଲେ ମନ୍ତ୍ରୀ କି ନ କହ୍ୱିଲା ତୋତେ
ଯେତେ ବଡ଼ ପ୍ରମାଦ ରାଜା ଚିନ୍ତିଲୁ କେମନ୍ତେ ।୨୯୬।
ଗୃଣୁର ବୋଇଲା ଦେବ ମୁଂ ଉତ୍ତରେଣ ମହାମଲ୍ଲ
ତୁହ୍ୱି ସେ ମର୍ଦ୍ଦିଲୁ ନା ମୋହୋର ଦର୍ପବଳ ।୨୯୭।
ମନ୍ତ୍ରୀ ଉଗର କହ୍ୱିଲେ ସବୁ କଥା ଜାଣି
ଯେତେ ବଡ଼ ମହ୍ୱିମାଂ ବୋଲ ସ୍ୱାମୀର ମୁଂ ନୁଆରିଲି ଚିହ୍ନି ।୨୯୮।
ମୁଂ ହୀନ ପାମର ହୋଇ ହରାଇଲି ସର୍ବବୁଦ୍ଧି
ଆପଣେ ନାଶକଲି ଦେବ ଅର୍ଜିଲା ସମ୍ପୃଦ୍ଧି ।୨୯୯।
ସ୍ୱାମୀ ଯେବେ ସେ ଦେଖିଲ ଯମାଗୋଷ୍ଟି ବନ୍ଧନ ତୋର ଇଥେ
ଇତର ରାଜାମାନେ ଆଉର ବ୍ରିଡ଼ିବେ କେମନ୍ତେ ।୩୦୦।
ଅର୍ଜୁନ ବୋଇଲେ ତୁ ଆମ୍ଭ ହିତକାରୀ
ନାଶଗଲା ସଇନ୍ୟ ତୋତେ ଦେଇ ତ ନୁଆରି ।୩୦୧।
ଅନେକ ପୁରୁଷାର୍ଥ ତୋତେ କରିବା ମହାଯଗ୍ୟେଂ
ତୋର ମହ୍ୱିମାଂ ଅନେକ କହ୍ୱିବ ଭୀମସେନ ଠାକୁରଂକ ଆଗେ ।୩୦୨।
ଆହେ ଗୃଣୁର ମଲ୍ଲ ତୋର ଯେତେକ ସଇନ୍ୟ
ବାରୁଣାବନ୍ତକୁ ଯାଅ ଯା ତୋର ପାରିଦଣ୍ଡ ରାଜାମାନନ୍ତ ଘେନି ।୩୦୩।
ସେ ଗୃଣୁର ମହାମଲ୍ଲ କରଇ ବହୁତ ସେବା
ଆଜକ ସ୍ୱାମୀ ମୋର କଟକେ ରହ୍ୱିବା ।୩୦୪।
ସ୍ୱାମୀ ଯେ ମୋହୋର ରାଜ୍ୟେ ବୀରେ ଅଟନ୍ତ ମହାଯୋଧୀ
ଦେଖ ମୋହୋର ରାଜ ଭୁବନର ସମୃଦ୍ଧି ।୩୦୫।
ଦେଖ ମୋହୋର ରାଜ୍ୟ ସର୍ବ କଳପି
ଦ୍ରଶନ ମାତ୍ରେ ତରିବେ ସର୍ବ ମହାପାପୀ ।୩୦୬।
ଅର୍ଜୁନ ବୋଇଲେ ମୁଂ ଦେଖିଲି ତୋର ଦେଶ
ଅଳକାପୁର ଜାଣି ତୋର ଭୁବନ ବିକାଶ ।୩୦୭।

ଉତ୍ତର କୋଶଳେ ମହାପ୍ରସିଦ୍ଧ ଭୂ ଅଟ୍ଟୁ ମହାରାଜା
ଯେବେ ବନ୍ଧନ ହୋଇ ବାରୁଣାବନ୍ତକଇଂ ଯା ଯା ।୩୦୮।
ନିମନ୍ତ୍ରଣ ଯୋଗାଡ଼ ତାଙ୍କୁ ଦିଲେକ ସବ୍ୟସାଚୀ
ଦେଖା ଦରଶନ ତୋର ଯେତେ ଧନ ଅଛି ।୩୦୯।
ପଞ୍ଚଶତ ଭାର ରାଜା ଘେନିଣ ପାଣିଦ୍ରବ୍ୟ
ଚନ୍ଦ୍ରପଦ୍ମ ମହାମାଲ ଘେନିଣ ଚଳଇ ଶ୍ୱଶୁର
ରାଜଦେବ ।୩୧୦—୫୨୪୬।

---

## ରୁଦ୍ରପୁର, ନଣ୍ଟଳପୁର, ସିନ୍ଧୁ ମହାଦେଶ ପ୍ରଭୃତି ରାଜାମାନଙ୍କୁ ନିମନ୍ତ୍ରଣ ଏବଂ ପଶୁପାଳ ରାଜ୍ୟେ ଅର୍ଜୁନଙ୍କର ଶିବ ଦର୍ଶନ

ଚଳଇ ଫାଲଗୁନି କଲପି ରାଜ୍ୟ ଜିଣି
ରୁଦ୍ରପୁର ନଗ୍ରେ ଯାଇଂ ପ୍ରବେଶ ପାଣ୍ଡବ ବୀରମଣି ।୧।
କପଟୀ ନାଗାଙ୍କରେ ସେ ରାଜାର ରାଜ୍ୟ
ମହାବାତ ନାମେ ତହିଂ ପରବତ ବିରାଜ ।୨।
ପବନ ବହୁଅଛ ସେ ମହାବତ ପରବତୁଂ
ବହଇ ମଳୟାନିଳ ଚଳଇ ମହାଧାତୁ ।୩।
ଆହୋ ଅର୍ଜୁନ ବିଜେକଲେ ସେ ମହାବାତ ପରବତେ
ବାଜଇ ଦେବଗଣ ଦୁନ୍ଦୁଭି ଅପ୍ରମିତେ ।୪।
ସେ ରୁଦ୍ରପୁର ନଗ୍ରେ ରାଜା ଅଟଇ କର୍ଣ୍ଣକେଶୀ
ଧୃଷ୍ଟଦ୍ୟୁମନଂକର ଶ୍ୱଶୁର ସେ ଜଙ୍ଗମ ତପସ୍ୱୀ ।୫।
ପରବସ୍ଥ ବୀରତୂର ଶବଦ ଘୋର ଶୁଣି
ଧାଇଂଲେ ସଇନ ତାର ଯେ ଯାନନ୍ତ ପଲାଣି ।୬।
ଶ୍ରେଷ୍ଠାର ତୁରଙ୍ଗମ ଚଲାଇ ଅତି ବେଗେ
ସଇନ ଭେଟିଲେ ଆସି ଅର୍ଜୁନର ଆଗେ ।୭।
ଆରେ କାହିଂର ଆଠରେ ଭୂ ଅଟ୍ଟୁ କେଉଁଂଣ ଦେଶୀ
ନ ପୁଚ୍ଛି ନ ପରୀକ୍ଷଣ ପର ରାଜ୍ୟେ କିଂପେ ପଶି ।୮।

ଆହୋ ପ୍ରାଣୀଂକ ବିପରୀତ ବୁଦ୍ଧି ନାଶିଯିବାର ବେଳେ
ମରଣକଇଂ କଢାଇଲ ନିଜେ ବିପଦର କାଳେ ।୯।
ଅଗିଆନ ଘରରେ କାଳସର୍ପେ ଖଡିଆଳ
କାଟିଣ ମାଂସ ତୁମ୍ଭର ରେ ଦେବଇଂ ବଶାବଳୀ ।୧୦।
ଆରେ ଶୁଣିଲୁ ନାହିଂ କରେ ରୁଦ୍ରମଣ୍ଡଳ ନୃପତି କର୍ଣ୍ଣକେଶୀ
ପ୍ରତ୍ୟକ୍ଷେ ବିରୂପାକ୍ଷ ସେ ଯେ ଅଭୟେ ବ୍ରହ୍ମଋଷି ।୧୧।
ଅର୍ଜୁନ ବୋଇଲେ ଯେ ସୁରେଶ୍ୱର ପ୍ରୋହିତଂକୁ
ଦ୍ରୋପଦୀ ପ୍ରଦାନ କାଳେ ଯେ ରାଜ୍ୟ ଯଉତୁକ ଦେଇଛନ୍ତି ମୁକୁ ।୧୨।
ଦ୍ରୋପଦ ରାଜାର ଯେ ଅଟଇ ସମ୍ବୋଧି
ଯାଅ ଯା ପ୍ରୋହିତେ ତୁମ୍ଭେ ପାରିଲେ ବେଗେ କର ସନ୍ଧି ।୧୩।
ଅର୍ଜୁନର ବଚନେ ସେ ଚଳିଲେ ପୁରୋହିତେ
ଗମନ୍ତା ଆଠକୁ ଆସି କରନ୍ତି ସନମତେ ।୧୪।
ଆହୋ ରହ ରହ ସଇନ ବୋଲି କରନ୍ତି ସମ୍ବୋଧନ
ପାଣ୍ଡବଇଂ ହକାରି ଆଣ ଆମ୍ଭର ସନ୍ନିଧାନ ।୧୫।
ନୋହୁ ଆମ୍ଭେ ପରରାଷ୍ଟ୍ର ନୋହୁ ଦ୍ୱନ୍ଦକାରୀ
ବାନ୍ଧବପଣ ଅଛଇ ତୁମ୍ଭର ଆମ୍ଭର ।୧୬।
ପ୍ରୋହିତେ କହିଲେ ଯହୁଂ ପୀରତି ସମ୍ମତା
ପାଣ୍ଡବର ଅଗ୍ରତେ ମୁନେହି କହିଲେ ବାରତା ।୧୭।
ପାଣ୍ଡ ପ୍ରବେଶ ହୋଇଲେ ପ୍ରୋହିତଂକ ଆଗେ
ପ୍ରୋହିତେ ବୋଇଲେ ପାଣ୍ଡ ରାଜାକଇଂ ବାରତା ତୁମ୍ଭେ କହ କନା
ବେଗେ ।୧୮।
ସୋମବଂଶେ ଜଗପତି ସେ ହସ୍ତିନା ଚନ୍ଦ୍ରବୃତ୍ତି
ପଣ୍ଡୁରାଜାଂକ ନନ୍ଦନ ଯେ ଯୁଧିଷ୍ଠିରଦେବ ନୃପତି ।୧୯।
ତାହାଂକର ସାନୁଜ ଯେ ଅଟନ୍ତି ବୃକୋଦର
ରାଜସୂୟ ଯାଗର ନିମନ୍ତେ ଜାରିକଇଂ କଲେକ ସଂହାର ।୨୦।

---

୧୧।୨ ପ୍ରସନ୍ନେ ବିରୂପାକ୍ଷ ସେ ଅଭୟେ ବିଶ୍ୱବାସୀ । (ଙ,ଚ,କ,ଛ,ଘ)
୧୭।୧ ପ୍ରୋହିତେ କହିଲେ ଯହୁଂ ପ୍ରୀତି ସଙ୍ଗୀତା । (ଖ,ନ,ଠ)
୨୦।୨ ରାଜସୂୟ ଯାଗର ନିମନ୍ତେ ଜାରିକଇଂ କଲେକ ପ୍ରହାର ।
(ଡ,ଙ,ଝ,ପ,କ)

ଭୀମସେନ ଠାକୁରଂକର ଯେ୍ସ ଅଟନ୍ତି ଅନୁଜ
ଯେ୍ସ ସେ ଅର୍ଜୁନ ହୋ କୋଇନ୍ତା ଦେବୀଂକ ଆତ୍ମଜ ।୨୧।
ଉତ୍ତର ଦିଗେ ବିଜୟେ୍ସ ପଣ୍ଡୁରାଜାଂକର କାର୍ଯ୍ୟେ
ରାଜାନ୍ତ ନିମନ୍ତ୍ରଣେ ପାର୍ଥ ଉତ୍ତର ଦିଗେ ବିଜେ ।୨୨।
ରାଧାଚକ୍ର ବିନ୍ଧିଲେ ଯେ୍ସ ପଞ୍ଚାଳ ନଗ୍ରରେ
ଲକ୍ଷେକ ନୃପତିଂକ ଜିଣିଲେ ସେ ଦ୍ରୁପଦ ସମ୍ଭ୍ରମରେ ।୨୩।
ପ୍ରୋହିତଂକ ବଚନେ ସେ ମନ୍ତ୍ରୀ ଜପାମାଳ
ଅର୍ଜୁନ ଅଗ୍ରତେ ଯାଇଂ ଭଗତି ପ୍ରତିପାଳ ।୨୪।
ସ୍ୱାମୀ ରାଧାଚକ୍ର ବିନ୍ଧି ବିଭା ହେଲ ଜନ୍ମସେନୀ
ଆମ୍ଭେ ଗଲାଇଂ ଯେ ଅନେକ ଯଉତୁକ ଯୋଗାଉନ୍ତ ଘେନି ।୨୫।
ବାହୁଡ ଯାଇଣ ମନ୍ତ୍ରୀ ଯେ କହିଲା ରାଜାଂକୁ
ବିନସ୍ତି କର ନରେନ୍ଦ୍ର ଆସି ନେଲ ଯେ କଟକକୁ ।୨୬।
ବହୁତ ଉତ୍ସବ ଯେ କରାଇଲା କର୍ଣ୍ଣକେଶୀ
ରାଜ୍ୟରେ ଧନୁର୍ଜଯେ୍ସ ପ୍ରବେଶ କରିଲେକ ଆସି ।୨୭।
ଅର୍ଜୁନକଇଂ ଭଗତି ସେ ହୋଇଲା ନରପତି
ବହୁତ ସାନନ୍ଦେ ରାଜା ଅନେକ ବିପୁତି ।୨୮।
ସ୍ୱାମୀ ମୋହୋର ଦୋହିତାର ନାମ ଅଟଇ କମଳା
ଧୃଷ୍ଟଦ୍ୟୁମନକଇଂ ପ୍ରଦାନ କଲାଇଂ ଅବଳା ।୨୯।
ଦେବ ଧୃଷ୍ଟଦ୍ୟୁମନ ଯେ ମୋହୋର ଅଟଇ ଜୁଆଇଂ
ବନ୍ଧୁପଣ ପାଳ ରାଜା ଅନେକ ବିନୋଯ୍ୟୀ ।୩୦।
ନିମନ୍ତ୍ରଣ ଯୋଗାଡ ଯେ ଦିଲେକ ଫାଲଗୁନ
ବାରୁଣାବନ୍ତକଇଂ ଯାଅ ଯା ତୁମ୍ଭର ଥାଠସନ୍ୟ ଘେନି ।୩୧।
କର୍ଣ୍ଣକେଶୀ ବୋଇଲା ସ୍ୱାମୀ ଆଜକ ମୋହୋର ପୁରେ ରହି
ରାଜ୍ୟ ମୋହୋର ପ୍ରତିଷ୍ଠା ହୋଉ ଦେବ କରିବା ମୁଣୋହି ।୩୨।
ଅର୍ଜୁନ ବୋଇଲେ ପିତାର ପାତକ ନିମନ୍ତେ
ଆମ୍ଭେ ସେ ଅନ୍ନଦାନ ଦେବୁଂ ହୋ ଅପ୍ରମିତେ ।୩୩।
ତୁମ୍ଭର ରାଜ୍ୟ ଆମ୍ଭର ନାହିଂନା ଭୋଜନ
ଥାଠସନ୍ୟ ଘେନି ତୁମ୍ଭେ ଯାଅସି ବହନ ।୩୪।

ନିମନ୍ତ୍ରଣ କଲେ ସେ ବୀରବର ଚନ୍ଦ୍ରବଂଶୀ
ଦଣ୍ଡ ପଲାଣି ଘୋଡ଼ା ଚଳାଇଲ ବିବାସିତ ।୩୫।
ସେ ରୁଦ୍ରପୁରୁଂ ବାହାର ଯେ ହୋଇଲେ ଧନୁର୍ଜୟେ
ପ୍ରବେଶ ଫାଲଗୁନି ଭେଟିଲ ରାଜ୍ୟଯେ ।୩୬।
ନୀଳଚନ୍ଦ୍ର ବୋଲଣ ଯେକଇ ନଗ୍ରପୁରେ
ବସଇ ମହାନଗ୍ର ଯେ ପୁଷ୍ପାନଦୀ ତୀରେ ।୩୭।
ନବଲକ୍ଷ ଘର ଚାର ଯେକା ନଗ୍ରେଶ ବସଇ
ସୁରବ୍ରହ୍ମ ବୋଲିକର ସେ ନୃପତି ଆଦେଶଇ ।୩୮।
ଅର୍ଜୁନ ବିଜୟେ କଲେ ସେ ନଦୀର କୂଳେ
ପ୍ରାତସ୍ନାନ ନିତ୍ୟକର୍ମ ଯେ ସାରନ୍ତି ସର୍ବମେଳେ ।୩୯।
ଦେବବାଦ୍ୟ ଦୁନ୍ଦୁଭି ଯେ ବାଜଇ ଘୋରନାଦେ
ପୃଥିବୀ ଉତସାହ ହୋଇଅଛି ମଧୁର ରସ ବାଦ୍ୟେ ।୪୦।
ଧନୁମାସ କୃଷ୍ଣପକ୍ଷ ଦ୍ୱିତୀୟା ଚନ୍ଦ୍ରବାର
ପୁନର୍ବସୁ ନକ୍ଷତ୍ରକୁ ଭୋଗ୍ୟ ସେ ଦିନର ।୪୧।
ଗର ନାମେ କରଣ ଇନ୍ଦ୍ରନାମେ ଯୋଗ
ବିଛା ଫକରାନ୍ତକ ଅଣତରିଶ ଦିନ ଭୋଗ ।୪୨।
ସେ ଦିନ ଅର୍ଜୁନ ବିଜେ ନୀଳଚନ୍ଦ୍ର ଦେଶେ
ଜଳକ୍ରୀଡ଼ା କୁତୂହଳ ସେ ନଦୀରେ କରନ୍ତି ହରଷେ ।୪୩।
ଆହୋ ସମଦଣ୍ଡ ଘେନିଣ ସେ ସୁରବ୍ରହ୍ମ ନୃପତି
ସେହି ଜଳକ୍ରୀଡ଼ା କରଇ ସେ ନଦୀର ଭିତରେ ନିତି ।୪୪।
ଅର୍ଜୁନର ସ୍ନାହାନର ବହି ଆସୁଅଛି ପାଣି
ବହଇ ଗନ୍ଧନଦୀ ଯେ କସ୍ତୁରୀ ବାସ ଜାଣି ।୪୫।
ମନ୍ତ୍ରୀକି ପଚାରଇ ସେ ସୁରବ୍ରହ୍ମ ନୃପମଣି
ବଡ଼ ସୁବାସ ସୁଗନ୍ଧିତ ବହଇ ପୁଷ୍ପାନଦୀର ପାଣି ।୪୬।
କେବଣ ଆଶ୍ରିତ ମନ୍ତ୍ରୀ ଯେ ବଡ଼ାଇ ଦୁଲଭ
ଆନନ୍ଦନେ ନ ହୋଇ ଯେସନେକ ସମ୍ଭବ ।୪୭।

---

୪୩।୨ ଜଳକ୍ରୀଡ଼ା କରନ୍ତି ଯେ ପରମ ହରଷେ । (ଝ,ଠ)
୪୫।୨ ବଡ଼ ସୁବାସ ସୁଗନ୍ଧିତ ବହଇ ଗଙ୍ଗାପାଣି । (ଙ,କ,ଅ,ଝ)



ଯେସନେକ ସମୟରେ ଜଣାଇଲା ଦେଶାନ୍ତର
ସ୍ୱାମୀ ଉତ୍ତର ଦିଗେ ବିଜେକଲେ ପାଣ୍ଡବ ସୁନ୍ଦର ।୪୮।
ଦୁଷ୍ଟକୃଷ୍ଣ ଅବତାର ସେ ପାଣ୍ଡବ ଫାଲଗୁନି
ଯମାଗୋଷ୍ଠୀକୁ ବନ୍ଧନ କରିଅଛୁ ସେ ପାଞ୍ଚଡୋରେକ ଘେନି ।୪୯।
ଦେବ ନ ଜାଣି ଯୁଦ୍ଧ ଯେ କରନ୍ତି ରାଜାଗଣେ
ବହୁତ ରାଜ୍ୟ ଧ୍ୱଂସନ ଗଲାନି ଉତ୍ତର ଦିଗ ବରଣେ ।୫୦।
ସକଳ ରାଜାମାନେ ଯାଉଛନ୍ତି ଦେଖା ଦରଶନି ଧନ ଘେନି
ପ୍ରତାପୀ ପାଣ୍ଡବ ସେ ଛନ୍ତି ମହାଗ୍ୟାନୀ ।୫୧।
ତଗର ମୁଖୁଂ ପାଇଣ ସେ ଯେସନେକ ବାରତା
ବୋଇଲା ଦଣ୍ଡପାଳ ରେ ମୋହୋର ସଇନି ସମସ୍ତ ।୫୨।
ପ୍ରସନ୍ନେ ନାରାୟଣ ସେ ବାସବ ତନୟେ
ଦ୍ରଶନେ ଦୁଷ୍କୃତ ମୋହୋର ପାତକ ଯାଉ କ୍ଷୟେ ।୫୩।
ନରେନ୍ଦ୍ରେଣ ଉତ୍ସବ ସେ କରାଇଲା ଦଣ୍ଡଧାରୀ
ଦାଣ୍ଡେଣ ପାଟେୁଡା ପାଡଇ ଝୀନବସ୍ତ୍ର ଶାଢୀ ।୫୪।
ଶତେକ ଭାର ଯେ ହୀରାରତ୍ନ ଘେନି
ସ୍ତ୍ରୀ ଶଉଖ ତାହାର ଯେ ମହାଦେଈ ବେନି ।୫୫।
ଆପଣେ ପାଟଛତ ଯେ ଘେନିଣ ନରପତି
ବେନି ଭାଇଯାଏ ତାର ସ୍କନ୍ଧରେ ଚାମର ଧରିଛନ୍ତି ।୫୬।
ଉଦଣ୍ଡ ଆଲମ୍ବ ଯେ ଘେନିଣ ଅମାତ୍ୟେ
ଅର୍ଜୁନକଇଂ ଦ୍ରଶନ କଲେ ଯାଇଂ ତପୋଧନ ପର୍ବତେ ।୫୭।
ପାଏ ଯାଇଂ ନିଉଛ୍ଳି ଯେ କରଇ ନୃପସାଇଂ
ସାଷ୍ଟାଙ୍ଗେ ଗଡଧାଳି ଶୁତିଲା ଦଣ୍ଡଲାଇ ।୫୮।
ଅର୍ଜୁନକୁ ଜଣାଇଲେ ଜୟେ ବିଜୟେ ଦୁଇ ସେନାପତି
ସ୍ୱାମୀ ଦ୍ରଶନ କରୁଅଛୁ ସେ ସୁରବ୍ରହ୍ମ ନରପତି ।୫୯।
ଆଗ୍ୟାଂ ଦିଲେ ପାଣ୍ଡବ ସୁନ୍ଦର ବୀରମଣି
ଆପଣେ ଶ୍ରୀଭୁଜେ କୋଳାଗ୍ରତ କଲେ ରାଜାକଇଂ ଆଣି ।୬୦।
କଟକେଣ ବିଜୟେ କଲେ ବୀରବର ପାର୍ଥ
ନିମନ୍ତ୍ରଣ ଦିଲେ ସୁରବ୍ରହ୍ମ ରାଜାଂକର ହାଥ ।୬୧।

ରାଜସୂୟ ଯଜ୍ଞ ଯେ ହୋଉଅଛୁ ଆମ୍ଭର
ତୋହୋର ଦଣ୍ଡସୈନ୍ୟ ଘେନି ଯାଅ ବାରୁଣୀବନ୍ତର ।୬୨।
ଅର୍ଜୁନ ବଚନେଣ ସାନନ୍ଦ ନୃପମଣି
ସମଦଣ୍ଡ ଘେନି ସ୍ୱାମୀ ଯିବଇଂ ସ୍ୱୈଦ୍ୱୟଣୀ ।୬୩।
ସାଜିଲେ ସଇନ୍ୟ ଯେ ରଥ ଗଜ ଅଶ୍ୱ
ସାତ କ୍ଷଉଣୀ ବଳ ତାର ସଇନ୍ୟ ଅଶେଷ ।୬୪।
ବାଜନ୍ତି ବୀରତୂର୍ୟ୍ୟ ଟମକ ଦାଉଣ୍ଡି
ଅନେକ ରତନେ ଯେ ସବୁଂକର ରଥ ମଣ୍ଡି ।୬୫।
ରଥର ଉପରେ ଡାଳମ୍ବା ଚାମରମୟେ
ଚଳନ୍ତି ତୁରଙ୍ଗମେ ଜଳେ ହଂସଯୂଥ ପ୍ରାୟେ ।୬୬।
ଆହୋ ସୁରବ୍ରହ୍ମେ ଚଳାଇ ତହୁଂ ଅର୍ଜୁନ ଚଳନ୍ତି ହରଷେ
ବଜସ୍ତେ ବାସବ ଯାଇଂ ସିନ୍ଧୁମନ୍ଦାର ଦେଶେ ।୬୭।
ମନ୍ଦାରଭଗୀ ବୋଲି ତହୁଂ ବହଇ ଯେକ ନଦୀଗୋଟି
ମନ୍ଦର ପର୍ବତୁଂ ଆସଇ ସେ ଉତ୍ତର ଭାଗୁଂ ଫୁଟି ।୬୮।
ଅନନ୍ତା ବଜସ୍ୱା ଯେ ସଙ୍ଗମ ତ୍ରିବାଧାର
ଉତ୍ତର ପୂର୍ବ ଦକ୍ଷିଣୁଂ ସେ ବହଇ ସାଗର ।୬୯।
ଅର୍ଜୁନ ବଜସ୍ତେ କଲେ ସେ ତ୍ରିବେଣୀ ଗଙ୍ଗାକୂଳେ
କଉସ୍ତୁଭ ପର୍ବତେ ସେ କର୍ମଣ ବଟତଳେ ।୭୦।
ସିନ୍ଧୁମନ୍ଦାର ବୋଲି ଯେ ନଗ୍ର ସେଠାରେ ଅଛଇ
ଅନେକ ସନ୍ୟବଳ ସେ ରାଜାଂକୁ ଖଟଇ ।୭୧।
ସେ ସିନ୍ଧୁମନ୍ଦାର ଦେଶର ରାଜା ଜାନୁଘଣ୍ଟ ନାମେଣ ନୃପତି
ପାଞ୍ଚଶତ ପାରଦଣ୍ଡ ସନ୍ୟ ସେ ରାଜାକୁ ଖଟଇ ଅନୁବ୍ରତି ।୭୨।
ପନ୍ଦର କ୍ଷଉଣୀ ବଳ ତାହାକୁ ଖଟଇ
ସିନ୍ଧୁମନ୍ଦାର ବେଳାଦେଶେ ସେ ଠାକୁର ଅଟଇ ।୭୩।

---

୬୮।୧ ମନ୍ଦାରଭଗ୍ନୀ ବୋଲି ତହୁଂ ବହଇ ଯେକ ନଦୀଗୋଟି ।
(ଢ,ଟ,ପ,ଚ)
୭୦।୨ କଉସ୍ତୁଭ ଗିରି ବନମିଣ ବଟତଳେ । (ଠ,ନ,ଖ)
୭୦।୨ କଉସ୍ତୁଭ ପର୍ବତ ରମଣ ବଟତଳେ । (କ)
୭୦।୨ କଉସ୍ତୁଭ ପର୍ବତ କଣରୁ ବଟବୃକ୍ଷ ତଳେ । (ଡ)

ଦ୍ୱାପର ଯୁଗେ ଧ୍ୟାୟିଲ୍ଲ ସେ ଆଦିତ୍ୟ ଦେବତାଙ୍କୁ
ନବ ସହସ୍ର ବରଷେଣ ସ୍ୱାମୀ ପ୍ରସନ୍ନ ହୋଇଲେ ତାହାଙ୍କୁ ।୭୪।
ବରମାଗ ସିନ୍ଧୁରାଜା ହୋ ସତ୍ୟ ସତ୍ୟ ମୋହୋର
ଯେତେକ କାମ୍ୟକଲୁ ସେ ପ୍ରାପତ ହୋଉ ତୋହୋର ।୭୫।
ପ୍ରଣପତ୍ୟ ହୋଇ ସେ ପଚ୍ଚରଇ ସିନ୍ଧୁର ନୃପତି
ସ୍ୱାମୀ ସତ୍ୟଯୁଗେ ଥିଲ୍ଲ ଯେ ଜାନୁଘଣ୍ଟ ଆଧିପତି ।୭୬।
ଧର୍ମେଣ ପାଳିଲ୍ଲ ସେ ରାଜ୍ୟ ପ୍ରସନ୍ନେ ପରମଯୋଗୀ
ଧାର୍ମିକ ପଣେ ସେ ରାଜା ସତ୍ୟଯୁଗ କଲ୍ଲ ଭୋଗୀ ।୭୭।
ମୁକୁଇଂ ପ୍ରସନ୍ନେ ସ୍ୱାମୀ ବର ଦେବାକ ଅଭୟେ
ଦ୍ୱାପର ଯୁଗ ମୁଂ ଭୋଗ କରିବି ତାହାର ପ୍ରାପ୍ୟେ ଯେହ୍ନକାପ୍ୟେ ।୭୮।
ହରଷି ନାରାୟଣ ଯେ ହୋଇଲେ ପରସନ୍ନ
ସୁଖେଣ ଭୋଗକର ଯେ ଦ୍ୱାପର ତୋତେ ନ ପୀଡ଼ୁ ଜନ୍ତୁଗଣ ।୭୯।
ଜାନୁଘଣ୍ଟ ପଦକଇଂ ତୁ ଯେବେ କଲୁ ଇଚ୍ଛା
ତୋହୋର ନାମ ଜାନୁଘଣ୍ଟ ହେଉ ତୁ ମାଗି ଖାଅ ଭିକ୍ଷା ।୮୦।
ହନକର ବଚନେ ସେ ସିନ୍ଧୁରାଜାର ତନୁ
ସେହ୍ନହନୁ ଘଣ୍ଟେକ ବାନ୍ଧିଲ୍ଲ ଯେ ତାହାର ଜାନୁ ।୮୧।
ମହାକ୍ଷତ୍ରୀ ବିଦ୍ୟା ଜାଣଇଂ ସେ ସମରାଜ୍ୟ କରଇ ରକ୍ଷା
ଜନପ୍ରଜା ପାଳଇ ରାଜା ଆପଣେ ମାଗଇ ଭିକ୍ଷା ।୮୨।
ଘଣ୍ଟାରବ ଶବଦ କରିଣ ସେ କରେଣ ଖପରେକ ଧରି
ସଂସାର ଜନହ୍ନତେ ରାଜା ବୁଲଇ ହଗମ୍ବରି ।୮୩।
ସେ ସିନ୍ଧୁ ମହାର ଦେଶେଣ ଯାଇଂ ଅର୍ଜୁନ ପରବେଶ
କଟକେ ପଶନ୍ତେଣ ଶୁଭିଲ୍ଲ ମଧୁର ବାଦ୍ୟଘୋଷ ।୮୪।
ଆପଣେ ହଜେକଲ୍ଲ ନୃପତି ଦେବବାଦ୍ୟଶୁଣି
ଆଗେ ଓଗାଳିଲ୍ଲ ଆସି ଘଣ୍ଟାରବ ଘୋର ବାଣୀ ।୮୫।
ମାନବ ଜନ୍ମ ହୋଇ କଂପେରେ ଯେତେ ଭରସୁ
କେଉଂଣ ଦର୍ପେରେ ମୋହୋର ରାଜ୍ୟେ ପଶୁ ।୮୬।

---

୭୪।୧ ଦ୍ୱାପରେ ଦାହିଲ ସେ ଆଦିତ୍ୟ ଦେବତାଂକୁ । (ତ,ଘ,ପ,କ,ଡ)

ବିଦ୍ୟାଧର ପୁରୁଷଙ୍କ ମୁଂ ହେଲେଣ ସାଧିଲି
ନ ଜାଣୁଂ କି ମୋତେରେ ତୁ ଜାନୁଘଣ୍ଟ ବୋଲି ।୮୭।
ସିନ୍ଧୁକୁ ଛଡାଇଲି ଯେ ମୋହୋର ବାହୁବଳେ
ମନ୍ଦର ଉପାଡ଼ି ଆଣି ବସାଇଲି ସିନ୍ଧୁକୂଳେ ।୮୮।
ସିନ୍ଧୁ ମନ୍ଦାର ମୋହୋର ଅଟଇ ଦୁଇ ରାଜ୍ୟ
ତ୍ରଇଲୋକ୍ୟ ଭୁବନକୁ ବୋଲି ମୋହୋର ବିକାଶୁଅଛୁ ତେଜ ।୮୯।
ପରେ ହତ୍ୟା ନ କରଇ ମୁଂ ପରେଣ ନୋହଇ ବିବାଦ
ଦ୍ୱାପର ଯୁଗ ଭୋଗ କରଇ ମୁଂ ମହାଯୋଗ ସାଧି ।୯୦।
ଧର୍ମକଇଂ ଧର୍ମ ମୁହିଂ ଦୁର୍ଜନକଇଂ ଅନର୍ଗଳା
ପ୍ରାଣେ କାର୍ଯ୍ୟ ଥିଲେ ରେ ଯେଥୁଂ ସଇନ୍ୟ ଘେନି ପଳା ।୯୧।
ଅନେକ ପ୍ରତଗ୍ୟାଂ ଯହୁଂ କଲା ଜାନୁଘଣ୍ଟ
ଶୁଣିଣ ଅର୍ଜୁନର ଯେ କମ୍ପଇ ମୁକୁଟ ।୯୨।
ରାଗେଣ ପ୍ରଚଣ୍ଡ ହୋଇଲା ସେ ଯେ ଗାଣ୍ଡିମ ଦୀକ୍ଷାଗୁରୁ
ଯେସନେକେ କାଳସର୍ପ ଗର୍ଜଇ ଧରି ଫେରୁ ।୯୩।
ଅର୍ଜୁନ ବୋଇଲେ ତୁ ଯେ ବୀରଧି ଜାନୁଘଣ୍ଟଇ
ତୋହୋର ମୋହୋର କି ଅଇଶପଣ ଭାବ ଅଟଇ ।୯୪।
ପ୍ରତଗ୍ୟାଂ ସାମର୍ଥେ ତୁ କି ବୋଲଉ ମହାଯୋଧୀ
ତୋହୋର ପଦ ମୁଂ ଘେନିମାକୁ ଆସିନାହିଂ ସାଧି ।୯୫।
ରାଜୁସି ମହାଯାଗ ଯେ କରିବେ ଧର୍ମରାଜା ଯୁଧେଷ୍ଟି
ରାଜାନ୍ତ ନିମନ୍ତ୍ରଣେ ମୁହିଂ ଦିଗବିଜେ କଲିଟି ।୯୬।
ଗୃରଜ୍ଞା ଲକ୍ଷେରାଜା ହୋଇବେ ତହିଂ ରୁଣ୍ଡ
ଦେବତାମାନେ ଆସିବେ ତେଜିଣ ସ୍ୱର୍ଗଖଣ୍ଡ ।୯୭।
ଯେ ଯାହାର ସମ୍ପଦମାନ ଘେନିଣ ଯିବେ ରାଜାମାନେ
ଷୋଳଦିନ ପଶ୍ଚାତେ ଥିବେ ମହାଯଗ୍ୟଂ ସ୍ଥାନେ ।୯୮।
ଯେତେକ ତୋହୋର ଅଛି ସମ୍ପଦଣ୍ଡ ସଇନ୍ୟ
ଯେହ୍ନେକ୍ଷଣି ସଜହୁଅ ବାରୁଣାବନ୍ତକୁ ଅନକୂଳ ଘେନି ।୯୯।
ବାସେବ ବଚନେ ସେ ସିନ୍ଧୁ ମନ୍ଦାର ଅଧିପତି
ଲୁହି ସେ ଅର୍ଜୁନ କି ବିଚାରିବା ପର୍ଯ୍ୟର ନାହିଁ ।୧୦୦।

ତୋହୋର ପିତା ରହିଥିଲେ ସ୍ୱେଚ୍ଛ ଶତଶିଙ୍ଗ ପର୍ବତେ
ତାହାର ମୋହୋର ସ୍ନେହଆସ୍ଥା ବହନ୍ତୁ ହବାସନେ ।୧୦୧।
ଯେତ୍ତୁଂ ହନେ ପଣ୍ଡୁ ବନ୍ଧଅଛୁ ଅଗ୍ନିକାର ମହାଋଷିକ
ଶବଦକଇଂ ନାରାଜ ବାନ୍ଧଲେ ଯେ ନ ଗୃହ୍ୱଂ ନ ଦେଖି ।୧୦୨।
ଦୁହେଂ ଆମ୍ଭେ ଧାଇଂଗଲୁ ଗଣ୍ଡାଘାତ ବୋଲି
ଅଗିକାର ମହର୍ଷିଙ୍କ ପ୍ରତକ୍ଷେ ମୁଂ ଦେଖିଲି ।୧୦୩।
ଋଷି ନାଶଗଲେ ଯେ ବକ୍ଷୁ ନାରାଜ କାଡିଲେ
ପଣ୍ଡୁରାଜା ସଙ୍ଗ ଗୁଡଲି ମୁଂ ଯହୁଂ ସେ ବ୍ରହ୍ମହତ୍ୟା କଲେ ।୧୦୪।
ରାଗେଣ ମହାତମା ଯେ ହଲେ ତାକୁ ଯେତ୍ତୁଂ ଶାପ
ତଦ୍ୟାପି ଶୋଚନା କଲା ପଣ୍ଡୁ ବ୍ରହ୍ମହତ୍ୟା ପାପ ।୧୦୫।
ବହୁତ କାଳେ ଅର୍ଜୁନ ହୋ ମୁଂ ତୋତେ ଦେଖିଲି
ଶ୍ରୀଭୁଜେ ଅର୍ଜୁନକୁ କୋଳକରି ବହୁତ ପ୍ରୀତି ବୋଲି ।୧୦୬।
ଅର୍ଜୁନକୁ ଘେନିଣ ସେ ଚଳଇ ମହାରସ୍ୱେ
ଆପଣାର ଜଗତ୍ତରେ ଯାଇଂ କଲା ସେ ବଜସ୍ୱେ ।୧୦୭।
ମୁଣୋହର ନିମନ୍ତେ ଅନେକ ଯହୁଂ କଟାକଲା ଜାନୁଘଣ୍ଟ
ଅର୍ଜୁନ ବୋଇଲେ ମୋତେ ରାଜସୂୟିଯାଗ ହୋଇଲା ନିକଟ ।୧୦୮।
ଭୋଜନ ଶସ୍ୱନକଇଂ ନାହ୍ୱଂନା ମୋର ଇଚ୍ଛା
ରାଜାନ୍ତ ଗଲେ ସେ ମୋହୋର ପୂରଇ ମନବାଞ୍ଛା ।୧୦୯।
ପଣ୍ଡିତ ଭାଗ୍ୟବନ୍ତ ତୁ ବବେକୀ ମହାରାଜା
ସମଦଣ୍ଡ ଘେନିଣ ତୁ ରାଜସୂୟିଯାଗକୁ ବହନ ହୋଇ ଯାଅ ଯା ।୧୧୦।
ଅର୍ଜୁନର ବଚନେ ସେ ସ୍ୱଜ ଜାନୁଘଣ୍ଟ
କଟକୁଂ ବାହାର ହୋଇଲା ସେ ଘେନିଣ ତାହାର ଥାଠ ।୧୧୧।
ତହୁଂ ବଜସ୍ୱ କରଣ ଗଲେକ ଫାଲଗୁନ
ବଜସ୍ୱା ବନସ୍ତେ ପଶିଲେ ହବା ଯେ ରସୂଣୀ ।୧୧୨।

---

୧୦୫।୨ ତଥାପି ମେଣ୍ଟଣ ନ ଗଲା ସେ ପଣ୍ଡୁର ବ୍ରହ୍ମହତ୍ୟା ପାପ ।
(ଡ,ଅ,ଘ,ପ)

୧୦୫। ମହାମୁନି ତାକୁ ଯେତ୍ତୁଂ ଶାପ ହଲି
୧୦୫। ତେଣୁ ଅକାଳ କାଣ୍ଡକି ପଣ୍ଡୁଂକୁ ପଡଲା । (ଖ)

କୃପା ବଳାଙ୍ଗୀ ବୋଲି ଯେ କଇ ନଷ୍ଟ ଗୋଟି
ମହାଦାସ ପର୍ବତଙ୍କୁ ସେ ଉତ୍ତର ଦିଗ୍ଭୁ ପୁଟି ।୧୧୩।
ଗୁରୁମଣ୍ଡଳ ବୋଲି ଯେଉଁ ଜଳ ରାଜ୍ୟ ଗୋଟିଏ
କୁଣ୍ଡଳବ୍ରହ୍ମ ବୋଲି ଅଟଇ ତହିଁର ସେ ରାୟେ ।୧୧୪।
ଅର୍ଜୁନ ବିଜୟ ବାରତା କହିଲେ ତରେ
ଦଣ୍ଡ ଘେନି ନୃପତି ବେଗେ କରଅଛଇ ବାହାର ପଟୋଆରେ ।୧୧୫।
କଟକ କଣି ରାଜା ଅଇଲଣି ଚଉଦ ଦିନ ପରଯନ୍ତେ
ଅର୍ଜୁନଙ୍କଇଂ ଦର୍ଶନ କଲ ଆସି ମହାଦାସ ପର୍ବତେ ।୧୧୬।
ଶତେକ ଭାର ପାଣିଦ୍ରବ୍ୟ ଯେ ଦେଖା ଦରଶନି
ଚଉଦ ଭରଯା ଭୂଲେ ବତିଶ ସୁବନ୍ତ ଘେନି ।୧୧୭।
ଦର୍ଶନ କଲ ଆସି ଅର୍ଜୁନ ଅଗ୍ରତେ
ଶତେ ସହସ୍ର ଦଣ୍ଡ ପ୍ରଣିପତ୍ୟ ହୋଇ ଶ୍ରୁତିଲ ନରନାଥେ ।୧୧୮।
ସ୍ୱାମୀ ସାଧୁ ଯେ ମୋହୋର ପୁଣ୍ୟ ଧନ୍ୟ ମୋହୋର ବୋଲିଣ ବୋଲେ
ପ୍ରତକ୍ଷ ନାରାୟଣ ଦେଖିଲି ମୋହୋର ଜୀବନ ସୁଫଳେ ।୧୧୯।
ଶ୍ରବଣେ ଶୁଣିଥିଲି ଯାହା ଦେଖିଲି ପ୍ରତକ୍ଷେ
ତୁ ସେ ଖାଣ୍ଡବ ବନ ଦହନକରି ଜିଣିଲୁ ସହସ୍ରାକ୍ଷେ ।୧୨୦।
ଅନେକ ସ୍ତୁତି କରଣ ସେ ବୋଲଇ କୁଣ୍ଡଳ ବ୍ରହ୍ମରାୟେ
ପୁଣ ପୁଣ ନିଉଛାଳି କରି କହଇ ରାଜା ବହୁତ ବିନୟେ ।୧୨୧।
ଶ୍ରୀହସ୍ତେ ଶାଢୀ ଘେନିଣ ସେ ଦିଲେ ସୁଭଦ୍ରାର ନାହା
ବୋଇଲେ ରାଜସୂୟ ଯାଗସଭାକୁ ବାରୁ ବହନ ହୋଇ ଯାଅ ଯା ।୧୨୨।
ଅର୍ଜୁନର ବଚନ ସେ ନିବେଶିତ ଶିରେ
ଶୁଭ ଅନକୂଳ କୁଣ୍ଡଳବ୍ରହ୍ମ ଦଣ୍ଡ ଘେନି ହୋଇଲ ବାହାରେ ।୧୨୩।
ଶତେକ ପାରଦଣ୍ଡ ଡିନ ଷଉଣୀ ସଇନି
ତତକ୍ଷଣେ ବାହାର ହୋଇଲ ରାଜା ଦେଖା ଦରଶନି ଧନ ଘେନି ।୧୨୪।
ତହୁଁଣ ଫାଲଗୁନି ଉତ୍ତର ଦିଗବିଜେ
ଦିବାରବେ ପ୍ରବେଶ ହୋଇଲ ଯାଇଂଣ କାଳଞ୍ଜନ ରାଜ୍ୟେ ।୧୨୫।

---

୧୧୬।୧ କଟକ ଗୁଡ଼ିଲାଣି ରାଜା ଚଉଦ ଯୋଜନ ପରଯନ୍ତେ ।
(ଖ,ନ,ଠ)

କମଳସେନ ବୋଲଣ ୟେକ ବ୍ରାହ୍ମଣ ନୃପତି
ତିନିଶତ ପାରଦଣ୍ଡ ତାହାର ନବଲକ୍ଷ ପାଦାନ୍ତ ।୧୨୬।
ଚୃରଗଣେ କହିଲେ ଦେବ ଶୁଣିମା ସାବଧାନେ
କେବଣ ରାଜା ୟେଟି ବଜେକଲ୍ଲ କାଲେବର ବନେ ।୧୨୭।
ଦେଶାନ୍ତର ମୁଖୁଁ ୟେସନେକ ସନ୍ଦେଶ ବାରତ ଶୁଣି
ମନ୍ତ୍ରୀର ବଦନକୁ ଚୃହିଁଲ୍ଲ ନୃପମଣି ।୧୨୮।
ମନ୍ତ୍ରୀ ବୋଇଲ୍ଲ ଦେବ ଶୁଣିମା ରାଜେଶ୍ୱର
ରାଜୁସି ଯାଗ କରୁଛନ୍ତି ଦେବ ଯୁଧିଷ୍ଠି ଠାକୁର ।୧୨୯।
ଚତୁର୍ଦ୍ଦିଗ ରାଜାନ୍ତ କରୁଛନ୍ତି ନିମନ୍ତ୍ରଣ
ପାଣ୍ଡବ ଅର୍ଜୁନ ୟେବେ ଉତ୍ତର ଦିଗଇ ବରଗଣ ।୧୩୦।
ସ୍ୱାମୀ ଯହିଁର ନିମନ୍ତେ ନାଶଗଲାଟି ଜାର
ଯମାଗୋଷ୍ଠୁ ବନ୍ଧନ ହୋଇଲା ଦୁର୍ଭର ମହାବୀର ।୧୩୧।
ଅନେକ ରାଜ୍ୟ ଧ୍ୱଂସି ଦେବ ହୋଇଲେ ଅସାଧି
ଶରଣ ପଶିଲେ ରକ୍ଷା ହୋୟେ ସର୍ବ କାର୍ଯ୍ୟ ସିଦ୍ଧି ।୧୩୨।
ବହନ ଉତ୍ସବ ଦେବ କରିବନା ନିଜ ରାଜ୍ୟେ
କଟକେ ଆସି ପ୍ରବେଶ ହୋଇଲେ ଦେବ ଦୁନ୍ଦୁଭି ବାଦ୍ୟ
ବାଜେ ।୧୩୩।

ମନ୍ତ୍ରୀବର ବଚନେ ସେ ନୃପତି ପରମ ଶାନ୍ତ
ଦଣ୍ଡ ସାଜ ସାଜ ବୋଲ ଆଜ୍ଞା ଦେଲା ସେ ନୃପତି ।୧୩୪।
କଟକେ ପାୟେତା ରାଜା ପାଉଲ୍ଲ ହରଷେ
ପୁତ୍ର ବନ୍ଧୁ କୁଟୁମ୍ବ ପାତ୍ର ଅମାତ୍ୟ ଘେନି ସାନନ୍ଦେ ବେଗେ
ଆସେ ।୧୩୫।

ଅର୍ଜୁନ ବିଜେ କରିଛନ୍ତି ବଳାଙ୍ଗୀ ନଦୀକୂଳେ
ଅନେକ ଧନରତ୍ନ ଘେନିଣ ମହୀପାଳେ ।୧୩୬।
ଦର୍ଶନ କଲ୍ଲକ ରାଜା ଆସି ବହୁତ ସମ୍ଭ୍ରରେ
ନିଉଚ୍ଛୁଳ କରି ରାଜା ସ୍ତୁତି କଲ୍ଲ ବହୁତ ଅନ୍ତରେ ।୧୩୭।
ଶ୍ରୀମୁଖେ ଆଜ୍ଞା ହୋଇଲା ଉଠ ମହାରୟେ
କୋଳାଗ୍ରତ କରି ତାଙ୍କୁ ସନ୍ନିଧେ ବସାଇଲେ ଧନୁର୍ଜୟେ ।୧୩୮।

ଅକ୍ଷତ ଗୁଆ ତାକୁ ଦିଲେକ ଶ୍ରୀହସ୍ତେ
ସନ୍ୟ ଘେନି ଯାଅ ଯା ତୁମ୍ଭେ ନଗ୍ର ବାରୁଣାବନ୍ତେ ।୧୩୯।
ଅର୍ଜୁନର ବଚନେ ସେ ବୋଇଲା ବଦୁବର
ଯେ କାଳେବର ବନେ ଦେବ ନିଜ ରାଜ୍ୟଟି ମୋହୋର ।୧୪୦।
ଅନେକ ବିନୋଯ୍ପୀତା ନୃପତି କରଇ ତାହାଂ ସେବା
ସ୍ୱାମୀ ଆଜକ ମୋର ପୁରେ ରହି ମୁଣୋହ୍ନ କରିବା ।୧୪୧।
ଅର୍ଜୁନ ବୋଇଲେ ତୁ ମୋତେ କାହୁଂ ଦେବୁ ଭୋଜ
ଗୃଳଶ ସହସ୍ର ରାଜା ନିମନ୍ତିବ ନଉ ଦିବସର ମଧି ।୧୪୨।
ଭୋଜନ ଶୟନେ ସୁଖଭୋଗେ ନାହିଂ ମୋର ଇଚ୍ଛା
ଯେମନ୍ତେ ପାଣ୍ଡୁ ରାଜାଂକର ପୂରେଇବ ମନୋବାଞ୍ଛା ।୧୪୩।
ନିମନ୍ତ୍ରଣ କରଣ ସେ ନୃପତିଂକ ପଠାଆଇ
ତହୁଂଣ ଅର୍ଜୁନ ଗଲେ ଯେ ଉତ୍ତର ମୂରତି ହୋଇ ।୧୪୪।
ଉତ୍ତର ପଶ୍ଚିମ କୋଣେ ଲକ୍ଷ୍ମୀପୁର ବୋଲି ଯେକ ନଗ୍ରେ
କମଳାସିମା ବୋଲି ନଦୀ ଯେକ ପୂର୍ବଭାଗେ ।୧୪୫।
ମହାସମ୍ପଦରେ ସେ ଲକ୍ଷ୍ମୀପୁର ନଗ୍ର ବସଇ
ବିସ୍ତାର ଭୁବନ ଜାଣି ଘର ଅଶିଲକ୍ଷ ପଞ୍ଚାଶଇ ।୧୪୬।
ବସନ୍ତ ପରିମଳ ଯେ ରତ୍ନମୟ ଭୁବନ
ଘରେ ଘରେ ସୁବର୍ଣ୍ଣର ପାତେଶ୍ୱ ବିଦ୍ୟମାନ ।୧୪୭।
ବଡ଼ ସୁସଞ୍ଚ ହୋଇଣ ବସନ୍ତି ନଗ୍ର ପ୍ରଜା
ଭାଗ୍ୟବନ୍ତ ପଣେ ତୁଲ୍ୟ ନାହିଂ ଆନ ରାଜା ।୧୪୮।
ଯେ ଯାହାରେ ଚଷିକରି ଉପୁଜାନ୍ତି କୃଷି
ସୁଖେଣ ଆୟୁ କରଣ ସେ ନିଅନ୍ତି ଦୁଇରାଶି ।୧୪୯।
ଯେସନେକ ସମ୍ପଦ ସେ ଲକ୍ଷ୍ମୀପୁର ଗ୍ରାମ
ଦେବତା ସମାନେ ଦିଶନ୍ତି ପୁରୁଷ ଯେହ୍ନେ ମକରଧ୍ୱଜ କାମ ।୧୫୦।
ପରରାଷ୍ଟ୍ରେ ରାଜା ସର୍ବଥା ନୋହଇ ବିବାଦୀ
ଯାହା ସ୍ୱବଧାନେଣ ଧର୍ମେଣ ସର୍ବ ସାଧି ।୧୫୧।
ନ ଯାଇ ପରରାଷ୍ଟ୍ରେ ନ କରଇ ରାଜହତ୍ୟା
ସର୍ବୁଂକର ପୁରେ ପୁରେ ପୂଜନ୍ତି ଦଧିବାବନ ଦେବତା ।୧୫୨।



ଘରେ ଘରେ ବଷ୍ଣୁ ପୁରାଣ ପଢନ୍ତି ପ୍ରତିଦିନେ
ନ ଛାଡଇ ଶିଶୁ ସମ୍ପଦ ସହସ୍ର ବରଷ ଆୟୁଷ ପାବନ୍ତି ଜନେ ।୧୫୩।
ସେ ରାଜାର ରାଇଜେ ଯାଇଂ ଯଜ୍ଞାଶ୍ୱ ପାର୍ଥିବ
ଲକ୍ଷ୍ମୀବେଣୀ ନଦୀରେ ସ୍ନାନ କରଇ ଦିଶାଶ୍ୱ ବାସୁଦେବ ।୧୫୪।
ଦେବବାଦ୍ୟ ଦୁନ୍ଦୁଭି ଯେ ଶବଦ ଘୋଷଣେ
କମ୍ପଇ ମଞ୍ଚ ବ୍ରହ୍ମାଣ୍ଡ ଘୋର ବାଦ୍ୟ ଅତି ଠାଣେ ।୧୫୫।
ବଡାଇ ସମ୍ପଦେ ସେ ବ୍ରତଇ ମହାରାଜ
ନୃପତିର ନାମ ଯେ ଅଟଇ ଚନ୍ଦ୍ରଧ୍ୱଜ ।୧୫୬।
ସେ ରାଜାର ମନ୍ତ୍ରୀବର ରାଜାପାଶେ ଯାଇ
ଅର୍ଜୁନ ଯଜ୍ଞାଶ୍ୱ ବାର୍ତ୍ତା କହିଲା ବୁଝାଇ ।୧୫୭।
ବହୁତ ମହିମାଂ ମନ୍ତ୍ରୀ କହିଲା ରାଜାର ଆଗେ
ଆସ୍ଥାନ ଛେଜ ନୃପତି ଆସଇ ଅତି ବେଗେ ।୧୫୮।
ଲକ୍ଷେକ ଭାର ହିରଣ୍ୟ ଘେନି ସୁଧାରସ
ଅର୍ଜୁନ ଛାମୁରେ ଯାଇଂ ହୋଇଲା ପରବେଶ ।୧୫୯।
ପାଦ୍ୟେଣ୍ଡା ପାଶ ନୃପତି କରଇ ନିଜଗ୍ରାଳ
ଛାମୁରେ ଉଭା ହୋଇଲା ନୃପତି ହୋଇଣ କୃତ ଯେ ଆଞ୍ଜୋଳ ।୧୬୦।
ଅର୍ଜୁନର ଚରଣ ସେ ଆପଣେ ପଖାଳ ମହାରାଜା
ବହୁତ ରତ୍ନ ଘେନି କଲାକ ପାଦପୂଜା ।୧୬୧।
ସନ୍ନିଧେ ରହି ନୃପତି କରଇ କଣସ୍ତୁର ବୃଷ୍ଟି
ଚନ୍ଦ୍ରଧ୍ୱଜକଇଂ କୋଳକରି ଧଇଲେ ଆପଣେ କିରୀଟୀ ।୧୬୨।
ଅନେକ କୃତକୃତ ହୋଇଣ ବଦ୍ୟୁମାଳୀର ବଳା
ଅର୍ଜୁନର ସମସ୍ତ ସଇନ୍ୟଂକ ଦିଲେକ ରତ୍ନମାଳା ।୧୬୩।
ଦେବାଙ୍ଗ ବସନ ଦିଅଇ ଅନେକ ଝୀନ ଯେ ପଟମ୍ବୀ
ବହୁତ ସମାର୍ଜନା କରି ଜଣେ ଜଣେ କରଇ ଦର୍ପ୍ଣମ୍ବୀ ।୧୬୪।
ମୁହିଂ ନିରମାଖୀ ଯେ ଅଟଇ ବଦେଶୀ
ଗୁଣସାଗର ନାଥ ମୋତେ ଉଦ୍ଧର ହୃଷୀକେଶି ।୧୬୫।
ଯତନେ ଯାହା ଲୋଡୁଥିଲି ଦେଖିଲି ନୟନେ
ଦେ ଖଣ୍ଡିଲା ପାତକ ମୋର ମୁକ୍ତ ହୋଇଲେ ପିତୃଲୋକମାନେ ।୧୬୬।

ସ୍ୱାମୀ ଉପର ବଂଶେ ମୋହୋର ଶ୍ୱେତ ନାମେ ମହାରାଜା
ସନକ ପୁରୁଷଂକର ସେ ଅଟଇ ଆତ୍ମଜା ।୧୬୭।
ସେ ଶ୍ୱେତ ସତ୍ୟଯୁଗେ ଦେବଯଗ୍ୟଂ କଲା
ସ୍ୱେଦ୍ଧ କମଳାସମ ନଦୀଷ୍ଟରେ ମହାଯାଗ ଆରମ୍ଭିଲା ।୧୬୮।
ସ୍ୱାମୀ ବ୍ରହ୍ମାଂକୁ ମାଗିଲା ଯାଇଂ ପୁରୋହିତ ଜଣେ
ପିତାମହ ଆଗ୍ୟାଂ ଦେଲେ ବଶିଷ୍ଠ ବ୍ରାହ୍ମଣେ ।୧୬୯।
ତୁମ୍ଭେ ଯାଗନିକ ହୁଅ ବଶିଷ୍ଠ ଶ୍ୱେତରଜାର ଯାଗେ
ମହାଦେବ ଯାଗ କରିବ ସ୍ୱେ ହୁତାଶନ ମନ୍ତ୍ରବାଗେ ।୧୭୦।
ବ୍ରହ୍ମାଂକ ଆଗ୍ୟାଂସ୍ୱେ ସେ ଅଇଲେ ବଶିଷ୍ଠେ
ଶ୍ୱେତ ରଜାକଇଂ ବସାଇଲେ ଆକାଶ ଗଙ୍ଗାର ତଟେ ।୧୭୧।
ତୁ ଯେ ଯାଗନିକ ପଣେ ଆମନ୍ତ୍ର କଲୁ ହୋ ବରଣ
ଯାଗକୁଣ୍ଡ ଆୟତନ କର ମୋର ହାଥେ ବାରଜୁଣ ।୧୭୨।
ଗୃରମେଧେ ମୋହୋର ମନ୍ତ୍ର ପାବକ ସୁରା
ଯାଗ ପରୀକ୍ଷା ମୋହୋର ପିଙ୍ଗଳ ଦୋହରା ।୧୭୩।
ମୋତେ ଯେବେ ବରଣ କଲୁ ହୋ ମହାରଜା ଶ୍ୱେତ
ଅପାର କର ନୃପତି ସଞ୍ଚ ଅଛୁନା ଘୃତ ।୧୭୪।
ଯେତେଦିନ ପରଯନ୍ତେ ଯାଗ କରିବୁ ନୃପମଣି
ସମ୍ବର୍ତ୍ତକ ମେଘ ଘୃତ ବରଷିବ ମୂଷଳ ଧାରା ପ୍ରମାଣେ ଆଣି ।୧୭୫।
ସ୍ୱେତେକ ଘୃତ ଯେବେ ତୁ ଅଣାଇପାରୁ ରାଜା
ଯଗ୍ୟଂକଇଂ ସଞ୍ଚାକର ହୋ ବହନ ହୋଇ ଯାଅ ଯା ।୧୭୬।
ଶୁଣ ଦେବ ଧନୁର୍ଜ ସ୍ୱେ କହଇ ନୃପତି ଚନ୍ଦ୍ରଧ୍ୱଜ
ଘୃତ ସମୁଦ୍ରକୁ ବତିଶ ବରଷ ସେବାକଲା ସେ ଶ୍ୱେତ
ମହାରାଜ ।୧୭୭।

୧୬୯।୨ ମହାଯାଗ କରିବ ଉଦ୍ଭାସନ ମନ୍ତ୍ର ବାଗେ । (ଚ,ଜ)
୧୭୧।୨ ଯାଗକୁଣ୍ଡ କର ଦ୍ୱାଦଶ ଯୋଜନ ଆୟତନ ।
(ଘ,ପ,ଡ,ଟ,କ,ଭ,ଚ)
୧୭୨।୧ ଗୃହମେଧ ମୋହୋର ମନ୍ତ୍ରପାନ ସୁରା । (ଙ,ଟ)

ଘୃତ ସମୁଦ୍ର ପ୍ରସନ୍ନେ ବୋଇଲା ରେ କ ନିମନ୍ତେ ମୋତେ ସେବୁ
ରାଜା ବୋଇଲା ମୁହିଂ ଯଜ୍ଞଂ ଖଣ୍ଡିଏ କରିବି ତୋହୋର ଘୃତ
ମୋତେ ଦେବୁ ।୧୭୮।
ନ ଜାଣି ବଶିଷ୍ଠଂକୁ ମୁଂ ବରିଲି ଯଜ୍ଞଂକୃତେ
ତୁ ମୋତେ ପ୍ରସନ୍ନ ହୋଇ ଘୃତ ଦେବୁ ଚଉବିଂଶ ବରଷ
ପରିଯନ୍ତେ ।୧୭୯।
ରାଜାର ବଚନେ ସେ ପ୍ରସନ୍ନ ଘୃତସିନ୍ଧୁ
ଦେବ ଘୃତ ଯେତେକାଳ ପରିଯନ୍ତେ ଲୋଡ଼ା ତୋର ବାବୁ ।୧୮୦।
ମହାଯାଗ ରଚ୍ଛିଲା ସେ ଯେତ୍ନିନଦୀର କୂଳେ
ହିରଣ୍ୟଗର୍ଭ ପର୍ବତେ ବାଛିିାବନ୍ତ ଛଳେ ।୧୮୧।
ଦେଖ ହାଦେ ଯେ ନଦୀର କୂଳରେ ଯଜ୍ଞଂକୁଣ୍ଡ ଦ୍ୱାଦଶ ଜଣ ସ୍ଥଳୀ
ଯାଗଶାଳ ଉଠିଲା କୋଡ଼ିଏ ଗୃହ ଯୋଜନ ଅଙ୍ଗୁଳି ।୧୮୨।
ଚଉବିଂଶ ଯୋଜନ ଯେ ଉପରକଇଂ ଉତ୍ସର୍ଗ
ଅଗ୍ନିର ତେଜ ଯେ ଲଗିଲା ଯାଇଂ ଅଧାସ୍ୱର୍ଗ ।୧୮୩।
ସମ୍ବର୍ତ୍ତକ ମେଘ ହୋଇଲା ଶ୍ରୋହା ଯେ ପ୍ରୋକ୍ଷଣୀ
ମୂଷଳଧାର ପ୍ରମାଣେ ଘୃତ ବରଷିଲା ଯାଗକୁଣ୍ଡେ ଆଣି ।୧୮୪।
ଚଉବିଂଶ ବରଷ ପରିଯନ୍ତେ ସେ ବରଷିଲା ଘୃତ
ଲୋଭେ ଭକ୍ଷଣ କଲେ ପିଙ୍ଗଳ ଜାଳା ଦଇବତ ।୧୮୫।
ଲୋଭେଣ ବହୁତ ଘୃତ ଭକ୍ଷିଲେ ବହନି
ଲୁଦୁବୁଦୁ ବ୍ୟାଧି ହୋଇଲେ ପିଙ୍ଗଳଜାଳା ମହାଅଗ୍ନି ।୧୮୬।
ଅଗ୍ନି ଦେବତାରେ ସିନା ସଂସାରଇ ସଚରେ
ନିସ୍ତେଜ ହୋଇ ବସିଲେ ସକଳ ସଚରାଚରେ ।୧୮୭।
ସ୍ୱାମୀ ମୁହିଂ ଯାଇଥିଲି ଯେ ମକରମାସ ପ୍ରାଗସ୍ଥର୍ଥେ
ବାରତା ପାଇଲି ମୁହିଂ ବଶିଷ୍ଠଂକ ଅଗ୍ରତେ ।୧୮୮।
ଗାଣ୍ଡିମ ଧାଷାଗୁରୁ ଛନିଏ ଚୂଡ଼ାମଣି
ଖାଣ୍ଡବ ବନ ଦହନ କରି ଅଗ୍ନିଦେବତାଂକୁ ବ୍ୟାଧିରୁ ପାରିକଲୁ
ପୁଣି ।୧୮୯।

---

୧୭୮। ଅଗ୍ନି ଲୁଦୁବୁଦୁ ହୋନ୍ତେ ନିସ୍ତେଜ ଚରାଚରରେ
୧୭୮। ନିସ୍ତେଜ ହୋଇ ବସିଲା ସକଳ ସଂସାରେ । (ପ,୫,ତ)

ସ୍ୱାମୀ ଖାଣ୍ଡବ ବନ ଦହନେ ତୁ ବାସବେ ବିବାଦ
ଅମର ସମ୍ପଦ ଧ୍ୱଂସିଲୁ ଅଗ୍ନିକ ତାଣିଲୁ ଦେଇଣ ମଉଷଧ ।୧୯୦।
ସ୍ୱାମୀ ଶ୍ରେଷ୍ଠ ମହାରାଜାର ଉପୁଜିଲା ପୁତ୍ରକପୁତ୍ରେ
ଜଳନିଧି ନାମ ତାହାଂକର ବିଖ୍ୟାତ ଜଗତେ ।୧୯୧।
ସେ ଜଳନିଧିର ପୁତ୍ର ମଳୟବସନ୍ତ ମହାରାଜା
ସମସ୍ତେକ ଅକ୍ଷୟେ ସ୍ୱର୍ଗେ ସେ ହୋଇଥିଲା ବିଜେଜା ।୧୯୨।
ମଳୟବସନ୍ତ ପୁତ୍ର ହୋଇଲା ନୃପତି ବିଶ୍ୱାବସୁ
ତାହାର ପୁତ୍ର ନାମ ହୋଇଲା କୃତପ୍ରଶୁ ।୧୯୩।
କୃତପ୍ରଶୁର ନନ୍ଦନ ହୋଇଲା ସୁଜାଣ ଚନ୍ଦ୍ରବ୍ରତି
ତାହାର ନନ୍ଦନ ହୋଇଲା ନୃପତି ଅନ୍ତରଥୀ ।୧୯୪।
ଅନ୍ତରଥୀର ପୁତ୍ର ହୋଇଲା କଣୟକେଶରୀ
ମାହେନ୍ଦ୍ରସେନ ବୋଲିଣ ଯେ ପୁତ୍ରେକ ତାହାରି ।୧୯୫।
ମାହେନ୍ଦ୍ରର ନନ୍ଦନ ଯେ ନୃପତି ବିରୂପାକ୍ଷ
ବିରୂପାକ୍ଷର ନନ୍ଦନ ହୋଇଲା ଦଧିମୁଖ ।୧୯୬।
ଦଧିମୁଖ ସେବାକଲା ଦଧିବାବନ ପ୍ରତିମା
ଶାମଳାଙ୍ଗୀ ବୋଲିକରି ହୋଇଲା ତାହାର ବାମା ।୧୯୭।
ଦଧିମୁଖ ରାଜାର ଉପୁଜିଲା ଯେତୁଂଣ ଆତ୍ମଜ
ମୋହୋର ନାମ ଗୋସାଇଂ ହୋଇଲା ଚନ୍ଦ୍ରଧ୍ୱଜ ।୧୯୮।
ବଂଶାବଳୀର ବାରତା କହିଲା ଦଧିମୁଖର ବଳା
ସ୍ୱାମୀ ରାଜସୂୟ ଯାଗ ସେବେ ଦେଖିବି ମହାଖଳା ।୧୯୯।
ଦେବଂକୁ ଅସଂଖ୍ୟ ଯେହୁ ସ୍ୱାମୀ ମାନବେ ଅଗୋଚର
ସେ ରାଜସୂୟ ଯାଗ ସ୍ୱାମୀ ପୁଣ୍ୟର ସାଗର ।୨୦୦।
ଅର୍ଜୁନ କୋଳାଗତ କଲେ ଚନ୍ଦ୍ରଧ୍ୱଜ ରାଜାକୁ
ବାବୁ ସମଦଣ୍ଡ ଘେନି ଯାଅ ବାରୁଣାବନ୍ତକୁ ।୨୦୧।
ତୁ ମହାବଂଶୀକ ଯେ ନୃପତି ବ୍ରହ୍ମବେତ୍ତା
କୋଟିଏ ପୁରୁଷେଣ ଅପାପୀ ପ୍ରସନ୍ନେ ଗତିଦାତା ।୨୦୨।

---

୧୯୭। ସମର୍ପୀ ବୋଲିକରି ହୋଇଲା ତାର ବାମା । (ଖ,ନ)
୧୯୮। ସେ ପୁତ୍ର ଅଟଇ ମୁଂ, ମୋ ନାମ ଚନ୍ଦ୍ରଧ୍ୱଜ । (ନ,ଠ)

କରପଣ ଯୋଡ଼ଣ ଟଣଧ୍ୱଜ ବୋଇଲା
ଅନୁଗ୍ରହ ନାଥ ଯେବେ ମୋତେ ତୋହୋର ଦୟା ହେଲା ।୨୦୩।
ଆଜକ ମୋହୋର ପୁରେ ରହିବା ଉଠିବ ମତପୁଲ
ଭଗତ ମହଲ ନାଥ ତୋତେ ମୁହିଂ ପ୍ରସାଦ ମାଗିଲ ।୨୦୪।
ଯେତେକ ହବସେକ ସ୍ୱାମୀ ମୋହୋର ରାଜ୍ୟେଣ ରହି
ପୁର ମୋର ପ୍ରତିଷ୍ଠା ହୋଇବ ଦେବ କରିବା ମୁଣୋହି ।୨୦୫।
ଅର୍ଜୁନ ବୋଇଲେ ଓହିଁ ଯେ ସେ ପୂର୍ବର ଯାଗସ୍ଥାନ
ବହଇ ଲକ୍ଷ୍ମୀବେଣୀ ଯେ ଅନ୍ତର୍ଦ୍ଧା ଭୁବନ ।୨୦୬।
ହରୁର ଅର୍ଜୁନ ମନେ ତାହାର ରାଜ୍ୟେ ରହି
ସୂପକାର ପରିଯୋଗେ ପଚନ ଯେ କରନ୍ତି ମୁଣୋହି ।୨୦୭।
ଆହାନକ ସ୍ନାହାନ ଯେ ସାରଣ ସବ୍ୟସାଚୀ
ସୂର୍ଯ୍ୟବେଳେ ମୁଣୋହି ଯେହ୍ନେ ରଜମାତ ଅଛି ।୨୦୮।
ପାଦ ଶଉଚ ଆଂଗ୍ରେବନ ସାରଣ ଫାଲଗୁନି
ବାଜଇ ବଜଘୋଷ ଶଙ୍ଖ ମହୁରୀ ଗହଲ ସେ ଧୁନି ।୨୦୯।
ପରଶନ୍ତି ସୂପକାରେ ସୁଲଭ ବ୍ରାହ୍ମଣେ
ସୁରେଶ୍ୱର ପ୍ରୋହିତେ ଗ୍ରମୁରେ କହନ୍ତି ଶ୍ରୀବସ୍ତୁ ପୁରାଣେ ।୨୧୦।
ଷଡରସେ ଭୋଜନ ସାରଣ ଅରଜୁନ
ହିପୁତ ମୁଣୋହି ସାଶ କରନ୍ତି ଆଂଗ୍ରେବନ ।୨୧୧।
କପୂର ତାମ୍ବୋଳ ଭୁଞ୍ଜି ବଜଯେ ସିଂହାସନେ
ଅମୃତ ପାକରସ ଭୁଞ୍ଜନ୍ତି ସନ୍ୟମାନେ ।୨୧୨।
ହିପୁତ ହୋଇ ଭୁଞ୍ଜନ୍ତି ସଇନ୍ୟେ ଯେ ଯାହାର ମନ ଇଚ୍ଛା
ଷଡରସ ଭୋଜନ ପାଇଲେ ମନବାଞ୍ଛା ।୨୧୩।
ତାଣ୍ଡବ ରସେ ଖଟନ୍ତି ବାବନ୍ତି ସପତସ୍ୱର ବେଣୀ
ତାଳ ଅଧାଟି ପଟା କୁଣ୍ଡଳୀ ଘେନି ଖଟନ୍ତି ଭରହଗାବନ୍ତି
ନାୟେକାଣୀ ।୨୧୪।

---

୨୦୬।୨ ବହଇ ଲକ୍ଷ୍ମୀବେଣୀ ଯେ ଅନ୍ତ୍ୟନ୍ତି ଶଙ୍କେ ଭୁବନ ।
(ଙ,କ,ପ,ଭ,ଥ)

ଅମର ବଳାସୁଣୀ ତାଣ୍ଡବ ରସ ନୃତ୍ୟେ
ଦେଖନ୍ତି ପୁରଜନେ ତାଣ୍ଡବ ନୃତ୍ୟ ତୋଷଚତ୍ତେ ।୨୧୫।
ଧନକର ନାଥ ଗଲେ ମେରୁ ପ୍ରଦେଶେ
ଦଣ୍ଡ ସାଜ ବୋଲିଣ ବାଜଇ ବଜଘୋଷେ ।୨୧୬।
ଲଗିଲ ଦାଢ଼ୁଡ ଅବକ୍ଷଣେ ଜଗଦ୍ଭୁଲା
ରଥରେ ବଜେକଲ ସେ ବାସେବର ବନ୍ଧୀ ।୨୧୭।
ଚନ୍ଦ୍ରଧ୍ୱଜ ନୃପତିଙ୍କ ଚଳାଇ ଫାଲ୍‌ଗୁନି
ଚଳଇ ରାଜ୍ୟେଶ୍ୱର ଚଳାଇ ଥାଠ ସଇନ ।୨୧୮।
ସେହି ରାଜ୍ୟରେ ରହି ଅରଜୁନ ବରଗିଲେ ଦୂତ
ଚନ୍ଦ୍ରବଂଶ ରାଜ୍ୟ ଅଛି ସନ୍ନିଧେ ହେମବନ୍ତ ।୨୧୯।
ନେପାଳ ପଶୁପାଳ ବୋଲି ଯେ କେଳିରାଜ୍ୟ ଅଛି
ସେ ରାଜ୍ୟକୁ ବଜଯେ କରି ଚଳଇ ସବ୍ୟସାଚୀ ।୨୨୦।
ପଶୁପାଳ ବୋଲିଣ ଯେଉଂଣ ରାଜ୍ୟଗୋଟି
ପଶୁଜନ ନାଥ ବୋଲି ବଜଯେ ଧୂର୍ଜଟୀ ।୨୨୧।
ସେ ରାଜାର ନାମ ଯେ ଅଟଇ ପଶୁପତି
ରୁଦ୍ରଚନ୍ଦ୍ର ବହଇ ସେ ପ୍ରସନ୍ନେ ମହାପତି ।୨୨୨।
ମଥାରେ ଜଟାଭାର. ପଶୁଚର୍ମ ପରିହାର
ବଇଲ ବାହାନେ ଚଳନ୍ତି ଦିଗବସନ ଆବୋର ।୨୨୩।
ବାମକରେ ଖପର ଶୂଳ ଦକ୍ଷିଣ ଯେ ପାଣି
କର୍ଣ୍ଣେ ତାମ୍ର ମୁଦ୍ରା ନିଶାକାଳେଣ ଭ୍ରମଣି ।୨୨୪।
ଚଉଦ କୋଟି ଯୋଦ୍ଧା ବସନ୍ତି ଯେ ନେପାଳ ପଶୁପତେ
ତାହାଂକର ଭୁଲେଣ ସ୍ୱାମୀ ବହଉନ୍ତି ବଶ୍ୱନାଥେ ।୨୨୫।
ଶରୀରେ ଆଭରଣ ସ୍ୱାମୀ ଭୁଜଙ୍ଗ ସର୍ପଫେରୁ
ଅନ୍ତରୀକ୍ଷେ ବାଜଇ ଯାହାର ନବଲକ୍ଷ ଡମ୍ବରୁ ।୨୨୬।
ମାନବ ଅବତାରେଣ ଚହ୍ନିଂ ଖେଳନ୍ତି ଦେବ କାଶୀ
ସେ ପଶୁପତିର ରାଜ୍ୟେ ଯାଇଂ ଅର୍ଜୁନ ବେଗେ ପଶି ।୨୨୭।

---

୨୧୬। ' ଦେଖନ୍ତି ପୁରଜନେ ସାନନ୍ଦ ମନ ଚତ୍ତେ । (ଟ)
୨୧୯। ଚନ୍ଦ୍ରବଂଶ ରାଜ୍ୟ ଅଛି ସନ୍ନିଧେ କଟକ ହେମବନ୍ତ । (କ,ଖ)

ବାଜନ୍ତି ବୀରତୂର ଦୁନ୍ଦୁଭି ଡାଉଣ୍ଡି
ପ୍ରବାଳ ଆଦିତ୍ୟ ପ୍ରାୟେ ଅଷ୍ଟରନ୍ଧ୍ରେ ରଥ ମଣ୍ଡି ।୨୨୮।
ଅର୍ଜ୍ଜୁନର ପଶନ୍ତେଣ ସେ ଗଣନାୟକମାନେ
କରେଣ ତ୍ରିଶୂଳ ବୁଲାଇ ଓଗାଳିଲେ ଅର୍ଜ୍ଜୁନ ସନ୍ନିଧାନେ ।୨୨୯।
କାସ୍ବଂରରେ ବୋଳିକରି ଉର୍ଦ୍ଧ୍ବ ମୁଖେଣ ହାକ
ସିଂଘନାଦ ଶବଦେ ବଜାନ୍ତି ଘୋର ଡାକ ।୨୩୦।
ଆରେ ମାନବ ଜନ୍ମ ହୋଇ କଂପା ସେତେକ ଧରସୁ
କାଳସର୍ପେ ଖଡଆଳରେ ବନ୍ଧରେ କଂପେ ଆସି ପଶୁ ।୨୩୧।
ଅର୍ଜ୍ଜୁନ ଦେଖିଲା ସେ ସମସ୍ତ ରୁଦ୍ର ବଳଇ
ମାରନ୍ତେ ନ ପୁଣ ଇଶ୍ବରେ କୋପ କରନ୍ତି ବୋଲି ଭାଳଇ
ମନକଇଂ ।୨୩୨।
ସ୍ବାମୀର ଚିହ୍ନ ସେତ ବହନ୍ତି ନିଜ କାୟେ
ଅଙ୍ଗେଣ ରୁଦ୍ର ପଦବୀ ବାହାନ ବଇଲ ଗୋଠାୟେ ଗୋଠାୟେ ।୨୩୩।
ତଳକୁ ନାରାଜ ମାଇଲେ ହୋଇବ ଗୋହତ୍ୟା
ଉପରକୁ ମାଇଲେ ଯତି ସମାନ ହୋଇବ ବ୍ରହ୍ମହତ୍ୟା ।୨୩୪।
କଳକଳା ରାବ ଦେଇ ବେଢିଲେ ଶିବଗଣେ
ଅର୍ଜ୍ଜୁନ ସଇନ ଗୁଣେ ଯୋଗଛନ୍ତି ବାଣେ ବାଣେ ।୨୩୫।
ଅନ୍ୟୋଅନ୍ୟ ସମର ଯହୁଂ ଲାଗିଲା ସନ୍ଦେହ
ଅର୍ଜ୍ଜୁନ ଡାକ ଦିଅଇ ବାବୁରେ ଦଣ୍ଡେକ ରହ ରହ ।୨୩୬।
ପାଥର ବଚନେ ଥମ୍ଭୀଭୂତ ସନ୍ୟମାନେ
ନାରାଜ ସମ୍ବରଣ ବିଷାଦେ ଭାଳନ୍ତି ପଞ୍ଚୁମନେ ।୨୩୭।
ପଶୁପତି ରାଜାର ଗଣନାୟକମାନେ
ତ୍ରିଶୂଳନ୍ତି ବୁଲାଇ ସେ ପିଟିଲା କୋପମନେ ।୨୩୮।
ଦେଖିଣ ସଂକୋଚ ଯେ ବାସବ କୁମାର
ଧନୁରେ ବସାଇଲା ନେଇ ହାବୋଡା ମୋହନା ଶର ।୨୩୯।
କୋପେଣ ବନ୍ଧିଲେ ସେ ପାଣ୍ଡବ ପଞ୍ଚାଳ
ଭୂମିରେ ଲୋଟିଲେ ସନ୍ୟ କେଶବାସ ଅତି ଅସମ୍ଭାଳ ।୨୪୦।
ଯେସନେକେ କଦଳୀ ବନ ଲୋଟଇ ବାତଘାତେ
ସେକର ଉପରେ ଆରେକ ପଡନ୍ତି ହାବୋଡା ଶରଘାତେ ।୨୪୧।

ଯେ ଅବା ଡମ୍ବୁର ପଳାଇଲେ ବିକଳେ
ପଶୁପତି ଗ୍ରାମୁରେ ଶେବନ୍ତି କ୍ରୋଧଭରେ ।୨୪୨।
ତୁ ସ୍ୱାମୀ ପଶୁପତି ପ୍ରଭୁ ପ୍ରସନ୍ନେ ଦେବରାଜ
ତୋହୋର ପ୍ରସନ୍ନେ ଆମ୍ଭର ସିନା ନିଜ ରାଜ୍ୟ ।୨୪୩।
ସ୍ୱାମୀ କେବଣ ଦେଶୁଂ ଅଇଲ୍ଲ ସେ ରଥୀ
ଅଦୋଷେ ତୋହୋର ସନ୍ୟ ମାଇଲ୍ଲ ବିକୋତି ।୨୪୪।
ଗଣନାୟକଂକ ବିକଳେ ବିଜୟେ ପଶୁପତି
ବୃଷଭ ବାହାନେ ବିଜେ ସ୍ୱାମୀ ଧରି ପିନାକ୍ଷୀ ପଶୁପବ ତ୍ରିଶୂଳ
ଶକତି ।୨୪୫।
ଅର୍ଜ୍ଜୁନ ଗ୍ରାମୁରେ ଯାଇଂ ବିଜୟେ କାପାଳୀ
ନାଚନ୍ତି ଶିବଗଣେ ଡମ୍ବରୁ ହାଂପୋଳ ।୨୪୬।
ପଶୁପତି ନୃପତି ଅଛୁ ସଦାଶିବ ବାମ କାଛେ
ସଦାଶିବ ସ୍ୱାମୀଂକୁ ଚିହ୍ନି ନୁଆରଲେ ପାଣ୍ଡବେ ବିବସ୍ତ୍ରେ ।୨୪୭।
ଶିରେଣ ଜଟାଭାର ସର୍ବୁଂକର ଧବଳ କାୟେ
ସରୂପେ ଦିଶନ୍ତି ସଭୟେ ରୁଦ୍ର ଦେବତାର ପ୍ରାୟେ ।୨୪୮।
ଗଣନାୟକ ପ୍ରାୟେକ ବୃହିଣ ଫାଲଗୁନ
ସଦାଶିବ ଉପରକୁ ବିନ୍ଧିଲ୍ଲ ନାରାଚ ଗୋଟି ତିନି ।୨୪୯।
ନାରାଚ ପଡନ୍ତେଣ ଦେବ ଦେଖିଲେ କାପାଳୀ
ଆରେ ରହ ରହ ଅର୍ଜ୍ଜୁନରେ ବୋଲି ଡାକନ୍ତି ଦେବ ଶୂଳୀ।୨୫୦।
ମୁହିଂ ସେ ପଶୁପତି ରେ ଶଇଳଜାର ବନ୍ଧୁ
ରହ ରହ ଅରଜୁନ ତୁ କାହାକଇଂ ଶର ବିନ୍ଧୁ ।୨୫୧।
ବାରତା ପାଇ ନାରାଚ ସଂହରିଲ୍ଲ ଧନୁର୍ଜ୍ଜୟେ
ସ୍ୱାମୀ ତୁମ୍ଭେ ଯେବେ ପଶୁପତି ଦେଖାଅନି ତୋହୋର ନିଜ
କାୟେ ।୨୫୨।
ଅର୍ଜ୍ଜୁନର ବଚନେ ନିଜ କାୟେ ତ୍ରିଲୋଚନ
ପ୍ରତକ୍ଷେ ବିକାଶିଲ୍ଲ ସ୍ୱାମୀର ପଞ୍ଚଇ ବଦନ ।୨୫୩।
ସଦ୍ୟ ବାମ ଘୋର ଈଶାନ ତତ୍ପୁମୁଖ ଯାହାର
ଶଙ୍ଖ ମେଖଳ ପିନାକ ଖଡଗ ତ୍ରିଶୂଳ ଅଛୁ କର ।୨୫୪।

---

୨୫୪। ସଦ୍ୟ ବାମ ଘୋର ଈଶାନ ତତ ପୁରୁଷ
୨୫୪। ମଙ୍ଗଳ ଜଣିତ ପିଙ୍ଗଳ ଜଟା ଭାର ଶିଖ । (ଖ)



ସଦ୍ୟ ବାମ ପାରୁଶେ ବଜସ୍ତେ ଗିରଜା
ସର୍ବାଙ୍ଗ ଭସ୍ମ ବଲେପନ ପିଙ୍ଗଳ ପଞ୍ଚଜଟା ଶୋଭିତ ଦେବରାଜା ।୨୫୫।
ଆରକ୍ତ କୁମୁଦ ଜାଣି ଯାହାର ପଞ୍ଚଦଶ ନେତ୍ର
ଜଳଦ ମାଳଦ ସୋମସୂର୍ଯ୍ୟ ଲଲାଟ ପାଟି ଚିତ୍ର ।୨୫୬।
ଶିରେଣ ସୀମନ୍ତିନୀ କୁଣ୍ଡଳୀ ପନ୍ନଗ ହାର
ତଳହଳ କଣ୍ଠେ ଶୁଦ୍ଧ ସ୍ଫଟିକ ମୁଦ୍ଦର ।୨୫୭।
ଶୁକ୍ଳାମ୍ବର ଶରୀର ଯେ କଣ୍ଠେ ସେ ନୀଳକଣ୍ଠ
ବହଇ ତ୍ରିବେଣୀ ଧବଳାଙ୍ଗୀ ଯେ ଅମଳ ପିଙ୍ଗଳ ଜଟ ।୨୫୮।
ହୃଦେ ଶୋଭବନ ଯେ ବାସୁକୀ ବଳା ମହାନାଗ
କଟିକ ପରିହରଣ ଯେ ଅନନ୍ତ ଉତ୍ତଙ୍ଗ ।୨୫୯।
ତ୍ରିଶୂଳ ପାଶୁପତ ବାମ କରେଣ ପିନାକୀ
ଅନ୍ତରୀକ୍ଷେ ହମ୍ପାଳଣ ବାଜଇ ଯାହାର ନବଲକ୍ଷ ଡାକ ।୨୬୦।
ରୁଦ୍ର ଶହସ୍ରମାନ ଯେ ଦ୍ରବ୍ୟକରେ ଧରି
ନିଜରୂପ ବକାଶିଲେ ଦେବ ତ୍ରିପୁରାରି ।୨୬୧।
ସଂସାର ସୁନ୍ଦର ଯେତେହୁ ଦହିଲାକ ମସ୍ତାଣ
ତାହାର ତହୁଂ ସୁନ୍ଦର ସ୍ୱାମୀ ଶୋଭା ସହସ୍ରେକ ଗୁଣ ।୨୬୨।
ଶିରେଣ ଧବଳାଙ୍ଗୀ ଯେ ହୃଦେଣ ଦେବୀ ଉମା
ନାଭସ୍ଥାନେ ବାରାହୀ ଚରଣେ ବସୁଧା ଆଦ୍ଦବାମା ।୨୬୩।
କର୍କୋଟକ କୁଳକ ଯେ ମହାପଦ୍ମ ଶଙ୍ଖ
ବାହୁଟି କଂକଣ ସେ ଚରଣେ ନେପୂର ତ୍ରିଅମ୍ବେକ ।୨୬୪।
ଡବ ଡବ ଡମ୍ବରୁ ଘୋରବାଦ୍ୟେଣ ହମ୍ପାଳ
ଭରହର ତାଣ୍ଡବ ନୃତ୍ୟନାସ୍ତକ ବଜସ୍ତେ କାପାଳୀ ।୨୬୫।
ଜଗ୍‌ଜନ ମୋହନ୍ତ ସ୍ୱାମୀ ରୂପେ ହରେ କନ୍ଦର୍ପ ଦର୍ପ
ବୃଷଭ ଆରୂଢେ ସ୍ୱାମୀ ଦେଖାଇଲେ ସରୂପ ।୨୬୬।
କର୍ଣ୍ଣରେ କୁଣ୍ଡଳମଣ୍ଡଳ ଯେ କେୟୂର ହାର ଲମ୍ବି
କରେଣ ଖପର ଯେ ବ୍ରହ୍ମ ଲଲାଟପାଟି ।୨୬୭।
କୁଶ ଭକ୍ଷନ୍ତେ ସ୍ୱାମୀ ବହିଲୁ ମହାଭାଗ
କପିଳାର ଗଣ୍ଡସ୍ଥଳ ମୋଡିଲୁ ଦେବ ବେଗ ।୨୬୮।

ଭଇରବେ ରୂପେଣ ପିଚାର ଲଲାଟପାଟି
ଚର୍ମରେ ବସିଛୁ କପିଳାର ମୁଣ୍ଡଗୋଟି ।୨୬୯।
ସ୍ୱାମୀ ଉମାର ହିଂସାସେ ଦକ୍ଷର ଯଜ୍ଞଭଞ୍ଜା
ଅଭୟେ ବରଦାୟକ ପ୍ରସନ୍ନେ ଦେବରାଜା ।୨୭୦।
ନେପୂର କଂକଣ ଯେ ଉତ୍ତଙ୍ଗ ମଣିହାର
ଗଞ୍ଛିତ ରୋମାବଳୀ ଯାହାର ଅନନ୍ତ କୋଟି ଉଗ୍ରତାର ।୨୭୧।
ବିଜୟେ ରୁଦ୍ର ପୁରୁଷ ଯେ ବିଜୟେ ବିଶ୍ୱବାସୀ
ଶ୍ରୀ ନେପାଳ ପଶୁପତି ବିଜୟେ ଦେବକାଶୀ ।୨୭୨।
ଶ୍ରୀ ନେପାଳ ପଶୁପତି ଚରଣେ ମୁଂ ସେବି
ସଜ୍ଜନ ଜନ ସ୍ୱଚ୍ଛେ ମୁଂ ହୃଦଗତେ ଭାବି ।୨୭୩।
ପ୍ରସନ୍ନେ ବିଶ୍ୱବାସୀ ମୁଂ ଯା ଦେଖିଲି ପ୍ରତକ୍ଷେ
ଗିରିଜାର ପ୍ରସନ୍ନେ ବଖାଣିଲି ବ୍ୟାସମୁଖେ ।୨୭୪।
ଅନୁଗ୍ରହ ବିଶ୍ୱବାସୀ ଶ୍ରୀ ନେପାଳ ପଶୁପତିର ଭାବନା
ବିନୟେ ଭଗତେ ବଖାଣିଲି ଶ୍ରୀ ସାରଳା ଦାସ
ଶୂଦ୍ରମୁନି ।୨୭୫—୭୦୨୨।

---

## ପଶୁପତି ରାଜାର ସୈନ୍ୟମାନଙ୍କର ପୁନର୍ଜ୍ଜୀବନ ଓ ରଣସ୍ତମ୍ଭ ରାଜ୍ୟରେ ବୀରବର ରାଜା ସହିତ ଯୁଦ୍ଧ, ଅର୍ଜ୍ଜୁନର ହିଙ୍ଗୁଳାଠାରୁ ବରପ୍ରାପ୍ତି

ବଦୟନ୍ତି ଅଗସ୍ତି ଯେ କୁମ୍ଭଋଷିର ବାଳେ
କ୍ଷୀରେନ୍ଦ୍ର ଗଣ୍ଡୂଷ କଲା ଯେଉଂଣ ମହାତ୍ମା ବାଳକାଳେ ।୧।
ସେ ମୁନି ମୁଖରୁ ଗଳଇ ସୁଧାରସ
ଶ୍ରୀ ବିଷ୍ଣୁ ପୁରାଣ ମହାଭାରଥ ସଭାପର୍ବ ହୃଦପଦ୍ମେ ଘୋଷ ।୨।
ମୁଂ ସେହିା ବଖାଣିଲି ସୁଜନ ଜନସ୍ୱଚ୍ଛେ
ମୁକତିକଇଂ ଇଚ୍ଛା କରନ୍ତି ପରମ ପଣ୍ଡିତେ ।୩।

---

୨୭୧।୧ ବିଜୟେ ରୁଦ୍ର ପୁରୁଷ ଅନନ୍ତ ଜଳଜପା । (ଛ,ଘ,ଙ)
୨୭୨।୨ ଶ୍ରୀ ନେପାଳ ପଶୁପତି ସ୍ୱାମୀ ବିଜୟେ ସତ୍ୟପା । (ଡ,ଠ)

ରୁଦ୍ରଗଣ ଯେମନ୍ତ ଦେବ ବୃଷଭ ପିଠିରେ ବଜେ
ସରୂପ ଦେଖି ରଥ ତେଜ୍ୟାକଲା ପଣ୍ଡୁରାଜାର ଆତ୍ମଜେ ।୪।
ଶ୍ରୀ ପଶୁପତି ଦେବଂକ ଚରଣେ ନମାମି
ବୃଷଭ ପାଦତଳେ ଶତ ସହସ୍ର ଦଣ୍ଡ ପରଣାମି ।୫।
ଭଗତମହ୍ରଲ ନାଥ ପ୍ରସନ୍ନ ଧୂର୍ଜଟୀ
ଭଗତ ନିଷ୍ଫଳ ନୋହଇ ଯେବେ ଚରଣ ତଳେ ଖଟି ।୬।
ଶ୍ରୀ ସଦାନନ୍ଦ ବୋଇଲେ ଉଠ ଉଠ ହୋ ଫାଲଗୁନି
କି ନିମନ୍ତେ ନାଶକଲୁ ମୋହୋର ଶିବଗଣ ସଇନି ।୭।
ନଜାଣୁ କି ନେପାଳ ପଶୁପତି ମହାତୀର୍ଥ
ରାବଣର ଭୟେ ଆସି ସତ୍ୟଯୁଗେ ଆମ୍ଭେ ଯେଥେ ହୋଇଲୁ
ଗୋପତ ।୮।
ଅର୍ଜୁନ ବୋଇଲା ସ୍ୱାମୀ ନାହିଂ ମୋର ଗ୍ୟାନ
ଶିବ ବୋଇଲେ ଯେ ଗୋପ୍ୟାନ ତୀର୍ଥ ଅର୍ଜୁନ କର ତୁ ସ୍ନାହାନ ।୯।
ପ୍ରତକ୍ଷରେ ଶିବପୁର ତୋହୋରେ ପ୍ରାପତ ହୋଉ ବାବୁ
ଯେ କଳିକାଳ ଧଂସିବାକୁ ମୁକତ ଯେତେଂ ସବୁ ।୧୦।
ଶ୍ରୀ ବିଶ୍ୱନାଥ ନେଇ ଦେଖାଇଲେ ଗୁପ୍ତ ଶିବପୁରୀ
ଗୋପ୍ୟାନ ଭଗୀରଥିରେ ଅର୍ଜୁନ ସ୍ନାହାନ କରି ।୧୧।
ନିତ୍ୟକର୍ମ ସାରି ରୁଦ୍ରକୁଣ୍ଡେଣ ତର୍ପଣ
ବାକ୍ୟକାଳେ ତୃପ୍ତ ହୋଇଲେ ସମସ୍ତ ପିତୃଗଣ ।୧୨।
ଅର୍ଜୁନ ପିଣ୍ଡ ଦିଅନ୍ତେ ପାତିଲେ ସର୍ବେ ହାଥ
ସମସ୍ତଂକ ହାଥେ ଯାଇଂ ପିଣ୍ଡ ହେଲା ଉପଗତ ।୧୩।
ଯେବଣ ଅକ୍ଷୟେ ପିଣ୍ଡ ଦିଲେ ସବ୍ୟସାଚୀ
ପଞ୍ଚତରଣ ପୁରୁଷ ବାଣ୍ଟିଣ ସର୍ବେ ତାହା ଭକ୍ଷି ।୧୪।
ଗତ ପାତକମାନ ଯେ ସମସ୍ତ ଗଲା ଧଂସ
ଲଭିଲେ ପିତୃଲୋକେ ଅକ୍ଷୟ ସ୍ୱର୍ଗବାସ ।୧୫।
ତହୁଂଣ ବିଶ୍ୱେଶ୍ୱର ଯେ ହୋଇଲେ ଅନ୍ତର୍ଦ୍ଧାନ
ପଶୁପତି ରାଜାକଇଂ ନିମନ୍ତ୍ରଣ କଲେକ ଅର୍ଜୁନ ।୧୬।
ଅକ୍ଷତ ଗୁଆ ଦେଇ କଲେକ ନିମନ୍ତ୍ରଣ
ପାରିଦଣ୍ଡ ରାଜାନ୍ତ ଯେନି ତୁ ଚଳ ଯେତ୍ସକ୍ଷଣ ।୧୭।

ବାରୁଣାବନ୍ତେ ଯାଇଂଣ ତୁ ପ୍ରବେଶ ହୋଇବୁ
ପାଣ୍ଡବନ୍ତ ରାଜାନ୍ତ ସଙ୍ଗେ ଘେନି ବନ୍ଧନ ତୁ ଯିବୁ ।୧୮।
ଆହୋ ଅର୍ଜ୍ଜୁନର ହାବୋଡା ଶରେ ଯେତେ ସନ୍ୟ ପଡଥିଲେ ଲୋଟି
ଜୀବନ୍ୟାସ ଶର ଯେ ଅର୍ଜ୍ଜୁନ କଲେକ ବୃଷ୍ଟି ।୧୯।
ଉଠିଲେ ଗଣନାୟକମାନେ ନିଜ ପ୍ରାଣ ପାଇ
ଅର୍ଜ୍ଜୁନକୁ ପ୍ରଣିପତ୍ୟ ପଶୁପତି ରାଜସାଇଂ ।୨୦।
ସମଦଣ୍ଡ ସନ୍ୟ ରାଜା ସାଜଣ ହରଷେ
କରଇ ପ୍ରସ୍ଥାଣ ରାଜା ବାରୁଣାବନ୍ତ ପ୍ରତୋଷେ ।୨୧।
ତହୁଂଣ ଅର୍ଜ୍ଜୁନ ଗଲେ ବୀରତୂର ବାଦ୍ୟନାଦ କରି
ପଶ୍ଚିମ ମୁରତି କରି ସନ୍ୟ ଚଳାଇଲେ ବେଗକରି ।୨୨।
ରୁଦ୍ରପାଦ ଗଙ୍ଗାତୀରେ କୁଶ ମଣ୍ଡଳ ବୋଲି ନଗରୀ
ବରଅଙ୍ଗରୁଦ୍ର ବୋଲି ତହିଂ ରାଜାୟେ ରାଜ୍ୟକରି ।୨୩।
ଛପନକୋଟି ରଥୀ ବାଇଶ ଅର୍ବୁଦ ହାଥୀ
ଯେ ଏକାଦଶ ୮.ବକ୍ଷ ଅଶ୍ୱ ଦଶକ୍ଷଉଣୀ ପାଦାନ୍ତି ।୨୪।
ଅର୍ଜ୍ଜୁନ ବିଜେକଲେ ସେ କୁଶ ମଣ୍ଡଳର ରାଜ୍ୟେ
ରୁଦ୍ରପାଦ ଗଙ୍ଗାୟେ ସ୍ନାହାନ କରନ୍ତି ସେ ବାସେବର ଆତ୍ମଜେ ।୨୫।
ନିତ୍ୟକର୍ମ ସାରଣ ସେ କଟକେ ପରବେଶ
ଦେଶାନ୍ତରେ ଜଣାଇଲେ ଯାଇଂ ବରଅଙ୍ଗରୁଦ୍ର ରାଜାର ପାଶ ।୨୬।
ସ୍ୱାମୀ କେଉଂଣ ଦେଶରୁଟି ଯେ ପ୍ରତାପୀ ମହାଯୋଧୀ
ଉତ୍ତରଦିଗ ରାଜାନ୍ତ ଦେବ ଆସୁଛି ସଙ୍ଗସାଧି ।୨୭।
ଦୃଷ୍ଟିର ହୋଇଲେ ଦେବ ନ ବ୍ରତନ୍ତି କେହି
ଶରଣ ପଶିଲେ ଶତ୍ରୁକୁ ରକ୍ଷା କରଇ ସେହି ।୨୮।
ଛତ୍ରୀ ଅଗ୍ନିର୍ଗଳ ସେ ପ୍ରତାପୀଂ ମହାଯୋଧୀ
ଯମାଗୋଷ୍ଟ ରାଜାକଇଂ ଦେବରଥେ ଆଣିଅଛି ବାନ୍ଧି ।୨୯।
ଯମାଗୋଷ୍ଟର ବଚନ ଶୁଣି ସେ ବରଅଙ୍ଗ ରୁଦ୍ର ରାୟେ
ସମଦଣ୍ଡ ଘେନିକରି ପାଗ୍ଛେଟି ବେଗେ ଆସେ ।୩୦।
ଭାରଯା ପୁତ୍ର ସହିତେ ତାର କୁଟୁମ୍ବ ବନ୍ଧୁଜନ
ସମସ୍ତେ କରେ ଧରିଅଛନ୍ତି ପାଠ ଛତ୍ରମାନ ।୩୧।

ନଗ୍ରରେ ପାୟେନ୍ତା ପଡିଲ୍ ନୃପତି ମଣ୍ଡଳାଧି
ଅର୍ଜୁନକଇଂ ପ୍ରଣିପତ୍ୟହୋଇ ସେ ବିନୟ ବଚନ ସାଧି ।୩୨।
ବହୁତ ଭଗତହୋଇ ଅନେକ ସ୍ତୁତି ବୋଲି
ଶତେ ସହସ୍ର ଦଣ୍ଡ ଲଇ ଶୁଣିଲ ଗଡପାଳ ।୩୩।
ସେ ରାଜାର ବିନୟଭାବ ଦେଖିଣ ଅର୍ଜୁନ
ରଥରୁ ଓହ୍ଲାଇ ତାଙ୍କୁ କଲେକ ସମାଧାନ ।୩୪।
ଅର୍ଜୁନ ବୋଇଲେ ତୁ ଜାଣିଲୁ ସନ୍ଦେହ
ସୁଚିତ୍ତ ହୋଇଣ ସୁବେ ରାଜ୍ୟରେ ତୋର ରହ ।୩୫।
ନିମନ୍ତ୍ରଣ ଯୋଗାଡ ଯେ ହଲେକ ସବ୍ୟସାଚୀ
ରାଜସୂୟ ଯାଗକଇଂ ଯାଅ ତୋହୋର ଥାଠସନ୍ୟ ଯେତେ ଅଛୁ ।୩୬।
ଆଗ୍ୟାଂ ପ୍ରମାଣେ ସେ ବିରଞ୍ଚିରୁଦ୍ର ରାୟେ
ସମଦଣ୍ଡ ଦେଇ ରାଜା ବାରୁଣୀବନ୍ତକଇଂ ଯାୟେ ।୩୭।
ଚଳଇ ଧନୁର୍ଜୟେ ରୁଦ୍ରପାଦ ଗଙ୍ଗାଶିରେ
ପ୍ରବେଶ ଅର୍ଜୁନ ଯାଇଂ ରଣସ୍ତମ୍ଭ ରାଜ୍ୟରେ ।୩୮।
ବୀରତୂର ଶବଦ ବଜାଇ ଫାଲଗୁନି
ରଣସ୍ତମ୍ଭ ଗଡେ ଯାଇଂ ପ୍ରବେଶ ରୟୁଣୀ ।୩୯।
ସେ ରାଜ୍ୟର ରାଜା ବୀରବର ଚନ୍ଦ୍ରବ୍ରହ୍ମ
ବଡାଇ ପ୍ରତାପୀ ସେ ଉତ୍ତର କୋଶଳେ ମହାଛନ୍ଦୀ ।୪୦।
ସେ ଗଡ ଭିତରେ ଯେ ବିଜୟେ ହିଙ୍ଗୁଳା
ଯୋଗ୍ନୀ ମାତାଙ୍ଗୀ ସେ ପ୍ରସନ୍ନେ ମହାଖଳା ।୪୧।
ମନୁଷ୍ୟ ଅବତାରେ ବିଜୟେ ଜଗନମାତା
ତାହାର ପ୍ରସାଦକେ ରାଜ୍ୟକଇଂ ନାହିଂନା ଲଂଘନ୍ତା ।୪୨।
ଅଗ୍ନିଜ୍ୱାଳା କାଳାନଳ ମୂର୍ତ୍ତି ସେ ଅଭୟେ ପିଙ୍ଗଳାକ୍ଷୀ
କଉଣପ ବଳ ଧଂସିଣି ସେ ଅଟଇ ବିରୂପାକ୍ଷୀ ।୪୩।
ଅର୍ଜୁନ ବିଜୟେ କଲେ ସେ ରଣଘୋଟ ପର୍ବତେ
ବହଇ କଉଶିକ ନଦୀ ସେ ପର୍ବତ ହେମବନ୍ତେ ।୪୪।
ଧନୁମାସ କୃଷ୍ଣପକ୍ଷ ଷଷ୍ଠୀ ଶଉରିବାର
ପୂର୍ବା ଫାଲଗୁନି ନକ୍ଷତ୍ର ଭୋଗ୍ୟ ସେ ଦିନର ।୪୫।

ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଧନୁ ସକଳଗ୍ରହରୁ ପାଞ୍ଚଦିନ ହେଲା ଭୋଗ ।୪୬।
ପଶ୍ଚିମ ଦିଗରେ ଯୋଗୀ ଥିଲା ସୁବିଧାନେ
ସକଳ ଶୁଭ ମାହେନ୍ଦ୍ର ବେଳ ବାଦ୍ୟମାନେ ।୪୭।
ଅମୃତ ଯୋଗ କରଣ ମାହେନ୍ଦ୍ରକୁ ଘେନି
କଉଶିକା ଗଙ୍ଗାକୂଳେ ବିଜୟେ ଫାଲଗୁନି ।୪୮।
ସେ ନଦୀକି ରକ୍ଷା କରନ୍ତି ଯୋଦ୍ଧା ପାଞ୍ଚଲକ୍ଷ
ଅର୍ଜୁନଙ୍କୁ ଓଗାଳିଲେ ଯାଇଂ ସମରେ ପ୍ରତିକକ୍ଷ ।୪୯।
ଆହୋ କେବଣ ଦେଶର ରାଜା ଚଳାଉ ପରଥାଠ
ଯେ ହାଦେ ମହାତୀର୍ଥ କ୍ଷେତ୍ରରେ ଅଟେ ମହାଶ୍ରେଷ୍ଠ ।୫୦।
ବିଜୟେ କାତ୍ୟାମା ମାୟେ ପ୍ରତକ୍ଷେ ହେଙ୍ଗୁଳା
ଜନ୍ମାନ୍ତର ଦରିଦ୍ର ଫିଟଇ ଯେ ଦେଖେ ଯେକବେଳା ।୫୧।
ଜ୍ୱାଳା ମାହେଶ୍ୱରୀ ଦେବୀ ; ରାଜାକଇଂ କରଇ ରକ୍ଷା
ଅଭୟା ହିଙ୍ଗୁଳା ତାର ପୂରଇ ମନବାଞ୍ଛା ।୫୨।
ତେଣୁକରି ଯେଥିକୁ ନ ଆସନ୍ତି ଦଇତ ପିଶାଚମାନେ
ଶୁଭଲଗ୍ନ ବେଳରେ ଯେ ମାହାନ୍ଦ୍ର ସୁବିଧାନେ ।୫୩।
ରହନ୍ତି ଯେ ଆଜ୍ଞେ ହୋଇ ଭୟେକରି ମନେ
ଆମ୍ଭ ଯୋଗୁଂ ନ ପଶନ୍ତି ଯେ ଜଳ ଉଦ୍ୟାନେ ।୫୪।
ଅତିଅନ୍ତ ସୁନ୍ଦର ଗନ୍ଧେଶ୍ୱର ଅଟୁ ତୁ କେବଣ ଦେଶର ରାଜା
ପରମାଦକଇଂ ନ ପଶ ତୁ ବାହୁଡ଼ ଯେଥୁଂ ବେଗେ ଯା ଯା ।୫୫।
ଯଦ୍ୟପି ଆସିବେ ଯେଥକଇଂ ଦେବଗଣ ଗନ୍ଧର୍ବେ
କେଭ୍ବି ଯେଥି ସ୍ନାହାନ କରି ନୁଆରନ୍ତି ଆମ୍ଭର ଅଭାବେ ।୫୬।
ଅର୍ଜୁନ ବୋଇଲେ ହୋ ଆମ୍ଭର ମହାଯାଗେ
ରାଜାମାନଙ୍କୁ ନିମନ୍ତ୍ରଣ କରୁ ଆମ୍ଭେ ବେଗେ ବେଗେ ।୫୭।
ଉତ୍ତର ଦିଗେ ଛନ୍ତି ହୋ ଯେତେକ ନୃପତି
ସମସ୍ତ ରାଜାଯେ ଦଣ୍ଡ ଘେନିଣ ଯାଉଛନ୍ତି ।୫୮।

---

୫୪। ୨ ଆମ୍ଭେ ରକ୍ଷାପାଳକ ଯେ ପଶି ନ ଦେଉ ଜଳ ଉଦ୍ୟାନେ ।
(ତ,ପ,କ)

ରଜାର ଅଗ୍ରତେ ତୁମ୍ଭେ ବାରତା କହ ଯାଇ ବେଗେ
ସମଦଣ୍ଡ ଘେନି ନୃପତି ଆସୁ ଆମ୍ଭର ଆଗେ ।୫୯।
ଅର୍ଜ୍ଜୁନ ବଚନ ଶୁଣି ସେ କଲେକ ଉପହାସି
ଜୀବନ ଘେନିଣ ତୁ ଯେଥୁ ବାହୁଡ ଯାଅସି ।୬୦।
ମହା ମହା ରଜାୟେ ଆସିତ ନୁଆରନ୍ତି ଯେଥକୁ ଦଣ୍ଡ ଘେନି
ଯେ ନଗ୍ରୀ ପାରହୋଇ ନୁଆରନ୍ତି ନାଶଯାନ୍ତି ସମସ୍ତ ସଇନି ।୬୧।
ଆଗିଆଣି ଥାଠେ ଅର୍ଜ୍ଜୁନର ଜୟେ ଧ୍ୱଜୟେ ବେଳିବାରେ
ଗୋଳକଲେ ପଶି ଯାଇ ସେ ରଜାର ଥାଠରେ ।୬୨।
କଳକଳା ନାଦ ଦେଇ ପଡିଲେ ବେଗେ ଯହୁଁ ମାଡି
ଅର୍ଜ୍ଜୁନର ସଇନିମାନେ ବନ୍ଧିଲେ ଉପ୍ରୋଧମାନ ଗୁଡି ।୬୩।
ପାଞ୍ଚଲକ୍ଷ ଯୋଦ୍ଧା ଯେ ବୀରବର ରଜାର ଥିଲେ
ଲୋହସାର ଧନୁରେ ନାରାଚ ପୂରେଇ ଅର୍ଜ୍ଜୁନ ସଇନିକ ବନ୍ଧିଲେ ।୬୪।
ବାସବର ସଇନି ଯେ ପ୍ରତଗ୍ୟାଂ ସାମରଥା
ପରବାସ୍ତ୍ର ଜାଣନ୍ତା ସେ ଶକତା ବଳବନ୍ତା ।୬୫।
ପୂରେଇ ନାରାଚ ଯେ ବନ୍ଧିଲେ ଆକ୍ଷେପି
ଯମନିକ ସନ୍ୟବଳ ଉପରେ ନାରାଚ ବରଷି ।୬୬।
ପଂକେଣ ଯେସନେକ ବସଇ ଯାଇଂ କୀଳା
ପଡିଲେ ଖାଷମୁନା କୋଟି ଯାଠି ନାରାଚ ଅନର୍ଗଳା ।୬୭।
ଅଶ୍ୱ ଯୋଦ୍ଧାଂକର ଉପରେ ଯାଇଂ ପଡି ଅଭେଦ ସେହ୍ଲା ଫୁଟି
ଆହୋ ଗଜ ଯୋଦ୍ଧାମାନେ ଫୁଟି ରୁଧିର ବହିଲ ବୃଷ୍ଟି ।୬୮।
ନଗ୍ରୀର ଭିତରେ ଛନ୍ତି ବୀରବର ରଜାର ସନ୍ୟମାନେ
ଉପରେ ଥାଇଂ ବନ୍ଧନ୍ତି ଅର୍ଜ୍ଜୁନର ସଇନ୍ୟେ ।୬୯।
ରଜାର ସଇନି ଉପରେ ସମସ୍ତ ଶର ଫୁଟି
ଘାୟେଣ ନିଦ୍ରାଘ ବଳ ପଡିଲେ ସର୍ବେ ମହୀଲୋଟି ।୭୦।
ରକତେ କର୍ଦ୍ଦମୟେ ହୋଇଲା ସବୁଂକର କାୟେ
କଉଣିକ ନଗ୍ରୀରେ ପଡି ବହଇ ଶ୍ରୋଣିତ ମୟେ ।୭୧।

---

୬୬।୨ (ଯବନ) ଯମନ ବଳ ସଇନ ସେ ନାରାଚ ଆକ୍ଷେପି ବରଷି ।
(ଘ,ଝ)

ଆପଣେ ଗୃହଶର ଧରି ବନ୍ଧଇ ଫାଲଗୁନ
ବେନିବଳ ସନ୍ୟ ସମରେ ହୋଇଲେ ଅନ୍ୟୋଅନ୍ୟ ।୭୨।
ଆହୋ ପାଣ୍ଡବ ବଳ ଅଟନ୍ତି ଯେ ନାରାୟଣ ଭଗତା
ସଂଗ୍ରାମେ ପଶନ୍ତେ ବିଷ୍ଣୁ ନାମ କରନ୍ତି ବକତା ।୭୩।
ନାରାୟଣ ନାମ ଯେ ଅଟଇ ଘଟରୂପି
ଅସୁର ବଳ ସାହେର ଯେ କୃଷ୍ଣ ଘଟଶିଷି ।୭୪।
ଯେତେକ ନାରାଜ ହୋ ଅର୍ଜୁନ ଥାଠେ ପଡ଼
ସମସ୍ତ ଶସ୍ତ୍ରମାନେ ପଡ଼ୁଛନ୍ତି ହାବୋଡ଼ ।୭୫।
ଅର୍ଜୁନର ସଇନ୍ୟ ଯେତେକ ଆହେଷି ଶର ବାନ୍ଧ
ଶସ୍ତ୍ର ଗୋଟିକେ ରାଉତ ଗୋଟିଏ ଶିରଚ୍ଛେଦ ।୭୬।
ପଡ଼ିଲେ ସଂଗ୍ରାମେ ବୀରବର ରାଜାର ସଇନ
ପାଞ୍ଚଲକ୍ଷ ଚଉବଂଶ ସେନା ଯୋଦ୍ଧା କେହି ନ ଗଲେ ପ୍ରାଣ ଘେନି ।୭୭।
କଉଣିକ ନଦୀରେ ଯାଇଂ ପଶିଲେ ସବ୍ୟସାଚୀ
କରନ୍ତି ସ୍ନାହାନ ଯେ ପୁଣ୍ୟତୋୟା ଛର୍ଥେ ପଶି ।୭୮।
ଦେବ ତର୍ପଣ ପିତୃ ତର୍ପଣ ପିଣ୍ଡ ପରଦାନେ
ଇଚ୍ଛାଏ ପାଣ୍ଡବ ବଳ ରହିଲେ ସେ ସ୍ଥାନେ ।୭୯।
ବାଲି ମାଡ଼ ଶାଡ଼ୀଘର କରି ରହିଲେ ସଇନ
ରଣସ୍ତମ୍ଭ ଉତ୍ତର ଗଡ଼ ଅଛି ତହିଁଙ୍କ ଜୁଣ ତିନି ।୮୦।
ଆସ୍ଥାନେଣ ବଜେ କରିଛନ୍ତି ବୀରବର ଚନ୍ଦ୍ରବ୍ରାଣ୍ଡ
ଗ୍ରାମୁରେ ଉଭାରି ଅଛନ୍ତି ତିନି ଲକ୍ଷ ପାଦାନ୍ତି ।୮୧।
ପୁଣ୍ୟତୋୟା ନଦୀରେ ପାଞ୍ଚଲକ୍ଷ ଯୋଦ୍ଧା ପଡ଼ିଲେ
ଚଉତଂଶ ଜଣ ମାତ୍ର ତହୁଁ ଉବୁରି ପଳାଇଲେ ।୮୨।
ପଞ୍ଜରମାନଂକରେ ଅଛଇ ଶର ଫୁଟି
ଶରୀର ଯାକ ତାଂକ ଶ୍ରୋଣିତମଏ ବୃଷ୍ଟି ।୮୩।
ଜୀବନ ଘେନି ତହୁଂ ପଳାଇଲେ ବେଗେ
ଯାଇଂଣ ଜଣାଇଲେ ବୀରବର ଚନ୍ଦ୍ରବ୍ରାଣ୍ଡର ଆଗେ ।୮୪।

---

୭୩।୨ ସାଂଗ୍ରାମେ ପଶନ୍ତେ ବିଷ୍ଣୁ ତେଜ ଅପ୍ରମିତା । (ଘ,ନ,ଖ,ଠ)
୭୪।୨ ସାହେର—ସମୁଦ୍ର ।
୭୫।୨ ସମସ୍ତ ଶସ୍ତ୍ରମାନ ପଡ଼ନ୍ତି ଉପୁଡ଼ି । (ଡ,ଙ)



ସ୍ୱାମୀ ମହେଶ୍ୱର ଦେବ ତୁମ୍ଭେ ଅବସ୍ଥା ଆମ୍ଭର ଦେଖ
ପଡ଼ିଲେ ପାଞ୍ଚଲକ୍ଷ ଯୋଦ୍ଧା ସ୍ୱାମୀ ରାଜ୍ୟ ତୋହୋର ରଖ ।୮୫।
ଅବଧୂତେ ଯୋଦ୍ଧାଏକ ଅଇଲେ ଦେବ କାହୁଂ
ମାଇଲ ସମସ୍ତ ଯୋଦ୍ଧା ବାରତା କହୁଂ କହୁଂ ।୮୬।
ସ୍ୱାମୀ ବଜ୍ରଭଣ ଆଗ୍ୟାଂ ଦେବା ବୀରବର ଭ୍ରମରାସୁ ବଳା
ପଡ଼ିଲ ଅପରସୁ ଦେବ ଗଡ଼ ଗୁଡ଼ ବେଗେ ପଳା ।୮୭।
ମହା ସଂଗ୍ରାମେ ରଣଜିତା ସେ ଅଟନ୍ତି ଧନୁର୍ଦ୍ଧର
ଅଜୟ ଗଡ଼ ଭିତରୁ ଦେବ ନୁହସି ବାହାର ।୮୮।
ଚରଗଣଙ୍କ ମୁଖୁଂ ରାଯେ ଯେସନ ବାରତା ପାଇ
ରାଗେଣ ଉଠିଲ ରାଜା ବେନି ନୟନ ବୁଲଇ ।୮୯।
ସାଜରେ ସାଜରେ ବୋଲ ବଦଲକ ଘୋର ହାକ
ଜଗତି ଉପରେ ଉଠି ପିଟାଇଲ ଟମକ ।୯୦।
ଆହୋ ବଜ୍ରଘୋଷ ବାଜଣା ସଜାଡ଼ ବୀରତୂର ବାଣୀ
ଧାଇଂଲେ ମଣ୍ଡର ବଳେ ଯେ ଯାହାର ବାହାନନ୍ତ ଚଢ଼ି ପଳଣି ।୯୧।
ଭେରୀ କାହାଳୀ ଯେ ଉର୍ଦ୍ଧ୍ୱବାଦ୍ୟ ବାଣୀ
ପାଶଦଣ୍ଡମାନ ଧାଇଂଲେ ସଜାଡ଼ ଶବଦ ଶୁଣି ।୯୨।
ଗଡ଼ଦ୍ୱାରେ ଆସି ସବୁ ଉଭାରଲେ ରାଉତେ
ଅଶ୍ୱନ୍ତ ଖୁରସାଣି କରି ବୁଲବନ୍ତ ଲଂକଆ ଯେ କୁନ୍ତେ ।୯୩।
ବନ୍ଧନ୍ତ ବଜ୍ରବାଣ ନିର୍ଘାତ ବଜ୍ରସୂଚୀ
ପୁଣ୍ୟତୋୟା ନଦୀତଟରେ ଥାଇ ତାହା ଶୁଣିଲେ ସବ୍ୟସାଚୀ ୯୪।
ମୁଣୋହି ସାରଣ ନାବେ ବଜାୟେ ଫାଲଗୁନି
ନାବରେ ପାର ହୋଇଲେ ପାଣ୍ଡବ ବଳ ସଇନି ।୯୫।
ରଣସ୍ତମ୍ଭ ରାଜ୍ୟଲୋକେ ପର ଥାଠ ବାରତା ପାଇ
ଅନେକ ଦେଶର ରାଜାମାନେ ଦଣ୍ଡ ଘେନିଣ ଆସୁଛନ୍ତ ବାହି ।୯୬।
ପ୍ରବେଶ ହୋଉଛନ୍ତ ରଣସ୍ତମ୍ଭ ଗଡ଼ରେ
ମହା ମହା ଯୋଦ୍ଧାଏ ଆସି ମିଳିଲେ ବହୁତ ସମ୍ଭରେ ।୯୭।

---

୮୭।୧ ବଜ୍ରଭଣ ଆଗ୍ୟାଂ ଦେବା ବୀରବର ମାହେଶ୍ୱରୀ ବଳା ।
(ଖ,ଘ,ନ,ଠ)

ବାଜଇ ବୀରତୂର ଚମକ ନିଶାଣ ଦାଉଣ୍ଡି
ବିଛରନ୍ତ କଣଯୂ ଯେ ମୁକୁତା ତୂରି ଗୁଣ୍ଡି ।୯୮।
ରବିଛନ୍ତି ସମଦଣ୍ଡ ମହାସମ୍ଭର କରି
ଅର୍ଜୁନର ସଇନ ପୁଣ୍ୟତୋୟା ନଦୀ ହୋଇଲେକ ପାରି ।୯୯।
ବାହଇ ତୁରଙ୍ଗମ ଯେ ମାତଳି ସାରଥି
ଶଙ୍ଖ ଗୋକ୍ଷୀର କାମପାଳ ଶ୍ୱେତ ଶୁଭ୍ରଅଶ୍ୱେ ଉଡନ୍ତି
ଗଗନଗତି ।୧୦୦।
ନେତର ଆଲମ୍ବ ଉଡନ୍ତି ଫରହରେ ରଥର ଉପରେ
ହୀରାମଣି ମାଣିକ୍ୟ ଝଲକନ୍ତି ଯେହ୍ନେ ବିଜୟେ କରତାରେ ।୧୦୧।
ଆହୋ ସିଂହଦ୍ୱାର ଉପରେ ନବତାଳ ଉଚ୍ଛର୍ଗ ଜଗତି
ପାଣ୍ଡ ଅମାତ୍ୟ ଯେହ୍ନେ ବିଜେ କରିଅଛନ୍ତି ତହିଂ ବୀରବର
ଚକ୍ରବର୍ତ୍ତୀ ।୧୦୨।
ଅଦଭୂତେ ରଥେକ ଯେ ଦେଖିଲେ ଆକାଶେ
ବିଚାରଇ ଇନ୍ଦ୍ର ଦେବତା ସିନା ଚଳଇ ଶୂନ୍ୟବାସେ ।୧୦୩।
ମନ୍ତ୍ରୀବର ବୋଇଲ ହୋ ସେ ନୁହଂଇ ସୁରନାଥ
ମଘବା ହୋଇଥିଲେ ଥାଆନ୍ତା ନା ହାଥୀ ଅଇରାବତ ।୧୦୪।
କେ ବୋଲଇ ଅଳକାର ନାଥ କୁବେର ଦେବତା ଅବା
କେ ବୋଲଇ ଅଶ୍ୱିନୀକୁମାର ଅବା ମହାଦେବା ।୧୦୫।
ଆନ କାହାର ରଥ କି ଚଳଇ ଅନ୍ତରୀକ୍ଷେ
ଧାତୁବାଦ୍ୟ ପୁରୁଷ କି ପିତାମହ ଚତୁର୍ମୁଖେ ।୧୦୬।
ଆହୋ ଯେସନେକେ ବିଚାରନ୍ତେ ପାଣ୍ଡ ଅମାତ୍ୟ
ସନ୍ନିଧେ ପ୍ରବେଶ ହୋଇଲା ବାସବର ରଥ ।୧୦୭।
ଆହୋ ଗଡର ଗୃହକଣ୍ଠରେ ବେଢିଛନ୍ତି ପାଚେରି
ଛନକୋଶ ବହଳ ସେ ଉଚ୍ଚର୍ଗ କୋଶ ଚାରି ।୧୦୮।

---

୯୮। ବିଛରନ୍ତି—ବୁଣନ୍ତି ।

୧୦୭। "ସନ୍ନିଧେ ପ୍ରବେଶ ହୋଇଲା ବାସବର ରଥ" ପରେ
'ଖ,ନ' ପୋଥିରେ ଅଧିକା ପାଠ—

ସେ ସମସ୍ତେ ପାର୍ଥ ତହିଂ ପ୍ରବେଶ ହୋଇଲ
ଗଡ ଦେଖିକରି ମନେ ମନେ ବିସ୍ମରିଲ । (ଖ,ନ)

ସେ ପାଚେରି ଉପରେ ଅଶ୍ବାନ୍ତ ଚଢିଣ ମହାଯୋଧୀ
ବୃଷ୍ଟିବନ୍ତ ଅସିବର ଆକ୍ଷେପିଣ ବାନ୍ଧ ।୧୦୯।
ମେଡ ମଣ୍ଡପ ଦେଉଳ ଅଟ୍ଟାଳୀ ଜଗତି
ପାଚେରି ବୃକ୍ଷ ଉପରେ ଉଠି ଲୋକେ ଅନାବନ୍ତ ।୧୧୦।
ଆହୋ ଅର୍ଜୁନ ସଇନ୍ୟ ଯେଣେ ପଲ୍ଲଣିତ ଥାଟ
ପଶିଲେ କଟକେ ଯାଇଂ ଗଡର ନିକଟ ।୧୧୧।
ଆହୋ ନ ଧରନ୍ତ ନ ମାରନ୍ତ ନ କରନ୍ତ ଉଜାଡ
ଯେ ଯାହାର ଠାବରେ ଥାଅ ବୋଲ ପାଥ ଆଗ୍ୟାଂ ଅବଧାରି ।୧୧୨।
ଦେଖନ୍ତ ନଗ୍ରଲୋକେ ମହା ଅପୂର୍ବ ପରାୟେ
ଆକାଶେ ଉଗ୍ରବ ଯେହ୍ନେ ବଜାୟେ ଦେବରାୟେ ।୧୧୩।
ଆହୋ ନାରାୟଣ ବଜେ କରଛନ୍ତ ଯେବଣ ଥାଟରେ
ତ୍ରଇଲୋକ୍ୟ ମୋହନ୍ତ ଯେ ଜଗତ ସୁନ୍ଦରେ ।୧୧୪।
ଯେସନକ ସମ୍ପଦ ସେ ରଣସ୍ତମ୍ଭ ଗଡ ଦେଶେ
ସଇନ ହାବୋଡଲେ ଯାଇଂ ଗଡର ପୂର୍ବଦ୍ୱାର ପାଶେ ।୧୧୫।
ଆହୋ କୋଶେକ ଓସାର ଯେ ବେନିକୋଶ ଗମ୍ଭିର
ଗଡ ବେଢିଣ ଖଣା ନବଯୋଜନ ବିସ୍ତାର ।୧୧୬।
ଆହୋ ଅର୍ଜୁନର ରଥ ଯେ ଗଲାକ ଅନ୍ତରୀକ୍ଷେ
ବାହାର ଗଡ ଜଗତିରେ ବଜେ ବାସବର ବଗ୍ରେ ।୧୧୭।
ଆହୋ ସଇନ୍ୟକ ଆଗ୍ୟାଂ ଦେଲା ବୀରବର ଚକ୍ରବ୍ରତି
ବାହାର ଗଡ ପାଚେରି ଗ୍ରୁଡଆସ ହୋ ସର୍ବଛତ୍ରୀ ।୧୧୮।
ଆହେ ଜାଣିମାନା କେବଣ ଦେଶର ସେ ଥାଟ
କାହୁଂ ଅଇଲା ସେ କେବଣ ଦେଶର ପରରାଷ୍ଟ୍ର ।୧୧୯।
ବାହାର ଗଡ ପାଚେରି ଯେ ଆବୋରିଥିଲେ ବୀରେ
ଗ୍ରୁଡଲେ ଗଡଖଣା ପଶିଲେ ଭିତରେ ।୧୨୦।
ଯେମନ୍ତେ ଖାଇ ଖଣା ଭିନପୁର ପାଚେରି
କୋଶେକ ବହଳ ଯେ ଉଚ୍ଚର୍ଗ କୋଶ ଚ୍ଚୁରି ।୧୨୧।
ତଳ୍ପଂର ତଳରେ ମେ ଖଣାଯେକ ବିସ୍ତାର
ମହାନଦୀ ସମାନେ ଗମ୍ଭିର ଡାଳ ଯେ ପଦର ।୧୨୨।

ରହିଲେ ସମଦଣ୍ଡ ଦୁଳଗଡ଼ ଆବୋରି
ଅର୍ଜ୍ଜୁନ ସୈନ୍ୟ ଉଠିଲେ ବାହାନାଦ କରି ।୧୨୩।
ବାହାର ଗଡ଼ଖଣା ଯେ ବିସ୍ତାର କୋଶ ତିନି
ପାଦଗଡ଼ ଡେଇଁଲେ ଗର୍ଜ୍ଜନ୍ତେ ବାହନନ୍ତ ଘେନି ।୧୨୪।
ବାହାର ଗଡ଼ ପାରେଶ୍ୱରେ ବଜ୍ରଯେ ସବ୍ୟସାଚୀ
ଗୃହଗଣ ମୁଖେ ଯାଇଁ କହଇ ସେ ବାଚ ।୧୨୫।
ଅର୍ଜ୍ଜୁନେ ବୋଇଲେ ଆପଣା ପ୍ରୋହିତଙ୍କୁ ହକାରି
ତୁମ୍ଭେ ଯାଅ ସ୍ୱେ ପୁଷ୍ପକ ବିମାନ ଚଢ଼ିକରି ।୧୨୬।
ବୀରବର ରାଜାକଇଁ ତିଆରି ଅନେକ ମତେ
ଆମ୍ଭେ ଆସିଅଛୁଂ ରାଜସୂ ଯାଗର ନିମନ୍ତ୍ରଣ ନିମନ୍ତେ ।୧୨୭।
ଆହେ। ତାହାର ଆମ୍ଭର ତ ବିବାଦ ନାହିଁ ପୂର୍ବେ
ଆମ୍ଭର ତୁଲେ ଆସି ପ୍ରୀତି ହୋଉ ସ୍ୱେବେ ।୧୨୮।
ଆମ୍ଭେ ଯେ ଅନେକ ଦୁର୍ଗମୁଂ ଅଇଲୁ ଅନେକ ଦୂରୁଂ
ହିଙ୍ଗୁଳା ଭ୍ରଶନ କରିବୁ ଆମ୍ଭେ ଆମ୍ଭନ୍ତ ନିରୋଧ ନ କରୁ ।୧୨୯।
ଅର୍ଜ୍ଜୁନର ବଚନେ ଚଳିଲେ ସୁରେଶ୍ୱର ପ୍ରୋହିତେ
ଆପଣେ ବସିଲେ ଯାଇଁ ମାତଳ ପୁଷ୍ପକ ରଥେ ।୧୩୦।
ଚଳିଲେ ଆକାଶରେ ସେ ରଣସ୍ତମ୍ଭ ଗଡ଼େ
ପ୍ରବେଶ ହୋଇଲେ ଯାଇଁ ବୀରବର ଆସ୍ଥାନ ନିଆଡ଼େ ।୧୩୧।
ରାଜାର ସମ୍ମୁଖେ ଯାଇଁ ପ୍ରବେଶ ଦ୍ୱିଜବର
କଲ୍ୟାଣ ବାଞ୍ଛା କରନ୍ତି ସେ ପ୍ରୋହିତେ ସୁରେଶ୍ୱର ।୧୩୨।
ଆସ୍ଥାନେ ବସିବାକଇଁ ନୃପତି ଆଜ୍ଞାଂ ଯେ ନ ଦେଲେ
କୁଶ ହାଥ ହୋଇଣ ପୁରୋହିତେ ବୋଇଲେ ।୧୩୩।
ଆହେ। ମହାରାଜା ଠାକୁର ସୁଶ୍ରେଷ୍ଠି ଦେବସ୍ୱାମୀ
ଅଷ୍ଟାଦଶ ବଂଶିକ ରାଜାଂକରେ ସେ ଉତ୍ତମି ।୧୩୪।

---

୧୨୫।୨ ଗୃହଗଣ ପଗୃରଲେ ନପତ ସ୍ୱେହାନ୍ତ ବାଚ୍ଛ । (ଡ,ଚ)
୧୨୯। ଆମ୍ଭେ ଯେ ଅନେକ ଦୁର୍ଗମୁଂ ଅଇଲୁ ପଥ ହେର
ହିଙ୍ଗୁଳା ଭ୍ରଶନ କରିବୁ ଆମ୍ଭନ୍ତ ନିରୋଧ ନ କର । (ଘ,ପ)
୧୩୧।୨ ନିଆଡ଼—(ନିରନ୍ତ୍ରବଳ ବା ନିଅଡ଼)—ନିକଟ ।

ରାଜସୂୟ ଯଗ୍ୟଂ ହୋଇବ ମହାସଭା
ସମଦଣ୍ଡ ଯେଣ ଗୃଲ ବନ୍ଧନ ହୋଇ ଯିବା ।୧୩୫।
ପ୍ରୋହିତଂକ ବଚନେ ସେ ଧୂମାକ୍ଷ ମହାମନ୍ତ୍ରୀ
ପ୍ରୋହିତଂକୁ ବାରତା ଜଣାଇଲେ ସେ ପଣ୍ଡିତ ମହାବୃତ୍ତି ।୧୩୬।
ଆହେ ବଦୁବର ତୁମ୍ଭେ ନ ବୋଲ ଯେମନ୍ତ
ରାଜାଧି ରାଜେଶ୍ୱର ଯେ ଯେ ଉତ୍ତର କୋଶଳେଣ ଯେକ ଛତ୍ର ।୧୩୭।
ଦେଖ ହାଦେ ମହାଦେବୀ ପ୍ରସନ୍ନେ ହିଙ୍ଗୁଳା
ଅକ୍ଷୟେ ଅଭୟେ ଦେବୀ ପ୍ରସନ୍ନେ ମହାଖଳା ।୧୩୮।
ଆକାଶେ ଲଗିଅଛି ଯେଉଂଣ ଦେବୀର ମାଥ
ପାଦୁକା ମନ୍ତ୍ର କାହ୍ନମା ସେ ଗମନ୍ତ କୋଟିତୀର୍ଥ ।୧୩୯।
ଯେ ରଣସ୍ତମ୍ଭ ଗଡ଼ ସେ ଦେବୀର ସଞ୍ଚଳ
ଆମ୍ଭେ କ୍ଷେତ୍ର ଆଧିପତ୍ତି ଯେ କ୍ଷେତ୍ର ଅଛୁଂ ରଖିଲ ।୧୪୦।
ଯେ ମହାକ୍ଷେତ୍ର ଛାଡ଼ି କାହ୍ନଂକ ଯିବୁ ଆମ୍ଭେ
ଆବର ରାଜାମାନନ୍ତ ଯେଣ ବେଗେ ଚଳଯାଅ ତୁମ୍ଭେ ।୧୪୧।
ପ୍ରୋହିତେ ବୋଇଲେ ଆମ୍ଭେ ଅଇଲୁ ଯେ ଭୁବନେ
ଯେହାକଇଂ ନ ଗଲେ କି ଯାଆନ୍ତି ଆନ ରାଜାଗଣମାନେ ।୧୪୨।
ଧୂମ୍ରାକ୍ଷ ମନ୍ତ୍ରୀ କହଇ ରାଜାଂକୁ ପରମାଣି
ଅର୍ଜୁନ ଛାମୁକୁ ଆମ୍ଭେ କହନ ଯିବା ସ୍ୱାମୀ ।୧୪୩।
ପ୍ରୋହିତଂକ ବଚନେ ସେ ନୃପତି ବୀରବର
କାହାରହିଂ ବଶ ମୁଂ ଯେ ନୋହଇ ଯେ ହଗର ।୧୪୪।
ନ ଜାଣଇ କି ରଣସ୍ତମ୍ଭ ଅଜୟେ ଗଡ଼ ବୋଲି
ଯେ ମହୀମଣ୍ଡଳେ କାହାକଇଂ ନ ସାଧିଲି ।୧୪୫।
ମୁହିଂ ଆନ ରାଜ୍ୟକୁ ନ ଯାଇଂ କେହୁଣସି ପୁରୁଷେ
ମୋହୋର ଭୁବନକଇଂ କେହି ପଶି ନୁଆରନ୍ତି ବିଦ୍ଦେଶେ ।୧୪୬।
ଆକାଶ ବଗବଡ଼େ ମୁଂ ତୁମ୍ଭନ୍ତ ଦେଖିଲି
ଇନ୍ଦ୍ର ପ୍ରାୟେକ ମଣି ପ୍ରଥମ ଗଡ଼ ଛାଡ଼ିଦାଲି ।୧୪୭।
କେ ଜାଣଇ ତୁମ୍ଭର ଅର୍ଜୁନ ଯୁଦ୍ଧେଷ୍ଟି
କେ ଜାଣଇ ତୁମ୍ଭର କେଶବ ଧୂର୍ଜଟୀ ।୧୪୮।

କେ ଜାଣଇ ତୁମ୍ଭର ବ୍ରହ୍ମା ବଜ୍ରପାଣି
ଏକମାତ୍ର ଜାଣଇଂ ମୁଂ ଶ୍ରୀଙ୍ଗୁଳା ଗୋସାମଣି ।୧୪୯।
କେବଣ ଦେବତା ତୋହୋର କସ କରଇ କାମ
ଇଦ ହାଥେ ବର ଦେଇ ଶ୍ରୀଙ୍ଗୁଳା ଯାହାର ନାମ ।୧୫୦।
ଆହୋ ତପୋଧନ ହୋଇଲେ ମାତ୍ତ ପାରଇ ଏହୁ ଙ୍ଗର୍ଥ
କଳାକ୍ତାରେ ପଶିବାକଇଂ କାହାର ଛର୍ଜୀବୃତ୍ତ ।୧୫୧।
ତୋହୋର ଯାଗସଭାରେ ମୋହୋର କସ କାର୍ଯ୍ୟ
ବାହୁଡ ଜୀବନ ଘେନି ଯାଅ ଯା ପଶ ଆନ ରାଜ୍ୟ ।୧୫୨।
ପ୍ରୋହିତେ ବୋଇଲେ ହୋ ଙ୍କୁ କହିଲୁ ନିନା ଦର୍ପ
ଏଇଲେକ୍ୟ ବକାଶୁ ଅଛୁ ଯାହାର ପରତାପ ।୧୫୩।
ଖାଣ୍ଡ୍ବ ବନ ଦହନେ ଯେ ବାସବେ ବବାଧି
ଅଗ୍ନି ଦେବତାଂକର ପାରକଲ ଲୁଦୁବୁଦୁ ବ୍ୟାଧି ।୧୫୪।
କରାତ ରୂପେ ବନେ ହରକଇଂ ଜଣି
ପାଶୁପତ ଅକ୍ଷୟ୍ୟ ଦୋଣ ଦଲେକ ଶୂଳପାଣି ।୧୫୫।
ଦ୍ୱାରକାଏ ପଶି ଯେ ହରଲେ ସୁଭଦ୍ରେ
ବହୁତ ସମର କରି ହାରଲେ ରାମଚନ୍ଦ୍ରେ ।୧୫୬।
ଏତେବଡ ନର କିଞ୍ଚତେ ନ କର ତୁ ନାଶ
ଯାହାର ବାହାକୁ ଆଶ୍ରା କରଛନ୍ତ ନିଦଶ ।୧୫୭।
ତୋତେ ଅନେକ ଉପ୍ରୋଧ ଶ୍ରୀଙ୍ଗୁଳାର ପ୍ରସାଦେ
ସମସ୍ତ ସଇନ ନାଶଯିବେ ତୋହୋର ବନା ଯୁଦ୍ଧେ ।୧୫୮।
ଆହୋ ସମ୍ଭର ରାଜ୍ୟଗୋଟି ତୋହୋର ଅଛଇ ବଡାଇ ସୁସଞ୍ଚ
ବାରସ୍ୱର୍ଣ୍ଣ ଭୁବନ କ ସଞ୍ଚଲ ଅଛୁ ମଞ୍ଚ ।୧୫୯।
ତୁ ମାହେଶ୍ୱର ସମାନେ ରାଜା ତୋହୋର କଛୁ ନାହିଂ ଦୋଷ
ଏତେ ବଡ ସମ୍ପଦ ରାଜା କିଞ୍ଚତେ ନକର ତୁ ନାଶ ।୧୬୦।
ଶୁଣିଣ ନୃପତ୍ତ ଯେ ଗର୍ଜିଣ ଉଠିଲ କୋପକର
ଏଥକୁ ଦୋଷ ତୋତେ ବହିପାରଇନି ତୁ ଯେ ବ୍ରାହ୍ମଣ
ଦୂତକାର୍ଯ୍ୟ ।୧୬୧।
ଆହୋ ବ୍ରାହ୍ମଣ ତୁ ନ ବୁଝୁ କର୍ମେ ନ ପାଉ ଲଜ୍ଜା
ଏହିକ୍ଷଣି ପ୍ରାଣେ ନାଶଯିବୁଟି ଏଥୁ ବହନ ହୋଇ ଯାଅ ଯା ।୧୬୨।

ପ୍ରସନ୍ନେ ହିଙ୍ଗୁଳା ଯାହାଙ୍କଇଂ ହୋଇଛନ୍ତି ନିତ୍ୟେ ସାହା
ଆସୁ ତୋର ଅର୍ଜୁନ ମୁଂ ରଣେ ନ ଲେଖଇ ତାହା ।୧୬୩।
ବୀରବର ପ୍ରତଗ୍ୟାଂ କଲ୍ଲକ ଅପ୍ରମିତେ
ତାହାର ଦୁଷ୍ଟପଣ ଦେଖିଣ ବାହୁଡଲେ ପୁରୋହିତେ ।୧୬୪।
ଦଣ୍ଡ ସାଜ ବୋଲି ବୋଇଲ୍ଲ ବୀରବର ଚନ୍ଦ୍ରକ୍ରାନ୍ତି
ସାଜଲେ ଯୋଦ୍ଧାଏ ଯେ ପ୍ରଚଣ୍ଡ ମହାଛତ୍ରୀ ।୧୬୫।
ରଥ ଗଜ ନାହିଂ ତାର ଶୈଖାର ଅଶ୍ୱ ପିଠି
ଗଦା ମୁଦ୍‌ଗର ପରଘ ଛେଲ ଚକ୍ର କୁନ୍ତ ଯାଠି ।୧୬୬।
ପ୍ରୋହିତଂକ ପଚ୍ଛକନ୍ତ ସଜା ଦଣ୍ଡ ଯେ ପଲ୍ଲଣି
ଜାବନ୍ତେ ଉଠିଲେ ସଇନ ଷୀରୋଦ୍ଧି ଲହଡ ଜାଣି ।୧୬୭।
ଫରହର ନେତ ଉଡଇ ଶୁକଲ ପତନ
ଗୁଳ୍ଳବନ୍ତ ଛେଲଚକ୍ର ଯେ ଲଂକଆ କୁନ୍ତ ଘେନ ।୧୬୮।
ପୁରୋହିତ ପ୍ରବେଶ ହୋଇଲେ ଯାଇଂ ଅର୍ଜୁନ ଅଗ୍ରତେ
ପଚ୍ଛକନ୍ତ ଦଣ୍ଡ ସାଜଲାର ଯେ ରଥେ ଥାଇଂ ଦେଖିଲେ ବୀରବର
ପାଥେ ।୧୬୯।
ଶ୍ରୀମୁଖରେ କହନ୍ତ ତାର ସୁରେଶ୍ୱର ପ୍ରୋହିତ ଆଗ୍ରୟେ
ବାବୁ ବହୁତ ଭିଆଣ୍ଲୁଂ ବୀରବର ମହାରାଜେ ।୧୭୦।
ଅନେକ ପ୍ରତଗ୍ୟାଂ କଲ୍ଲକ ସେ ମହାଦୁଷ୍ଟ ରାଏ
ବୋଇଲ୍ଲ ପ୍ରସନ୍ନେ ହିଙ୍ଗୁଳା ଯାହାକଇଂ ବରଦାଏ ।୧୭୧।
ଦେଖ ହୋ ଦୂଭର ବଳ ପ୍ରତଗ୍ୟାଂ ମହାବୀର
ସଂଗ୍ରାମେ ସଜ ହୋଇ ଆସଇ ଦୁଷ୍ଟ ଯେ ପାମର ।୧୭୨।
ବୋଲଇ ନିହାଇ ନ ଜାଣନ୍ତ ସେ ସୁରବର ପ୍ରତଗ୍ୟାଂ
ମନ୍ଦବାକ୍ୟେ ଦୁଷ୍ଟେ କଲେକ ଅନେକ ଅବଗ୍ୟାଂ ।୧୭୩।
ସମର ନିମନ୍ତେ ସେ ଆସନ୍ତ ଦଣ୍ଡ ଚଢି
ପୁରୋହିତଂକର କହନ୍ତେ ଆସି ସନ୍ୟ ଉଭାର ।୧୭୪।
ରେ ରେ କାର ଶବଦ ବାବନ୍ତ ସିଂହନାଦ
ଶୂନ୍ୟ ଭୁବନ କମ୍ପିଲ୍ଲ ମହାଘୋର ଶବଦ ।୧୭୫।

---

୧୭୩।୧ ନ ଜାଣଇ କ ସେ ବୀରବର ପ୍ରତଗ୍ୟାଂ । (ଙ,ଛ,ଡ,ଝ,ପ)

ଦୁସହ ସନ୍ୟବଳ ଆସୁଛନ୍ତ ପଛକତି ଉଠି
ରଥେଣ ଥାଇଂ ପାଣ୍ଡବ କଷ୍ଠୀ କଲେକ ଚାହାନ୍ତ ଦୃଷ୍ଟି ।୧୭୬।
ସଇନ୍ନ ମହାର୍ଣ୍ଣବ ଦେଖିଣ ବାସବର ବଳା
ଆଜ ଯେ ରୁଧିର ମାସ୍ୱେଂସେ ପ୍ରସନ୍ନ କରିବ ମାତାଙ୍ଗୀ ହିଙ୍ଗୁଳା ।୧୭୭।
ମାର ମାର ବୋଲଣ ବୋଇଲେ ଅରଜୁନ
ଶୁଣିକର ଧାଇଂଲେ ଯେ ପାଣ୍ଡବ ସଇନ ।୧୭୮।
ଥାଠେ ସେନାପତି ଅଟନ୍ତି ଜୟେ ଯେ ବିଜୟେ
ଗଦାଧର ବୁଲ୍ଲବନ୍ତ ବିକ୍ରମ ସିଂହ ପ୍ରାୟେ ।୧୭୯।
ବିଶେଷେ ଅନଳ ସେ ପାଣ୍ଡବ ସଇନ୍ନ
ତହିଂକ ପବନ ଜାଣି ପାଣ୍ଡବ ଫାଲଗୁନ ।୧୮୦।
ପବନ ବହନ୍ତେ ଯେହ୍ନେ ଉଠଇ ଅନଳ
ଦୁଜଦ୍ୱାରେ ଓଗାଳଲେ ପାଣ୍ଡବର ବଳ ।୧୮୧।
ତମ୍ବାର କବାଟ ଯେ କଣୟ ରସାଣି
ଆଦିତ୍ୟ ଉଦୟ ପ୍ରାୟେ ଝଲକନ୍ତ ରତ୍ନମଣି ।୧୮୨।
ଜୟେ ବିଜୟେ ବେନିବୀରେ ଗଦା କଲେକ ପ୍ରହାର
ଭାଙ୍ଗିଣ କପାଟ ଯେ ହୋଇଲା ଶତଚୂର ।୧୮୩।
ପୁଣ ପୁଣ ପ୍ରହାର ସେ କଲେକ ଗଳଗାଜ
ଜଗତି ଅଟାଳୀ ଆଦି ସବୁ ପକାଇଲେ ଭାଙ୍ଗି ।୧୮୪।
ବୀରବର ସଇନ୍ନ ଉଠିଲେ ତିଜ ଗଡଦ୍ୱାର ପାଚେଶ୍ୱ
ବିନ୍ଧନ୍ତି ନାରାଚ ଯେ ଅବଚ୍ଛନ୍ନେ ଦୃଷ୍ଟି କରି ।୧୮୫।
ଅର୍ଜୁନର ସଇନଂକ ବିନ୍ଧିଲେ ନାରାଚଖାଷମୁନା
ନିକଳ ନାରାଚ ଯେ ଫୁଟିଲେ ବଜ୍ରସେହ୍ନା ।୧୮୬।
ମାତଳିଙ୍କ ବୋଇଲେ ସେ ସୁଭଦ୍ରାର ନାହା
ତିଜଗଡ ପାଚେଶ୍ୱଙ୍କ ରଥ ମୋର ବାହା ।୧୮୭।
ଆଗ୍ୟାଂ ପ୍ରମାଣେ ତହୁଂ ମାତଳି ସାରଥି
ଉଡାନ୍ତି ବାରସ ଯେ ପବନୁଂ ବେଗଗତି ।୧୮୮।
ତିଜ ଗଡଦ୍ୱାରକୁ ରଥ ସାରଥି ଆଗକରି
ଦେବଦତ୍ତ ଶଙ୍ଖ ପାର୍ଥ ଘନ ଘନ ପୁରି ।୧୮୯।



ଶଙ୍ଖଧ୍ୱନି ଶବଦ ଯେ ଉଲୁକାପାତ ଜାଣି
କ୍ଷତ୍ରୀଂକର ହୃଦସ୍ପୃ କମ୍ପଇ ତାହା ଶୁଣି ।୧୯୦।
ଅଦଭୂତେ ଶହସ୍ର ଝଡ଼ି ପଡ଼ୁଛି ନିଜ ହାଥୁଂ
ଭଗ୍ନହାଥ ହୋଇଣ ସଇନି ପଳାନ୍ତି କାକୁସ୍ଥୁଂ ।୧୯୧।
ମା ଗୋ କ୍ୱଙ୍ଗୂଳା ରଖ ରଖ ହଅନ୍ତି ଘୋରଡ଼ାକ
ତୋହୋର ଥାଆନ୍ତେ କାତ୍ୟାସ୍ତ୍ରିମା ଗୋ ହୋଇଲୁ ନିରେଖ ।୧୯୨।
କରେ ଧନୁ ଧରିଣ କରନ୍ତି ଶରବୃଷ୍ଟି
ଅର୍ଜୁନର ନାରାଜେ ଶିର କମଳ ଛୁଟି ।୧୯୩।
ଜଗତ୍ତି ଗୁଡ଼ିକର ପଳାଇଲେ ସର୍ବଙ୍କାରେ
ଉଠିଲେ ଧାଇଂଯାଇ ଭିତର ଜଗତ୍ତି ଉପରେ ।୧୯୪।
ଆକ୍ଷେପି ଶର ପୂରାଇ ବିନ୍ଧନ୍ତି ସକଳ ସଇନି
ଆହତ୍ୟ ଉହାଡ଼ ହୋଇଲେ ଗଗନେ ବାଣଜାଲା ଯେନି ।୧୯୫।
ନିର୍ଘାତ ବଜ୍ରବାଣ ଯେ ଅଗ୍ନିମୁନା ଶର
ଆପଣେ କୋଦଣ୍ଡ ଯେନି ବିନ୍ଧଇ ବୀରବର ।୧୯୬।
ଝଲକନ୍ତି ରୁଧିର ଝର ଝର ଅବଚ୍ଛନ୍ନେ ବହନ୍ତି
ଜୁଳୁଜୁଳା ପୋକ ଜାଣି ବିସରନ୍ତି ଚଉକତି ।୧୯୭।
ପାଚେରି ଉପରେ ଥାଇ କମଳ ଶିରାନ୍ତି ଉହାଡ଼ ଦେଇ
ବାସବର ସଇନିକ ବିନ୍ଧିଲେ ବେଗେ ଯାଇ ।୧୯୮।
ଅର୍ଜୁନ ନାରାଜ ଯେ ବିନ୍ଧିଲେ ବେଗେ ଆଗ ବଢ଼ି
କନ୍ଧୁଂଣ ଛିଡ଼ିଣ ମୁଣ୍ଡମାନ ପଡ଼ୁଛନ୍ତି ଝଡ଼ି ।୧୯୯।
କାହାର ଭୁଜ ଛିଡ଼ିଲା କାହାର ଫୁଟିଲା ବକ୍ଷସ୍ଥଳ
ରୁଧିରେ ବିଲେପନ ଯେ ହୋଇଲେ ସର୍ବବଳ ।୨୦୦।
ତିଜ ଗଡ଼ଦ୍ୱାରେ ସମର ହୋଇଲା ଅପ୍ରମିତା
ନବଲକ୍ଷ ମୁକୁଟ ବନ୍ଧା ପଡ଼ିଲେ ପାଦାନ୍ତି ଅଗଣିତା ।୨୦୧।

---

୧୯୩।୨ ଅର୍ଜୁନର ଶରଘାତେ କମଳ ଶିରସ୍ଥେ ଶୋଇଲେ ଲେଟି ।
(ଘ,ଙ,ଝ)

୧୯୮।୧ କମଳ ସଦୃଶ ଶିର ଯାହାଙ୍କର – କମଳ ଶିର ଯଥା – ତ୍ରିଶିର)।

ଚଣ୍ଡବାତ ବଧାତେ ଯେସ୍ନେ କଦଳୀ ବନ ପଡ଼
ସ୍ୱେକଇ ଉପରେଣ ଆରେକ ପଡ଼ନ୍ତ ମୁଣ୍ଡଂ ମାଡ଼ ।୨୦୨।
ରୁଧିରେ କର୍ଦ୍ଦନ ଯେ ହୋଇଲା ବସୁନ୍ଧର
ଲୁଳନ୍ତ ମଣିମାଣିକ୍ୟ ମୁକୁଟ ରତ୍ନସର ।୨୦୩।
ଜଗଣ୍ଡରେ ଥାଇଂ ଡାକଇ କ୍ଷତ୍ରିୟ ମହାବଳ।
ସୁଖେଣ ବଳ ଭକ୍ଷଣ କରସି ଗୋ ପ୍ରସନ୍ନେ ହିଙ୍ଗୁଳା ।୨୦୪।
ବଜ୍ର ବଧାତ ପ୍ରାୟେ ଅର୍ଜ୍ଜୁନର ଶର ପଡ଼
ପଡ଼ନ୍ତେ ସଇନ ନିପାତ ବଜ୍ରସେହ୍ନା ଛୁଡ଼ ।୨୦୫।
ତ୍ରିଣ୍ଡପ୍ୟୁ ଗଡ଼ଦ୍ୱାର ପଳାଇଲେ ସର୍ବେ ଗୁଡ଼ ।୨୦୬।
ସିଂଘରଡ଼ ଶବଦେ ଯେ ପଳାଇଲେ ସଇନ
ଗଡ଼ଦ୍ୱାର ଭଙ୍ଗି ଯେ ଭିଜଗଡ଼ ଘେନ ।୨୦୭।
ଅର୍ଜ୍ଜୁନ ବଜେକଲେ ଭିଜପୁର ଜଗଣ୍ଡ
ଭଗ୍ନବଳ ଘେନ ପଳାଇଲା ବୀରବର ଚଣ୍ଡଦ୍ରଣ୍ଡ ।୨୦୮।
ମନୁଷ୍ୟ ଶରୀର ଧରି ବଜପ୍ୟେ ହିଙ୍ଗୁଳେ
ବୀରବର ପ୍ରଣପତ୍ୟ ହୋଇଲା ସେ ମହାଦେବୀଂକର ପାଦତଳେ ।୨୦୯।
ଶତେ ସହସ୍ର ଦଣ୍ଡ ପ୍ରଲମ୍ବ ହୋଇ ହିଙ୍ଗୁଳା ପାଦେ ବନ୍ଧ
ଦୁଃଖୀଜନ ଚିନ୍ତା ଛୁଡ଼ଲୁ କ ଗୋ ବୋଲି କ୍ରୋଧଭରେ ସ୍ୱପ୍ନେ
କାନ୍ଦ ।୨୧୦।
ତବ ଚରଣେ ମୋହୋର ପଞ୍ଚଭୂତ, ଗୋ ପ୍ରସନ୍ନେ ହିଙ୍ଗୁଳେ
ମାଗୋ ତୁହି ସେ ଗଡ଼ ମୋର ରକ୍ଷାକରୁ ସର୍ବକାଳେ ।୨୧୧।
ତୋହୋର ପ୍ରସନ୍ନେ କେହି ଜଣନ୍ତା ନାହିଂ ପ୍ୟେ ସ୍ରଷ୍ଟ
ଅଦଭୁତେ କେଉଂଣ ଦେଶୁ ଆସି ପ୍ରବେଶ ହୋଇଲା ପର ଥାଠ ।୨୧୨।
ରଥ ଗଜ ଅଶ୍ୱ ନାହିଂ ବହୁତ ପାଦାନ୍ତ
ତ୍ରିକାଳ ପ୍ରାନ୍ତମେ କାହିଂ ସିଂଘର ବଳ ମନ୍ତି ।୨୧୩।
ମୁହିଂ ଅବା ମାତା ଗୋ ତୋତେ ହୋଇଲି ଦୋଷକାରୀ
କେଉଂଣ ଅଭଗତେ ମାତା ଗୋ ତୋତେ ହୋଇଲ
ଦ୍ରୋହକାରୀ ।୨୧୪।

---

୨୦୪।୨ ଶଂସ୍ନେଣ ବଳ ଭକ୍ଷ ଗୋ ସର୍ବ ମଙ୍ଗଳେ ହିଙ୍ଗୁଳା । (ଝ,ପ)

ଅଜୟେ ଗଡ଼ ଜୟେ ହୋଇଲା କାହାର ବୋଲେ
ବଳୀବେଣୁ ମାନଧାତା ଜାନୁଘଣ୍ଟ ପ୍ରଶୁରାମ ପୁରରବାୟେ ଛତ୍ର
ଚକ୍ରବର୍ତ୍ତି ଥିଲେ ।୨୧୫।
ଯେ ଅଜୟ ଗଡ଼ କେହି ଜୟେ କରି ନୁଆରିଲେ ।୨୧୬।
ମୁହିଂ ପାମର ଦୁଷ୍ଟ ମାନକ ଗୋ ନ କଲି ତୋତେ ସେବା
ଅଭଗତ ଦେଖି ମାତ ମୋତେ କୋପକଲୁ ଅବା ।୨୧୭।
କି ଅବା ଗହଳ ତୋତେ ହୋଇଲା ମୋହୋର ବନ୍ଧୁବର୍ଗ
ସେ ନିମନ୍ତେ ଗୋସାମଣି କଲୁ କି ମୋତେ ବଇରାଗ ।୨୧୮।
କିବା ଖେଳ କଉତୁକ ଧର ତୋର ମହିଆଳି
କୁତୂହୋଳେ ଉଲ୍କାପାତ ଗୋ ରୁଧିରେ କରି କେଳି ।୨୧୯।
ବନ୍ଧୁବର୍ଗ କୁଟୁମ୍ବ ଗୋ ମୋର ସମସ୍ତେ ଗଲେ ନାଶ
ନିସତେ ପଳାଇଲି ସମରୁଂ ଯେବେ ମୁଂ କରିବଇ କିସ ।୨୨୦।
କେବଣ ଭୁବନେ ମାଗୋ ମୁଂ ବଞ୍ଚିବଇଂ ଯାଇଂ
ତୋର ଥାନ୍ତେ ନିରେଖ ହୋଇଲି ଯେବେ ବର୍ତ୍ତିବାକୁ ଠାବ
ନାହିଂ ।୨୨୧।
ଦନ୍ତେ ତୃଣ ଧେନି ରାଜା ରୁବଇ ନିରନ୍ତରେ
ମହାଯୋଦ୍ଧା ପ୍ରଣପତ୍ୟ କଲା ହିଙ୍ଗୁଳାର ପାଦତଳେ ।୨୨୨।
ଦଶନନ୍ଦ ମୁଖେ ଭରି ଦନ୍ତେ ତୃଣ ଧେନି
ମାଗୋ ହିଙ୍ଗୁଳା ସାହା ସାହା ବୋଲି ଶୁଭିଲା ମୁଖଧ୍ୱନି ।୨୨୩।
ପୁରଜନମାନେ ଯହୁଂ ରୋଦନ୍ତି ବିକଳେ
ରାଜାକୁ ପ୍ରତ୍ତ ଆଦେଶ ଦଲେକ ହିଙ୍ଗୁଳେ ।୨୨୪।
ବିଜୟ କଲେ କାତ୍ୟାୟନୀ ସେ ପରମ ମାହେଶ୍ୱରୀ
ପାଷାଣୁଂ ବାହାର ହୋଇଲେ ତେଜକୁ ବିସ୍ତାରି ।୨୨୫।
ହିଙ୍ଗୁଳା ବୋଇଲେ ତୁ କିଂପାଇଂ କରୁ କ୍ରୋଧ
ଆଗହୁଂ ନ ପୁଚ୍ଛିଲୁ ଯେବେ ପଡ଼ିଲା ବିରୋଧ ।୨୨୬।
ନିଶ୍ଚିନ୍ତ ହୋଇ ଯେବେ ଆସି ମୋହୋର ଆଳେ
ମୁଂ ଯାଇଂ ସମାଧାନ କରାଇବି ତୋହୋର ବିକଳେ ।୨୨୭।
ଯେତେକ ବୋଲିଣ ସେ ଜଗତଜନ ମାୟେ
ଖେଚରୀ ବିମାନେ ବସି କଲେକ ବିଜୟେ ।୨୨୮।

ଶ୍ରୀହସ୍ତରେ ଅମଳାନ ପୁଷ୍ପମାଳା ଗୋଟିଏକ ଘେନି
ଜଗତ୍ର ଉପରେ ଯାଇଂ ବିଜୟ କଲେକ କାତ୍ୟାୟନୀ ।୨୨୯।
ନିର୍ଧୂମ ଅଗ୍ନି ଜାଣି ତେଜ ଯେ ବିକାଶି
ମହା ଅନଳ ସରୂପେ ସେ ବିଜୟେ ପୂର୍ଣ୍ଣମାସୀ ।୨୩୦।
ରଙ୍ଗବସ୍ତ୍ର ପରିହରଣ ଲୋହିତ ବର୍ଣ୍ଣ କାୟେ
ଆସ୍ଥାନରେ ଥାଇ ତାହା ଦେଖନ୍ତି ଧନୁର୍ଜୟେ ।୨୩୧।
ବାସବର ନନ୍ଦନ କହଇ ରସବାଣୀ
କେଉଂଣ ଦେଶରୁ ଗୋ ବିଜୟେ ମହାମ୍ନାଣୀ ।୨୩୨।
ମାନିନୀ ମାନବନ୍ତ ଗୋ ଲୋହିତ ବର୍ଣ୍ଣ ମୂର୍ତ୍ତି
ବିପୁଳ ପୁଲକ ରଚିର ମା ଗୋ ଅଭୟେ ବରଦାତ୍ରୀ ।୨୩୩।
ଓାଳମ୍ବ ପୁଷ୍ପ ଜାଣି ବିକାଶଇ ତୋର କାୟେ
ସରୂପ ଦିଶୁଅଛି ମଧ୍ୟ ଭୁବନ ଲୋକ ପ୍ରାୟେ ।୨୩୪।
ଅର୍ଜୁନର ବଚନେ ଯେ ଦେବୀ କହଇ ସମ୍ଭାଷୀ
ତୁ ରେ ଅର୍ଜୁନ ଉତ୍ତର ଦିଗେଣ ବିଜୟେ କଲୁ ଆସି ।୨୩୫।
ଅନେକ ରାଜ୍ୟ ସାଧି ଯେ ଭୁବନ ଉତ୍ତରେ
ଯେତେ ଉପଦ୍ରବ ନ କଲୁ କେହୁଣସି ପୁରେ ।୨୩୬।
ମୁହିଂ ଯେଉଁଥେ ବିଜୟେ କରିଅଛି ପ୍ରଳୟ ଅନ୍ତକାଳେ
ଅଭୟେ ମାହେଶ୍ୱରୀ ଆମ୍ଭର ନାମଟି ହିଙ୍ଗୁଳେ ।୨୩୭।
ଖଡଗ ବଂଶୀ ରାଜାୟେ ମୋତେ ଜନ୍ମେ ଜନ୍ମେ ଖଟି
ମୋହୋରେ ସଞ୍ଚଳ ଯେ ଇଷ୍ଟମନ୍ତ୍ର ଗଡଗୋଟି ।୨୩୮।
ବନ୍ଧୁ କୁଟୁମ୍ବ ଘେନି ମୋତେ ସେହି ସେ କରେ ସେବା
ଅଗ୍ୟାନେ ବୀରବର ରାଜା ତୋତେ ଦୋଷକଲା ଅବା ।୨୩୯।
ଯେହୁର ସଇନ ନାଶ କଲୁ କଂପେ ଅନମିତେ
ରକ୍ଷା ନ କରିବୁ କି ପାର୍ଥ ମୋହୋର ଦେଖନ୍ତେ ।୨୪୦।
ତୁ ଯେ ଗଣ୍ଡାଗୋଟି ଆମ୍ଭର ମାଇଲୁ ବାଳକାଳେ
ସଦାନନ୍ଦ ସ୍ୱାମୀ ଶୋଇଥିଲେ ବରୁପାକ୍ଷ ବଟ ତଳେ ।୨୪୧।

---

୨୩୦।୨ ମହା ଅନଳ ବଦନୀ ସେ ବିପୁଳ ପୁଣ୍ୟରାଶି । (ଚ,ଥ)

ଗଣ୍ଡାର କାଧନେ ସ୍ୱାମୀ ହୋଇଲେ ବଇରାଗୀ
ତୋହୋର ଭୁଲେଣ ସମର ଇଚ୍ଛିଲେ ପରମ ଯୋଗୀ ।୨୪୨।
ସଦାଶିବର କଣ୍ଠେ ଯେ ଲଗାଇଲୁ ଗାଣ୍ଡିମ ଧନୁ
ଅନ୍ତରୀକ୍ଷେ ବୁଲନ୍ତେ ତୋତେ ପ୍ରସନ୍ନ ହେଲେ ପଞ୍ଚମନୁ ।୨୪୩।
ବରୂପ ଯୁଦ୍ଧ ଦେଖି ତୋତେ ସଦାନନ୍ଦ ବର ଯାଚ
ମୁଦ୍ବଂଟି ଭେଦ ତୋତେ କହିଲ ସବ୍ୟସାଚୀ ।୨୪୪।
ଈଶ୍ୱରକଇଂ ମାଗିଲୁ ଯେ ପଶୁପତ ବାଣ
ମୋତେ ମାଗିଲୁ ନେଇ ମୁଂ ଦେଲଇଂ ଅକ୍ଷୟେ ବେନିକୋଣ ।୨୪୫।
ସଦାନନ୍ଦର ବଚନେ ମୁଂ ହୋଇଲଇଂ ବଇରାଗୀ
କୋଟିଏ ଈଶ୍ୱର ସମ ନୋହିବେ ବାସବ ।୨୪୬।
ଯାହାକଇଂ ଆଗ୍ରାମେ ସମ ନୋହନ୍ତି ତ୍ରିଲୋଚନେ
ଯେ ଇହଲୋକେ ରାଜା କେ ତୋତେ ହୋଇବ ସମାନେ ।୨୪୭।
ଜଗୁଜତା ପୁରୁଷ ହୋଇ କଂକେ ଯେତ୍ତେ ବଇରାଗୀ
କଂଚତ ଦୋଷେ କଂପା ରାଜାମାନନ୍ତ ଦର୍ପ ଭାଙ୍ଗି ।୨୪୮।
ବୃଙ୍ଗୁଳାଂକର ବଚନେ ସେ ବଚସର୍ଯ୍ୟ ନାନ୍ତ
ଦେବୀଂକର ପଦ୍ମପାଦେ ପ୍ରଣପତ୍ୟ ତତକ୍ଷଣାନ୍ତ ।୨୪୯।
ଅର୍ଜୁନକୁ କୋଳକର ଧଇଲେ ମାହେଶ୍ୱରୀ
ଖେଚରୀ ବମାନେ ନେଇ ବସାଇଲେ ବାସେବର ଭୁଜ ଧର ।୨୫୦।
ବଜୟେ କାତ୍ୟାୟୁମୀ ଆପଣା ଭୁବନକୁ
ଅର୍ଜୁନକୁ ଘେନିଗଲେ ଦେବୀ ତ୍ରିପୁରାନ୍ତକ ପର୍ବତକୁ ।୨୫୧।
ଅର୍ଜୁନକୁ ଘେନି ଦେବୀ ବଜୟେ ଆସ୍ତାନେ
ଶତ ସହସ୍ର ଦଣ୍ଡ ପ୍ରଣପତ୍ୟ ହୋଇଲେ ସମସ୍ତ ଜନମାନେ ।୨୫୨।
ଶ୍ରୀହାଥେ ଅର୍ଘ୍ୟ ଘେନିଣ ବୀରବର ରଥବୃକ୍ଷ
ଅର୍ଜୁନର ପାଦତଳେ ଶତେ ସହସ୍ର ଦଣ୍ଡ ପ୍ରଣମିତ ।୨୫୩।

---

୨୪୬। କୋଟିଏ ଈଶ୍ୱର ତୋତେ ସମାନ ନୋହବେ ବୋଲି
ବୋଇଲି ଯୁଗଭେରୀ । (ପ,ଘ)

୨୫୧। ଅର୍ଜୁନକୁ ଘେନିଗଲେ ଦେବୀ ତ୍ରିପୁରାନ୍ତକ ମେରୁକୁ ।
(ଙ,ଡ,ଅ)

ହିଙ୍ଗୁଳା ବୋଇଲେ ବାବୁ ଶୁଣସି ଧନୁର୍ଜୟେ
ଦଣ୍ଡ ମଗଉଣ ରାଜା ହୋଉଛୁ ବନଯେ ।୨୫୪।
ଯେହୁ ତାକଇଂ ପ୍ରସନ୍ନ ତୁ ହୁଅସି ଫାଲଗୁନ
ସେ ମୋହୋର ପୁତ୍ର ତୋତେ ହୋଉଛୁ ଭଗତ ମାନ ।୨୫୫।
ତୋହୋର ପ୍ରସନ୍ନେଣ ସେ ପାଇବ କାରଣ
ସମସ୍ତ କୁଟୁମ୍ବ ଘେନ ତୋହୋରେ ପଶିଲ୍ ଶରଣ ।୨୫୬।
ହିଙ୍ଗୁଳାର ବଚନେ ସେ ପ୍ରଣପତ୍ୟ କଲ୍ଲାଟୀ
ମାଗୋ ନଇଲୋକେ ବକାଶଇ ଯେ ତୋହୋର ନାମଗୋଟି ।୨୫୭।
ତୁ ଗୋ ପରମ ଯୋଗେଶ୍ୱରୀ ସରୂପେ ଲୋହିତାକ୍ଷୀ
ଅଭୟପୁର ମଣ୍ଡଳୀ ସରୂପ ପିଙ୍ଗଳାକ୍ଷୀ ।୨୫୮।
ମାଗୋ ବକାଶଇ ଅନଳ ରୁଚିର ଲୋହିତ ଶ୍ୱେତବର୍ଣ୍ଣୀ
କୋଟିକଳ୍ପ ବାସିନୀ ଗୋ ଭବାନୀ ଅପର୍ଣ୍ଣୀ ।୨୫୯।
ମା ଗୋ ହିଙ୍ଗୁଳା ବୋଲି ଶବଦେଣ ଯାହା ଭାଷି
ସଞ୍ଚିତ ଯୋଗଲୟେ ବହନ୍ତି ତେଜ ରାଶି ।୨୬୦।
ପ୍ରାଣତେଜ ବଇଶ୍ୟାନର କାଳାନଳ ପିଙ୍ଗଳ ଜାଳା
ଜାତ ଅନଳ ମାଗୋ ପଞ୍ଚୁ ଅଗ୍ନି ତୋହୋର ମେଖଳା ।୨୬୧।
ଶରୀରୁଂ ସମ୍ଭୂତ ମାଗୋ ତୋହୋର ବହତ
ତୁ ଯେ ଅନ୍ତ କରଉ ସର୍ବ ଦେବ ମୂରତ ।୨୬୨।
ଜାତ କାଳେଣ ମାତ୍ରୀ ରେତ କାଳେଣ ଭାରଯା
ଅନ୍ତକାଳେ କାଳିକା ସେ କାଳେ ହିଙ୍ଗୁଳା ପ୍ରାଣତେଜ୍ୟା ।୨୬୩।
ଅଭୟ ବ୍ରହ୍ମ କାଳକଇଂ ତୋହୋର ତେଜ ଉଗ୍ରତାର
ଚର୍ଚିକା ରୂପ ଧରି ନାଶକରୁ ମହାଘର ।୨୬୪।
ଆଦ୍ୟ ଅନ୍ତ ମଧ୍ୟେ ମାଗୋ ଅବସାନ ତୁହି
ଜାତ ଅନ୍ତ କରନ୍ତା ତୁ ତୋତହୁଂ ଆନ କେହି ନାହିଂ ।୨୬୫।
ତପନୀ ତାପନୀ ଗୋ ଦହନୀ ଶୋଷଣୀ ଭବାନୀ
ତବ ପାଦପଦ୍ମେ ଲୟେଣ ଭାବନ୍ତି ସିଦ୍ଧମୁନି ।୨୬୬।

---

୨୫୯।୧ ମାଗୋ ବକାଶଇ ଅନଳ ରୁଚିର ଲୋହିତ ପୀତବର୍ଣ୍ଣୀ ।
(ଖ,ନ,ଠ,ଘ)

ଯୁଗାନ୍ତକ ପ୍ରଳୟାନ୍ତକ ମହା ଭଇରେବୀ
ମାହେଶ୍ୱରୀ ପଦକୁ ତୋହୋର ହିଙ୍ଗୁଳା ନାମ ଭାବ ।୨୬୭।
ପରମ ବଇଷ୍ଣବୀ ମାଗୋ ତୁ ସାଧନା ସିଦ୍ଧମୁଦ୍ରା
ଅଷ୍ଟାଙ୍ଗ ଲୟେ ଗୋ ହୃଦୟେ ଯୋଗରୁଦ୍ରା ।୨୬୮।
ଭଗତ ଜନ ମଙ୍ଗଳୀ ଗୋ ସମୂଳ ଜନ ଚିନ୍ତା
ଦୁଖୀଜନ ଉଦ୍ଧାରଣୀ ଗୋ ଭଗତ ଜନ ପାଳନ୍ତା ।୨୬୯।
ଦୁଷ୍କୃତ ଖଣ୍ଡଣୀ ଗୋ ଦୁର୍ଗତି ଦୁଖ ମେଣ୍ଟି
ଯେ ଭୁବ ଭୁବନରେ ତୋହୋର ହିଙ୍ଗୁଳା ନାମଗୋଟି ।୨୭୦।
ମାଗୋ ଅଗତକ ଗତି ତୁ ଅକାରଣକଇଂ କାରେଣୀ
ଋଦ୍ଧି ସିଦ୍ଧି ବୁଦ୍ଧି ଗୋ ପ୍ରସନ୍ନେ ଦେଉ ଗୋସାମଣି ।୨୭୧।
ସଦାନନ୍ଦ ହୃଦଗତେ ତୋହୋର ପାଦୁକା
ଡାକଣୀ ଶବଦ ମାଗୋ ତୋହୋର ଶୁଭଇ ଯେକା ।୨୭୨।
ଡାକା ଡମ୍ବରୁ ଗୋ ଘୋର ଗହନ ବାଦ୍ୟେ
ଡବ ଡବ ଡାକେଣୀ କଳକଳା ଶବଦେ ।୨୭୩।
ମାଗୋ ଯାବତ ଚନ୍ଦ୍ର ଦିବାକର ପ୍ରଳୟ ଯୁଗପତି
ସ୍ୱାହା ସ୍ୱଧା ତୋହୋର ଗୋ ପାଦୁକା ରୂପ ଶାନ୍ତି ।୨୭୪।
ଆକାଶହିଂ ତୁହି ମଧ ଭୁବନହିଂ ତୁହି ପାତାଳହିଂ ତୁହି
ପୃଥୀ ତୁହି ଆପ ତୁହି ତେଜହିଂ ତୁହି ମହାମାଈ ।୨୭୫।
ମାଗୋ ଅଦୃଶକଇଂ ଦୃଶ ତୁ ତୋହୋର ନାହିଂ ଚିହ୍ନ ବର୍ଣ୍ଣି
ଶତକୋଟି ଅବତାର ରୁଦ୍ରର ତୁ ଅଭୟେ ଅପର୍ଣ୍ଣି ।୨୭୬।
ଭଗତଜନ ମଙ୍ଗଳା ସର୍ବ ପାପ ବିମୋଚନା
ଅନାସ୍ତ ଲୋକକୁ ମାଗୋ ତୁହି ସେ ବଜ୍ରସେନା ।୨୭୭।
ମା ଗୋ ରୁଦ୍ରର ଅବସାନେ ତୁ ପରମ ବ୍ରହ୍ମ ସାଧି
ଅବସାନ କାଳେ ହେ ତୋତେ ପ୍ରସରଇ ଦିବ୍ୟ ବୁଦ୍ଧି ।୨୭୮।

---

୨୬୭।୧ ଯୁଗାନ୍ତକ ଭୈରବୀ ପ୍ରଳୟ ଗର୍ଭ ସୃଷ୍ଟି ।
୨୬୭।୨ ମାହେଶ୍ୱର ପ୍ରସନ୍ନ ହିଙ୍ଗୁଳା ନାମଗୋଟି । (ନ,ଠ,ଖ)
୨୬୮।୨ ଅଠତ୍ରୋଶ ବନ୍ଧ ଯେତୁ ହୃଦଗତେ ରୁଦ୍ରା । (କ,ଥ,ପ)
୨୭୪।୧ ମାଗୋ ଯାବତ ଜୀବନର ତୁ ଅନ୍ତୁ ଜାତକର୍ତ୍ତ୍ରୀ ।
୨୭୪।୨ ଯେ ତୋହୋର ଚିହ୍ନବର୍ଣ୍ଣ ସୋହୋଇ ରୂପବଳୀ । (ଠ,ଘ,ନ)

ମାଗୋ ଅଷ୍ଟୋତ୍ତର ଶତେ ବରଷ ଆଇଷ୍ୟ ମଣିଷକୁ
ସେଏକ ଦିବସେକ ହୁଅଇ ସନକ ଲୋକକୁ ।୨୭୯।
ସେହି ଦିବସେ ତାହାଙ୍କୁ ଆଷ୍ୟ ଅଷ୍ଟୋତ୍ତର ଶତେବରଷ
ସେତେକ ପୂରିଲେ ସେ ହୋଅନ୍ତି ପୁଣି ନାଶ ।୨୮୦।
ସେହାଂକର ନିଧନେ ଦିବସେ ହୋସେ ବିଶ୍ୱଦେବାଂକୁ
ସେହି ଦିବସେ ଅଷ୍ଟୋତ୍ତର ଶତ ବରଷ ହୋସେ ସେହାଂକୁ ।୨୮୧।
ଅଷ୍ଟ ଉତ୍ତର ଶତ ବରଷ ପୂରିଲେ ବିଶ୍ୱଦେବାସେ ହୋଅନ୍ତି ଅବସାନ
ବିଦ୍ୟାଧର ପୁରୁଷଂକୁ ହୋଇ ସେକଦିନ ।୨୮୨।
ସେହି ଦିନେ ଅଷ୍ଟ ଉତ୍ତର ଶତ ବରଷେ ନାଶଯାନ୍ତି ବିଦ୍ୟାଧର
ପୁରୁଷେ
ସେହାଂକର ନିଧନେ ଗ୍ରହମାନଂକୁ ହୁଅଇ ଦିବସେ ।୨୮୩।
ସେହି ଦିବସେ ସେହାଂକର ଆଷ୍ୟ ଅଷ୍ଟ ଉତ୍ତର ଶତେ ବରଷେ
ତେତେକ ପୂରନ୍ତେ ସେ ହୁଅନ୍ତି ଅବଶେଷେ ।୨୮୪।
ସେତେକ ପୂରିଲେ ସେହୁ ହୁଅନ୍ତି ନିଧନ
ସେହାଂକର ନିଧନେ ଚନ୍ଦ୍ର ଦେବତାକଇଂ ହୋଇ ସେକଦିନ ।୨୮୫।
ସେହି ଆଷ୍ୟ ବଞ୍ଚାଇଲା ରୋହିଣୀ ପ୍ରାଣଗୁରୁ
ସେ ଅମାବଇ ଦିନରେ ଚନ୍ଦ୍ର ନଷ୍ଟ ହୋଇ ପୁଣି କଳା ଯେ
ସଞ୍ଚରୁ ।୨୮୬।
ଚନ୍ଦ୍ର ଦୋଷ ଖଣ୍ଡି ପୁଣ କରଇ ଉଦୟେ
ନହ ରେହ ପ୍ରାସେକ ପୁଣିହିଂ ବିକାଶଇ ତାର କାସେ ।୨୮୭।
ମାଗୋ ଚନ୍ଦ୍ର ନିଧନ କଲେ ସେହାକଇଂ ଚନ୍ଦ୍ରେକ ବୋଲି
ମୁକୁହିଂ ଅଗୋଚର ମାଗୋ ବ୍ୟାହଂକ ମୁଖରୁ ଶୁଣିଲି ।୨୮୮।
ଚନ୍ଦ୍ରଂକ ଅଷ୍ଟ ଉତ୍ତର ଶତେ ବରଷେ ପିତାମହଂକୁ ହୋଅଇ
ସେକଦିନ
ସେ ଦିନେହିଂ ଅଷ୍ଟଉତ୍ତର ଶତେ ବରଷ ପୂରିଲେ ପିତାମହ ହୁଅନ୍ତି
ନିଧନ ।୨୮୯।

---

୨୮୯। ସେ ଦିନ ପୂରିଲେ ପିତାଂକୁ ହୋସେ ସେକଦିନ
ଶତେ ଅଷ୍ଟ ଉତ୍ତର ବରଷ ପୂରିଲେ ଧାତା କରଇ ଶୟନ ।
(ଙ,ଚ)

*

ଧାତାର ଅଷ୍ଟ ଉତ୍ତର ଶତେ ବରଷ ପୂରିଲେ ବିଷ୍ଣୁଙ୍କୁ ହିବସେ
ସେ ଲୟେ ଅନ୍ତର ହୋଇ ଅଷ୍ଟ ଉତ୍ତର ଶତ ବରଷେ ।୨୯୦।
ବିଷ୍ଣୁର ଅଷ୍ଟ ଉତ୍ତର ଶତେକ ବରଷେ ହିନେକ ରୁଦ୍ର ଦେବତାଂକୁ
ସେହିଦିନେ ଅଷ୍ଟ ଉତ୍ତର ଶତେ ବରଷେ ଆୟୁଷ ତାହାଂକୁ ।୨୯୧।
ମାଗୋ ରୁଦ୍ରହିଂ ଅବସାନ ହୁଅଇ ଯେତେ କାଳକଇ
ମାଗୋ ରୁଦ୍ରହିଂ ଅଭ୍ୟାଗତ କାଳ ପୁଣ ହୋଇ ।୨୯୨।
ମାଗୋ ରୁଦ୍ରହିଂ ପ୍ରାଣତ୍ୟାଜ ହନ୍ତି ଅଭ୍ୟାଗତ କାଳେ
ତୁ ତାହାର ଶାଖାଗୋଟି ଧରିଥାଉ କୋଳେ ।୨୯୩।
ଯେତେକାଳ ପରିଯନ୍ତେ ଆଷ୍ୟ ପାଅଇ ଧୂର୍ଜଟି
ତେତେକାଳ କୋଳେ ଧରିଥାଉ ତାର ମୃତ୍ତପିଣ୍ଡଗୋଟି ।୨୯୪।
ମାତା ଆପଣ ର ତହିଂ ଆଷ୍ୟ କାଟିଣ ତୁ ଦେଉ
ତୋହୋର ପ୍ରାଣ ଦୁଇଭାଗ କରିଣ ରୁଦ୍ର ଦେଡାକଇଂ ଦେଇଣ
ଜୀଆଉଂ ।୨୯୫।
ଶୂନ ଉଚାଟନ ମହାମନ୍ତ୍ରେ ବ୍ରତଇ ହି ପୁରିଣ
ତେଣୁ ସେ ନାମ ତୋହୋର ଅଟଇ ଅର୍ଦ୍ଧନାରୀ ।୨୯୬।
ମାଗୋ ଯୁଗାନ୍ତକ କଳପୀ ତୁ ଯୁବା ସର୍ବକାଳେ
ସତର ବରଷ ବୟସ ନୋହୋଇ ତୋହୋର ପ୍ରଳୟ ଅନ୍ତେହେଂ
ବାଳୁତ ରୂପେ ଖେଳେ ।୨୯୭।
ମାଗୋ ଯେକ ଯେକ ଲୟେକେ ଯେକ ମୁହୂର୍ତ୍ତେକ ବୋଲି
ଷାଠିଏ ମୁହୂର୍ତ୍ତେ ଯେ ନିଶ୍ୱାସେ କହିଲି ।୨୯୮।
ମାଗୋ ଷାଠିଏ ନିଶ୍ୱାସକେ ଲିତାଏ କହିଲି
ଷାଠିଏ ଲିତାଏ ଯେ ଦଣ୍ଡେକ କହିଲି ।୨୯୯।
ହିଶାଶତ ଲିତାଏ ଯେ ଘଡିଯେକ ବୋଲି
ଭିରିଣ ଅଶୀ ଲିତାଏ ଯେ ପ୍ରହରେକ ବଖାଣିଲି ।୩୦୦।
ନବଶତ ଷାଠିଏ ଲିତାରେ ଅର୍ଦ୍ଧେକ ହୋଇ ହିନ
କରତାର ମଧ୍ୟେ ଯେହାକୁ ବୋଲି ଯେ ମଧ୍ୟାହ୍ନ ।୩୦୧।
ମାଗୋ ଚଉଦ ଶୂଳଶ ଲିତାଏ ଦ୍ୱାଦଶ ଘଡ଼ି ଲେଖା
ଆହାନ୍ନିକ କାଳେ ପୁରୁଷ ନବଶତ ରେଖା ।୩୦୨।

ମାଗୋ ସହସ୍ରେ ନବଶତ କୋଡ଼ଯୁଗେ ଲିପିଚେ
ଚଉ ପ୍ରହର ହୋଇଲ ଦିନକର ମେରୁ ଅନ୍ତେ ।୩୦୩।
ଦିବସ ଓହାଡ଼ିଲ ମାତା ଗୋ କାଳ ସେ ପୁରୁଷ
କଳାଯୁଗେ ଅନ୍ଧକାର ହୋଇଲ ରଯ୍ୟଣୀ ପ୍ରବେଶ ।୩୦୪।
ମାଗୋ ରାବଣଂ ରଳବ ନାହିଂ ଯୁଗିଙ୍କ ପରମାଣେ
ତୁ ଯେହା ନ ଜାଣୁ କି ରାବ ଦିବା ଗଲ କେଣେ ।୩୦୫।
ମାଗୋ ବନୁ ଜ୍ୱାଳାଯୁଗେ ତୁ ରାବ ଦିବସେ ହିଙ୍ଗୁଳା
ପ୍ରିୟ ଧବା ମାନମା କୃତାନ୍ତ ସଙ୍ଗୀତମାଳା ।୩୦୬।
ମାଗୋ ଧର ହର ଉଦ୍ଧାରଅଛୁ ତୁହି ଜନ୍ମେ ଜନ୍ମେ
ଅବକାର ଧାର୍ଣୀ ତୁ ଅଟୁ ସେ ଅପର୍ଣ୍ଣେ ।୩୦୭।
ଦିଗନ୍ତକ ଭୁଜଦଣ୍ଡ ପ୍ରଚଣ୍ଡ ଦୁର୍ଦ୍ଧର୍ଣ୍ଣୀ
ଆହାରେ ଊର୍ଦ୍ଧ୍ୱ ବାତା ଗୋ ବନାଅର୍ଣ୍ଣେ ଚାପ ଖଣ୍ଡି ।୩୦୮।
ଭୃକୁ ଭଙ୍ଗୀ ସ୍ୱବାମା ଭରହରକ୍ଷେ ରସି
ହୋଠ ଅନଳ ରୂପ ତୋହୋର ଅପୂର୍ଣ୍ଣା ପଦ୍ମବାସୀ ।୩୦୯।
ଅନରୂପ ମଳୟା ତୁ ଜାତ ଅନଳ ରୂପୀ
ଦହନୀ ଶୋଷଣୀ ମାତା ଗୋ ମରୁତ ଗଗନ କ୍ଷେପୀ ।୩୧୦।
ନମୋ ହିଙ୍ଗୁଳା କାମାକ୍ଷୀ ହିରଣାକ୍ଷୀ
ଜାତ ଅନ୍ତକାଳକୁ ମାତ ଗୋ ତୁହି ସେ ରକ୍ଷ ଭକ୍ଷି ।୩୧୧।
ବାହାରେଣ ଦହନୀ ମାତ ଗୋ ଗର୍ଭେଣ ସର୍ବ ଭସ୍ମୀ
ନିରଞ୍ଜନୀ ମାତା ଗୋ କଉତୁକ ବ୍ରହ୍ମାଣୀ ।୩୧୨।
ମାଗୋ ଆଉର ଜ୍ୟୋତିର ଧନୁର ସୁଷୁମ୍ନା ଗୃରବେଦ ଚଉମନ୍ତ୍ରେ
ଉଜାଣି ହେଠାଇଲୁ ମାତ ଗୋ ଅଜପା କୂଟଯନ୍ତ୍ରେ ।୩୧୩।

---

୩୦୬। ପ୍ରିୟ ଅବନ୍ଧାବଲୀ ମାନନୀ କୃତାଙ୍ଗୀ ତେଜମାଳା । (ଙ ଢ)
୩୦୭। ଅବକାର ଧାତ୍ରୀ ରୁ ସତେ ମଧ୍ୟଆନେ । (ଙ,ଢ)
୩୦୮। ଆହାର ହର୍ଦ୍ଧ୍ୱ ଗଢ ଗୋ ଅନ୍ଧ ଗୋପାରୁଣ୍ଡି । (ନ)
୩୦୯। ଭୂର ଭୂତାଙ୍ଗୀ ଭରହରଚି । (ଅ,ପ)
୩୧୦। ଅନଳ ରୂପୀ ମଳୟା ତୁ ଜାତ ଅନରୂପୀ । (ଙ,ଢ)
୩୧୧। ଜାତ ଅନ୍ତ ମଧ୍ୟକୁ ମାତ ଗୋ ରୁହ ସେ ସର୍ବସାକ୍ଷୀ ।
(ଙ,ଢ,ଝ,ପ)

ନବ ନାଡ ବାୟୋଶ କୋଟିଯେ ପ୍ରାଣର ପୁରୁଷକୁ
ସୁଷୁମ୍ନା ସାଧନାକୁ ଗୋ ବହନ୍ତ ମନ୍ତ୍ର ଭୂକୁ ।୩୧୪।
ବ୍ରହ୍ମ କର୍ମ ସଂସ୍କାର ଅଷ୍ଟ ଗୃଳଣ ଥାପନେ
ଗୃଣ ଚଉଂଶ ଚଆଂଇଲ ଗୋ ତୋହୋର ମନ୍ତପାନେ ।୩୧୫।
ବାଆସ୍ତଶ ମୂଦ୍ରାକୁ ମାତା ଗୋ ଭୁଞ୍ଜ ସେ ଆଦ୍ୟମୂଳ
ପାକଶୁଦ୍ଧି କାଳକୁ ଭୁଞ୍ଜ ସେ ସର୍ବ ମଙ୍ଗଳ ।୩୧୬।
ହେ ବୁଧଜନମାନେ ହିଙ୍ଗୁଳାର ନାମ ଧର
ପ୍ରସନ୍ନ ହିଙ୍ଗୁଳା ବୋଲ ପଞ୍ଚଭୂତେଣ ସୁମର ।୩୧୭।
ଆହୋ ବ୍ରହ୍ମ ଅସୁର ଯେ ବେନି ଆତାପି ବାତାପି
ଅନେକ ହତ୍ୟାକର ସେ ଅଗତ୍ତ ମହାପାପୀ ।୩୧୮।
ତାହାଂକର ମାଂସ୍ୟେଂସ ଭକ୍ଷିଲେ ଅଗସ୍ତି ବ୍ରହ୍ମବେତ୍ତ
ହିଙ୍ଗୁଳାର ପ୍ରସନ୍ନେ ସେ ହୋଇଲ ଭସ୍ମଗତା ।୩୧୯।
ମାହେଶ୍ୱରୀ ପଦକୁ ନରେ ଯାହାର ଅଛି ଆଶ
ବଂଶେ ଦାରିଦ୍ର ନ ଥାଇଟି ସେହି ହିଙ୍ଗୁଳା ନାମ ଘୋଷ ।୩୨୦।
ଶ୍ରୀହିଙ୍ଗୁଳାର ଭୁସ୍ତି ଯେ ଧରନ୍ତ ହୃଦଗତେ
ଧନ ସନ୍ତାନ ବର୍ଦ୍ଧିତ ହୋଇ ହିଙ୍ଗୁଳା ନାମ ଧରନ୍ତେ ।୩୨୧।
ଅଜୀର୍ଣ୍ଣ ଭୋଜନ ଯାର ଜରା ମନ୍ଦବ୍ୟାଧି
ହିଙ୍ଗୁଳା ଭୁସ୍ତି ସୁମରନ୍ତେ ସକଳ ପାପ ଛେଦ ।୩୨୨।
ଶ୍ରୀ ହିଙ୍ଗୁଳା ଦେବୀ ଗୋ ପ୍ରସନ୍ନେ ହୋଅ ମୋତେ ନିତ୍ୟେ
ଶୂଦ୍ରମୁନି ସାରୋଳ ଦାସ ବୋଇଲେ ବାଞ୍ଛା ସିଦ୍ଧଅର୍ଥେ ।୩୨୩।
ଆହୋ ବଦନ୍ତ କୁମ୍ଭଋଷିର ନନ୍ଦନ ଅଗସ୍ତି
ଯେବଣ ମହାତ୍ମାର ମନ୍ତ୍ରେ ଉତସଲ୍ଲ ସପତଦ୍ୱୀପା ପୃଥ୍ୱୀ ।୩୨୪।
ଭୂତ ଭବିଷ୍ୟ ବର୍ତ୍ତମାନ ଯେବଣ ମହାତମାକୁ ଦୃଶ
ସେ ବ୍ରହ୍ମଋଷି ପାଦପଦ୍ମେ ମୁଂ ବଡାଇଲି ଆଶ ।୩୨୫।
ଶ୍ରୀ ମହାଭାରଥ ପୁରାଣ କଥିତେ
ତାହା ମୁଂ ଅଭ୍ୟାସ କଲି ମୂଢ ଅମୃତ ରସଗୀତେ ।୩୨୬।

---

୩୧୫।୧ ବ୍ରହ୍ମ କର୍ମ ସଂସ୍କାର ଅଠଗୃଳଣ ଥାପନେ । (ଝ,ପ)

ହିଙ୍ଗୁଳାକୁ ସ୍ତୁତି କଲେକ ଫାଲଗୁନ
ପ୍ରସନ୍ନେ ଅଭୟେ ବର ଦିଲେ ଦେବୀ ଯେ କାନ୍ତାଣୀ ।୩୨୭।
କାନ୍ତାଣୀ ଘେନିଲେ ଯେ ଅର୍ଜ୍ଜୁନର ଭଗତି
ପ୍ରସନ୍ନେ ମହାମନ୍ତ୍ରେ କହିଲେ ଶାନ୍ତମୂର୍ତ୍ତି ।୩୨୮।
ତୁମ୍ଭେ ଯେ ରାଜସୂୟ ଯାଗ ଆରୋପଣ କଲ
ପୃଥିବୀ ରାଜାମାନଙ୍କ ସବୁଙ୍କ ନିମନ୍ତ୍ରିଲ ।୩୨୯।
ଅନ୍ନ ଯୋଗାଡ଼ କେମନ୍ତ ମିଳିବ ଯେତେକ ସୈନ୍ୟଙ୍କ
ଆମ୍ଭେ ବଳେକରି ଯାଉଅଛୁଂ ତୋହୋର ତହିଁକ ।୩୩୦।
ରନ୍ଧଣା ଖନ୍ଦା ତୋହୋର ହୋଇବ ଯେତେ ଦୂରେ
ଆମ୍ଭର ନାମ ଧରି ରନ୍ଧଣାରେ ପଶିବେ ସୂପକାରେ ।୩୩୧।
ଯେଉଁସିନା ବାଗେଣ ପଞ୍ଜନ କରିବେ କାଞ୍ଚିତେ
ଅମୃତ ପାକ ଯେ ହେଉଥିବ ଅନୁବ୍ରତେ ।୩୩୨।
ସୂପଙ୍କୁ ଅନ୍ନ ଯେ ହୋଉଥିବ ରସପାକ
ଭୁଞ୍ଜନ୍ତେ ରାଜାୟେ ସୁମରୁ ଥିବେ ଜନ୍ମାନ୍ତେକ ।୩୩୩।
ଗଜରି ସଜରି ନଳ ବଧି ଛିନ୍ନପ୍ରତି
ଅଦଭୂତେ ରନ୍ଧଣା ହୋଉଥିବଟି ସମ୍ବାଦ ।୩୩୪।
ପ୍ରସନ୍ନେ ଅଭୟେ ବର ଦିଲେଟି ହିଙ୍ଗୁଳା
କୁଡ଼ୋଇ ଗୋଟିକରୁ ଅନ୍ନ ଭୁଞ୍ଜିବେଟି ସହସ୍ରେକ ଅନର୍ଗଳା ।୩୩୫।
ଅନ୍ନ ଭୁଞ୍ଜିବେ ଯାହାର ଯେତେକ ଇଚ୍ଛା
ଫଳଯେ ପ୍ରାପତ ହୋଇବ ତୁମ୍ଭର ମନବାଞ୍ଛା ।୩୩୬।
ଯେ ବୀରବର ନୃପତି ବହୁତ କାକୁସ୍ଥ ହୋଇଲା ହେ ମହାତମା
ଦଶଦୋଷ ଅପ୍ରାଧ ପାଥ ଯେହାର ତୁ କରିବୁ ସର୍ବ କ୍ଷମା ।୩୩୭।
ଅନେକ ଭଗତି ହୋଇଲା ରଣସ୍ତମ୍ଭ ଗଡ଼ ଆଧିପତି
ପ୍ରସନ୍ନ ନାରାୟଣ ସ୍ୱାମୀ ମୋହୋର ଫେଡ଼ିବା ଦୁର୍ଗତି ।୩୩୮।
ଅର୍ଜ୍ଜୁନ ବୋଇଲେ ବାବୁ ତୁ ଯେ ହୋଇଲୁ ମତିଭ୍ରଷ୍ଟ
କାଞ୍ଚିତ ଦୋଷେ ତୋତେ ହୋଇଲାନି ବଡ଼ କଷ୍ଟ ।୩୩୯।
ଅଜୟେ ଗଡ଼ ସାଧିଲି ତୋହୋର ମାଇଲି ବହୁତ ସୈନ୍ୟ
ସେ ଦୋଷ ଗଲା ମୋଚନ ତୁ ମୋତେ ଆବର କରିବୁ ଦାଇନ୍ନ ।୩୪୦।

ନବ ନାଡ଼ ବାସ୍ତୋଷ୍ପି କୋଟିଯ୍ୟେ ପ୍ରାଣର ପୁରୁଷକୁ
ସୁଷୁମ୍ନା ସାଧନାକୁ ଗୋ ବହନ୍ତ ମନ୍ତ ଭୂକୁ ।୩୧୪।
ବ୍ରହ୍ମ କର୍ମ ସଂସ୍କାର ଅଷ୍ଟ ଗୃକଳଶ ଥାପନେ
ଗୃଶ ଚଉଂଶ୍ରି ଚଥାଂଇଲ ଗୋ ତୋହୋର ମନ୍ତ୍ରପାଠନେ ।୩୧୫।
ବାଆସ୍ତଶ୍ରି ମୁଦ୍ରାକୁ ମାତା ଗୋ ତୁହ୍ବ ସେ ଆଦିମୂଳ
ପାକଶୁଦ୍ଧି କାଳକୁ ତୁହ୍ବ ସେ ସର୍ବ ମଙ୍ଗଳ ।୩୧୬।
ହେ ବୁଧଜନମାନେ ହିଙ୍ଗୁଳାର ନାମ ଧର
ପ୍ରସନ୍ନ ହିଙ୍ଗୁଳା ବୋଲି ପଞ୍ଚ ଭୂତେଣ ସୁମର ।୩୧୭।
ଆହୋ ବ୍ରହ୍ମ ଅସୁର ଯେ ବେନି ଆତାପି ବାତାପି
ଅନେକ ହତ୍ୟାକରି ସେ ଅଗନ୍ତ ମହାପାପୀ ।୩୧୮।
ତାହାଂକର ମାଂସ୍ୟେଂସ ଭକ୍ଷିଲେ ଅଗସ୍ତି ବ୍ରହ୍ମବେତ୍ତା
ହିଙ୍ଗୁଳାର ପ୍ରସନ୍ନେ ସେ ହୋଇଲ ଭସ୍ମଗତା ।୩୧୯।
ମାହେଶ୍ୱରୀ ପଦକୁ ନରେ ଯାହାର ଅଛି ଆଶ
ବଂଶେ ଦାରିଦ୍ର ନ ଥାଇଟି ସେହ୍ବ ହିଙ୍ଗୁଳା ନାମ ଘୋଷ ।୩୨୦।
ଶ୍ରୀହିଙ୍ଗୁଳାର ଭୁସ୍ତି ଯେ ଧରନ୍ତ ହୃଦଗତେ
ଧନ ସନ୍ତାନ ବର୍ଦ୍ଧିତ ହୋଇ ହିଙ୍ଗୁଳା ନାମ ଧରନ୍ତେ ।୩୨୧।
ଅଜୀର୍ଣ୍ଣ ଭୋଜନ ଯାର ଜର ମହବ୍ୟାଧି
ହିଙ୍ଗୁଳା ଭୁସ୍ତି ସୁମରନ୍ତେ ସକଳ ପାପ ଛେଦ ।୩୨୨।
ଶ୍ରୀ ହିଙ୍ଗୁଳା ଦେବୀ ଗୋ ପ୍ରସନ୍ନେ ହୋଅ ମୋତେ ନିତ୍ୟେ
ଶୂଦ୍ରମୁନି ସାରଳ ଦାସ ବୋଇଲେ ବାଞ୍ଛା ସିଦ୍ଧଅର୍ଥେ ।୩୨୩।
ଆହୋ ବଦନ୍ତ କୁମ୍ଭଋଷିର ନନ୍ଦନ ଅଗସ୍ତି
ଯେବଣ ମହାତ୍ମାର ମନ୍ତ୍ରେ ଉତସଲି ସପତଦୀପା ପୃଥ୍ୱୀ ।୩୨୪।
ଭୂତ ଭବିଷ୍ୟ ବର୍ତ୍ତମାନ ଯେବଣ ମହାତମାକୁ ଦୃଶ
ସେ ବ୍ରହ୍ମଋଷି ପାଦପଦ୍ମେ ମୁଂ ବତାଇଲି ଆଶ ।୩୨୫।
ଶ୍ରୀ ମହାଭାରଥ ପୁରାଣ କଥିତେ
ତାହା ମୁଂ ଅଭ୍ୟାସ କଲି ମୃତ ଅମୃତ ରସଗୀତେ ।୩୨୬।

---

୩୧୫।୧ ବ୍ରହ୍ମ କର୍ମ ସଂସ୍କାର ଅଠଗୃଳଶ ଥାପନେ । (ଝ,ପ)

ସ୍ୱଙ୍ଗୁଳାକୁ ତୁଷ୍ଟି କଲେକ ଫାଲଗୁନ
ପ୍ରସନ୍ନେ ଅଭୟେ ବର ଦିଲେ ଦେବୀ ଯେ କାନ୍ତାମ୍ମା ।୩୨୭।
କାନ୍ତାମ୍ମା ଘେନିଲେ ଯେ ଅର୍ଜୁନର ଭଗତି
ପ୍ରସନ୍ନେ ମହାମନ୍ତ୍ରେ କହିଲେ ଶାନ୍ତମୂର୍ତ୍ତି ।୩୨୮।
ତୁମ୍ଭେ ଯେ ରାଜସୂୟ ଯାଗ ଆରୋପଣ କଲ
ପୃଥିବୀ ରାଜାମାନଙ୍କ ସବୁନ୍ତ ନିମନ୍ତ୍ରିଲ ।୩୨୯।
ଅନ୍ନ ଯୋଗାଡ଼ କେମନ୍ତ ମିଳିବ ଏତେକ ସଇନିଂକ
ଆମ୍ଭେ ବଚନକର ଯାଉଅଛୁଂ ତୋହୋର ତହିଂକ ।୩୩୦।
ରନ୍ଧଣା ଖନ୍ଦା ତୋହୋର ହୋଇବ ଯେତେ ଦୂରେ
ଆମ୍ଭର ନାମ ଧରି ରନ୍ଧଣାରେ ପଶିବେ ସୂପକାରେ ।୩୩୧।
ଯେଉଂସିଲ୍ଲ ବାଗେଣ ପଞ୍ଜନ କରିବେ କଞ୍ଚତେ
ଅମୃତ ପାକ ଯେ ହେଉଥିବ ଅନୁବ୍ରତେ ।୩୩୨।
ସୂପଂକୁ ଅନ୍ନ ଯେ ହୋଉଥିବ ରସପାକ
ଭୁଞ୍ଜନ୍ତେ ରାଜାଏ ସୁମରୁ ଥିବେ ଜନ୍ମାନ୍ତେକ ।୩୩୩।
ଗଉରୀ ସଉରୀ ନଳ ବଧି ତିନିପ୍ରତି
ଅଦଭୁତେ ରନ୍ଧଣା ହୋଉଥିବଟି ସମ୍ବାଦ ।୩୩୪।
ପ୍ରସନ୍ନେ ଅଭୟେ ବର ଦିଲେଟି ସ୍ୱଙ୍ଗୁଳା
କୁଡୋଇ ଗୋଟିକରୁ ଅନ୍ନ ଭୁଞ୍ଜିବେଟି ସହସ୍ରେକ ଅନର୍ଗଳା ।୩୩୫।
ଅନ୍ନ ଭୁଞ୍ଜିବେ ଯାହାର ଯେତେକ ଇଚ୍ଛା
ଫଟଏ ପ୍ରାପତ ହୋଇବ ତୁମ୍ଭର ମନବାଞ୍ଛା ।୩୩୬।
ଏ ବୀରବର ନୃପତି ବହୁତ କାକୁସ୍ଥ ହୋଇଲ ହେ ମହାତମା
ଦଶଦୋଷ ଅପ୍ରାଧ ପାଥ ଏହାର ତୁ କରିବୁ ସର୍ବ କ୍ଷମା ।୩୩୭।
ଅନେକ ଉଗତି ହୋଇଲ ରଣସ୍ତମ୍ଭ ଗଡ ଆଧିପତି
ପ୍ରସନ୍ନେ ନାରାୟଣ ସ୍ୱାମୀ ମୋହୋର ଫେଡ଼ିବା ଦୁର୍ଗତି ।୩୩୮।
ଅର୍ଜୁନ ବୋଇଲେ ବାବୁ ତୁ ଯେ ହୋଇଲୁ ମତିଭ୍ରଷ୍ଟ
କଞ୍ଚିତ ଦୋଷେ ତୋତେ ହୋଇଲାନି ବଡ କଷ୍ଟ ।୩୩୯।
ଅଜଏ ଗଡ ସାଧିଲି ତୋହୋର ମାଇଲି ବହୁତ ସଇନ
ସେ ଦୋଷ ଗଲା ମୋଚନ ତୁ ମୋତେ ଆବର କରିବୁ ଦଇନ ।୩୪୦।

ତୁ ମୋହୋର ବାନ୍ଧବ ଯେ ଅଟୁ ସର୍ବକାଳେ
ହଂସୁଳା ଭେଟିଲ ମୁଂ ତୋହୋର ପୁଣ୍ୟବଳେ ।୩୪୧।
ସ୍ୱେ ପୃଥ୍ୱୀରେ ଥାଇ ହୋ ଯେତେକ କାଳ ପର୍ଯ୍ୟନ୍ତେ
ତୁହ୍ମ ସେ ମୋହୋର ବାନ୍ଧବ ହୋ ଅଟୁ ପଞ୍ଚୁଭୂତେ ।୩୪୨।
ଅକ୍ଷତ ଘୃଆ ଯେ ତାକୁ ହଲେ ଫାଲଗୁନି
ରାଜସୂୟ ଯାଗକୁ ଯାଅ ଯା ତୋହୋର ଆଠସନ୍ୟ ଘେନି ।୩୪୩।
ବଡ ସମ୍ମାନ ହୋଇ ତୁହ୍ମ ଯିବୁଟି ସଭାକୁ
ରାଜାମାନଂକର ଶରଧା ଅଛୁ ତୋତେ ଦେଖିବାକୁ ।୩୪୪।
ମହାକ୍ଷେତ୍ର ମଣ୍ଡଳେ ତୁ ଅଟୁ କ୍ଷେତ୍ର ଅଧିକାରୀ
ସ୍ୱେ ମଧ୍ୟ ଭୁବନକୁ ତୁ ତ ଦେବତା ସମାନେ ସରି ।୩୪୫।
ଅନେକ ପୁରସର ଅର୍ଜୁନ କହେ ମନାଇଂ
ଶୁଣିଣ ରାଜା ବେନିକର ଯୋଡିଣ ବୋଲଇ ।୩୪୬।
ସମସ୍ତ ସଇନ ସ୍ୱାମୀ ମାଇଲୁ ମୋହୋର
କସ ଘେନି ଯିବଇଂ ଆଉ ସଭାକୁ ତୋହୋର ।୩୪୭।
ରାଜାର ବଚନେ ଅର୍ଜୁନ ଦେଖା ମୁଖ ଚାହିଂ
ହଂସୁଳା ବୋଇଲେ ବାବୁରେ ଦେଉ କନା ଜୀଆଇଂ ।୩୪୮।
ଅମର ମଉଷଧି ଅଛଇ ତୋର ତହିଂ
ତେଣୁକରି ବାବୁରେ ତୋତେ ମୁଂ ପ୍ରକାଶଇ ।୩୪୯।
ଜୀବନ୍ୟାସ ଶର ସେ ଅର୍ଜୁନ ପେଷେ ହଂସୁଳାର ବୋଲେ
ଅମୃତ ବୃଷ୍ଟି ହୋଇଲା ସେ ସମସ୍ତ ସଇନ ଜୀଇଂଲେ ।୩୫୦।
ହାଣ ହାଣ ମାର ମାର ବୋଲିଣ ବୋବ ଦେଇ
ବୀରବର ନୃପତି ଯେ ସମଦଣ୍ଡ ସାଜି ଚଳିଯାଇ ।୩୫୧।

---

୩୪୫।୨ "ସ୍ୱେ ମଧ୍ୟ ଭୁବନକୁ ତୁ ତ ଦେବତା ସମାନେ ସରି" ପରେ 'ଖ' ପୋଥିରେ ଅଧିକା ପାଠ—

ଅମୃତ ବୃଷ୍ଟି କରିଣ ହଂସୁଳା ଗୃହଂଲେ
ଯେତେ ସନ୍ୟ ପଡିଥିଲେ ସମସ୍ତେ ଉଠିଲେ ।
ଦେଖିକରି ଆନନ୍ଦ ହୋଇଲା ନୃପସାଇଂ
ସମଦଣ୍ଡ ବୀରବର ନୃପତି ସାଜଇ ।

ଆହୋ ଅର୍ଜୁନ ଶୁଣୁମୁରେ ଯେ କହଇ ବୀରବର
ସ୍ୱାମୀ ଜୀବନରୁ ସୁଫଳଟି ଯେତେକାଳେ ହୋଇଲା ମୋହୋର ।୩୫୨।
ତୁ ମହାଛତ୍ରୀବୃତ୍ତ ଯେ ଅଭୟେ ସୋମବଂଶେ
ପ୍ରତକ୍ଷେ ପାଂଚ ତୋତେ ଅଛୁଟି ଆକାଶେ ।୩୫୩।
ଅନେକ ବନୋଧ୍ୱୀ ଯେ କହିଲେ ରାଜସାଇଂ
ମାହେନ୍ଦ୍ର ଯୋଗ ଘେନିଣ ରାଜା ରଣସ୍ତମ୍ଭ ଗଣ୍ଡୁ ବାହାର
　　　　　　　　　　　　　　　　　　　　　ହୋଇ ।୩୫୪।
ଅର୍ଜୁନ ନମଇ ସେ ଦେବୀର ପାଦତଳେ
ଅନ୍ତର୍ଧାନ ହୋଇ ତହୁଂ ଗଲେକ ସ୍ୱର୍ଗପୁରେ ।୩୫୫।
ତହୁଂଣ ଅର୍ଜୁନ ଗଲେ ଥାଠସନ୍ୟ ଚଳାଇ
କଉଶିକ ନଦୀରେ ପ୍ରବେଶ ହୋଇଲେକ ଯାଇଂ ।୩୫୬।
ପୁଣ୍ୟତୋୟା ଜଣିଣ ଯେ ପଶିଲେ ଘୋରବନେ
ତହୁଂଣ ଅର୍ଜୁନ ଚଳଇ ପ୍ରସନ୍ନେ କେଦାର ଭୁବନେ ।୩୫୭।
ହେମବନ୍ତ ସନ୍ନିଧେ ମହୀନ୍ଦ୍ର ନାମେ ଗିରି
ଗିରିରାଜ ହେମବନ୍ତ ତହିଂ ପ୍ରତକ୍ଷେ ବଜେକରି ।୩୫୮।
ଆଠଲକ୍ଷ ପର୍ବତ ଅଛୁ ରାଜ୍ୟକରିଂ ବେଢି
ସେ ହେମବନ୍ତ ହୋ ଗିରିରାଜ ଅଧିକାରୀ ।୩୫୯।
ମଇନାବତୀ ବୋଲିଣ ହେମବନ୍ତର ଝିଅରଜା
ତାହାର ତହୁଂ ଉତପତ୍ତି ହୋଇଲେ ଗିରିଜା ।୩୬୦।
ସେହି ସେ ଗିରିଜାର ଅଟଇ ତପସ୍ଥାନ
ଗଉରୀ ପ୍ରଦାନ ତହିଂ ହୋଇଲେ ତ୍ରିଲୋଚନ ।୩୬୧।
ଦୁର୍ଗାସ୍ତ ସମ୍ମୁଖର ଯେ ହେମବନ୍ତର ଭୁବନେ
ଭଗତ ଭାବେ ରହିଲେ ଦେବ ତ୍ରିଲୋଚନେ ।୩୬୨।
ବହଇ ଉତ୍ତରଭାଗୀ ହେମ ଯେ କେଦାରୀ
ଦ୍ୱାଦଶ ଯୋଜନ ପରିଯନ୍ତେ ତହିଂ ପଶିତେ ଭୟେଙ୍କର ।୩୬୩।

---

୩୫୩।୧ ତୁ ମହାଛତ୍ରୀ ବୃତ୍ତ ଯେ ଅଭୟେ ସୋମବଂଶୀ
　　ପ୍ରତକ୍ଷେ ନାରାୟଣ ଅଟୁ ତୁ ହୃଷିକେଶୀ । (ଖ,ଠ,ଘ,ନ)
୩୬୦।୧ ମଇନାବତୀ--ମେନା ।

ମହାବିକ୍ରମେଣ ସଇନ୍ୟ ନୁଆରନ୍ତି ଗ୍ଭଳି
ଖାଣ୍ଡି ଖାଣ୍ଡି ଅର୍ଜ୍ଜୁନ ବୋଲଇ ସମସ୍ତେହେଁ ବୋଲି ।୩୬୪।
ସଇନ୍ୟର ବିକଳ ଦେଖିଣ ସବ୍ୟସାଚୀ
ଅଗ୍ନି ନାରାଚ ଧରି ଅର୍ଜ୍ଜୁନ କରେଣ ଆମନ୍ତ୍ରି ।୩୬୫।
ଆଗେଣ ଅଗ୍ନି ଶର ପଛେଣ ଚଳଇ ସଇନ୍ୟ
ନନ୍ଦିଘୋଷ ଧେନ୍ୟ ଆଗୁସରେ ପାର୍ଥିବ ଫାଲଗୁନ ।୩୬୬।
ଅଗ୍ନିର ଶରତେଜେ ହିମଗିରି ଗଲା ଫାଟି
ମହୀନ୍ଦ୍ରମାଳ ପର୍ବତେ ଅର୍ଜ୍ଜୁନ ଯାଇଂ ଉଠି ।୩୬୭।
ତହିଂ ବନ୍ଦେ କୁରୁଶାଙ୍ଗୀ ହିମ ଯେ କେଦାର୍ଶ
ତହିଂର ଭିତରେ ବିଜୟେ ଦେବ ତ୍ରିପୁରାରି ।୩୬୮।
ପ୍ରସନ୍ନ ଲିଙ୍ଗ କେଦାର ସମ୍ପୂଳ ଜନ ଚିନ୍ତା
ଭଗତ ମଚ୍ଛଳ ନାଥ ପ୍ରସନ୍ନେ ବରଦାତା ।୩୬୯।
ଜୟନ୍ତୁ କେଦାରେଶ୍ୱର ପ୍ରସନ୍ନ ମହାଭୋଳା
ଜୟନ୍ତୁ କେଦାରେଶ୍ୱର ଭଗତ ମଚ୍ଛଳା ।୩୭୦।
ମଉଳି ଜଟାରୁ ଗଙ୍ଗା ବହଇ ତ୍ରିବେଣୀ
ପଞ୍ଚଦଶ ନେତ୍ର ସ୍ୱାମୀ ଅଭୟ ଶୂଳପାଣି ।୩୭୧।
ଯେମନ୍ତେ ଅନେକ ଭୁସ୍ତି କରି ପାଣ୍ଡବ ଧନୁର୍ଜ୍ଜୟେ
ପ୍ରଣିପତ୍ୟ ହୋଇ ଅର୍ଜ୍ଜୁନ ବହୁତ ବିନୟେ ।୩୭୨।
ଅର୍ଜ୍ଜୁନର ଭଗତେ ବିଜୟେ ତ୍ରିପୁରାରି
ପ୍ରସନ୍ନେ ମହା କେଦାର ଦର୍ଶନେ ପାପ ହରି ।୩୭୩।
ତୁ ଦେବ ପରମାନନ୍ଦ ଅଭୟ ପରମଯୋଗୀ
ଆପଣେ ଦୁଖ ପଣ୍ଡଣ ନାଥ ପରେଣ ସୁଖଭୋଗୀ ।୩୭୪।
ଅର୍ଜ୍ଜୁନକୁ ପ୍ରସନ୍ନେ ବଦନ୍ତି କୈଳାସବାସୀ
ଦେବତାଙ୍କୁ ନିମନ୍ତ୍ରଣ କରି ହୋ ଆକାଶରେ ପଶି ।୩୭୫।
ତ୍ରିଦଶ ଦେବେ ଯିବେଟି ସଭାକୁ
କୁଶଳେ ଦେବତାଏ ପ୍ରସନ୍ନେ ବରଦେବେଟି ତୁମ୍ଭଙ୍କୁ ।୩୭୬।
ଅର୍ଜ୍ଜୁନକୁ ଅଭୟ ବର ଦେଲେ ପଞ୍ଚମୁଖେ
ବୃଷଭ ଆରୋହି ଦେବ ଗଲେ ଅନ୍ତରୀକ୍ଷେ ।୩୭୭।

ଦେବବାଦ୍ୟ ଦୁନ୍ଦୁଭି ବାଜଇ ଘନ ଘନ
ଆକାଶ ଦିଗ ବିଜୟେ କରଇ ଫାଲଗୁନ୍ୟ ।୩୭୮—୭୪୦୦।

---

## ସଭାଗୃହ ନିର୍ମାଣ ଓ ଦୁର୍ଯ୍ୟୋଧନର ମନଦୁଃଖ

ବଇସୁତ ମନୁ ପଚାରିଲେ ଅଗସ୍ତିଙ୍କ
କହିବା ମହାତମା ମୋତେ ଅମୃତ ରସ ବାକ ।୧।
ଯେ ମହାରାଜାମାନେ ସମସ୍ତେ କରନ୍ତି ଗମନ
କେବଣ ଠାବରେ ବିଜେ କରିଛନ୍ତି ସର୍ବସନ୍ୟ ।୨।
ଯେଥିର ଚରିତ ମୋତେ କହିବା ତପନିଷ୍ଠି
ଶ୍ରୀ ବିଷ୍ଣୁପୁରାଣ ଶୁଣନ୍ତେ ଖଣ୍ଡିବ ଅରିଷ୍ଟି ।୩।
ବଦନ୍ତି ଅଗସ୍ତି ଯେ କୁମ୍ଭଋଷିର ବସ୍ତି
ଶୁଣ ସାବଧାନେ ତୁ ରାଜା ବିଚାରି ଯାହା ପୁଚ୍ଛି ।୪।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚାରିଦିଗ
ଚାରିଉଣା ଲକ୍ଷେରାଜା ବସନ୍ତି ମଧ୍ୟଭୂଅ ଭାଗ ।୫।
ଜମ୍ବୁଦ୍ୱୀପ ଲକ୍ଷେ ଯୋଜନ ସ୍ଥଳୀ
ଚାରିଉଣା ଲକ୍ଷେ ରାଜା ବସନ୍ତି ମହାବଳୀ ।୬।
ପାଞ୍ଚ ଅମନାତ୍ୟ ଯେ ମୁକୁଟ ଯୋଦ୍ଧାମାନ
ସଂକ୍ଷେପ ନୋହଇ ଯେତ ଅସଂକ୍ଷେପ ସନ୍ୟ ।୭।
ବାଦ୍ୟଘୋଷ ଶବଦେ ସିନ୍ଧୁଘୋଷ ଜାଣି
ବାରୁଣାବନ୍ତେ ରହିଲେ ଉତ୍ତର ଦିଗର ଯେତେକ ନୃପମଣି ।୮।
ବାରୁଣାବନ୍ତ ବୋଲିଣ ଯେବଣ ବନସ୍ତ
ମାନବ କୋଶେ ଆୟତନ ଯୋଜନ ବେନିଶତ ।୯।
ତହିଂ ଆସି ପ୍ରବେଶ ସମସ୍ତ ରାଜାଗଣମାନେ
ରଥ ଗଜ ଅଶ୍ୱ ପାଦାନ୍ତି ଗହନେ ।୧୦।
ପଚ୍ଛିମ ଦିଗରୁ ଯେତେକ ନୃପତି ଅଇଲେ ରାଜ୍ୟ ଛାଡି
ଇନ୍ଦ୍ରପ୍ରସ୍ତେ ରହିଲେ ସେ ଯମୁନା କୂଳ ମାଡି ।୧୧।

*

ଆହୋ ଗଙ୍ଗା ଯମୁନା ଦୁଇନଦୀର ମଧ୍ୟେ
ପୂର୍ବ କୁରୁକ୍ଷେତ୍ର ମଣ୍ଡଳ ଭୂମି ସାଧ୍ୟେ ।୧୨।
ଆକାଶର ଗ୍ରୁପ୍ସା ମଣ୍ଡୋପ ସୁଧର୍ମା ସଭାସ୍ଥଳୀ
ଅମର ଭୁବନୁଂ ତାହାକଇଂ ଯେ ଆଣିଲେ ବନମାଳୀ ।୧୩।
ସେ ସଭାର ଆୟେତନ ଦ୍ୱାଦଶ ଯୋଜନ
ଅମର ଗଣନ୍ତ ଯେମ୍ନ ବଜୟେ ଭଗବାନ ।୧୪।
ସେ ସଭା ରଞ୍ଜଣ ଅଛନ୍ତ ଦେବହର
କନେକର ଘଟଣ ଯେ ତାହାର ବେଢଣ ପାଚେରୀ ।୧୫।
ସୁବର୍ଣ୍ଣର ଲକ୍ଷେସ୍ତମ୍ଭ ସେ ସଭାର ଭିତରେ
ଲକ୍ଷେକ ସିଂହାସନ ଯେ ଶୋଭିତ ବସିବାରେ ।୧୬।
ସ୍ତମ୍ଭକେ ପାକ ଗୋଟିୟେ ଗୋଟିୟେକ ଠାଣି
ମୁକୁତା ମାଳ ମାଳ ଲମ୍ବନ୍ତ ରତ୍ନମଣି ।୧୭।
ନେତର ଚନ୍ଦ୍ରାତପ ଯେ ଗୋଟିୟେ ଗୋଟିୟେ
ତଳନ୍ତ ଅଷ୍ଟରତ୍ନ ବାଳଅର୍କ ପ୍ରାୟେ ।୧୮।
ଯେସନେକ ଶୋଭାବନ ଲକ୍ଷେକ ରାଜାଂକୁ
ସୁବର୍ଣ୍ଣର ଡେର ପାବଛ ଯେ ସଭାର ଉପରକୁ ଉଠିବାକୁ ।୧୯।
ଯେସନେକ ନିର୍ମିତ ଯେ ସଭାର ଆୟୁତନ
ବାଳଅର୍କ ଜାଣି ସେ ଦଶଇ ଶୋଭାବନ ।୨୦।
ସଭାର ପଛିମଆଡେ ତୋଳଲେ ଯାଗଶାଳ
କୋଟେକ ବସ୍ତାର ଯେ ଉଚ୍ଛର୍ଗ ଅଣିତାଳ ।୨୧।
ସୁବର୍ଣ୍ଣର ଚଉଂରୀ ଯେ ବସଇ ଗୃହଆଡେ
ସଷ୍ଟିକର ପୀତ ବସଇ ଗୃହ ଚଉଂରୀ କଛାଡେ ।୨୨।
ସଭାର ଗୃହଆଡେ ଯେ କଣୟ ପାଚେରୀ
ବେନତାଳ ଉଚ୍ଛର୍ଗ ସେ ବେନତାଳ ବସ୍ତାରୀ ।୨୩।
ତମ୍ବୁଂର ଉପରେ ନବତାଳ ଉଚ୍ଛର୍ଗ ଜଗଣ୍ଟୀ
ସୁବର୍ଣ୍ଣ କଳସ ଅଷ୍ଟରତ୍ନେ ଝଟକନ୍ତ ।୨୪।

---

୧୭।୧ ସଭାକେ ପାଗ ଗୋଟିୟେ ଗୋଟିୟେକ ଠାଣି । (ଚ,ପ)
୨୪।୧ ତମ୍ବୁଂର ଉପରେ ବେନତାଳ ଉତ୍ସର୍ଗ ଜଗଣ୍ଟା । (କ,ଖ,ନ)

ସୁବର୍ଣ୍ଣର ଝାଲା ଯେ ମୁକୁତାର ଫେରେ
ନେତର ପାଟାଙ୍ଗ ଗୋଟିଏ୍ ଗୋଟିଏ୍ ଉଡନ୍ତ ଛତ୍ରଂର
ଉପରେ ।୨୫।
ସହସ୍ରେ ସହସ୍ରେ ପାଟାଙ୍ଗ ଉଡନ୍ତ ଝିଲିକୁଳ
ଡାଳମ୍ବ ଗୁମ୍ଫରମାନ ଧରନ୍ତ ଛତ୍ରଂର ତଳ ।୨୬।
ଜଗତ୍ଥର ଆସ୍ଥାନ ମୁଂ ବାଉନବ କସ
ସହସ୍ରେ ସହସ୍ରେ ପାବଚ୍ଛ ଛତ୍ରଂ ଉଠିବାକୁ ମାଗଗରେ ହାସ ।୨୭।
କରସ୍ଥଳ ବସ୍ତ୍ରାର ଯେ ଚଉପଟ ହାର
ସହସ୍ରେ ସହସ୍ରେ ଲଗିଛୁ ପାବଚ୍ଛକେ କମଳର ଶିର ।୨୮।
ଲମ୍ବନ୍ତ ଚଉସର ଗଜ ଯେ ମୁକୁତା
ମାଣିକ୍ୟ ପୁଞ୍ଜି ପୁଞ୍ଜି ଗୁନ୍ଥିତ ପାଟସୂତା ।୨୯।
ଶୁଦ୍ଧ କଣସ୍ଥ ଉପରେ ମାଳା ବଇଡୁର୍ଯ୍ୟ
ପାବଚ୍ଛକେ ଶତେ ଶତେ ପନ୍ତକର କଲେ ଦେବରାଜ ।୩୦।
ଲକ୍ଷେକ ଶଗଡରେ ଆସଇ ଯେତେ ଧନ
ଯେ୍କ ଜଗତ୍ଥରେ ଲଗିଅଛୁ ତେତେକ ଆପୁତନ ।୩୧।
ଯେ୍ମନ୍ତେ ବାହାର ପାଚେରୀରେ ଚଉବଂଶ ଜଗତ୍ଥ
ସବୁନ୍ତ ଅଷ୍ଟରତ୍ନେ ନିର୍ବାଣ ପନ୍ତ ପନ୍ତ ।୩୨।
ଆହୋ ଦେଖନ୍ତେ ନ ଅଣ୍ଟଇ ହନ ନ ଲଗିବ ତୃଷା କ୍ଷୁଧା
ରୋଗପୀଡା ଆଦକର ନ ଲଗିବ କିଛୁ ବାଧା ।୩୩।
ଦେଖନ୍ତେ ନିର୍ମଳ ଯେ ହୋଇବ ବେନିନେତ୍ର
ଛତ୍ରଂ ବସନ୍ତେ ଶରୀର ହୋଇବାକ ସେ ପବତ୍ର ।୩୪।
ମଳୟ ବସନ୍ତ ଧାତୁବାଦ୍ୟ ଜୀବନ୍ୟାସ
ବହନ୍ତ ସମୀର ନାନା ଗନ୍ଧ ଆମୋଦନ୍ତ ଚଉପାଶ ।୩୫।

---

୨୫। ବହୁ ପଣମାଣେ ନେତ ଉଡେ ଫରହର
ଡାଳମ୍ବା ଗୁମ୍ଫର ଝଉଚ୍ଛନ୍ତ ସନ୍ଧିଧର । (ଖ,ନ)
୨୭।୨ ଉଠିବାକୁ ଛତ୍ରଂ ସସ୍ତ୍ର ପାବଚ୍ଛ ପ୍ରକାଶ । (ନ,ଖ)
୩୨।୨ ସମସ୍ତ ଘଟିଲେ ଯେ୍ମନ୍ତ ଝର୍ସ୍ୱର୍ଗ ପ୍ରଭ ପ୍ରଭ । (ପ,ଙ,ଝ)

ସଭାର ଆସ୍ଥାନ କହିବେ କ ପାର
ଆକାଶୁଂ କର ଯାହା ଆଣିଲେ ଦେବ ମଧୁହାରୀ ।୩୬।
ଆପଣେ ବିଶ୍ୱକର୍ମା ରୂପ ଧରିଣ ଶ୍ରୀପତି
ସଭା ନିର୍ବାଣ ଦେବ କରନ୍ତି ଦିବାରାତ୍ରି ।୩୭।
ଲଂକା ନିର୍ବାଣ କଲେ ଯେବଣ ରକ୍ଷ ଭକ୍ଷ ବହ୍ନାଣି
ସେ ସଭା ତାହାଂକ ହାଥେ ନିର୍ବାଣ କଲେ ଚକ୍ରପାଣି ।୩୮।
ଲଂକାସ୍ୱର୍ଗ ଯେସନେକେ ହରଇ ଶୋଭାବନ
ତେସନେକ ଶୋଭାବନ ଯେ ସଭାର ଆସ୍ଥାନ ।୩୯।
ସୁବର୍ଣ୍ଣର ମେତ ମଣ୍ଡୋପ ଦେଉଳ ଜଗତି
ସୁବର୍ଣ୍ଣର ବାମ୍ପୀ ପୁଷ୍କରଣୀମାନ ଘଟଣ ଚଉକତି ।୪୦।
ନିର୍ମିତ ଘରମାନ ଯମୁନା ନଦୀ କୂଳେ
ସୁବର୍ଣ୍ଣର ନିର୍ବାଣ ତହିଂ ଉଠିଲେ ଛତ୍ରଶାଳେ ।୪୧।
ପଞ୍ଚଶ ହାଥେ ଯେ କାଠିଯେକ ବୋଲି
ପଞ୍ଚାଶ କାଠି ଆଉପାର୍ଶ୍ୱେ ବଖରଯେ କହିଲ ।୪୨।
ଯେମନ୍ତେ ବଖରା ବଖରାକେ ଗୃହଚୂଲ୍ଲୀ ନିର୍ମିତ
ଚୁଲ୍ଲୀକେଣ ପଖା ଯେ ଅଷ୍ଟ ଉତ୍ତର ଶତ ।୪୩।
ଶତେକ ବଖରାଯେ ଯେକ ଘରଗୋଟି
ପାଞ୍ଚ ମଣ୍ଡିତ ଗୃହଲକ୍ଷ ଘର ଚଉବଂଶ କୋଟି ।୪୪।
ଯେମନ୍ତେ ଛତ୍ରଶାଳମାନନ୍ତ ନିର୍ମାଣି
ଅଷ୍ଟରତ୍ନେ ଘଟଣ ଯେ କଲେକ ଚକ୍ରପାଣି ।୪୫।
ଲକ୍ଷେକ ରାଜ୍ୟକୁ ସଭାର ଗୃହକତି ଲକ୍ଷେକ ଭୁବନ
ତଳନ୍ତି ମଣିମାଣିକ୍ୟ ଯେ ଅଷ୍ଟରତ୍ନମାନ ।୪୬।
ତହିଂକ ବେଢାଇଲେ ସୁବର୍ଣ୍ଣର ପାଚେରୀ
ଗୃହଦ୍ୱାରେ ଘଟଣ କଲେ ଜଗତି ଗୃହ ଗୃହ ।୪୭।
ଚନ୍ଦ୍ରଶାଳା ପୁର ଯେ କ୍ରୀଡାରଙ୍ଗ ଭୁବନ
ଯେମନ୍ତେ ଲକ୍ଷେ ରାଜାକଇଂ ଲକ୍ଷେକ ଭୁବନ ଶୋଭାବନ ।୪୮।

---

୩୯।୨ ତହିଂ ଶତେଗୁଣ ଯେ ଅଟଇ ଆସ୍ଥାନ । (କ)

ଯେସନେକ ଆସ୍ଥାନ ଯେ କଲେ ଜଗନ୍ନାଥେ
ମୂର୍ଖ ତାହା ସଞ୍ଚରି ପାରିବ କି ମାନବ ହେତୁ ମାତେ ।୪୯।
ଅଶ୍ୱଶାଳ ଗଜଶାଳମାନ ଉଠନ୍ତି ବାରୁଣାବନ୍ତେ
ଯେକା ଗଜଶାଳ ଆଯେତନ କାଠି ନଳ ଶତେ ।୫୦।
ଗଜଶାଳମାନ ଯେ କେ କରୁଂ ଗଣିତା
ତିନିଶତ ପଟ୍ଟଯୂଥ ଘର ଧାଡିକେ ନିର୍ମିତା ।୫୧।
ଯେମନ୍ତେ ଲକ୍ଷେକ ପନ୍ତି ଘର ଉଠିଲା ଗଜଶାଳ
ବାରୁଣାବନ୍ତ ମାଡ ଗଙ୍ଗାନଦୀ ଦକ୍ଷିଣ କୂଳ ।୫୨।
ଯେକା ପନ୍ତିକେ ଅଶ୍ୱଶାଳ ନବକୋଟି ପଟ୍ଟଯୂଥ
ଆବର ବତିଶ ମଣ୍ଡିତ ନବଲକ୍ଷ ଅଶି ସହସ୍ର ସାଧ୍ୟ ।୫୩।
ବାଦ୍ୟକାରମାନଂକୁ ପଞ୍ଚାଉନ କୋଟି ଘର ଉଠି
ଚମ୍ପାର ଉପରେଣ ଜଡିତ ରତ୍ନପାଟି ।୫୪।
ଭଟଶାଳମାନ ଗୃହ ସହସ୍ର ମେବକ୍ଷ
ତିନି ମଣ୍ଡିତ ଯେ ଆବର ଅଶିଲକ୍ଷ ।୫୫।
ସବୁ ଘର ସୁବର୍ଣ୍ଣର ଉପରେ ରସାଣି
ଯେକଘର ଗୋଟିଯେ ନାହିଂ ତରଣ ଗ୍ରୁଯେଣୀ ।୫୬।
ସଭର ଆସ୍ଥାନ ଦେଖି ରାଜା ମାନଗୋବିନ୍ଦ
ବାହାର ମନେ ଆନନ୍ଦ ଭିତର ମନେ ବିଷାଦ ।୫୭।
ପାପବୁଦ୍ଧି ନୃପତି ଯେ ଧରଇ ହୃଦଗତେ
ଶତ୍ରୁର ସମ୍ପଦ ମୁଂ ଯେ ଦେଖିବି କେମନ୍ତେ ।୫୮।
ଯେସନେକ ବିଚାରଇ ରାଜା ପାଣ୍ଡବେ ଅଇଶତା
ଅନେକ ଦୁଷ୍ଟରୀଯେ ଅଛନ୍ତି ଯେହା କେହି ନୋହିବେ ଭାଞ୍ଜନ୍ତା ।୫୯।
ଶକୁନିକ ଘେନି ରାଜା ଚାଲଇ ଯେକାନ୍ତେ
ଶକୁନି ବୋଇଲା ସମସ୍ତ ଯଶ ଘେନିଲି କି ଜରାସନ୍ଧ ନିବାରନ୍ତେ ।୬୦।

---

୪୯।୨ ମୂର୍ଖ ତାହା ନର ହୋଇ ବର୍ଣ୍ଣିବ କେମନ୍ତେ । (ଖ,ନ)
୫୧।୨ ତିନି ସହସ୍ର ପଟ୍ଟଯୂଥ ଘର ଧାଡିକେ ନିର୍ମିତା । (ଘ,ଟ,କ,ଚ)
୫୨।୨ ବାରୁଣାବନ୍ତ ବନ ମାଡ ଗଙ୍ଗାନଦୀ କୂଳ । (ପ,ଘ,ଓ,ଥ)

ସେ ଗୁରୁଭାଇ ଗଂଲେକ ଗୁରୁଦ୍ୱାର ବରଣେ
ଲକ୍ଷେ ରାଜା ସାଧିକଲେ ସର୍ବେ ଗୁରୁଜଣେ ।୬୧।
ଧାର୍ମିକ ବିବେକ ସେ ଛନ୍ତି ଯୁ ବଳବନ୍ତ।
ବେଦଶାସ୍ତ୍ର ମତେ ସେ ହୋଇଲେ ନିର୍ଜିତା ।୬୨।
ଯେବଣ ସାକ୍ଷାଗୋଷ୍ଠି ପାଇଲେ ଜଗନ୍ନାଥେ
ଆବର ଭୁଞ୍ଜ ସେ ପାର୍ଥିବ ଧନଞ୍ଜୟେ ।୬୩।
ତତ୍ତ୍ୱେଣ କଳଂକ ତୁ ନ ଧର କୁରୁପତି
ପାଣ୍ଡବେ ଅଭାବ ହୋଇଲେ ବୁଡାଇବୁଟି ବିଭୂତି ।୬୪।
ଦେଖ ହାଦେ ଆକାଶର ସମସ୍ତ ବୃନ୍ଦାରକେ
ରତ୍ନ ଅଳଂକାର ବସ୍ତ୍ର ଆଣୁଛନ୍ତି ସମସ୍ତ ଦେବଲୋକେ ।୬୫।
ବରୁଣ ନୃପତି ଯେ ବାରାନିଧି ରତ୍ନ ଆଣି ଦେଉଛନ୍ତି କୂଳେ
ତହୁଂ ଭାର ଭାର କରି ବହି ଆଣୁଛନ୍ତି ସମସ୍ତ ଗୋପାଳେ ।୬୬।
ଅମର ସ୍ୱର୍ଗ ଆପ୍ଷ୍ଟତନ ଦେଖ ରାଜସୂୟ ଯାଗ ସଭା
ଭୃତ୍ୟପଣେ ଖଟିଛନ୍ତି ସମସ୍ତ ରାଜ ଦେବା ।୬୭।
ଶ୍ରବଣେ ବାବୁ ହାଦେ ନ ଥିଲୁ ଯାହା ଶୁଣି
ପ୍ରତକ୍ଷେ ଦେଖିଲୁ ତାହା ଆହେ ନୃପମଣି ।୬୮।
ତୁ କାହିଂକ ମାନଗୋବିନ୍ଦ ବିକୃତ କରୁ ଚିତ୍ତ
ପୁଣ୍ୟ ଥିଲେ ପ୍ରାଣୀକ ହାଦେ ସମସ୍ତ ହୋଇଥାଇ ଉପଗତ ।୬୯।
ରାଗ ମୋହ ଅହଂକାର ସମସ୍ତ ଦୂରକରି
ଯେତ୍ନ ସଭାପୁ ଯୁଧିଷ୍ଠିରଂକ ଖଟିବା ହୋ ଯେତେମାନେ ପାରି ।୭୦।
ତାହାଂକର ସଞ୍ଚିତ ଯେ ତୋତେ ଅଛୁ ଭାଗ
ସୋହୋଦ୍ର ହୋଇ କଂପା ହୋଉ ବଇରାଗ ।୭୧।
ଅନେକ ବାଗେ ମଣାଇ କହିଲା ମନ୍ତ୍ରୀବର ଶକୁନି
ଶୁଣିଣ ମାନଗୋବିନ୍ଦ ଯେ ହୋଇଲକ ତୁମ୍ଭୀ ।୭୨—୬୪୭୨।

---

୬୬। ଉବଦ ପ୍ରାପ୍ତେକ ହୋଇ ରହୁଂଛନ୍ତି ସମସ୍ତ ରାଜଦେବା । (ଚ,ପ)

## ନକୁଳଙ୍କର ଦକ୍ଷିଣ କୋଶଳ ରାଜାମାନଙ୍କୁ ନିମନ୍ତ୍ରଣ ନିମନ୍ତେ ଗମନ, କଳଙ୍ଗସେନ, ଯମଜକ ରାଜା ପ୍ରଭୃତିଙ୍କ ସହିତ ଖଣ୍ଡ ଯୁଦ୍ଧ

ଅଗସ୍ତିଂକ ପଚାରିଲେ ବଇବସ୍ୱତ ମନୁ
ଦକ୍ଷିଣ ଦିଗେ ବିଜେକଲେ ମାଦ୍ରୀଦେବୀର ତନୁ ।୧।
କେମନ୍ତେ ରାଜାସୂୟ ସାଧ ହୋଇଲେ ଦକ୍ଷିଣ କୋଶଳେ
ସେଥିର ବାରତା ମୋତେ କହିବା କୁମ୍ଭଋଷିର ବାଳେ ।୨।
କହନ୍ତି ଅଗସ୍ତି ମୁନି ଯେ କୁମ୍ଭଋଷିର ବଳା
ନକୁଳ ମହିମାଂ ଶୁଣ ହାଦେ ସବୁ ତହିଂ ଅନର୍ଗଳା ।୩।
ପ୍ରଥମ ନିମନ୍ତ୍ରଣ କରି ଅଇଲା ନକୁଳ କୁମାର
ଅଶିସହସ୍ର ଗଜିତ ଯେ ଗୈଖାର କୁନ୍ତ ଘର ।୪।
ମଳୟାନିଳ ବୋଲି ସେକଇ ପର୍ବତ
ତହିଂ ଯାଇଣ ପ୍ରବେଶ ହୋଇଲେ ମାଦ୍ରୀଦେବୀର ସୁତ ।୫।
ତୁଳମାସ କୃଷ୍ଣପକ୍ଷ ଚଉଠୀର ଦିନ
ଗୁରୁବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ।୬।
ବାଳବ ନାମେ କରଣ ବୃଦ୍ଧିସ୍ଥାନ ନାମେ ଯୋଗ
ତୁଳ ସଂକରାନ୍ତିକ ଷୋଡଶ ଦିବସ ହେଲା ଭୋଗ ।୭।
ଅମୃତଯୋଗ ଦେଖି ଶୁଭ ଅନୁକୂଳେ
ଦକ୍ଷିଣ ଦିଗେ ପଶିଲେ ସେ କୁମାର ନକୁଳେ ।୮।
ମଳୟ ବସନ୍ତ ପର୍ବତେ ବିଜୟେ ସଙ୍ଗେ ସର୍ବ ରଥୀ
ମଙ୍ଗଳ ଧ୍ୱନି ବାଦ୍ୟରେ ଦକ୍ଷିଣ ମୂରତି ।୯।
ଆକାଶ ଉଛୁଳିଲା ଯେ ଜୟ ଶଙ୍ଖଧ୍ୱନି
ଦିନକର ରଥେ ଥାଇ ତାହା ଦେଖିଲେ ସେ କୁମାର ଅଶ୍ୱିନୀ ।୧୦।
ରେବନ୍ତ ନାମେଣ ଯେ ତାହାଂକର ଅନୁଜ
ତାକ ଆଗ୍ୟାଂ ଦିଲେ ସଂଗ୍ୟାଦେବୀର ଆତ୍ମଜ ।୧୧।
ନକୁଳ ତହିଂକ ଭୁ ପାଅରେ ରେବନ୍ତ
ସାରଥି ହୋଇଣ ବାହା ତୁ ନକୁଳ କୁମାର ରଥ ।୧୨।

୫।୮ ଗନ୍ଧମଳୟ ବୋଲି ସେକଇ ପର୍ବତ । (ଠ,ନ,ଘ)

ଦକ୍ଷିଣ ଦିଗକଇଁ ସେ ଅଇଲା ରଜାନ୍ତ ବରଣେ
ସାତ ସହସ୍ର ରଜାନ୍ତ ସେ ସାଧିବ ଯେକଜଣେ ।୧୩।
ତୁ ତାହାର ସାରଥି ହୋଇ କହିବୁ ଦିବ୍ୟବୁଦ୍ଧି
ଯେମନ୍ତେ ରଜାମାନେ ନିର୍ଦ୍ଧେ ହୁଅନ୍ତି ସାଧି ।୧୪।
ସ୍ୱାମୀର ଆଗ୍ୟାଂ ପ୍ରମାଣେ ଅଇଲେ ରେହନ୍ତ ସାରଥି
ଗୁରଅଶ୍ୱ ଆଣିଲେ ସେ ଆକାଶୁ ଅନଳ ଜ୍ୟୋତି କାନ୍ତି ।୧୫।
ଧନୁ ଶୋଣ ଚକ୍ର ଶକତି ଗଦା ମୁଦ୍ଗର
ପରଘ ଭୂଷଣ୍ଡୀ କୋନ୍ତ ଛେଲ ଅସିବର ।୧୬।
ଅମର ବିମାନ ଯେ ଆଣିଲେ ଆକାଶୁଂ
ଅଶ୍ୱିନୀକୁମାର ଆଗ୍ୟାଂହିଲେ ନକୁଳକୁମାର ଯେତେଥେ ବସୁ ।୧୭।
ଆଗ୍ୟାଂ ପ୍ରମାଣେ ଆକାଶୁଂ ସେ ଅଇଲେ ରେହନ୍ତ
ନକୁଳକଇଁ ଆସି ଭେଟିଲେ ମଳୟାଚଳ ପର୍ବତ ।୧୮।
ରେହନ୍ତକୁ ଦେଖିଣ ସେ କୁମାର ପରଣାମି
କସ ଅର୍ଥେ ଆକାଶୁଂ ବିଜୟେ କଲ ଦେବସ୍ୱାମୀ ।୧୯।
ନକୁଳକଇଁ କୋଳକର ବଦୟନ୍ତି ରେହନ୍ତ
ଅଶ୍ୱିନୀକୁମାର ହିଲେ ତୋତେ ଯେ ସୁସଜ୍ଜ ରଥ ।୨୦।
ଆମ୍ଭେ ତୋହୋର ରଥରେ ସାରଥି ହୋଇବୁ ରେ ବାବୁ
ଯେବଣ ଭୁବନକୁ ବୋଲିବୁ ଆମ୍ଭେ ତହିଁକ ରଥ ଯେ ବାହିବୁ ।୨୧।
ଶୁଣିଣ ନକୁଳ ଯେ ଅନେକ ପୂଜାକଲା ସେ ଗୁରଅଶ୍ୱଂକୁ
ଆକାଶର କୁଣ୍ଡଳ ବୀରବେଶ ଅଳଂକାର ରେହନ୍ତ ହିଲେ
ନକୁଳକୁ ।୨୨।
ଶିରେଣ ମଣି ମୁକୁଟ ଯେ ଲଲାଟେ ସିମନ୍ତିନୀ
ହୃଦେଣ ହୃଦ ଭୂଷଣ କର୍ଣ୍ଣାଞ୍ଚଳ ଅନେକ ରତ୍ନମଣି ।୨୩।
ସର୍ବ ଅଳଂକାର ଲାଇଂ ମାଦ୍ରୀଦେବୀର ଆତ୍ମଜେ
ମଙ୍ଗଳ ଧ୍ୱନି ତୋଳି ରଥେଣ ଯାଇଂ ବିଜେ ।୨୪।
ବାଜନ୍ତ୍ର ବଜଘୋଷ ଜୟଶଙ୍ଖ ମଙ୍ଗଳ ମହୁରୀ
କଳିଙ୍ଗ ଦେଶେ ପ୍ରବେଶ ହୋଇଲେ ଦଣ୍ଡ ଧରି ।୨୫।

---

୧୭।୨ କୁମାର ଆଗ୍ୟାଂ ହିଲେ କୁମର ଯେତେଥେ ବସୁ । (ଡ,ନ)
୨୦।୨ ଅଶ୍ୱିନୀ କୁମାର ତୋତେ ହିଲେ ଯେ ଦେବରଥ । (ଡ,ଢ,ଢ)

ସେ ଦେଶର ରାଜା କଳଙ୍ଗସେନ ନରପତି
ନବଲକ୍ଷ ଗୁଞ୍ଜର ଖଟଇ ଯେକାଦଶ କୋଟି ରଥୀ ।୨୬।

ସାଗରେକ ହସ୍ତି ଯେ ରେଖାର ତୁରଙ୍ଗମ
ସାତ ଷଉଣୀ ବଳ ତିନିଶତ ପାରିଦଣ୍ଡଗଣ ।୨୭।

ମହା ଧନବନ୍ତ ରାଜା ସେ କୁବେର ସମ ଜାଣି
ସେ ରାଇଜେ ପ୍ରବେଶ ସେ କୁମର ଚୂଡ଼ାମଣି ।୨୮।

ସମଦଣ୍ଡ ଘେନି ରାଜା ବଜାୟେ ଆସ୍ଥାନେ
ଡଗରେ ବାରତା ଜଣାଇଲେ ସନ୍ନିଧାନେ ।୨୯।

ଶୁଣିମା ଦେବ ସାବଧାନେ କଳଙ୍ଗସେନ ଚକ୍ରବର୍ତ୍ତୀ
ରାଜ୍ୟରେ ପଶିଲା ଆସି କେଉଁଣ ଦେଶର ମହାରଥୀ ।୩୦।

ଅକ୍ଷବୃତେକ ରଥ ଗୁରି ଅକ୍ଷବୃତ ମତ୍ତନାଗ
ଦଶଲକ୍ଷ ଯେ ରେଖାର ତୁରଙ୍ଗ ।୩୧।

ରୂପ ଗୁଣେ ସୁନ୍ଦର ସେ ଅଭୟେ ପରାକ୍ରମୀ
ସ୍ୱରାଷ୍ଟ୍ର ପ୍ରାୟେ ହୋଇ ରାଜ୍ୟେଣ ଆସେ ଭ୍ରମି ।୩୨।

ଡଗର ମୁଖୁଂ ରାୟେ ଯେସନ ବାରତ ଶୁଣି
ଧାଇଁଲା କଳଙ୍ଗସେନ ଥାଠ ଯେ ପଲ୍ଲଣି ।୩୩।

ପ୍ରଥମେ ବାହାର ହୋଇଲେ ସମସ୍ତ ପାରିଦଣ୍ଡ
ଆରେ ରହ ରହ ବୋଲି ସେ ଡାକନ୍ତି ପରଚଣ୍ଡ ।୩୪।

କ ରେ ମୂଢ଼ ତୁମ୍ଭର ହୋଇଲା କ ନିୟତ
ମୋହୋର ରାଜ୍ୟେ ପଶି ଧର୍ମ କଲୁ ହତ ।୩୫।

ପାରିଦଣ୍ଡ ମୁଖୁଂ ଶୁଣିଣ ବହୁତ ପ୍ରତାପ୍ୟାଂ
ତୁମ୍ଭର ବଚନ ରେ ନ କରିବା ଅବଗ୍ୟାଂ ।୩୬।

ଜୟାନିକ ବଳାନିକ ବୋଲି ନକୁଳର ବେନି ସେନାପତି
ବନ୍ଧିଲେ ନାରାଜନ୍ତ ସେ କୋହାନଳ ମୂର୍ତ୍ତି ।୩୭।

କକଡ଼ା ମେଘ ଜାଣି ନାରାଜ କଲେ ବୃଷ୍ଟି
ସେହୁ ଭେଦ ଯୋଦ୍ଧାଂକର ଶରୀରେଣ ଫୁଟି ।୩୮।

ରକତେ କର୍ଦ୍ଦମ ଯେ ସର୍ବୁଂକର ଅଙ୍ଗ
କ ଜାଣି ପ୍ରଭାତକାଳେ ଦିଶଇ ଗଗନ ଲଙ୍ଗ ।୩୯।

---

୩୯।୨ ମନ୍ଦାର କୁସୁମ ଜାଣି ଶରୀର ଦିଶଇ ରଙ୍ଗ । (କ)

❋

ନକୁଳର ସଇନ୍ୟ ଯହୁଁ ଉଠିଲେ ଗଳଗାଜ
କଳିଙ୍ଗସେନର ସଇନ୍ୟ ସବୁ ପଳାଇଲେ ଭାଜି ।୪୦।
ଦଣ୍ଡ ଭଗ୍ନ ଦେଖି ସେ କଳିଙ୍ଗସେନ ମହାବୀର
ଆପଣେ ଉଠିଲା ରାଜା ସମରେ ମହାଭାର ।୪୧।
ପଞ୍ଚାଶ କୋଟି ଅଛନ୍ତି ସଙ୍ଗେଣ ତାହାର ଯୋଧୀ
ସହସ୍ରେ ସହସ୍ରେ ନାରାଜ ଆନ୍ନେଷିଣ ବନ୍ଧି ।୪୨।
ରାଜାକୁ ଦେଖିଣ ସେ କୁମାର ମହାରଥୀ
ନବନାଶି କୋନ୍ତ ବୁଲାଇ କରଇ ଥାଠ ମଣ୍ଡା ।୪୩।
ରେ ରେ କାର ଶବଦେ ଉଠିଲେ କଳିଙ୍ଗର ବଳ
ସିନ୍ଧୁ ଘୋଷ ଜାଣି କ ଶୁଭିଲା ମୁଖଗୋଳ ।୪୪।
ବୁଲାଇଣ ନକୁଳ ମାଇଲେ ଧରି କୋନ୍ତେ
ହାଥୀଂକର କୁମ୍ଭସ୍ଥଳେ ପଡି ତଳଲେ ମାହୁନ୍ତେ ।୪୫।
ସେହ୍ଲା ଝୋପର ଯେ ମୁକୁର ଶିରଭୂଷା
ରକତେ କର୍ଦ୍ଦନ ସବୁ ହୋଇଲେ ଧୂଳି ମିଶା ।୪୬।
ପର କେ ଆପଣା ବୋଲି ନୁଆରଲେ ଚହ୍ନି
ସମର ସମ୍ମୁରେ ଆସି ହୋଇଲା ରଜ୍ଜନୀ ।୪୭।
ଅନ୍ଧାର ଘୋର ଦେଖି ରାଜ୍ୟେ ଗଲା ଦୁଝି
ନିଜ କଟକେ ପଶି ରାଜା ବରସ ହୋଉଅଛି ।୪୮।
ବରସେ ଚଳଇ ରାଜା ଭଗ୍ନବଳ ଘେନି
ଶ୍ରୀ ନୃସିଂହ ନାଥକଇଂ ରାଜା କରଇ ଦଇନ୍ୟ ।୪୯।
ସ୍ୱାମୀ ନମସ୍ତେ ନୃସିଂହ ପ୍ରଭୁ ଅଭୟେ ନାରାୟଣ
ପ୍ରହଲାଦ ଅଭମାନେ ହିରଣ୍ୟ ବଦାରଣ ।୫୦।
ମେରୁ ତୁଲ୍ୟ ମଉଳ ଯାର କାଳଚନ୍ଦ୍ର ବେନିଆଖି
ଦୁର୍ଜନ ନିବାରଣ ନାଥ ଭକ୍ତଜନ ରଖି ।୫୧।
ନମୋ ଦେବ ଶଙ୍ଖଚକ୍ର ଗଦା ଚତୁର୍ଭୁଜ
ଭକତରେ ମଣାଇଲ ତୋତେ ଭକତ ପ୍ରହଲ୍ଲାଦ ।୫୨।
ନମୋ ନମୋ ନରସିଂହ ରୂପ ଯେ ମୁରାର
ନମୋ ନରସିଂହ ଦେବଯୋଗ ବଟରୂପ ଧର ।୫୩।

ନମୋ ନରସିଂହ ଭୂଭି ଦକ୍ଷିଣ ମଣ୍ଡଳେ
ନମୋ ନମୋ ନରସିଂହ ଜଅର କୋଶଳେ ।୫୪।
ନମୋ ନରସିଂହ ପ୍ରହଲ୍ଲାଦ ଯାହାର କୋଳେ
ନମୋ ନରସିଂହ ଜାନୁସ୍ଥଳେ ତୋ କମଳେ ।୫୫।
ନମୋ ନରସିଂହ ତୋତେ ନମୋ ଆଖଣ୍ଡଳେ
ନମୋ ନରସିଂହ ଦେବ ଅଟୁ କାଳାନଳେ ।୫୬।
ନମୋ ନରସିଂହ ତୋ ଚରଣେ ସର୍ବେ ଭୃତ୍ୟ
ନମୋ ନରସିଂହ କଉଣୋପ ବଳ କ୍ଷୟାନ୍ତ ।୫୭।
ସ୍ୱାମୀ ତବ ଆଜ୍ଞେ କର ବ୍ରତଇ ସର୍ବକାଳେ
କେଉଂ ଅଭକତେ ଦାସ୍ୟ ଗୁଡ଼ିଲୁ ଯେତେବେଳେ ।୫୮।
ଶ୍ରୀ ନୃସିଂହ ଚରଣରେ ମୁଂ ଭୃତ୍ୟର ଯେ ଭୃତ୍ୟ
ବଦନ୍ତି ସାରଳା ଦାସ ମୂର୍ଖ ଅପଣ୍ଡିତ ।୫୯।
ଅନେକ ଭଗତ ଯହୁଂ ହୋଇଲା କଳଙ୍ଗ
ପ୍ରସନ୍ନେ ଅଭୟେ ବର ଦିଲେ ନରସିଂହ ।୬୦।
ଚିନ୍ତାମଣି ନାଥ ତାହାକଇଂ ବାରତା ପ୍ରକାଶି
ଅଗ୍ୟାନେଣ ନୃପତି ଦ୍ୱନ୍ଦ୍ୱ ବାଦେ ପଶି ।୬୧।
ନ ଜାଣୁକ ସୋମବଂଶେ ନୃପତି ଯୁଧିଷ୍ଠିରେ
ତାହାଂକର ପିତା ପାଣ୍ଡୁ ବ୍ରହ୍ମହତ୍ୟା ଦୋଷେ କଷ୍ଟି ।୬୨।
ରାଜସୂୟ ଯାଗ ସେ କରୁଅଛନ୍ତି ତାହାଂକର ଅର୍ଥେ
ଲକ୍ଷେ ନୃପତି ରୁଣ୍ଡ ହୋଇବେ ଷୋଳହ ଦିବସ ପରଯନ୍ତେ ।୬୩।
ପଶ୍ଚିମେଣ ଭୀମସେନ ଉତ୍ତରେ ଅର୍ଜୁନ
ଦକ୍ଷିଣେ ନକୁଳ ସହଦେବ ଅଇଶାନ୍ୟ ।୬୪।
ତେଣୁ ଯେ ନକୁଳ ବିଜେ ଦକ୍ଷିଣ ଦିଗକୁ
ସାତ ସହସ୍ର ରାଜାନ୍ତ ସାଧିଣ ନେମାକୁ ।୬୫।
ଯେଣୁ ସେ ସଚରାଚର ପୃଥ୍ୱୀ ଯାହାର ଚରଣେ ବନ୍ଧ
ଭୁ ହୋ କଳଙ୍ଗସେନ ତାହାର ଭୁଲେ ହୋଉ କଂପେ ଦ୍ୱନ୍ଦ୍ୱ ।୬୬।

---

୬୦।୨ ପ୍ରସନ୍ନେ ସମସ୍ୟା ଦିଲେ ଅଭସ୍ତେ ନରସିଂହ । (ଚ,ପ,ଭ)

ମନ୍ତ୍ରୀ ପଠିଆଇ ଯେବେ କର ହୋ ସମାଧାନ
ବିବାଦେ ଆସି ନାହିଁ ତ ମାଦ୍ରୀଦେବୀର ନନ୍ଦନ ।୬୭।

ଶ୍ରୀ ନରସିଂହଙ୍କ ବଚନେ କଳିଙ୍ଗସେନ ନୃପତି
ମନ୍ତ୍ରୀ ଅମନାତ୍ୟ ଘେନିଣ ଆସଇ ଶୀଘ୍ରଗତି ।୬୮।

ଯହିଁ ବିଜେ କରିଛନ୍ତି ନକୁଳ କୁମାର
ସମଦଣ୍ଡ ଘେନି ରଜା ଦିଲକ ପଟୋଆର ।୬୯।

ମନ୍ତ୍ରୀବର ଚଳିଗଲେ ଯେ ବୀର ନକୁଳ ସ୍ତମୁକୁ
ଅନେକ ଉପହାର ଦିଲ ରଜା ନକୁଳ କୁମାରକୁ ।୭୦।

ଅନେକ ବିନୋଯିଣ ସେ ସ୍ତମୁରେ ପରଣାମି
ନ ଜାଣି ଦ୍ରୋହ ତୋତେ କଲୁ ହୋ ଦେବସ୍ୱାମୀ ।୭୧।

ପାଦାର୍ଘ୍ୟ ଦେଇଣ ସେ ବିନୟ ଭଗତି
ଅନେକ ପ୍ରକାରେଣ ମନ୍ତ୍ରୀ କରଇ ବହୁ ସ୍ତୁତି ।୭୨।

ଯେମନ୍ତର ସମୟେ କଳିଙ୍ଗସେନ ନୃପତି
ନକୁଳଙ୍କ ଚରଣେ ପ୍ରଣପତ୍ୟ ତତକ୍ଷଣାନ୍ତି ।୭୩।

ରଜାର ବିନୟ ଦେଖିଣ ସେ ବକୁଳ କୁମାର
ଆଶ୍ୱାସନା କରିଣ ତାକୁ କହିଲ ଅପାର ।୭୪।

ଅକ୍ଷତ ଗୁଆ ତାହାକଇଁ ଦିଲେକ ନକୁଳ
ସମଦଣ୍ଡ ଘେନି ରଜା ତୁହୋ ଯମପ୍ରଶସ୍ତକଇଁ ଚଳ ।୭୫।

ଅନେକ ଭଗତି ସେ ଯେ କଳିଙ୍ଗସେନ ନୃପତି
ସମଦଣ୍ଡ ଘେନି ରଜା ବାହାର ହୋଇଲା ତତକ୍ଷଣାନ୍ତି ।୭୬।

ତହୁଁ ତଜେ କରିଣ ଯେ ଚଳନ୍ତି ନକୁଳ
ପ୍ରବେଶ ହୋଇଲେ ଯାଇଁ ବୀର ମହେନ୍ଦ୍ର ଗିରିମାଳ ।୭୭।

ଶ୍ରୀ ଗୋକର୍ଣ୍ଣେଶ୍ୱରଙ୍କୁ ବୀର କରଇ ଯାଇଁ ପୂଜା
ପ୍ରସନ୍ନେ ଅଭୟ ବର ଦିଲେକ ଦେବରଜା ।୭୮।

---

୬୯।୨ ସମଦଣ୍ଡ ଘେନ ରଜା କଳକ ପଟୋଆର । (କ,ନ,ଠ,ଥ)

କରୁଣାକର ନାମେ ଯେକଇ ଶବର ନୃପତି
ସେ ରାଜାକଇଂ ନକୁଳ ଅକ୍ଷତ ଗୁଆ ଦେଇଣ ନିମନ୍ତ୍ରି ।୭୯।
ସମପ୍ରଶସ୍ତ ରାଜ୍ୟକୁ ହୋ ଦଣ୍ଡ ଘେନିଣ ଚଳି
ଚଳଇ କରାଟେଶ୍ୱର ଘେନିଣ ସନ୍ୟବଳ ।୮୦।
ତହୁଂଣ କୁମର ଚଳଇ ଥାଠ ଘେନିଣ ପଳାଣି
ଗଉତମ ଆଶ୍ରମକଇଂ ଚଳଇ ବୀରମଣି ।୮୧।
ଚନ୍ଦ୍ରକରଣ ବୋଲିକରି ଯେକଇ ନୃପତି
ଚଣ୍ଡୀହର ଦେଶର ସେ ଅଟଇ ଆଧିପତି ।୮୨।
ବହଇ ଗଉତମୀ ଯେ ସିଂହନିଙ୍ଗାଳ ବୋଲି
ରୁଦ୍ରବାହିନୀ ସେ କୁଶାଙ୍ଗୀ ଧବଳୀ ।୮୩।
ସଇନ୍ୟ ଘେନି ସ୍ନାନ ତହିଂ କରଇ ବୀରମଣି
ଦକ୍ଷିଣ କୋଶଳ କମ୍ପିଲା ଯେ ଢମକ ବାଦ୍ୟ ଶୁଣି ।୮୪।
ଚନ୍ଦ୍ରକରଣ ରାଜାକଇଂ ନିମନ୍ତ୍ରଇ ସେ ନକୁଳକୁମାର
ରାଜସୂ ଯାଗ ଚରିତ କହିଲା ତାହାର ଆଗର ।୮୫।
ଲକ୍ଷେକ ନୃପତି ସମସ୍ତେ ଯାଉଛନ୍ତି ବାହି
ସମଦଣ୍ଡ ଘେନିକରି ଚଳସି ବେଗେ ତୁହି ।୮୬।
ଅନେକ ସାନନ୍ଦେ ନୃପତି ଚନ୍ଦ୍ରକରଣ
ଥାଠ ଘେନି ବାହାର ହୋଇଲା ତତକ୍ଷଣ ।୮୭।
ଗଉତମ ଋଷିଂକ ନିମନ୍ତ୍ରଇ ସେ କୁମରମଣି
ଶିଷ୍ୟ ପୁତ୍ରନ୍ତ ଘେନି ନିଜେ ତୁମ୍ଭେ ଚଳ ଯେତ୍ରକ୍ଷଣି ।୮୮।
ନକୁଳର ବଚନେ ସେ ଗଉତମ ମହାମୁନି
ତତକ୍ଷଣେ ବାହାର ହୋଇଲେ ଶିଷ୍ୟ ପୁତ୍ରନ୍ତ ଘେନି ।୮୯।

---

୭୯।୨ "ସେ ରାଜାକଇଂ ନକୁଳ ଅକ୍ଷତ ଗୁଆ ଦେଇଣ ନିମନ୍ତ୍ରି" ପରେ
'ଥ' ପୋଥିରେ ଅଧିକା ପାଠ—

ନକୁଳ କୁମାରକୁ ସେ କଲାକ ଦ୍ରଶନ
ସହସ୍ରେକ ଖର ହଲା ଦେଖା ଦରଶନ ଧନ ଜାଣ ।
ସମପ୍ରଶସ୍ତକୁ ଚଳଇ ସ୍ୱେଚ୍ଛାକ୍ଷଣ
ଚଳଇ କରାଡ ରାଜା ସମଦଣ୍ଡ ଘେନଣ ।

ସଙ୍ଗେଣ ମହାତମାର ନଉ ସହସ୍ର ଶିଷି
ରାଜସୂଯ଼ ଯଜ୍ଞଂ ସଭାକଇଂ ଚଳଲେ ଗଉତମ ମହର୍ଷି ।୯୦।
ମାଦ୍ରୀର ନନ୍ଦନ ଯେ ଛତ୍ରଂ ଚଳଇ ଅତବେଗେ
ପଶ୍ଚିମ ମୂରତ ହୋଇ ଚଳଇ ଦକ୍ଷିଣ ଦଗେ ।୯୧।
ଜମ୍ବୁନଗ୍ର ବୋଲକର ସ୍ୟେକଇ ନଗ୍ରଗୋଟି
ବହଇ କୃଷ୍ଣବେଣୀ ବଷ୍ଣୁ ପାଦୁକାରୁ ଫୁଟି ।୯୨।
ପ୍ରସନ୍ନେ ନାରାଯ଼ଣ ତହିଂ ବଜଯ଼େ ଦେବରାଜା
କୃଷ୍ଣବେଣୀରେ ସ୍ନାହାନ କର ସେ ସ୍ୱାମୀଂକ କରଇ ପୂଜା ।୯୩।
ଅନନ୍ତରୁଦ୍ର ବୋଲି କରଣ ସ୍ୟେକ ଜଙ୍ଗମ ନୃପତଯ଼େ
ରୁଦ୍ର ଚିହ୍ନ ବହଇ ସେ ପଶୁପତ ଦେବତାଯ଼େ ।୯୪।
ଶିରେଣ ରତ୍ନମଣି ମୁକୁଟ ମାଥେଣ ଜଟା ଭର
ତାମ୍ରବସନ ପରହରଣ ପଶୁଚର୍ମ ଉପହାର ।୯୫।
ପାଞ୍ଚଲକ୍ଷ ଯୋଦ୍ଧା ଘେନି ସେ ଚଳଇ ଅଶ୍ୱ ପିଠି
ଯେଣେ ଯାଇ ନୃପତ ତେଣେ ହୋଅଇ କଣଯ଼ ବୃଷ୍ଟି ।୯୬।
ମାଦ୍ରୀର ନନ୍ଦନ କୃଷ୍ଣବେଣୀରେ କରଇ ସ୍ନାହାନ
ଶ୍ରୀରାମ ପାଦୁକାଯ଼େ ପିତୃଲୋକେ ଦଅଇ ପିଣ୍ଡଦାନ ।୯୭।
ବାରତା ପାଇଣ ବଷ୍ଣୁରୁଦ୍ର ନୃପତ
ନକୁଳ ସ୍ମୁଖକୁ ଆସଇ ଘେନିଣ ପାତ୍ରମନ୍ତ୍ରୀ ।୯୮।
ନକୁଳ କୁମାରକୁ ସେ କଲାକ ଦରଶନ
ସହସ୍ରେକ ଭାର ପାଣିଦ୍ରବ୍ୟ ଦଲ ଦେଖା ଦରଶନ ଧନମାନ ।୯୯।
ସ୍ୱାମୀ ସାଧୁ ସାଧୁ ମୋହୋର ଜୀବନ ଆଜ ମୁଂ ନିସ୍ତରଲ
ଦୁଷ୍ଟ ନିରଞ୍ଜନ ଦେଖି ଦୁଷ୍କୃତ ପାରକଲି ।୧୦୦।
କଣଯ଼ବନ୍ଦୁ ନାଥ ସ୍ୱାମୀ ଭଗତମକ୍ଷଳ
ସାଧୁ ଯେ ରାଜ୍ୟ ମୋହୋର ଜୀବନ ସୁଫଳ ।୧୦୧।
ଅନେକ ଗଉରବେ କରଣ ରାଜା ନିଲାକ ତାହାର ରାଜ୍ୟକୁ
ଜଗଣ୍ଡରେ ନେଇ ବସାଇଲା ପାଣ୍ଡବ ନକୁଳକୁ ।୧୦୨।

---

୯୫।୨ ତାମ୍ର ବସନ ପରହରଣ ପଶୁଚର୍ମ ଘୋର । (ଡ)

ଆହୋ ଆଦିତ୍ୟ ଦିଲାର ଯେଉଂ କଉସ୍ତୁଭ ମଣି
ନକୁଳର ହୃଦୟେ ତାହା ଭୂଷଣ କଲା ଆଣି ।୧୦୩।
ମୁଣୋହ୍ଵକ ଯୋଗାଡ଼ ଯେ ଦିଲାକ ନୃପତି
ସୂପକାରମାନେ ଅନ୍ନ ପଚନ କରନ୍ତି ।୧୦୪।
ରନ୍ଧଣା ଯୋଗାଡ଼ ଯେ ହୋଇଲା ସୂର୍ଯ୍ୟବେଳ
ଆହାଳକ ସାର ମୁଣୋହ୍ଵକ ବିଜୟେ ନକୁଳ ।୧୦୫।
ଛଡ଼ରସ ଭୋଜନ କରନ୍ତି ମହାତୋଷେ
ସନ୍ୟମାନେ ଭୋଜନ ବସି କରନ୍ତି ଚଉପାଶେ ।୧୦୬।
ଭୋଜନ ସ୍ଥାଗ ତହୁଂ କରନ୍ତି ଆଂଚ୍ଛେବନ
କପୂର ତାମ୍ବୋଳ ଯେ କରନ୍ତି ଭୋଜନ ।୧୦୭।
ବିଜୟେ ନକୁଳକୁମାର ଯାଇଂ ଚନ୍ଦ୍ରଶାଳା ଭୁବନେ
ଭରତରକ୍ଷେଣ ଖଟନ୍ତି ଗଣିକାଗଣମାନେ ।୧୦୮।
ରାଜାକଇଂ ନିମନ୍ତ୍ରିଣ ସେ ମାଦ୍ରୀଦେବୀର ବଳା
ସମଦଣ୍ଡ ଘେନିଣ ନୃପତି ତୁ ଚଳ ହୋ ହସ୍ତିନା ମହାଖଳା ।୧୦୯।
ଆହୋ ସ୍ଵାମୀର ଆଗ୍ୟାଂ ସେ ଯେ ନିବେଶିତ ଶିରେ
ଦଣ୍ଡ ଘେନି ଚଳଇ ରାଜା ଯମପ୍ରଶସ୍ତି ପୁରେ ।୧୧୦।
ତହୁଂ ସମଦଣ୍ଡ ଦେନି ଯେ ଚଳଇ ବୀରମଣି
ଭେଟଇ ନିମଲ୍ଲିନାଥ ମଲସ୍ଥା ଶୂଳପାଣି ।୧୧୧।
କାଶୀକୁଣ୍ଡେ ବୀରବର ସ୍ନାହାନ ସେ ନିତ୍ୟକର୍ମ ସାରି
ଶ୍ରୀ ମଲସ୍ଥା ନାଥକୁ ଦ୍ରଶନ ଯାଇଂ କରି ।୧୧୨।
ନିକେଶରୀ ବୋଲିଣ ତହିଂର ସ୍ନେକ ରାସ୍ତେ
ଭଗତି ଭାବେ ଖଟଇ ସେ ମଲସ୍ଥା ନାଥ ପାସ୍ତେ ।୧୧୩।
ଅଶୀଲକ୍ଷ ଯୋଦ୍ଧା ଘେନିଣ ସେ ନିକେଶରୀ
ଯାଇଂଣ ଓଗାଳିଲା ସେ ପନ୍ଥ ନିରୋଧ କରି ।୧୧୪।
କେଉଂଣ ଦର୍ପରେ ତୁମ୍ଭର ସ୍ନେତେକ ସାହସ
ନ ଜାଣ କି ନିସ୍ତମ୍ଭକ ବୋଲି ସ୍ନେହ୍ଵ ଛାର୍ଥେଣ ପଶ ।୧୧୫।
ନିସ୍ତମ୍ଭକ ନାଥ ଯେ ପଶୁଧ୍ଵଜ ମହାଦେବା
ଯତସତ ନିସ୍ଥା ଜନେ ସେ ସ୍ନେହାନ୍ତ କରନ୍ତି ସେବା ।୧୧୬।

ଯାହାର ଆନ ପଡନ୍ତେ ଛୁଡପଡଇ କାୟା
ସେ ଭୁବନେ ପଣି ଭୂମେରେ ଯେତେକ ନିର୍ଭୟା ।୧୧୭।
ରେ ରେ କାର ଶବଦେ ପର୍ବତ ପରେ ଉଠି
ନକୁଳର ଆଠକଇଂ କଲେ ଶରବୃଷ୍ଟି ।୧୧୮।
ଉପରେ ଥାଇଣ ସେ ଯେ ବର୍ଷନ୍ତି ଖଡ୍ଗମୁନା
ନିକଳନ୍ତି ନାରାଜ ଯେ ଫୁଟିଣ ବଜ୍ରସେହ୍ନା ।୧୧୯।
ଘାୟେଣ ଘୂମାଇଲେ ସେ ପାଣ୍ଡବ ସୈନ୍ୟଦଳ
ରେହନ୍ତ ସାରଥିକି ପ୍ରଣିପତ୍ୟେ ବୋଇଲା ନକୁଳ ।୧୨୦।
ବଡାଇ ଦୁରପଦ ମୋତେ ପଡଲା ଦେବସ୍ଵାମୀ
ବାହା ମୋର ତୁରଙ୍ଗମ ଚମ୍ପାଇ ଶୂନ୍ୟଗାମୀ ।୧୨୧।
ନକୁଳର ବଚନେ ଅଶ୍ଵନ୍ତ ଚଳାଇଲା ରେହନ୍ତ
ପର୍ବତ ଉପରେ ଧାଡିକାରେ ଟେକିଲା ନେଇ ରଥ ।୧୨୨।
କରେଣ ବଜ୍ର କୋନ୍ତ ଘେନିଣ ନକୁଳକୁମାର
ଆକ୍ଷେପି ମାଇଲା ନେଇ ସୈନ୍ୟଂକ ଉପର ।୧୨୩।
ଗଜ ଅଶ୍ଵ ପାଦାନ୍ତି ଯେ କୋନ୍ତଘାୟେ ଫୁଟି
ଶ୍ରୋଣିତମୟେ ଶରୀର ଯେ ପଡଲେ ମହୀଲୋଟି ।୧୨୪।
ସହସ୍ରେକ ଯୋଦ୍ଧା ଯହୁଂ ଗଡ ବାହାରେ ପଡଲେ
ଗଡଦ୍ଵାର ଗୁଡଣ ସେ ଅନ୍ତର ହୋଇଣ ରହିଲେ ।୧୨୫।
ରେହନ୍ତ ସାରଥି ରଥ ବାହଇ ଚମ୍ପାଇ
ଗଡର ଭିତରେ ରଥ ବେଗେ କଲା ନେଇ ।୧୨୬।
ଦେଖିଣ ପ୍ରଚଣ୍ଡ୍ୟାଂ ସେ କରଇ ନିସ୍ତକେଶରୀ
ପାଞ୍ଚଲକ୍ଷ ଯୋଦ୍ଧା ଘେନି ହୋଇଲା ଆଗସର ।୧୨୭।
ଖେଦାନ୍ତି ତୁରଙ୍ଗମ ସେ ସିଂହନାଦ ଶବଦଇ
ରେ ରେ କାର ଶବଦେଣ କୋନ୍ତ ସେ ବୁଲଇ ।୧୨୮।
ତର୍ଜନ୍ତି ଗର୍ଜନ୍ତିକେ ଧାମନ୍ତି ଅଶ୍ଵ ଚଢି
ଗଜଯୂଥ ଦେଖିଯେହ୍ନେ ଧାମନ୍ତି କେଶରୀ ।୧୨୯।
କୋପେଣ କାଳାନଳ ସେ ମାଦ୍ରୀଦେବୀର ବଳା
ଯେସନେକେ ମତ୍ତଗଜ ଧାମଇଂ ଅନର୍ଗଳା ।୧୩୦।

ସମର ସମ୍ମୁଖେ ସେ ପଶଇ ରଣରଙ୍ଗେ
ଛିନ୍ନ ଅଶ୍ୱବ୍ରତ ଯୋଦ୍ଧା ଘେନି ଯାଇ ଓଗାଳିଲା ଆଗେ ।୧୩୧।
ବିଦ୍ୟୁତ୍କେଶରୀ ରଜାର ସଇନ୍ୟ ବୁଲାଇ କୋନ୍ତ ଯାଠି
କରନ୍ତି ପ୍ରହାର ସେ ସନ୍ୟ ସେହ୍ଲା ଯାସ୍ତେ ଫୁଟି ।୧୩୨।
ନକୁଳର ସଇନ୍ୟ ଯେ ବଞ୍ଚାନ୍ତି ଧାଡିକାରେ
ଗୋଡାଇ ପ୍ରହାର କରନ୍ତି ପାଡନ୍ତି ରଡ ଘୋରେ ।୧୩୩।
ପ୍ରତଗ୍ୟାଂ ଆରମ୍ଭେ ସେ କୃତାନ୍ତକ ତେଜ ଜାଣି
ଝାସି ପ୍ରହାର କରନ୍ତି ଶହସ୍ରକୁ ନ ଗଣି ।୧୩୪।
ରଣେ ବିମୁଖ ସେ ପାଇଲେ ସ୍ୱଦେଶୀ
ନକୁଳର ସଇନ୍ୟ ରଣେ ପଶିଲେକ ଝାସି ।୧୩୫।
ଅନ୍ତରୀକ୍ଷ ମାର୍ଗେ ଉଡାଇ କରି ରଥ
ସନ୍ୟ ପଛକତି ରଥ ନେଇ ଟେକିଲା ସାରଥି ରେହନ୍ତ ।୧୩୬।
ହାଥେଣ କୋନ୍ତ ଘେନିଣ ନକୁଳ ପ୍ରହାରି
ଫୁଟନ୍ତି ରଥ ଗଜ ଅଶ୍ୱ ଯୋଦ୍ଧା ଆଦିକରି ।୧୩୭।
କୋନ୍ତ ଯୁଦ୍ଧେ ତାହାକଇଂ କେ ସାମରଥ ମଧ୍ୟସ୍ୱର୍ଗେ
ବୁଲଇ ପ୍ରହାର କରଇ ସେହୁ ପବନଙ୍କ ଅତି ବେଗେ ।୧୩୮।
ପୃଥୀ ଧରିତେ ସାମରଥ ଯେ ଛତ୍ରୀ କୋନ୍ତମୁନେ
ଝଲକନ୍ତି ଖିଷମ୍ନା ଅନଳ ତେଜ ପ୍ରାୟେ ଗଗନେ ।୧୩୯।
ଯେସନେକେ ଆକାଶୁଂ ପଡଇ ବଜ୍ରବାଣ
କମ୍ପଇ ବ୍ରହ୍ମାଣ୍ଡ ଯେ ଗୁଣଦୃଷ୍ଟି ଶବଦେଣ ।୧୪୦।
ଅନେକ ସଇନ୍ୟ ଯେ ପଡଲେ ଘୋର ଯୁଦ୍ଧେ
ବିଦ୍ୟୁତ୍କେଶରୀ ନୃପତି ଭାଜିଲା ରଣମଧ୍ୟେ ।୧୪୧।
ଗୋଡାଇ ନକୁଳ ଯେ ମାଇଲା ବଜ୍ରକୋନ୍ତ
ଘାସ୍ତେଣ ତଳ ପଡଲେ ରଥ ଗଜ ଅଶ୍ୱ ପାଦାନ୍ତି ସହିତ ।୧୪୨।
ବିରଥୀ ହୋଇଣ ସେ ପଳାଇଲା ମହୀପାଳ
ଗୋଡାଇଂ ନକୁଳ ସେ ଧଇଲା ବିଦ୍ୟୁତ୍କେଶରୀ ବାଳ ।୧୪୩।
ରାଗେଣ କୋନ୍ତେ ଯେ କରନ୍ତେ ପ୍ରହାର
ରେହନ୍ତ ସାରଥି ଧଇଲା ଯାଇଂ ନକୁଳର ବେନିକର ।୧୪୪।

*

ରେହନ୍ତ ବୋଇଲା ସ୍ୱେକଡ଼ଣା ସାତ ସହସ୍ର ରାଜାନ୍ତ ଆରୟାଂ
ଦେଇଛନ୍ତି ତୋତେ
ଭୁହୋ ନିୟୁକେଶରୀ ରାଜାକଇଂ ନାଶକରିବୁ କେମନ୍ତେ ।୧୪୫।
ସାରଥି ବଚନେ ଗ୍ରୁଡ଼ିଲା ତାର କେଶ
ଭୁଜ ଧରି ସନ୍ନିଧେ ଆଣି କଲକ ଆଶ୍ୱାସ ।୧୪୬।
ରାଜାର ବନ୍ଦୀ ଦେଖି ସମସ୍ତ ସଇନ
ଦନ୍ତେ ତୃଣ ଘେନି ସମସ୍ତେ କରନ୍ତି ଦୟିନ ।୧୪୭।
ନ ଜାଣି ନୃପତି ଆମ୍ଭର ଯେବେ କଲକ ଦୋଷ
ଭୁହି ସେ ରକ୍ଷା କରିବୁନା ପରମ ପୁରୁଷ ।୧୪୮।
ନକୁଳ ଶାନ୍ତ ହୋଇଲା ସଇନଂକର ବଚନେ
ସ୍ୱେଚ୍ଛେକ ସନ୍ୟ ଅନମିଛେ ଭୁମ୍ଭର ରାଜା ନାଶକଲା ଅଗ୍ୟାନେ ।୧୪୯।
ମୋହୋର ଶତ୍ରୁ ତ ଭୁମ୍ଭେ ନୋହ ସେ ବଇରି
ରାଜସୂୟ ଯଗ୍ୟଂ ନିମନ୍ତେ ମୁଂ ଅଇଲ ଦକ୍ଷିଣ ଦିଗକଇଂ
ବିଜେକରି ।୧୫୦।
ଆହୋ ନିୟୁକେଶରୀ ଯେତେବେଳେ ଆମ୍ଭର ସଭାକୁ ଅନକୂଳ
ହୋଇଲା
ତଜ୍ଞଂର ନିମନ୍ତେ ହାଦେ ଜରସନ୍ଧ ବଧଗଲା ।୧୫୧।
ନକୁଳ ବଚନେ ନିୟୁକେଶରୀ ପରଣାମି
ଦଶଦୋଷ ଅପ୍ରାଧ ମୋହୋର କ୍ଷମା କରିବା ଦେବସ୍ୱାମୀ ।୧୫୨।
ସ୍ୱାମୀ ତୋହୋର ଦକ୍ଷିଣ ଦିଗବଜେ ନ ଜାଣି ନ ଶୁଣି
ପରବଷ୍ଟ ପ୍ରାପ୍ୟେ ବୁଦ୍ଧି ସଂଗ୍ରାମ କଲଇଂ ନ ଜାଣି ।୧୫୩।
ନିମନ୍ତ୍ରଣ ଯୋଗାଡ଼ ଦିଲେ ନକୁଳକୁମାର
ସମଦଣ୍ଡ ଘେନି ରାଜା ଯାଅ ଯା ଯମପ୍ରଶସ୍ତ ପୁର ।୧୫୪।
ରାଜାନ୍ତ ଘେନି ମୋର ବାହୁଡ଼ିବା ପରଯନ୍ତେ
ଦକ୍ଷିଣ କୋଶଳ ରାଜାମାନେ ରହିଥିବେଟି କଟକ ଯମପ୍ରଶସ୍ତେ ।୧୫୫।

---

୧୪୮।୨ ଭୁହି ସେ ରକ୍ଷା କରିବୁ ନାହିଂ କ ଧର୍ମର ଉଦ୍ଦେଶ୍ୟ ।
(ଘ,ଡ,ଛ,ଚ)

ନିରାଧାର ଆଜ୍ଞାଂ ପାଇ ହାଦେ ତ୍ରିୟୃକେଶରୀ
ଅମୃତ ଯୋଗବେଳେ ରାଜ୍ୟଂ ବାହାର ହୋଇଲା ଦଣ୍ଡଧାରୀ ।୧୫୬।
ସେ କଥାରେ ସ୍ରାହାନ କରି ମାଦ୍ରୀଦେବୀଂକ ନନ୍ଦନ
ତ୍ରିୟମ୍ବକେ ନାଥଂକୁ ଯାଇଂ କଲେକ ଦ୍ରଶନ ।୧୫୭।
ଜୟତୁ ସର୍ବ ସୁତଳ ନାଥ ଭଗତ ଜନ ପ୍ରତିପାଳ
ସର୍ବଜନ ରଞ୍ଜନ ନାଥ ତୁ ପ୍ରସନ୍ନ କାପାଳୀ ।୧୫୮।
ତ୍ରେତୟା ଯୁଗ ଆଦ୍ୱକର ଶ୍ରୀରାମଚନ୍ଦ୍ର ପୂଜା
ସଦୟେ ଅଭୟେ ବରଦାତା ତୁ ପ୍ରସନ୍ନେ ଦେବରାଜା ।୧୫୯।
କଞ୍ଚିତ ସାକାର ସ୍ୱାମୀ ପଞ୍ଚଧାରୀ ବେନିରୂପୀ
ଶରଣ ପଞ୍ଜର ନାଥ ତୁ ସାଧକେ ସିଦ୍ଧତପୀ ।୧୬୦।
ଆଜ୍ଞାଂଦ୍ୱଲେ ସ୍ୱାମୀ ଲକ୍ଷଣଂକୁ ରାଇ
ପାଷାଣ ଲେଡ଼ଆଣ ପୂଜବା ବିଶ୍ୱନାଥ ଦେବଇଂ ।୧୬୧।
ସ୍ୱାମୀ ଶ୍ରୀରାମ ଆଜ୍ଞାଂୟେ ଯେ ଲକ୍ଷ୍ମଣ କଲେ କୁଟୀ
ଶ୍ରୀରାମଂକୁ ଭଣ୍ଡିଲେ ପୋଡଣ ଷାରଗୋଟି ।୧୬୨
ସ୍ୱାମୀ କଣୟକୂଟ ଗିରିକନ୍ଦରେ କଣୟ ଶିଖରେ
ଲକ୍ଷ୍ମଣ ବସାଇଲେ ଷାର ଗୋଟିୟେ ଉପରେ ।୧୬୩।
ଅନେକ କୁସୁମମାଳ ଗଭାଇଣ ଯତନେ
ତ୍ରିୟମ୍ବକ ଅମ୍ବ ବୋଲି ଥାପିଲେ ଲକ୍ଷଣେ ।୧୬୪।
ଶ୍ରୀରାମଚନ୍ଦ୍ରେ ପ୍ରଣପତ୍ୟ ହୋଇ କଲେ ଅନେକ ଭୁସ୍ତି
ପ୍ରସନ୍ନେ ନାଥ ବିଜୟେ କଲେ ତ୍ରିୟମ୍ବକ ମୂର୍ତ୍ତି ।୧୬୫।
ମହାଶମ୍ଭୁ ହୋଇଲା ସେ କଣୟକୂଟ ଗିରି ଫୁଟି
ପାତାଳ ସ୍ୱର୍ଗେ ଯାଇଂ ଲକ୍ଷେଜୁଣେ କଣ୍ଠି ।୧୬୬।
ମହାଶମ୍ଭୁ ହୋଇ ତୁ ପ୍ରସନ୍ନେ ତ୍ରିୟମ୍ବକ
ଶ୍ରୀ ମଳୟା ନାଥ ସ୍ୱାମୀ ସରୂପ ସଦାରେକ ।୧୬୭।

---

୧୫୬।୨ ଅମୃତ ଯୋଗାଡ ଘେନି ବାହାର ହୋଇଲା ଦଣ୍ଡଧାରୀ । (ଘ,ଙ,ଚ,ଥ)

୧୬୨।୨ ଶ୍ରୀରାମଂକୁ ଭଣ୍ଡିଲେ ପୋଢଣ ଢରଣ ଗୋଟି । (ଚ,ପ,ଥ)

୧୬୪।୧ ଅନେକ କୁସୁମମାଳା ଗୁଡ଼ଆଇଣ ଯତନେ । (ଚ,ପ)

ଆପଣେ ମୃଗୟାର ବନୋଦେ ତୁ ସଦା କୁତୂହୋଳ
ମାରଣ ବନଜୀବନ୍ତ ନାଥ କଉତୁକ ଖେଳ ଖେଳ ।୧୬୮।
ତବ ଚରଣେ ଶରଣ ସ୍ୱାମୀ ଖଣ୍ଡିଲା ଦୁଷ୍କୃତ
ଅନେକ ତୁସ୍ତି କରି ନକୁଳ ହୋଇଲା ପ୍ରଣିପତ୍ୟ ।୧୬୯।
ମାଦ୍ରୀଦେବୀର ତନୟେ ହୋଇଲେ ବହୁତ ବିନୟେ
ଭଗତ ଦେଖି ବିଜୟେ କଲେ ଦେବରାୟେ ।୧୭୦।
ବାମକରେ କମାୟେଣ ଦକ୍ଷିଣ କରେ ଝାରଗୋଟି
ପାଦେଣ ରତ୍ନକଠାଉ ଶିରେ ୟେକ ଜଟୀ ।୧୭୧।
ଧବଳବର୍ଣ୍ଣ ଶରୀର ହୃଦେ ମୁକୁତାର ମାଳୀ
କର୍ଣ୍ଣେଣ ଅମୃତ କୁଣ୍ଡଳ ହୃଦେଣ ଅଷ୍ଟରତ୍ନ ମାଳା ଲୁଳ ।୧୭୨।
ଶିରେଣ ସୀମନ୍ତିନୀ ହୃଦରେ ପୁଷ୍ପମାଳା
କରେଣ କଂକଣ ବାହୁଟି ଯେ କଟିରେ ରତ୍ନମେଖଳା ।୧୭୩।
ଯେସନେ ଶୋଭବନ ନାଥ ଶ୍ରୀନିୟୁ ମଳୟା
ସନ୍ନିଧେଣ କାତ୍ୟାୟିନୀ ଗଉରୀ ବିଜୟା ।୧୭୪।
ନକୁଳ ଦେଖିଲା ଯହୁଂ ସ୍ୱାମୀର ନିଜ ରୂପଗୋଟି
ଅନେକ ବିନୟ ହୋଇ ପଦ୍ମପାଦ ତଳେ ଲୋଟି ।୧୭୫।
ଈଶ୍ୱର ବୋଇଲେ ନକୁଳ ହୋ ମହିମାଂ ତୋର ଧନ୍ୟ
କେଉଂଣ ପୁଣ୍ୟକ୍ଷଣେ ତୁମ୍ଭଂକୁ ଜାତକଲା ଜନନୀ ।୧୭୬।
ସଂଗ୍ରାମେ ନିର୍ଭୟା ତୁମ୍ଭର କାହାକଇଂ ନାହିଂ ଶଂକା
ଯେତେବେଳ ଦିଗ ସାଧ କରୁଛ ଜଣେ ଜଣେ ଯେକା ।୧୭୭।
ଆମ୍ଭନ୍ତ ଭେଟିଲ ତୁମ୍ଭର ଜୀବନ ସୁଫଳ
ମହାମନ୍ତ୍ର ଗୋଟିଏ ତୋତେ ଦେବୁରେ ନକୁଳ ।୧୭୮।
ସେ ମନ୍ତ୍ର ଗୋଟିକୁ ତୁ ପଢିଲେ ତିନିକାଳେ
ଆହାର ମଇଥୁନ ନିଦ୍ରା ନ ପୀଡିବ ସର୍ବକାଳେ ।୧୭୯।
ଯେସନେକ ଆଗ୍ୟାଂ ଦିଲେକ କାପାଳୀ
ନକୁଳ କୁମାରକୁ ମନ୍ତ୍ର ଦିଲେ ତୋଳ ।୧୮୦।

---

୧୭୩। କରେଣ କଂକଣ ବାହୁଟି ଯେ କଟିରେ ଜଗଦଳା । (ଝ,ଡ)

ରାଜାମାନଙ୍କ ସାଧି କରିବା ପରସଙ୍ଗେ
ନିଦ୍ରା କ୍ଷୁଧା ତୃଷା ମଇଥୂନ କଛୁ ନ ପୀଡବ ରେ ବାବୁ ତୋତେ ।୧୮୧।
ଆହୁର ଦେଉଅଛୁ ତୋତେ ଖ୍ୟଣର ଗୋଟିଏ
ଏ ଶର ଯୋଚାଇଲେ ତୋତେ ସାଧି ହୋଇବେ ସର୍ବରାଏ ।୧୮୨।
ବାବୁ ଯଦ୍ୟପି ପର୍ବତ ହୋଇବ ଲୁହାର ବଜ୍ରଘୋଟି
ଏ ଶହସ୍ର ପଡିଲେଣ ସମସ୍ତ ଯିବେ ଫୁଟି ।୧୮୩।
ଏସନେକ ଆଗ୍ୟାଂ ସ୍ୱାମୀ ପ୍ରସନ୍ନେ ଅବଧାରି
ବର ଦେଇ ଅନ୍ତର୍ଦ୍ଧାନେ ଗଲେକ ତ୍ରିପୁରାରି ।୧୮୪।
ତହୁଂ ଶ ବଜାୟ୍ଯ କରିଣ ଚଳଇ ନକୁଳେ
ଖ୍ୟମାଓର ଦେଶେ ପ୍ରବେଶ ଘେନିଣ ମହାବଳେ ।୧୮୫
ବାଜନ୍ତ ବୀରତୂର ଝମକ ନିଶାଣ
ଖେଦନ୍ତି ଖ୍ରୁରସାଣି ରାଉତେ ଉଠନ୍ତି ଠିଆଠାଣ ।୧୮୬।
ସେ ଖ୍ୟମାଓର ରାଜ୍ୟେ ରାଜା ଖ୍ୟମ ଚନ୍ଦ୍ରବୃଷ୍ଟି
ବଜେ କରିଅଛୁ ରାଜ ବାହାର ଜଗଣ୍ଟି ।୧୮୭।
ରାଜାର ସ୍ତ୍ରମ୍ଭରେ ଯାଇଂ କହନ୍ତି ଦେଶାଡରେ
ସ୍ୱାମୀ କେବଣ ରାଜାଏ ପଲସିଲ୍ଲ ତୋହୋର ରାଜ୍ୟରେ ।୧୮୮।
ବଢାଇ ପ୍ରତାପୀ ଦେବ ଅନେକ ସଇନ
ଧାମନ୍ତି ଉଇବାତେ କରେଣ ଶସ୍ତ୍ର ଘେନି ।୧୮୯।
ଶୁଣିଣ କୁହାବଇ ଖ୍ୟମେକ ଚନ୍ଦ୍ରବୃଷ୍ଟି
ସମଦଣ୍ଡ ଘେନି ରାଜା ଧାମଇଂ କୋପମୂର୍ତ୍ତି ।୧୯୦।
ମଯେମତ୍ତ ହାଥୀ ଏକ ଚଢିଣ ନରସାଇଂ
ନକୁଳ ଥାଠକୁ ଓଗାଳିଲ୍ଲ ବୀର ବେଗେ ଯାଇଂ ।୧୯୧।
ପରଘ ଶହସ୍ରେକ ଧରିଣ ନିଜ କରେ
ରୋଷଭରେ ହାକଇ ରାଜା କେରେ ପଶଇ ମୋହୋର
ରାଜ୍ୟରେ ।୧୯୨।
ଏ ଦକ୍ଷିଣ ରାଜ୍ୟରେ ମୁଂ ଛତ୍ରୀ ଯେ ଅଜୟ୍ଯା
ଜୀବନାଶ କରି ଆସୁଅଛୁ ହରାଇବୁ କାୟ୍ଯା ।୧୯୩।
ରାଜାର ପ୍ରତ୍ରଗ୍ୟାଂ ଶୁଣି ନକୁଳ ବୋଇଲ୍ଲ ଆଗେ
ରାଜୁସି ଯଗ୍ୟଂ ନିମନ୍ତେ ଆମ୍ଭେ ବଜେ ଦକ୍ଷିଣ ଦ୍ୱିଗେ ।୧୯୪।

ଆହୋ ସୋମବଂଶେ ରାଜା ଯେ ଯୁଧିଷ୍ଠି ନୃପବର
ତାହାଂକର ଅନୁଜ ଅଟଇ ଯେ ବୀର ବୃକୋଦର ।୧୯୫।
ଭୀମସେନର କନିଷ୍ଠ ଯେ ଅଟନ୍ତି ଅର୍ଜୁନ
ମୋହୋର ନାମ ନକୁଳ ମୁଂ ପାଥହ୍ନଂ ଅଟଇ ସାନ ।୧୯୬।
ରାଜସୂୟି ଯାଗ ନିମନ୍ତେ ରାଜାଂକୁ ନିମନ୍ତ୍ରଣ
ଆଗ୍ୟାଂ ପ୍ରମାଣେ ମୁହ୍ନିଂ ଦକ୍ଷିଣ ଦିଗେ ବରଗଣ ।୧୯୭।
ନକୁଳ ବଚନେ ସେ ଭୀମେକ ଚକ୍ରବର୍ତ୍ତି
ହାଥୀ ତେଜ୍ୟାକରି ରାଜା ଆସଇ ତଡନ୍ତି ।୧୯୮।
ମନ୍ତ୍ରୀକି ରାଇ ରାଜା ବୋଲଇ ଯୈକାନ୍ତେ
ପୁର ମୋହୋର ମଣ୍ଡନ କର ଅତିଅନ୍ତ ଯତ୍ନେ ।୧୯୯।
ନଗ୍ରେଣ ଉତ୍ସବ କରଅ ବୋଲି ନୃପତି ଆଗ୍ୟାଂଦିଲା
ପ୍ରତକ୍ଷେ ନାରାୟଣ ମୋହୋର ଭୁବନେ ବିଜେକଲା ।୨୦୦।
ଅନେକ ବିନୋଯ୍ୟୀ ସେ ନେଲାକ ଆସ୍ଥାନକୁ
ସିଂହାସନେ ନେଇ ବସାଇଲା ନକୁଳ କୁମାରକୁ ।୨୦୧।
ଅନେକ ବିନୋଯ୍ୟୀ ହୋଇ ଖଟଇ ଆପଣେ ସନ୍ନିଧାନେ
ଆଲଟ ଚାମର ଯେ ଢାଳନ୍ତି ବନ୍ଧୁ କୁଟୁମ୍ବମାନେ ।୨୦୨।
ଅକ୍ଷତ ଗୁଆ ତାକୁ ଦିଲେକ ନକୁଳ
ସମଦଣ୍ଡ ଘେନି ନୃପତି ଯମପ୍ରଶସ୍ତକୁଇଂ ଚଳ ।୨୦୩।
ନିମନ୍ତ୍ରଣ ଯୋଗାଡ ଘେନିଲା ଭୀମେକ ଚକ୍ରବର୍ତ୍ତି
ସମଦଣ୍ଡ ଘେନି ରାଜା ଚଳିଲେ ତତକ୍ଷଣାନ୍ତ ।୨୦୪।
ଚତୁଂଗ ଚଳଇ ନକୁଳ ବୀରତୂର ବାଦ୍ୟଘାତେ
ଉଡଙ୍ଗ ଦେଶେ ଯାଇଂ ବିଜୟେ ତୁରିତେ ।୨୦୫।
ମଲୟବସନ୍ତ ବୋଲି ସେ ଉଡଙ୍ଗ ଦେଶ ରାଜା
ତାହାର ଦେଶେ ଯାଇଂ ପ୍ରବେଶ ମାଦ୍ରୀଦେବୀର ଆତ୍ମଜା ।୨୦୬।
ନକୁଳର ଦିଗବିଜେ ବାରତା ରାଯ୍ୟେ ପାଇ
କଟକୁ ବାହାର ହୋଇଲା ଅନେକ ସାନନ୍ଦ ହୋଇ ।୨୦୭।
ହାଥେଣ ଚାମର ଧରି ସେ ବସନ୍ତସେନ
ନକୁଳ ଛାମୁରେ ଯାଇଂ କଲାକ ଦରଶନ ।୨୦୮।

ନିମନ୍ତ୍ରଣ ଯୋଗାଡ଼ ତାଙ୍କୁ ଦେଲେକ ନକୁଳ
ସମଦଣ୍ଡ ଘେନି ବାହାର ହୋଇ ଯମପ୍ରଶସ୍ତକୁଇ ବେଗେ ଚଳ ।୨୦୯।
ନକୁଳ ଆଜ୍ଞାଂରେ ସେ ବାହାର ହୋଇଲା ନୃପତି
ଅନକୂଳ ଘେନି ରାଜା ବାହାର ତତକ୍ଷଣାନ୍ତ ।୨୧୦।
ତହୁଂଣ ନକୁଳ ଚଳଇ ବୀରତୂର ବାଦ୍ୟ ବାଇ
ଚୁଡ଼ଙ୍ଗ ଦେଶେ ପ୍ରବେଶ ହୋଇଲା ବୀର ଯାଇଂ ।୨୧୧।
ସେ ଦେଶର ରାଜା ଯେ ଚୁଡ଼ଙ୍ଗ ଚକ୍ରବ୍ରତ୍ତି
ତାହାର ଭୁବନେଣ ପ୍ରବେଶ ଯାଇଂ ଝାଡି ।୨୧୨।
ମୁନେହିଂ ଜଣାଇଲେ ଯାଇଂ ରାଜାର ଅଗ୍ରତେ
ସ୍ୱାମୀ କଟକ ଭିତରେ ଯୋଦ୍ଧାପ୍ତେ ପ୍ତେକ ଆସି ପଶିଲା
                                                    ଅଦଭୁତେ ।୨୧୩।
ଉଲ୍କାପାତ ପ୍ରାପ୍ତେକ ତାର ଦିଅନ୍ତି ସଇନ
ବୁଲବନ୍ତି ଲଂକଆ କରେ ଶସ୍ତ୍ର ଘେନି ।୨୧୪।
ଶୁଣିଣ କୋପକଲା ସେ ଚୁଡ଼ଙ୍ଗ ଚକ୍ରବ୍ରତ୍ତି
କୃତାନ୍ତେକ ବଂଶେଣ ମୁଂ ଅଟଇ ଉତପତ୍ତି ।୨୧୫।
ମୁହିଂ ଅନୁବ୍ରତେ ପରରାଜ୍ୟେ ବାହେ ଥାଠ
ମୋହୋର ଉପରକୁ କେରେ ସାଜଇ ପରରାଷ୍ଟ୍ର ।୨୧୬।
ପୂର୍ବ୍ବ ଦକ୍ଷିଣ କୋଶଳେ ମୁହିଂ ଅଟଇ ପ୍ତେକ ଯୋଧୀ
ଜରସନ୍ଧ ରାଜାକଇଂ ମୁଂ ହୋଇଲି ଆସାଧି ।୨୧୭।
ମୁହିଂ ସେ ରାଜାଂକ ଉପରେ ଭରସଲ
ମୋହୋର ଉପରକୁ କେରେ ଅଟଇ ମହାମଲ୍ଲ ।୨୧୮।
ପାରଦଣ୍ଡ ଶତେ ରାଜା ସନ୍ନିଧେ ହକାର
ରାଜ୍ୟକୁ ପଶି ନ ଦିଅଇ ଆଜ୍ଞାଂ ଅବଧାର ।୨୧୯।
ରାଜାର ଆଜ୍ଞାଂରେ ସେ ଧାଇଂଲେ ପାରଦଣ୍ଡ
ଲୋହସାର ଧନୁ ଧରି ସେ ଧାମନ୍ତି ପରଚଣ୍ଡ ।୨୨୦।
ଗର୍ଜନ୍ତେଣ କମ୍ପିଲା ଯେ ଦାବାନଳ ପୃଥୀ
ଦଲଦଳତ ହୋଇଣ ସେ କମ୍ପଇ ବସୁମତ୍ତି ।୨୨୧।
ପାରଦଣ୍ଡ ରାଜାମାନେ କରେଣ ଶସ୍ତ୍ର ଧରି
ଆରେ ରହ ରହ ବୋଲି ଚୁଡ଼ଙ୍ଗ ଚକ୍ରବ୍ରତ୍ତିର ଆନ ପାଡ଼ି ।୨୨୨।

ଇହଲୋକେ ଜାତ ହୋଇଣ ଯେତେ କର୍ମ୍ମ ଭରସୁ
ଜୀବନ ନିଆଶୀ କର୍ମ୍ମ ରେ ଚୂଡ଼ଙ୍ଗ ଦେଶେ ପଶୁ ।୧୨୨୩।
ସଇନର ତହୁଁ ପ୍ରତଗ୍ୟାଂ ଅହୁଁ ବହୁତ ପ୍ରତାପୀ
ଦୁସହ ପଞ୍ଚଜ ଶୁଣି ନକୁଳ ମହାକୋପୀ ।୧୨୨୪।
ଆପଣାର ଥାଠ ପଛକର ଆଗେ କଲା ନେଇ ରଥ
ବୋଇଲା ଯେ ମହାମଣ୍ଡଳେ କେରେ ଯେତେକ ସାମରଥ ।୧୨୨୫।
ବାହୁଡଣ କହ ଯାଇଂ ତୁମ୍ଭ ନୃପତିର ଆଗେ
ବୋଲ ନକୁଳ ବିଜେ କରଛନ୍ତି ଯେ ଦକ୍ଷିଣ ଦିଗଭାଗେ ।୧୨୨୬।
ଦ୍ୱନ୍ଦ ବିବାଦ ଯେ ଆମ୍ଭର ନାହିଂ କିଛି
ହସ୍ତିନା ରାଜ୍ୟକୁ ଯିବ ଅନେକ କାର୍ଯ୍ୟ ଅଛି ।୧୨୨୭।
ସେ କାର୍ଯ୍ୟକୁଟି ଆମ୍ଭର ଦିଗ ବିରଣେ
ରାଜୁସି ଯାଗକୁ ଯିବେଟି ଲକ୍ଷେ ରାଜାଗଣେ ।୧୨୨୮।
ସୋମବଂଶେ ରାଜା ଯୁଧିଷ୍ଠି ଦଣ୍ଡଧାରୀ
ପିତାର କାର୍ଯ୍ୟେ ସେ ରାଜୁସି ଯାଗ କରି ।୧୨୨୯।
ପାଣ୍ଡବ ସୁନ୍ଦର ବୀର ବୃକୋଦର
ତାହାଂକର ସାନୁଜ ଅର୍ଜୁନ ଧନୁର୍ଦ୍ଧର ।୧୨୩୦।
ମୋହୋର ନାମଗୋଟି ଅଟଇ ନକୁଳ
ସହଦେବ ବୋଲି ଯେ ସାନୁଜ ମୋହୋର ।୧୨୩୧।
ପିତାର କାର୍ଯ୍ୟେ ଆମ୍ଭେ ଗୃହଦିଗକୁ ଆଗତ
ରାଜାମାନଂକୁ ବଶବୁ ଦେଇଣ ଦୁର୍ବାକ୍ଷତ ।୧୨୩୨।
ସମସ୍ତ ସଇନମାନେ ଗଲେଣି ଚଳାଇ
ତୁମ୍ଭର ରାଜାକୁ କହ ଯା ମଣାଇ ।୧୨୩୩।
ଦ୍ୱନ୍ଦ ବାଦରେ ଆମ୍ଭର ନାହିଂ ପ୍ରୟୋଜନ
ସମଦଣ୍ଡ ଘେନିଯାଅ ଯମପ୍ରଶସ୍ତ ଥାନେଣ ।୧୨୩୪।
ନକୁଳର ବଚନେ ହସିଲେ ସଇନ
କେବଣ ପାଣ୍ଡବ ବୋଲି ଆମ୍ଭେ ତ ନ ଜାଣି ।୧୨୩୫।

---

୨୨୪।୨ ଦୁସହ ପ୍ରତଗ୍ୟାଂ ଦେଖି ମାଦ୍ରୀ ସୁତ ହସି । (ଘ,ନ,ଖ)

କେ ତୋହୋର ଯୁଦ୍ଧେଷ୍ଠି କେ ତୋହୋର ଭୀମସେନ
କାହାର ଆଗେ କହୁ ବଡ଼ିମା ବଡ଼ପଣ ।୨୩୬।
ଯେତେବୋଲ ସଇନ୍ୟ ବନ୍ଧିଲେ ନାଗଜ
ଜଳଧାର ପ୍ରାୟେ ହୋଇ ବହନ୍ତି ମହାତେଜ ।୨୩୭।
ଅବଚ୍ଛିନ୍ନେ ବାଣ ସେ ବନ୍ଧିଲେ ନ ବରୁଣ
ନକୁଳ ସୁମରଇ ସ୍ୱାମୀ ଦେବ ଚକ୍ରଧାରୀ ।୨୩୮।
ତୁମ୍ଭେ ଯେ ଆମ୍ଭନ୍ତ ଦେବ ଛଆରଲ ଯତନେ
ବୋଇଲୁ ଯେ ହନ୍ଦୀ ନୋହନ୍ତ ପ୍ରେ ଦକ୍ଷିଣଦିଗ ରାଜାମାନେ ।୨୩୯।
ଯେତେକ ବରୁଣଶ ସେ ବନ୍ଧିଲେ ବେଗେ ବାଣ
ଲକ୍ଷ ନାଗଜନ୍ତ ବନ୍ଧିଲ ପାଣ୍ଡବ ପଞ୍ଚାଣ ।୨୪୦।
ଶରବୃଷ୍ଟି କଲକ ନିର୍ଘାତ ଶବଦ ଧାଡ଼
ହାଥୀଂକର କୁମ୍ଭସ୍ଥଳେ ନାଗଜ ଯାଇଂ ପଡ଼ ।୨୪୧।
ଲଦ୍ଧ ଘର ବାଟେ ଯେ ପଚ୍ଛକତକ ନିକଳ
ହାଥୀ ଯୋଦ୍ଧା ସବୁତେ ଯେତେକାବେଳେ ତଳ ।୨୪୨।
ମାଦ୍ରୀର ନନ୍ଦନ ଯେ ଅଶକ୍ୟ ବଳବନ୍ତ।
ପବନହୁଂ ବେଗେ ନାଗଜ ବନ୍ଧଇ ନ ଯାଇ ଗଣିତା ।୨୪୩।
ସହସ୍ରେକ ମୁକୁଟବନ୍ଧା ଯୋଦ୍ଧା ଥିଲେ ଆଗିଆଣି
ଗର୍ଜି ଭୂମିରେ ପଡ଼ଲେ ଗଣ୍ଡିମପ୍ରେ ଜାଣି ।୨୪୪।
ସଇନ୍ୟ ହତ ଦେଖି ଧାଇଂଲେ ପାରଦଣ୍ଡେ
କରେଣ ଧରଛନ୍ତି ପଥର ଖଣ୍ଡେ ଖଣ୍ଡେ ।୨୪୫।
ବାମକରେ ଧରଣ ସେ ଅଛନ୍ତି ବୃକ୍ଷେ ବୃକ୍ଷେ
ବାନର ବଳ ପରାୟେ ହଣୁଛନ୍ତି ପ୍ରତକ୍ଷେ ।୨୪୬।
ଦେଖିଣ ନକୁଳ ଯେ କୋଦ୍ଣ୍ଡେକ ବୁଲାଇ
ଅବକାର ସରୁପେ ତେଜେକ ଦେଖାଇ ।୨୪୭।
କୁମାର ନନ୍ଦନ ଯେ ଅଟଇ ମହାବଳୀ
ହାଥୀଂକ ଉପରେ ନେଇ ମାଇଲ କୁନ୍ତ ତୋଳ ।୨୪୮।
ହାଥୀ ମାହୁନ୍ତମାନଂକୁ ବୁଲାଇ ଅନ୍ତରୀକ୍ଷେ
ଗଡ଼ ଉପରକୁ ଫିଙ୍ଗି ଦିଲକ ପ୍ରତକ୍ଷେ ।୨୪୯।

*

ପଡ଼ିଲେ ମହାବୀରେ ଅନ୍ତରୀକ୍ଷୁଂ ଉଲ୍କାପାତ ଜାଣି
ଜଗଷ୍ଟରେ ଥାଇ ଦେଖିଲା ଚୁଡ଼ଙ୍ଗ ରାୟ ନୃପମଣି ।୨୫୦।
ରାଜାର ଦେଖନ୍ତେଣ ସନ୍ୟବଳ ଭଜେ
ରଥେକ ସାଜ ରାଜା ଆପଣେ କଲା ବିଜେ ।୨୫୧।
ବାମେ ବାଜୁଆଣୀ ଦକ୍ଷିଣେ ଆଗିଆଣି
ସମ୍ମୁଖରେ ବିଜେକଲା ସେ ଚୁଡ଼ଙ୍ଗ ନୃପମଣି ।୨୫୨।
ରାଜାକଇଂ ଦେଖିଣ ସେ ଉଠିଲେ ସଇନ
ନକୁଳ ଉପରକୁ ଉଠିଲେ କରେଣ ଶସ୍ତ୍ର ଘେନ ।୨୫୩।
ମାର ମାର ବୋଲିଣ କଟିକଟି ଭଟେ
ଶାଳଶିଳ ଘେନିକର ବୁଲିବନ୍ତି ମହାରୋଷେ ।୨୫୪।
ଆହୋ ସଇନିଂକ ବିକଟାଳ ନକୁଳ ସହୁଂ ଦେଖି
ସନ୍ନିଧେ ପଶୁରିଲେ ରେହନ୍ତ ସାରଥିକ ।୨୫୫।
ବହୁତ ପ୍ରତଗ୍ୟାଂ ମୋଡାଯେ ରଣରଙ୍ଗେ କରି
ରାଜାର ସ୍ଥମୁକୁ ରଥ ମୋହୋର ବାହା ବେଗକରି ।୨୫୬।
ନକୁଳର ବଚନେ ଦେବ ଦାନକର ସୁତ
ପବନ ଗତିକରି ବାହିଲା ଅନ୍ତରୀକ୍ଷେ ତାର ରଥ ।୨୫୭।
ଶେଣାପକ୍ଷୀ ପ୍ରାୟେକ ଯେ ଉଡନ୍ତ ତୁରଙ୍ଗେ
ଝାଟକାରେ ରଥ ଠେକିଲା ନେଇ ଚୁଡ଼ଙ୍ଗ ଚଣ୍ଡବ୍ରଷ୍ଟର ଆଗେ ।୨୫୮।
ଅଦଭୁତେ ଦେଖିଣ ପ୍ରତାପ ରାଜବଂଶୀ
କରେଣ କୃପାଣେକ ଘେନି ନକୁଳକଇଂ ଆହ୍ନେଷି ।୨୫୯।
ଦେଖିଣ ନକୁଳ ବୁଲାଇ ଖାଷକୁନ୍ତ
ଆହ୍ନେଷି ପ୍ରହାରକଲା ଚୁଡ଼ଙ୍ଗ ଚଣ୍ଡବ୍ରଷ୍ଟର ରଥ ।୨୬୦।
ନକୁଳର କୁନ୍ତଘାଏ ରଥ ଚୂରଗଲା
ମତ୍ତ ହାଥୀଏ ଚଢି ରାଜା ବାହୁଡି ବିଜେକଲା ।୨୬୧।
ଲୌହସାର ବେଣିଗଦା ଧରିଛୁ ବେନିହାଥେ
ବୁଲାଇ ପ୍ରହାର କଲା ନକୁଳର ରଥେ ।୨୬୨।
ରେହନ୍ତ ସାରଥି ରଥ ବଞ୍ଚାଇଲା ଅନ୍ତରୀକ୍ଷେ
ପୁଣିହିଂ ନକୁଳ ଯେ ଖାଷକୋନ୍ତ ମାଇଲା ପ୍ରତକ୍ଷେ ।୨୬୩।

ନକୁଳର କୁନ୍ତ ହାଥୀ କୁମ୍ଭସ୍ଥଳେ ଫୁଟି
ଗର୍ଜନ କରଣ ମହାଗଜ ପଡ଼ଲା ମହୀରେ ଲୋଟି ।୨୬୪।
ଚତୁଃ ବରଥୀ ହୋଇ ପଳାଇଲା ସେ ଚୂଡ଼ଙ୍ଗ ମହାରାୟେ
ପଛରେ ଗୋଡ଼ାବଇ ତାର ମାଦ୍ରୀର ତନୟେ ।୨୬୫।
କୋନ୍ତ ନେଇ ପ୍ରହାର କରନ୍ତେ ଉପରେ
ମନ୍ତ୍ରୀବର ପ୍ରଣପତ୍ୟ ହୋଇଲା ନକୁଳ ପଦ୍ମରେ ।୨୬୬।
ରେହନ୍ତ ବୋଇଲା ବାବୁ ଛାଡ଼ କୋପମନ
ମନ୍ତ୍ରୀର ବଚନେ ସ୍ନେହାକୁ କରବା ସମାଧାନ ।୨୬୭।
କଞ୍ଚିତ ଦୋଷକୁ ତ ରାଜାନ୍ତ ନାଶକଲେ
ରାଜସୂୟ ଯାଗ ନୋହିବଟି ରାଜାୟେ ନ ଅର୍ଣ୍ଣିଲେ ।୨୬୮।
ରେହନ୍ତର ବଚନେ ସେ ନକୁଳ ପରମ ଶାନ୍ତ
ରାଜାକୁ ବାହୁଡ଼ାଇ ଆଣସି ହୋ ମନ୍ତ୍ରୀ ।୨୬୯।
ନକୁଳର ବଚନେ ମନ୍ତ୍ରୀ ଗଲାକ ତଡ଼ତଡ଼
ରାଜାକୁ ସମାର୍ଜନା ଯାଇଂ କଲାକ ମହାମନ୍ତ୍ରୀ ।୨୭୦।
ରାଜାକୁ ଘେନି ବେଗେଣ ଚଳଯାଇ
ନକୁଳ ଛାମୁରେ ବେଗେ ଦ୍ରଶନ କରାଇ ।୨୭୧।
କାକୁସ୍ଥ ହୋଇ ରାଜା ଦନ୍ତେଣ ତୃଣ ମୁଖେ ଦଶନହ ଭରି
ଶରଣ ପୁଂକାରଇ ମୋତେ ଉଦ୍ଧର ଦଇତାରି ।୨୭୨।
ରାଜାର ବିକଳ ଦେଖି ସେ ମାଦ୍ରୀଦେବୀର ବଳା
ଚୂଡ଼ଙ୍ଗ ଚନ୍ଦ୍ରବୃଷ୍ଟି ହୃଦେ ନେଇ ଲମ୍ବାଇଲା ରତ୍ନମାଳ ।୨୭୩।
ଅନେକ ସଇନ୍ୟ ରାଜା ନାଶକଲୁ ହୋ ନ ଜାଣି
ଦଣ୍ଡ ଘେନି ରାଜସୂୟ ଯାଗକୁ ଯାଅ ଯା ସ୍ନେହବକ୍ଷଣି ।୨୭୪।
ନିମନ୍ତ୍ରଣ କଲେ ଯତ୍ନଂ ନକୁଳ କୁମାର
ଚୂଡ଼ଙ୍ଗ ରାୟେ ବୋଇଲେ ସ୍ୱାମୀ ଆଜକ ରହିବା
ମୋର ପୁର ।୨୭୫।
ନକୁଳ ବୋଇଲା ଆମ୍ଭର ଭୋଜନେ କସ ଅର୍ଥ
ତୁମ୍ଭର ଚଳଲେ ସେ ଆମ୍ଭର ପୁରୁଷାର୍ଥ ।୨୭୬।
ତୁ ସ୍ନେବେ ବହନ ହୋ ଯାଅ ଯା ସମଦଣ୍ଡ ଘେନି ଦଣ୍ଡଧାରୀ
ଯମପ୍ରଶସ୍ତେ ରହିଥାଅ ତୋହୋର ଥାଠସନ୍ୟ ଘେନିକରି ।୨୭୭।

ନକୁଳର ଆଜ୍ଞାଂଶ୍ୱେ ସେ ଚୂଡ଼ାଙ୍ଗ ଚକ୍ରବର୍ତ୍ତି
ବିନା ଅନକୂଳେ ସେ ବାହାର ହୋଇଲା ତତକ୍ଷଣାନ୍ତ ।୨୭୮।
ଚତୁରଂଗ ନକୁଳ ଯେ ଚଳାଇଣ ବେଗେ ଥାଠ
ଦଣ୍ଡ ଘେନି ଭୃତଙ୍କେ ମିଳିଲା ଯାଇଂ ପାତାଳଗଙ୍ଗାର ତଟ ।୨୭୯।
ଚନ୍ଦ୍ରଚୂଡ଼ ବୋଲିକରି ତହିଂ ଯେକଇ ପର୍ବତେ
ମଣିଭଦ୍ରା ବୋଲିକରି ଯେକଇ ନୃପତେୟ ।୨୮୦।
ନକୁଳ ବିଜେକଲେ ସେ ଗିରିବରର ନିକଟେ
ପ୍ରତାପୀର ସନ୍ୟ ରହିଲେ ତହିଂ ରନ୍ଧନ ଭୋଜନର ପୃଷ୍ଠେ ।୨୮୧।
ଆପଣେ ସ୍ନାହାନ ଭୋଜନ କଲେ ନକୁଳ କୁମାର
ସନ୍ଧ୍ୟା ଅବକାଶେ ଦଣ୍ଡ ଘେନି ହୋଇଲେ ବାହାର ।୨୮୨।
ମଣିଭଦ୍ର ରାଜା ବିଜୟେ ଚନ୍ଦ୍ରଚୂଡ଼ ପର୍ବତେ
ରାଜାର ସମ୍ମୁଖେ ବାରତା ଜଣାଇଲେ ଦୂତେ ।୨୮୩।
ଶୁଣ ଦେବ ଗିରିବର ଶିଖର ଅଧିକାରୀ
ନକୁଳ ବିଜେକଲେ ଦକ୍ଷିଣଦିଗ ରାଜାନ୍ତ ନିମନ୍ତ୍ରଣ କରି ।୨୮୪।
କଳିଙ୍ଗ ବଙ୍ଗ ଉଡ଼ଙ୍ଗ ତେଲଙ୍ଗ ଯେତେକ ନୃପତି
ଦେବ ବଡ଼ୁତ ଧ୍ୱଂସି ହୋଇଲା ଚୂଡ଼ାଙ୍ଗ ମଣ୍ଡଳ ଚକ୍ରବର୍ତ୍ତି ।୨୮୫।
ଅନେକ ସନ୍ୟ ପଡ଼ିଲା ରାଜାର ରାଜ୍ୟ ହୋଇଲା ଉଜାଡ଼
ପ୍ରାଣେ ନାଶ କରୁଥିଲା ପୁଣ ତାହାଙ୍କୁ ଶରଣେ ରକ୍ଷାକରି ।୨୮୬।
ଦଣ୍ଡ ଘେନି ପାଉଛନ୍ତି ଯିବା ଚାଲ ବେଗେ
ଦସ୍ୟୁ ଉପୁଜୁଂ ତୋତେ ଯେବେ ଉପେକ୍ଷା କରୁ ରାଗେ ।୨୮୭।
ମନ୍ତ୍ରୀର ବଚନେ ଯେ ଉଠିଲା ମହାରାଜା
ଆଜ୍ଞାଂହିଲା ସଇନି ସାଜ ହୋ ବେଗେ ଯାଆ ଯା ।୨୮୮।
ରାଜାର ବଚନେ ମନ୍ତ୍ରୀ ଯେ ଉଭାରିଲେ ସଇନି
ଚଳଇ ନୃପତି ଯେ ନିଜର ବଳ ଘେନି ।୨୮୯।
ମଣିନାଗ ନାମେ ଯେ ହାଥୀଯେକ ଆରୋହି
ପର୍ବତ ଉପରୁଂ ଓହ୍ଲାଇଲା ବେଗହୋଇ ରାଜସାଇଂ ।୨୯୦।
ନକୁଳ ଆସୁଅଛି ଗିରିବର ତଳେ
ସମ୍ମୁଖେ ଦରଶନ କଲା ଆସି ମଣିଭଦ୍ର ମହୀପାଳେ ।୨୯୧।

ବେଣୁକରେ ବେଣୁ ଗୁମର ଡାଳଇ ନୃପତି
ଦେଖିଣ ଦଣ୍ଡାଇଲେ ନକୁଳ ମହାଛତ୍ରୀ ।୨୯୨।
ଅନେକ ବନୋଷ୍ଠୀ ହୋଇ ସେ ଚନ୍ଦ୍ରଚୂଡ଼ ଦେଶର ରାଜ୍ୟେ
ମାଦ୍ରୀ ନନ୍ଦନର ଯେ ବସିଲ୍ଲ ବହୁତ ସଦସ୍ୟେ ।୨୯୩।
ନିମନ୍ତ୍ରଣ ଯୋଗାଡ଼ି ଯେ ହେଲେ ପାଣ୍ଡବ ପଞ୍ଚାଣ
ଆଠସନ୍ୟ ଘେନି ଯାଅ ଯା ଯମପ୍ରଶସ୍ତ ରାଜ୍ୟେଣ ।୨୯୪।
ଆରମ୍ଭ ପ୍ରମାଣେ ସେ ଚଳଇ ଗିରିଇନ୍ଦ୍ର
ଶୁଭ ଅନୁକୂଳେ ବାହାର ରାଜା ସୁମତି ରାମଚନ୍ଦ୍ର ।୨୯୫।
ତହୁଂ ଚଳଗଲେ ଯେ ମାଦ୍ରୀଦେବୀର ବଳା
ନାଶାକର ବଂଶୀ ଯାହାର ତେଜ ଅନର୍ଗଳା ।୨୯୬।
ମହାବଳବନ୍ତା ଯୋଦ୍ଧାସ୍ୟେ ଚଳନ୍ତି ଅତି ଖରେ
ପ୍ରବେଶ ହୋଇଲେ ଯାଇଂ କାମପୁର ନଗ୍ରେ ।୨୯୭।
ସେ କାମପୁର ନଗ୍ର ରାଜା ରୁଦ୍ରପାଳ ନୃପତି
ଦଶ ଅକ୍ଷୌହିଣୀ ରଥ ଖଟଇ ବତିଶ ଅକ୍ଷୌହିଣୀ ହାଥୀ ।୨୯୮।
ଚଉବଂଶ ଲକ୍ଷ ଅଟଇ ଯେ ଘୋଡ଼ାର ତୁରଙ୍ଗମ
ଦୁର୍ଜନ ନୃପତି ନୁହଇ ସେ ପାଳଇ ମହାଧର୍ମ ।୨୯୯।
ନକୁଳ ପ୍ରବେଶ ଆସି ହୋଇଲେ ସେହୁ ରାଜ୍ୟେ
ଅନେକ ବାଦ୍ୟତୂର ଯେ ଢମକ ଘୋର ବାଜେ ।୩୦୦।
ହାକନ୍ତି ଡାକନ୍ତି ଯେ କ୍ଷେପନ୍ତି ସଇନ
ଅକାଶ ଉଚ୍ଛୁଳୁଅଛି ମୁଖରବ ଶବଦ ଧ୍ୱନି ।୩୦୧।
ମନ୍ତ୍ରୀ ଜଣାଇଲ୍ଲ ଶୁଣ ଦେବ ରୁଦ୍ରପାଳ ନୃପତି
ଦକ୍ଷିଣ ବିଜୟ କଲ୍ଲ ପାଣ୍ଡବ ମହାଛତ୍ରୀ ।୩୦୨।
ସାତ ସହସ୍ର ରାଜା କରିବ ଦେବ ସାଧି
ପାଣ୍ଡବଂକର ଭୁଲେ ଆମ୍ଭେ ନୋହିବା ବିବାଦୀ ।୩୦୩।
ପାଦ ଅମାନତ୍ୟ ଘେନି ରାଜା ଚାଲ ସ୍ୱେବେ ଯିବା
ନକୁଳ ଚରଣେ ଆମ୍ଭେ କରିବା ଯାଇଂ ସେବା ।୩୦୪।
ମନ୍ତ୍ରୀର ବଚନେ ରାଜନ୍ୟୁଂ ବାହାର ନୃପତି
ଶତେକର ପାଣିଦ୍ରବ୍ୟ ଘେନି ଗୁମୁକୁ ଆସଇ ଚଉତି ।୩୦୫।

ମାଦ୍ରୀର ନନ୍ଦନ ଯେ ବିଜେ କରିଛନ୍ତି ରଥେ
ରୁଦ୍ରପାଳ ଦ୍ରଶନ କଲା ନକୁଳ କୁମାର ଅଗ୍ରତେ ।୩୦୬।
ଅନେକ ଗଣ୍ଡଗୋଳ କରି ତାଙ୍କୁ ନେଲେକ ଆସ୍ଥାନେ
ସମ୍ମୁଖରେ ଖଟନ୍ତି ଅମାତ୍ୟଗଣମାନେ ।୩୦୭।
କଣସ୍ଥ ଜଗତୀରେ ନକୁଳ ଯାଇଁ ବସି
ଶିବପାଳ ନୃପତିଙ୍କ ବହୁତ ପ୍ରଶଂସି ।୩୦୮।
ନିମନ୍ତ୍ରଣ ଯୋଗାଡ଼ନ୍ତି ହେଲେକ ନକୁଳ
ଦଣ୍ଡସନ୍ୟ ଘେନି ରାଜସୂୟ ଯାଗକୁ ବେଗେ ଚଳ ।୩୦୯।
ବିଳମ୍ବ ହୋଇଲେ ହୋ ନ ବ୍ରତିବ ଜାଣ କେହି
ଜଗନ୍ନାଥଂକର କୋପକୁ ଜୀବନ ମୋର କାହିଁ ।୩୧୦।
ବାଜଇ ବିଜଘୋଷ ଟମକ ଦାଉଣ୍ଡି
ପ୍ରବାଳ ଆଦିତ୍ୟ ଜାଣି ଅଷ୍ଟରତ୍ନେ ରଥ ମଣ୍ଡି ।୩୧୧।
କାମପୁର ନଗ୍ରୁଂ ଶୁଭେ ହୋଇଲେ ବାହାର
ବିଜୟ ନଗ୍ରେ ପ୍ରବେଶ ଯାଇଁ ପାଣ୍ଡବ ସୁନ୍ଦର ।୩୧୨।
ପରଥାଠ ଆଗତ ଯେ ବାରତା ରାଜ୍ୟେ ଶୁଣି
ଯମନିକ ନୃପତି ଅଇଲା ଥାଠ ଯେ ପଲାଣି ।୩୧୩।
ଅଶ୍ବବୃତେକ ରଥ ସାତ ଅଶ୍ବବୃତେକ ହାଥୀ
ଗୃହ ମଞ୍ଚିତ ଅଶ୍ବ ପାଞ୍ଚ ଷଉଣୀ ପାଦାନ୍ତି ।୩୧୪।
ଯମନିକ ବୋଲିଣ ସେ ଯେବଣ ନୃପବର
ତେଲଙ୍ଗ ଭାଷା ନୃପତି ବ୍ରାହ୍ମଣ ଅବତାର ।୩୧୫।
ଆହୋ ବନସ୍ତ ଭିତରେଣ ତାହାର ରାଜ୍ୟଗୋଟି
କାହାର ବଶ ନୋହଇ ରାଜା ମହତ ଜନ ସେଟି ।୩୧୬।
ନକୁଳ ପ୍ରବେଶ ହୋଇଲେ ତାହାର ରାଜ୍ୟରେ
ଅନେକ କୁତୂହୋଳେ ବାଜଇ ବାରତୂରେ ।୩୧୭।

---

୩୧୦। ନକୁଳ ବୋଇଲା ବିଳମ୍ବେ ନ ବ୍ରତିବେ କେହି
ଜଗନ୍ନାଥେ କୋପିଲେ କାହାର ପ୍ରାଣ ନାହିଁ ।
(ବହୁ ପାଠ)

୩୧୧। ପ୍ରବାଳ କାନ୍ତି ଜାଣି ସବୁର ରଥ ମଣ୍ଡି । (କ,ଜ)

ସାଜରେ ସାଜରେ ମୋର ରହୁବର ମଧ୍ୟେମନ୍ତ୍ରୀ
ଯମନାକ ନୃପତି ସେ ସଂଗ୍ରାମେ ଶକତି ।୩୧୮।
ତାହାଂକୁ ପ୍ରସନ୍ନ ହୋଇଲେ ଯେ ଏକବଲା ପାର୍ବତୀ ଦେବୀ
ପରଥାଠ ହୋଇ ରାଜା ଚରଣେ ତାର ସେବ ।୩୧୯।
ଅନେକ ବଳୀ ହେଇ ରାଜା ବହୁତ ବନଧ୍ୟେ
ପରଦେଶୀ ଯୋଦ୍ଧାଏକ ଆସଇ କେମନ୍ତ କରବ ଗୋ ମାଧ୍ୟେ ।୩୨୦।
ରାଜାକଇଂ ପ୍ରସନ୍ନ ହୋଇ ବୋଇଲେ ଏକଲଧ୍ୟେ ଦେବୀ
ପରଥାଠ ହୋଇଲେ ମୁଂ ତାହାକଇଂ ନିବର୍ତ୍ତି କରିବ ।୩୨୧।
ପାଣ୍ଡବ ପଞ୍ଚାଣ ସେ ତ ନକୁଳ କୁମାର
ଉଛବ ନିମନ୍ତେ ଆସଇ ସେ ଭୁମ୍ଭର ପୁର ।୩୨୨।
ପୃଥୀର ମଧ୍ୟେ ଯେ ଲକ୍ଷେ ରାଜାଗଣ
ସକଳ ନୃପତିଂକ କରଇ ନିମନ୍ତ୍ରଣ ।୩୨୩।
ତୁ ଏବେ ନୃପତି ହୋ ବହନ ହୋଇ ଯାଅ ଯା
ନକୁଳ କୁମାର ପାଦତଳେ କରସି ଯାଇଂ ପୂଜା ।୩୨୪।
ଶୁଣିଣ ସାନନ୍ଦ ସେ ନୃପତି ଯମନାକ
ରଜ୍ୟେଣ ଉଛବ ରାଜା କରାଇଲା ଅନେକ ।୩୨୫।
ପୃଥୀର ମଧ୍ୟେ ଛନ୍ତି ଲକ୍ଷେକ ରାଜା ଗୁଣ
ସମସ୍ତେ ପାଣ୍ଡବଂକର ହୋଇଲେ ସାହା ପୁଣ ।୩୨୬।
ଯାହାକୁ ସଖା ହୋଇଛନ୍ତି ଦେବ ଶ୍ରୀବତ୍ସ
ମୁହିଂ ଅବଗ୍ୟାଂ କଲେ ମୋତେ କାହିଂ ଭଲ ଅଛି ।୩୨୭।
ପୁତ୍ର ବନ୍ଧୁ କୁଟୁମ୍ବ ସେ ଘେନିଣ ନରପତି
ନକୁଳ ଗୁମୁକୁ ଆସଇ ବନସ୍ଥ ଭଗତି ।୩୨୮।
ଯମନାକ ନୃପତି ଦ୍ରଶନ କଲା ବାଟେ
ଦ୍ୱିଜଗିର ନାମେ ଏକ ପର୍ବତ ନିକଟେ ।୩୨୯।
ପୁତ୍ର ବନ୍ଧୁ ଭାରଯାନ୍ତ ଘେନି ଦ୍ୱିଜନଗ୍ର ସ୍ୱାମୀ
ନକୁଳ ଗୁମୁରେ ଶତ ସହସ୍ର ଦଣ୍ଡ ପରଣାମି ।୩୩୦।
ଶ୍ରୀହସ୍ତେ ନକୁଳ ତାକୁ ଦେଲେକ ଅକ୍ଷତ ଗୁଆ
ସମଦଣ୍ଡ ଘେନି ରାଜା ଯମପ୍ରଶସ୍ତକଇଂ ଯାଆ ।୩୩୧।

ନକୁଳର ଆଗ୍ୟାଂ ସେ ନିବେଶିତ ଶିରେ
ସମଦଣ୍ଡ ଘେନି ରାଜା କଟକରୁ ହୋଇଲା ବାହାରେ ।୩୩୨।
ତତକ୍ଷଣ ନକୁଳ ଯେ ଥାଠନ୍ତ ଚଳାଇ
ପଦ୍ମନାଭ ପଙ୍କତେ ବଳଯ୍ୟେ ବାର ଯାଇଂ ।୩୩୩।
ସଇନି ଘେନି ଉଠିଲେ ସେ ଗିରବର ଉପରେ
ଦେଖନ୍ତ ନାରାୟଣ ଶୟନ ଦାମୋଦରେ ।୩୩୪।
ଶିରେଣ ଅନନ୍ତ ନାଗ ସପତ ସୂର୍ଯ୍ୟମଣି
ଶୋଷଇ ବାରନିଧି ଗଗନ ଧାର ଜାଣି ।୩୩୫।
ଶିରେଣ ଧବଳାଙ୍ଗୀ ଅନାଦ ଧବଳ ମୁଖୀ
ସପତସ୍ୱର ବୀଣା ଘେନି ଗାନ୍ଧାର ରାଗେ ଭାଖି ।୩୩୬।
ନାରାୟଣ ନିଦ୍ରା ବ୍ରହ୍ମଯୋଗ ଲୟେ
ଚରଣ ସନ୍ନିଧେ ଯେ ଖଟନ୍ତ ଦେବତାୟେ ।୩୩୭।
ପାଦେଣ ପାଦୁକା ଯେ ବହଇ କୃଷ୍ଣବେଣୀ
ଚରଣେ ଚଞ୍ଚଳା ଯେ ଖଟଇ କମଳମା ।୩୩୮।
ଅନାଦ ନାଥ ତହିଂ ଶୟନେ ଯୋଗନିଦ୍ରା
ପଦ୍ମନାଭ ମୂର୍ତ୍ତି ସ୍ୱାମୀ ଛନ୍ଦଣ ସର୍ବମୁଦ୍ରା ।୩୩୯।
ବେଢିଣ ବୃନ୍ଦାଅର୍କେ ଅନେକ ଯୋଗଲୟେ
ଚରଣ ସନ୍ନିଧେ ଖଟି ଅନେକ ଦ୍ୱଜୟେ ।୩୪୦।
ଆହୋ ନକୁଳ ଦେଖିଲେ ସେ ପଦ୍ମନାଭ ମୂରତ
ତହିଂ ଆସି ଦର୍ଶନ କଲେ ସଙ୍ଗେ ଘେନି ଗୃହଶତ ପାଶଦଣ୍ଡ
ନୃପତ ।୩୪୧।
ସମସ୍ତ ପାଶଦଣ୍ଡ ରାୟେ ପଦ୍ମନାଭ ନୃପତକଇଂ ଖଟି
ଶୟନେ ନିଧଉତ ନାଥ ଯାହାର ନାମଗୋଟି ।୩୪୨।
ରଜନୀ ନିବାରଣ ନାଥ ଅନଙ୍ଗ ପିତାମହ
କଉଣିକ ମନ୍ତ୍ରେ ସ୍ୱାମୀ ଶୟନ ସନ୍ଦେହ ।୩୪୩।
ସ୍ୱାମୀ ଭୋଜନ ଶୟନେ ଯାହାର ନାମ ହୃଦଗତେ
ବିଷାଦ ଖଣ୍ଡଇ ପଦ୍ମନାଭ ସୁମରନ୍ତେ ।୩୪୪।

---

୩୪୪।୨ ନିଶା ଦର୍ପ ଖଣ୍ଡଇ ପଦ୍ମନାଭ ସୁମରନ୍ତେ । (ଝ,ପ,ଡ)

ଜରା ଅବସ୍ଥା ସ୍ୱାମୀ କାଳଦର୍ପ ବ୍ୟାଧି
ଶ୍ରୀ ପଦ୍ମନାଭ ନାମ ତନ୍ହାଂକ ନାଶାକର ମଉଷଧି ।୩୪୫।
ସକଳ ରୋଗ ଖଣ୍ଡିତ ଅମୃତ ରସ ବୃଷ୍ଟି
ଯମ ଦର୍ପ ନିବାରଣ ସ୍ୱାମୀ ତୋହୋର ପଦ୍ମନାଭ ନାମଗୋଟି ।୩୪୬।
ବଢାଂସିତ କମଳ ଯାହାର ପାଦପଦ୍ମ ସ୍ଥଳୀ
ହିନକର କୋଟିଏ ତେଜ ଯାହାର ପାଦେ ଝଳ ।୩୪୭।
ପଞ୍ଚାଶ ଅକ୍ଷବୃତ ଯେ ବହଇ ତୀର୍ଥବେଣୀ
ଶୁଦ୍ଧ ମନ୍ତ୍ରବାକ୍ୟେ ଅଭୟେ କାରେଣି ।୩୪୮।
କୋଟିଏକ ତୀର୍ଥ କମଣ୍ଡଳେ ଧାତା ଭରି
ଯାହାର ଚରଣ ଉଦକେ ସଂଗମ ଆଣିକରି ।୩୪୯।
ନାଭିରୁ ଉତପତ୍ତି ଯାହାର କମଳ ନାଳ
କୋଟିଏ ବ୍ରହ୍ମାଣ୍ଡ ଘୋଟିଲା ସେ ଆକାଶ ମଣ୍ଡଳ ।୩୫୦।
ଅଶି ଯୋଜନ ସେ ପଦ୍ମ କଡାର ଆୟେତନ
ତହୁଂ ସେ ପଦ୍ମଯୋନି ବ୍ରହ୍ମା ହୋଇଲେ ଉତପନ୍ନ ।୩୫୧।
ସେ ପଦ୍ମକଡାର ଯେ ବଢସିତ ଯେବଣ ପାଖୁଡ଼ା
ତହୁଂ ସେ ସପତ ବ୍ରହ୍ମାଣ୍ଡ ହୋଇଲା ବସ୍ତାର ।୩୫୨।
କେଶ୍ୱରୁ ଉତପତ୍ତି ଯେ ସମସ୍ତ ବସୁଧାହ
ସଚରାଚର ସପତ ବ୍ରହ୍ମାଣ୍ଡ ତହୁଂ ସେ ସମ୍ଭାଢ ।୩୫୩।
ନମସ୍ତେ ନମସ୍ତେ ଦେବ ଜୟତୁ ପଦ୍ମନାଭ
ନମସ୍ତେ ନମସ୍ତେ ଦେବ ପ୍ରସନ୍ନ ବାସୁଦେବ ।୩୫୪।
ନମସ୍ତେ ନମସ୍ତେ ଦେବ ତୁ ସେ ଦେବରାଜା
ନମସ୍ତେ ନମସ୍ତେ ଦେବ ଜୟ ତୁ ଅନନ୍ତ ଶଯ୍ୟା ।୩୫୫।
ଶ୍ରୀ ପଦ୍ମନାଭ ଚରଣେ ମୁହିଂଟି ନିଜ ଦାସ
ବଦନ୍ତି ଶୂଦ୍ରମୁନି ସାରୋଳା ଦାସ ଜନ୍ମେ ଜନ୍ମେ ଅଭ୍ୟାସ
।୩୫୬—୭୮୨।

---

## ଶ୍ରୀଗିରି ପର୍ବତରେ ବେତୟା ଯୁଗର ସୁଦେଷଣଙ୍କ ବିବରଣ, ନକୁଳର ଇଚ୍ଛାପୁର ରାଜା ସହିତ ଯୁଦ୍ଧ, ତାହାର ପଳାୟନ ଏବଂ ଅନ୍ୟାନ୍ୟ ରାଜାଙ୍କୁ ନିମନ୍ତ୍ରଣ

କୁମ୍ଭଋଷିର ନନ୍ଦନ ବଦନ୍ତି ଅଗସ୍ତି
ପଦ୍ମନାଭ ପର୍ବତେ ବିଜୟେ ଅଶ୍ୱିନୀ କୁମାରଂକ ସନ୍ତତି ।୧।
ଗୃହଶତ ରାଜା ତହିଂ କଲେକ ଦରଶନ
ସେ ପଦ୍ମନାଭ ପର୍ବତେ ନକୁଳ ରହିଲେ ବେନିଦିନ ।୨।
ଗୃହଶତ ରାଜା ସବୁନ୍ତି ନିମନ୍ତ୍ରଣ କରି
ଚଳିଲେ ରାଜାମାନେ ହସ୍ତିନା ନଗ୍ରପୁରୀ ।୩।
ତହୁଂଣ ନକୁଳ ଯେ କଲେ ଦିଗବିଜେ
ଜୟଶଙ୍ଖଧ୍ୱନି ଗହନ ଶବଦ ବାଜେ ।୪।
ବିଜୟାନଗ୍ର ବୋଲି ଯେକଇ ନଗ୍ରସ୍ଥାନ
ଶ୍ରୀରାମର ବଂଶେ ତହିଂ ନୃପତି ଋତୁପର୍ଣ୍ଣ ।୫।
ବଡ ପ୍ରତାପୀ ରାଜା ସେ ଅମଳାନ ସୂର୍ଯ୍ୟବଂଶୀ
ସେହି ରାଜ୍ୟେ ନକୁଳ ଯେ ବିଜେକଲେ ଆସି ।୬।
ବୀରତୂରି ଶବଦେ ଉଚ୍ଛୁଳଇ ଆକାଶ
ମୁନେହିଂ ଜଣାଇଲେ ଯାଇଂ ଋତୁପର୍ଣ୍ଣ ରାଜାର ପାଶ ।୭।
ଶୁଣିମା ସାବଧାନେ ରାଜାଧି ରାଜେଶ୍ୱର
ଲକ୍ଷ୍ମୀର କ୍ଷେତ୍ରେ ଯେବଣ ସ୍ୱାମୀ ଅବତାର ।୮।
ଦକ୍ଷିଣ କୋଶଳେ ସ୍ୱାମୀ ତୁହି ସେ ଯେକଛନ୍ତି
ସମସ୍ତ ନୃପତିମାନେ ତୋହୋର ବଶ୍ୟାବୃତ୍ତି ।୯।
ଶ୍ରୀରାମ ଅବତାରେ ତୁହି ପ୍ରସନ୍ନ ଆଦିନାଥ
ଦକ୍ଷିଣ କୋଶଳେ ଚମକ ପଡଇ ତୋହୋର କଲ୍ଲ କୃତ୍ୟ ।୧୦।
ଗୃହଉଣା ଲକ୍ଷେରଜାଂକ ଉପରେ ତୁହି ସେ ମଉଡମଣି
କୋଟିଏ ପାଦେ ଅଭିଷେକ କରଇ ଅନୁବ୍ରତେ କମଳାମୀ ।୧୧।
ସ୍ୱାମୀ କେବଣ ରାଜା ଯେତି ବିଜୟେ ପରଦେଶୀ
ରଥ ଗଜ ପାଦାନ୍ତି ଅଶ୍ୱ ଅଳ୍ପ ତୋହୋର ରାଜ୍ୟେ ପଶି ।୧୨।

ତୁ ଦେବ ଖାରବର ଛର୍ଦ୍ଦିବର ଜଗବନ୍ଧୁ
ଯାହାଙ୍କଇଂ ସନ୍ଧାନ ହଅଇ ରତ୍ନାକର ସିନ୍ଧୁ ।୧୩।
ମୁନେନ୍ଦ୍ରଂର ମୁଖେ ନିଷ୍ଠୁର ବାକ୍ୟ ଶୁଣି
ମୁକୁଟବନ୍ଧା ଗୁଣଲକ୍ଷ ଯୋଦ୍ଧା ହକାରିଲ୍ଲ ନୃପମଣି ।୧୪।
ସନ୍ନିଧେ ବସାଇ ରାଜା ଆଗ୍ୟାଂ ଅବଧାରି
ଅନେକ ରତ୍ନ ଅଳଂକାର ଶ୍ରୀହସ୍ତେ ହଲ୍ଲ ଶାଢୀ ।୧୫।
ଆହେ। ଅବଦ୍ଭୁତେ ରାଜ୍ୟେ ମୋର ପଶଇ କେବଣ ଯୋଧୀ
ମୋହୋର ଗ୍ରମୁକୁ ତାହାକଇଂ ରେ ଘେନିଆସ ବାନ୍ଧି ।୧୬।
ରାଜାର ଆଗ୍ୟାଂସ୍ୱେ ପ୍ରତଗ୍ୟାଂ ସର୍ବ ବୀରେ
ସାଜଲେ ଶୈଖାର ତୁରଙ୍ଗମ ଉଠିଲେ ଉପରେ ।୧୭।
ଅନେକ ମଣିଗଣ ଅନେକ ଗଜମୁକୁତା
ଚଉପାଶେ ଘଟଣ ଗଜ ପାଟସୁତା ।୧୮।
ସ୍ୱେକ ଅଶ୍ୱଂକର ତେଜ ଆଦିତ୍ୟ ତେଜ ଜାଣି
ବରାଜନ୍ତି ପ୍ରବାଳ ହୀରାସ୍ୱେ ଝଲକନ୍ତି ରତ୍ନମଣି ।୧୯।
ସବୁ ଅଶ୍ୱ ଦଶନ୍ତି କର୍ପୂର ତେଜ କାନ୍ତି
ଗଡରୁ ବାହାର ହୋଇ ବହଡନ୍ତି ସର୍ବରଥୀ ।୨୦।
ଚଉରାଶୀ ଗୁଣ ଲକ୍ଷଣ ସର୍ବବାଘ
ଘୋଟନ୍ତି ଗଗନାଧି ଅଭୟେ ମହାତେଜ ।୨୧।
ଗହ ଗହ ଗମ୍ଭୀରେ ଯେ ଜୟଶଙ୍ଖ ନାଦେ
ପୂରିତ ମେହ୍ନୀ ଯେ ସିଂହନାଦ ଶବଦେ ।୨୨।
ଆସନ୍ତେଣ ନକୁଳଙ୍କୁ ଆଗେଣ ଓଗାଳି
କାହ୍ନଂର ରେ ସଇନ ତୁମ୍ଭେ ପରରାଷ୍ଟ୍ରେ ପଣ ପେଲି ।୨୩।
ଶୁଣିଲ୍ଲ ନାହ୍ନଂକ ରେ ତୁମ୍ଭରେ ବଜୟନଗ୍ର ବୋଲି
କେବଣ ନୃପତି ଅବା ସାଧ ମୁଂ ନ କଲି ।୨୪।
ଶ୍ରୀରାମଚନ୍ଦ୍ର ତ୍ରେତୟା ଯୁଗେ ସିଜିଲେ ଯେବଣ ଗଡ
ଅଜୟ ଗଡ ବୋଲକର ଶୁଣିଲ୍ଲ ନାହ୍ନଂକ ରେ ତୁମ୍ଭର ।୨୫।
ସ୍ୱେବେହେଂ ଶ୍ରୀରାମଚନ୍ଦ୍ର ସ୍ୱେଥେ ଅଛନ୍ତି ବଜେକର
ଲକ୍ଷ୍ମଣ ଅନୁଜ ଆବର ଜନକ କୁମାରୀ ।୨୬।

ଅଞ୍ଜନାର ନନ୍ଦନ ଯେସ୍ଥି ବଜସ୍ତେ ହନୁମନ୍ତେ
ସେ ଗଡ଼ ସାଧ ନ ଯାଇ ହନୁମନ୍ତ ଯେସ୍ଥେ ଥାନ୍ତେ ।୨୭।
ଆରେ ବହୁତ ଦୂର କ ଛୋଟେ ନ କହୁଲେ କେହୁ
ଜୀବନକୁ ଆଶ ତୁମ୍ଭେରେ ନ କଲ କଂପାଇଂ ।୨୮।
କାଳ ଅନ୍ତ ହୋଇଲେ ଯେହ୍ନେ ବପଥେ ଯାନ୍ତ ପ୍ରାଣୀ
ଆଷ୍ୟ ଶେଷ ହୋଇଲା ତୁମ୍ଭର ସବୁର ମନେ ଗୁଣି ।୨୯।
ନକୁଳର ଆଗିଆଣି ଯେ କେଶୀ ମହାକେଶୀ
ମାଦ୍ରିର ସୋଦର ଭ୍ରାଥ ସେ ନକୁଳର ତୁଲେ ଆସି ।୩୦।
ପ୍ରତଗ୍ୟାଂ ଶୁଣି ସେ ନୁଆରଲେ ସହୁ
ରେ ରେ କାର ଶବଦେ ଉଠିଲେ ତୁହାଇ ।୩୧।
ପବନହୁଂ ବେଗେ ତୁରଙ୍ଗମ ସେ ଚଢ଼ିଣ ଅଛନ୍ତ
ତନି ଅହୁବୃତ ଯୋଦ୍ଧା ଯେନି ଆଗିଆଣି ଥାଠେ ଚଳନ୍ତ ।୩୨।
ସମରେ ଅନିବାରଣ ସେ ଅନନ୍ତ ରଣରଂକା
କେଶୀ ମହାକେଶୀ ଯେ ଧାଇଂଲେ ନିଶଂକା ।୩୩।
ବନେ ଦାବାନଳ ଜାଣି ସେ ବକାଶନ୍ତ ମହାତେଜ
ଘୋର ଶବଦ କର ଯେହ୍ନେ ବଜସ୍ତେ ଦେବରାଜ ।୩୪।
ଗୁରୁଜ ବୁଲାଇଣ ସେ କେଶୀ ମହାକେଶୀ
ସଂଗ୍ରାମେ ବେନିବୀରେ ବଜସ୍ତେ କଲେ ଆସି ।୩୫।
ଛତ୍ରୀବର ସୋହୋଡ଼ ସେ ସଂଗ୍ରାମେ ବଳବନ୍ତା
ଅଭୟେ ପ୍ରାକ୍ରମେ ଯେ ସାଂଗ୍ରାମେ ତାହାନ୍ତ କେହୁ ନାହୁଂ ଜଣନ୍ତା ।୩୬।
ଆରେ ଆରେ ଗର୍ଜିଣ ପ୍ରତଗ୍ୟାଂ ଶବଦେ ବୋଲି
ଝାସିଲେ ସମରେ ଯେ ପଶିଲେ ବୀରେ ପେଲି ।୩୭।
ଭଇରୋବ ରୂପ ଜାଣି ବକାଶିଲା କାୟେ
ସଇନିଂକ ଆକ୍ଷେଷିଲେ ବୀରେ ବହୁର ତେଜପ୍ରାୟେ ।୩୮।
କୋପେ ବେନି ଗୁରୁଜନ୍ତ ବୁଲାଇ ବୁଲାଇ
ଚଉପକ୍ଷି ଥାଠରେ ପଶିଲେ ବୀରେ ଯାଇଂ ।୩୯।
ଗୁରୁଜନ୍ତ ବୁଳଇ ସେ ପଶିଲେ ସମରେ
ଆକ୍ଷେଷି ପିଟିଲେ ନେଇ ସନ୍ୟର ଉପରେ ।୪୦।

ଆହୋ ଚଣ୍ଡ ପ୍ରଚଣ୍ଡ ବୋଲକର ଚଜସ୍ଥାନଗ୍ର ସେନାପତି
ଗୁରୁଜ ଦଣ୍ଡାଚେ ସେ ମୋହେଣ ବରଥୀ ।୪୧।
ପୁଣି ପ୍ରହାର ଯେ କଲେକ ଦାରେ ତୋଳ
ଅଶ୍ୱ ମନୁଷ୍ୟ ଯେ ହୋଇଲେ ସର୍ବେ ଧୂଳ ।୪୨।
ସମରେ ପଡିଲେ ସେ ଥାଠର ଅଧିକାସ୍ତ
ନକୁଳ ସଇନ୍ୟ ବଧିଲେ ଶହସ୍ର ଆଗସର ।୪୩।
ବଢନ୍ତି ନ'ରାଜ ଯେ ଅନଳ ଶିକ୍ଷମ୍ନନା
ଫୁଟନ୍ତି ଅଭେଦ କପଚ ଚାଡେଣୀ ବଜ୍ରସେହ୍ନା ।୪୪।
ଯେକା ପ୍ରହାରକେ ପଡନ୍ତି ସଇନ୍ୟ
ଲୋଟନ୍ତି ଧରଣୀରେ ପଡନ୍ତି ଭୂମି ଘେନ ।୪୫।
ଆହୋ ନକୁଳର ସଇନ୍ୟ ଜାବଡେ ସର୍ବେ ଉଠି
ଆଚ୍ଛେଷିଣ ନାରାଜ କରନ୍ତି ଘୋରବୃଷ୍ଟି ।୪୬।
ଯେସନେକେ କଦଳୀ ବନ ପଡଇ ବାତଘାତେ
ପଡିଲେ ସଇନ୍ୟ ବଳ ଲୋଟିଲେ ସେହ୍ମମତେ ।୪୭।
ଯୋଜନେକେ ବିସ୍ତାର ହୋଇ ପଡିଲେ ମହାଯୁଦ୍ଧେ
ଖେଚର ଭୂଚର ହୋଇ ନାଚନ୍ତି କବନ୍ଧେ ।୪୮।
ପଡିଲେ ନ ଗୁଞ୍ଜନ୍ତି ସେ ଅମାପ ସଇନ୍ୟ
ଯେକ ପଡିଲେ ଆରେକ ବଢନ୍ତି ଶର ଘେନ ।୪୯।
ରାଜାର ଆଗ୍ୟାଂ ସେ ଯେ ବଚନ ଶିରାଧାର
ସମରେ ପିଠି ସେ ନ ଦଅନ୍ତି ସବ୍ଦାର ।୫୦।
ରକତର ନଦୀ ଯେ ବହଇ ଖରତର
ପ୍ରବଳ ଶ୍ରୋଣିତ ସେ ବେଳାତାଳ ଗମ୍ଭୀର ।୫୧।
ଶିର ଛିଡଣ ରୁଧିରେ ଉପୁଜଆଇଲେ କାଯେ
କର ଚରଣ ଛିଡ ଦିଶନ୍ତି କଦଳୀ ଭେଳା ପ୍ରାଯେ ।୫୨।
ବେଳାତାଳ ଉଚ୍ଛର୍ଗ ସେ ବହଇ ରୁଧିର ଲହଡ
ପଡିଲେ ସଂଗ୍ରାମେ ତାହାର ଯୋଦ୍ଧା ଲକ୍ଷ ଗୃର ।୫୩।
ରାଜାର ଛାମୁରେ ଯାଇଂ କହିଲେ ବାରତ
ସ୍ୱାମୀ ଗୃରଲକ୍ଷ ଯୋଦ୍ଧା ତୋହୋର ହୋଇଲେ ପ୍ରାଣେ ହତ ।୫୪।

ନିଜବଳ ସଇନ୍ୟ ହତଭଗ୍ନ ଶୁଣି
ଜଗତିରୁ ପଡ଼ିଲା ରାଜା ବଜ୍ରଘାତ ଜାଣି ।୫୫।
ଆହା ଦଇବ ବୋଲି ଡାକଇ ମହୀପତ୍ୟେ
ଯେତେ ବଡ଼ ସଇନ୍ୟ ମୋର ନାଶଗଲା କେମନ୍ତେ ।୫୬।
ସତ୍ୟସେନ ବୋଲଣ ସେ ଋତୁପର୍ଣ୍ଣ ରାଜାର ମନ୍ତ୍ରୀ
ତାହାକଇଁ ଦେଖି ରାଜା ବାହାର ତତକ୍ଷଣାନ୍ତ ।୫୭।
ଆସ ହୋ ମନ୍ତ୍ରୀ ସେ ରଥୀ ତାହାର ତତ୍ତ୍ୱଂକ ଯିବା
କେଉଣ ଦୋଷେ ମୋହୋର ସଇନ୍ୟ ନାଶକଲା ତଦନ୍ତ ବୁଝିବା ।୫୮।
ସାଜରେ ସାଜରେ ମୋର ସମଦଣ୍ଡ ଥାଟ
ଜୀବନ ନିଆଶୀ ଆସ ରେ ମୋର ବୁଡ଼ିଲା ସମରାଷ୍ଟ୍ର ।୫୯।
ମନ୍ତ୍ରୀବର ବୋଇଲା ଦେବ ନ ସାଜ ସଇନ୍ୟ
ସାମାନ୍ୟ ଜନ ନୋହଇ ସେ ବୁଝିବା ପରମାଣି ।୬୦।
ସ୍ୱାମୀ ଆମ୍ଭର ରାଜ୍ୟ ଯେଉଁଥେ କରିବାର ହେତୁଯ୍ୟା ଯୁଗହୁଂ
ମାନବ କୁଳେ ଜନ୍ମ ହୋଇ ଯେତେକ ତାର ଦର୍ପ କାହୁଂ ।୬୧।
ଯେ ମହୀସ୍ଥଳର ମଧ୍ୟେ ଆମ୍ଭେ କାହାକଇଁ ନୋହୁଁ ବିବାଧି
ଅଦଭୁତେ ଅକାରଣେ କିମ୍ପା ଯେ ଆମ୍ଭର ସନ୍ୟ ଛେଦ ।୬୨।
କେଉଣ ଦୈତ୍ୟ ଅବା କେଉଣ ରାକ୍ଷସ ପିଶାଚ ଅସୁର
ଯେତେ ନିର୍ଦ୍ଧ୍ୟା ସେ ସଇନ୍ୟ ନାଶିଲା ଆମ୍ଭର ।୬୩।
ସ୍ୱାମୀ ଦଣ୍ଡ ଦେଖି ତୁମ୍ଭେ ଯେଉଁଥେ ଯାଅସି ଦଣ୍ଡେ ରହ
ମୁଂ ଯେହା ସମାଧାନ କରିବ ଯାଇଂ ତାହାର ତତ୍ତ୍ୱଂ ।୬୪।
ସ୍ୱାମୀ ଆମ୍ଭର ଯେ ରାଜ୍ୟ ଅମର ସ୍ୱର୍ଗ ପଟାନ୍ତର
ତେଣୁକରି ଗନ୍ଧର୍ବେ ଅବା ପେଷିଲେ ବଜ୍ରଧାରୀ ।୬୫।
ଆମ୍ଭକୁ ଜିଣିମାକୁ କେ ସାମରଥ ମାନବ ମାହେ
ସଞ୍ଚଯେ ବିଦ୍ୟାଧର ଅଇଲା ଆମ୍ଭନ୍ତ କଷଣ ନିମନ୍ତେ ।୬୬।
ରାଜାକଇଁ ସମାର୍ଜିଣ ସେ ଚଳଇ ମନ୍ତ୍ରୀବର
ପାଣ୍ଡବ ସନ୍ୟ ଲଗିଅଛନ୍ତ୍ର ପ୍ରଥମ ଗଡ଼ଦ୍ୱାର ।୬୭।
ଭାଙ୍ଗନ୍ତ ପାଷାଣ ଯେ ବଜ୍ର ଗଡ଼ ପାଚେରୀ
ସତ୍ୟସେନ ମନ୍ତ୍ରୀ ବାହାର ହୋଇଲା ପଇଠ ବାକ୍ୟକରି ।୬୮।

ନକୁଳ ସଇନ୍ୟ ସମାର୍ଜଇ ସେ ମନ୍ତ୍ରୀର ଶରଣ ଦେଖି
ରହ ରହ ରାଜାର ମନ୍ତ୍ରୀ ଆସୁଛୁ ଆମ୍ଭର ତତ୍ତ୍ୱଂକ ।୬୯।
ଠାକୁରଂକ ବଚନେ ସେ ଛୁଡ଼ିଲେ ସର୍ବେ ରାଗ
ସମ୍ଭାଳଣ ପ୍ରଡଗ୍ୟାଂ ସେ ହୋଇଲେ ବେନିଭାଗ ।୭୦।
ନକୁଳ ଛାମୁରେ ମନ୍ତ୍ରୀବର ପରଣାମି
ଗଜ ମୁକୁତା ଛାମୁରେ ଥୋଇ ବୋଲଇ ଉତ୍ତର ଦେବସ୍ୱାମୀ ।୭୧।
ଯେ ଦ୍ୱାପର ଯୁଗେ ଆମ୍ଭନ୍ତ ନାହିଂ ଯେତେ ବରୋଧନ୍ତା
ଅମଳାଣ ସୂର୍ଯ୍ୟବଂଶୀ ଯେ ମହୀତଳେ ଜଗୁଜତା ।୭୨।
ସ୍ୱାମୀ ତ୍ରେତୟାଯୁଗେ ଅଯୋଧ୍ୟା ନଗ୍ର ଆଧିପତି
ଇଛାକୁର ବଂଶେ ଜାତ ଦଶରଥ ନୃପତି ।୭୩।
ସହସ୍ରେ ତିନିଶତ ଅନେଶ୍ୱତ ଦଶରଥ ଭାରିଯା
ଦଶ ସହସ୍ର ବରଷ ପରିଯନ୍ତେ ପୁତ୍ରେ ନୋହିଲ ମହାରାଜା ।୭୪।
କପିଳାକୁ ସେବାକଲ ଦଶ ସହସ୍ର ବର୍ଷ ପରିଯନ୍ତେ
ଭଗତେ ସେ ଅନୁଗ୍ରହ କଲକ ଦେବମାତେ ।୭୫।
ପ୍ରସନ୍ନେ ବରଦିଲେ ସେ ଅନାଦି ଶକତି
ଯା ଯା ଦଶରଥ ହୋ ତୋହୋର ଗୃରପୁତ୍ର ହୋଉ ଉତପତି ।୭୬।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଗୃର ଦିଗପାଳେ
ପୁତ୍ର ହୋଇ ଜାତହୋନ୍ତୁ ଯେ ତୋହୋର ତିନି ପାଟରାଣୀଂକର
କୋଳେ ।୭୭।
କଉଶଲ୍ୟା କଇକୟୀ ଯେ ସୁମଇତ୍ରା ତିନିପାଟ
ଯେ ଗୃର ଦିଗପାଳେ ଜାତ ହୋଅନ୍ତୁ ତୋର କଟକ ମୁରାଟ ।୭୮।
ଆହୋ କପିଳାର ବଚେ ରାଜା ରିଷ୍ୟଶୃଙ୍ଗଙ୍କଇଂ ଭଗତି
ସନ୍ତତି ଯାଗକଲ ସେ ବହ୍ମଣ୍ଡେକ ସନ୍ତତି ।୭୯।
ରିଷ୍ୟଶୃଙ୍ଗ ମହାମନ୍ତ୍ରେ ଚରୁ ଜାତକଲ
ତିନି ଭାରିଯାଂକୁ ରାଜା ଚରୁଅନ୍ନ ବାଣ୍ଟିଦିଲ ।୮୦।
ଶ୍ରୀ ରାମଚନ୍ଦ୍ର ଉପୁଜଲେ କଉଶଲ୍ୟାର ଗର୍ଭେ
କଯେକୟୀଂକଠାରୁ ଉତପତି ହୋଇ ଭରଥ ବୀରବର ଦେବେ ।୮୧।
କଉଶଲ୍ୟା କଇକେୟୀ ସୁମିତ୍ରାଂକୁ ଦିଲେ ଯେ ଚରୁ ବେନିଭାଗ ମୁଠି
ସୁମିତ୍ରାଉଂ ଉପୁଜଲେ ଲକ୍ଷ୍ମଣ ଶତ୍ରୁଘନ ବେନିପୁତ୍ର ଗୋଟି ।୮୨।

ସଂସାରେ ଉଦ୍ଧତ ଯେ ହୋଇଲେ ଶ୍ରୀରାମ
ଦଶରଥ ଟେକଲେ ଯେ ରାଜ୍ୟକୁ ମହାଧର୍ମ ।୮୩।
ଶ୍ରୀରାମ ରାଜା ହୋଇବେ ରଜନୀ ପ୍ରଭାତେ
ଆକାଶେ ଆକୁଳ ହୋଇଲେ ସମସ୍ତ ଦଇବତେ ।୮୪।
ଶ୍ରୀରାମ ରାଜା ହୋଇବେ ଯେ ଅଯୋଧ୍ୟା ଭୁବନେ
ସୀତା ଘେନି ପାଟେ ଯେବେ ବସିବେ ରଘୁନନ୍ଦନେ ।୮୫।
ସୀତା ନ ହରିଲେ ରାବଣ ନୋହଇ ପ୍ରାଣେ ନାଶ
କଇକେୟୀ ସୀତାଂକୁ ଯେ ଗ୍ରୁଡ଼ିଲେ ମୁହାଂସ ।୮୬।
କଇକେୟୀଂକୁ ବୋଇଲେ ଦେବେ ଖଳ ଦୂର୍ବଳକୁ ପଠିଆଇ
ଶ୍ରୀରାମଂକୁ ବନବାସ ଦେଉ କଇକେୟୀ ।୮୭।
ଦେବତାଂକ ବଚନେ କଇକେୟୀ ଗ୍ରୁଡ଼ିଲ ମୁହାଂସ
ଦଶରଥଂକୁ ସତ୍ୟ ମନାଯି ବୋଇଲେ ଶ୍ରୀରାମ ଯାଉ ବନବାସ ।୮୮।
ବୃଦ୍ଧକାଳେ ଦଶରଥଂକର କଇକେୟୀ ସୁଭାଗି ଭାରଯା
ତେଣୁକରି ମୋହେ ବଶ୍ୟ ହୋଇଲେ ଦଶରଥ ମହାରାଜା ।୮୯।
ଭରଥେଣ ରାଜ୍ୟ ଦେଇ ଶ୍ରୀରାମ ବନଗାମୀ
ଲକ୍ଷଣ ସୀତାକଇଂ ଘେନି ଶ୍ରୀରାମ ହେଲେ ବନଗାମୀ ।୯୦।
ଚଉଦ ବରଷକୁ ସ୍ୱାମୀ ଗଲେ ବନବାସ
ଦଣ୍ଡକା ଅରଣ୍ୟେ ଯାଇଂ ହୋଇଲେ ପରବେଶ ।୯୧।
ପର୍ଣ୍ଣକୁଟୀ କରି ରାମ ଯେ ବନସ୍ତରେ ରହି
ସୂର୍ପଣଖା ନାସା ଶ୍ରବଣ ଛେଦନ କଲେ ତହିଂ ।୯୨।
ଶୋକେଣ ଗୁହାରି କଲା ଯେ ରାବଣର ଆଗେ
ମାୟାମୃଗ ଘେନି ରାବଣ ଯେ ଗଲା ବେଗେ ।୯୩।
କନେକ ମୃଗ ଦେଖି ବୋଇଲେ ଜନକ ଦୁହିତା
ମୃଗ ମାରି ମୋତେ ଦିଅସି ଆହେ ରଘୁପତି ।୯୪।
ମୃଗ ମାରିବାରେ ଯେ ଚଳିଲେ ରଘୁସାଇଂ
ତପସୀ ରୂପେ ରାବଣ ଭିକ୍ଷା ମାଗିଲାକ ଯାଇଂ ।୯୫।

୮୩।୨ ଦଶରଥ ରାଜାଙ୍କୁ ଯେ କଲେ ମହାହୋମ । (ଡ)

ମୃଗରୂପ ହେଲା ରଖ ରଖ ଲକ୍ଷଣ
ସୀତାୟା ବୋଇଲେ ବାବୁ ଶୁଣସି ଲକ୍ଷ୍ମଣ ।୯୬।
ଶ୍ରୀରାମଂକୁ ବିପତ୍ତି ପଡ଼ିଲା ତୁମ୍ଭେ ଯାଅସି ବହନ ।୯୭।
ବେନିଭାଇ ଯତ୍ନଂ ସେ ଗଲେ ମୃଗ ମାରି
ରାବଣ ହରିନେଲା ଯେତେଣେ ଜନକ କୁମାରୀ ।୯୮।
ମୃଗମାରି ବେଗେ ଯେ ଅଇଲେ ବେନିଭାଇ
ଦେଖିଲେ ପର୍ଣ୍ଣକୁଟୀ ଭିତରେ ସୀତାୟା ଦେବୀ ନାହିଂ ।୯୯।
ମୂର୍ଚ୍ଛାଗତ ହୋଇ ରାମ ରୋଦନ୍ତି ବିକଳେ
କେ ମୋହୋର ସୀତାୟାକୁ ହରିନେଲା ବଳେ ।୧୦୦।
ଜଟାୟୁ ସମ୍ମୁଖରୁ ରାମ ବାରତା ସେ ପାଇ
ବାଳିକି ବଧକଲେ ସୁଗ୍ରୀବ ସଙ୍ଗେ ମଇତ୍ର ହୋଇବା ।୧୦୧।
କପିବଳମାନେ ସପକ୍ଷ ହୋଇଲେ ଯାଇ ।୧୦୨।
ହନୁମନ୍ତର ବଚନେ ସେ ସପତଶାଳ ବିନ୍ଧି
ପର୍ବତ ଉପାଡ଼ି ରାମ ସେତୁବନ୍ଧ ବାନ୍ଧିଲେ ବାରିନିଧି ।୧୦୩।
ରାମ ରାବଣର ଯେ ହୋଇଲା ସଂଗ୍ରାମ
ଅସୁରବଳ ଧଂସିଲେ ଦେବ ଯେ ଶ୍ରୀରାମ ।୧୦୪।
କୁମ୍ଭକର୍ଣ୍ଣ ଯମଘଣ୍ଟ ଅକ୍ଷୟ ଇନ୍ଦ୍ରଜିତ
ତେର ଦିବସ ସାଂଗ୍ରାମେ ପଡ଼ିଲେ ଅସୁର ଅପ୍ରମିତ ।୧୦୫।
ବିଂଶ ଅଂକୁଶ ଯେ ରାବଣର ସଇନ୍ୟ
ଚଉଦ ଦିନେ ପଡ଼ିଲା ରାବଣ ଯେତେକ ସଇନ୍ୟ ଘେନି ।୧୦୬।
ବିଭୀଷଣ ବେ ଲକର ରାବଣର ଅନୁଜ
ଶରଣ ରଖି ତାହାକଇଂ ରାମଚନ୍ଦ୍ର ଦିଲେ ଲଂକା ରାଜ୍ୟ ।୧୦୭।
ସୀତାଂକୁ ଅଗ୍ନିପରୀକ୍ଷା କଲେ ସଂସାର ଅପଖ୍ୟାତି
ବହ୍ନି ଅନଳ ଭେଦି ଦେବୀ ହୋଇଲେ ଉତପତ୍ତି ।୧୦୮।
ଲଂକାରେ ଥୁହାଇଲେ ରାଜ୍ୟ ସମର୍ପି ବିଭୀଷଣ
ଅଯୋଧ୍ୟାକଇଂ ଅନୁକୂଳ କଲେକ ଆପଣ ।୧୦୯।
ମକର ଶୁକଳପକ୍ଷ ଯେ ତ୍ରୟୋଦଶୀ ଦିନେ
ବୃହସ୍ପତି ବାର ପୁଷ୍ୟା ନକ୍ଷତ୍ର ଅମୃତ ଯୋଗ ବିଦ୍ୟମାନେ ।୧୧୦।

*

ପ୍ରତ୍ୟେକ ଆରୋହଣ ସେ ଆସନ୍ତି ଦେବ ବେଗେ
ବାହୁଡଣ ଶ୍ରୀରାମ ଆସନ୍ତି ଉତ୍ତର ଯେ ଦିଗେ ।୧୧୧।
ଶ୍ରୀରାମେଶ୍ୱର ଲିଙ୍ଗ ପୂଜିଲେ କଦଳୀ ବଣ ଜିଣି
ଶ୍ରୀଗିରି ପର୍ବତେ ବିଜେକଲେ ଶ୍ରୀରାମଚନ୍ଦ୍ର ରଘୁମଣି ।୧୧୨।
ପ୍ରବେଶ ହୋଇଲେ ସ୍ୱାମୀ ଆସି ଚଉଂଶ ପର୍ବତେ
ଶୁଭଯୋଗେ ବିଜେକଲେ ରାମ ଆସି ଯେତେ ।୧୧୩।
ପର୍ବତ ଉପାଡି ହନୁମନ୍ତ କଲେ ଯେତେ ଗଡ
ଶ୍ରୀରାମ ବିଜେକଲେ ସେ ବିଜୟା ନାମ କଟକର ।୧୧୪।
ସୀତାୟା ଗୋସାମଣି ଯେତେ ହୋଇଲେ ପାଚାସ୍ୱତ୍ତି
ଶ୍ରୀରାମଚନ୍ଦ୍ର ଯେତ୍ଥି ରହିଲେ ସପତ ଦିବସ ସପ୍ତରାତ୍ରି ।୧୧୫।
ଶୁଦ୍ଧ ସ୍ନାହାନ ଯେତେ ହୋଇଲେ ଜନକ କୁମାରୀ
ଶୃଙ୍ଗାର ଭଜିଲେ ଯେତେ ଦେବ କୋଦଣ୍ଡ ଗୃପଧାରୀ ।୧୧୬।
ରମଣେ ଧାତୁ ଯେ ଉପେଖିଲେ ରଘୁପତି
ଚନ୍ଦ୍ରଂ ସଇନ୍ଦୁ ପୁତ୍ରେକ ଯେ ହୋଇଲା ଉତପତ୍ତି ।୧୧୭।
ଶ୍ରୀରାମଚନ୍ଦ୍ରଂକର ଯେ ଅମୋଘ ଶୁଦ୍ଧ ଧାତୁ
ସଇନ୍ଦୁ ସମ୍ଭୂତ ହୋଇଲା ଯେବଣ ରେତୁ ।୧୧୮।
ସେ ପୁତ୍ରକଇଂ କୋଳେ ଧରଣ ରଘୁନାଥ
ସେ କୁମାରର ନାମ ଯେ ଦିଲେକ ଋତୁପର୍ଣ୍ଣ ।୧୧୯।
ମନ୍ତ୍ରୀବର ବୋଇଲା ଦେବ ଶୁଣିମା ସାବଧାନେ
ଋତୁପର୍ଣ୍ଣ ନୃପତି ଯେ ବିଜୟା ନଗ୍ରଥାନେ ।୧୨୦।
ଶ୍ରୀରାମଙ୍କ ଉତପତ୍ତି ଯେ ଅମଳାଣ ସୂର୍ଯ୍ୟବଂଶୀ
ଯେତେ ମର୍ତ୍ତ୍ୟ ସ୍ୱର୍ଗରେ ରାଜା ହୋଇ ଯେତେ ନୁଆରନ୍ତି ପଶି ।୧୨୧।
ତୁ ଦେବ କେବଣ ଯେ ଆକାଶର ଦିଗପାଳ
ଯେତେ ରାଜ୍ୟ ଭଞ୍ଜିଣ ଯେ ନାଶିଲୁ ବହୁତ ବଳ ।୧୨୨।
ନକୁଳ ବୋଇଲେ ସେ ମନ୍ତ୍ରୀବର ବଚନେ
ତୋହୋର ପରାୟେ ମନ୍ତ୍ରୀ ଥାଉଂ ରାଜ୍ୟ କଂପା କରାଇଲୁ
ଧ୍ୱଂସନେ ।୧୨୩।

୧୧୮।୨ ସନ୍ଧ୍ୟା ସମ୍ଭୂତ ହୋଇ ଚଳିଲା ଯେବଣ ରେତୁ । (ଙ,ଅ)

ମୁହିଂ ହୋଇବେ ସୋମବଂଶେ ଅଟଇ ଉତପତ୍ତି
ଯୁଧିଷ୍ଠିରଦେବ ଠାକୁରେ ହସ୍ତିନାପୁରେ ଚକ୍ରବର୍ତ୍ତୀ ।୧୨୪।
ରାଜସୂୟ ଯାଗ ହୋ କରିବାର ନିମନ୍ତେ
ଦକ୍ଷିଣ ଦିଗେ ବିଜେକଲା ରାଜାମାନଙ୍କ ନିମନ୍ତିବା ଅର୍ଥେ ।୧୨୫।
ତେଣୁ ସେ ସାଂଗ୍ରାମ ତୁମ୍ଭେ କଲ ହୋ ନ ଜାଣି
ତୁମ୍ଭର ବୁଦ୍ଧିରେ ଧ୍ୱଂସ ନ କରାଇଲ କଥା ଅପ୍ରମାଣି ।୧୨୬।
ଯୁଧିଷ୍ଠିରଦେବଂକର ଯେ ଅନୁଜ ଭୀମସେନ
ସେ ପଶ୍ଚିମ ଦିଗରୁ ଆସୁଛନ୍ତି ଘେନି ରାଜାଗଣମାନ ।୧୨୭।
ଉତ୍ତର ଦିଗକୁ ଯେ ଗଲେ ଫାଲଗୁନି
ତ୍ରିଳଶ ସହସ୍ର ରାଜା ଆସିବେ ସେହୁ ଘେନି ।୧୨୮।
ଅର୍ଜୁନର କନିଷ୍ଠ ମୁଂ ମୋହୋର ନାମ ନକୁଳ
ମୁହିଂ ନେମଇ ଦକ୍ଷିଣ ଦିଗର ସମସ୍ତ ମହୀପାଳ ।୧୨୯।
ନକୁଳର ବଚନେ ସେ ଚଳିଲା ମନ୍ତ୍ରୀବର
ବାରତା କହିଲା ଯାଇଂ ଋତୁପର୍ଣ୍ଣ ରାଜାର ଛାମୁର ।୧୩୦।
ବାରତା ଶୁଣିଣ ସେ ଆପଣେ ନୃପତି
ଡେରୁ ବାହାର ରାଜା ହୋଇଲା ତତକ୍ଷଣାନ୍ତି ।୧୩୧।
ସହସ୍ରେକ ଭାର ସେ ପାଣିଦ୍ରବ୍ୟ ଘେନି
ନକୁଳ ଛାମୁରେ ଆସି ପ୍ରବେଶ ନୃପମଣି ।୧୩୨।
ନକୁଳ କୁମାର ଯେ ରଥ ତେଜ୍ୟାକରି
ଋତୁପର୍ଣ୍ଣକଇଂ ନମସ୍କାର କଲା ଭଗତି ବିସ୍ତରି ।୧୩୩।
ଆହୋ ନକୁଳକୁ କୋଳେଣ ବସାଇଲା ସେ ଋତୁପର୍ଣ୍ଣ
ଅନେକ ରତ୍ନ ଆଭରଣ କରି କଲା କୋଳ ସମ୍ଭାଷଣ ।୧୩୪।
ଅନେକ ପୁରୁଷାର୍ଥେ ରାଜ୍ୟେ ଉଚ୍ଛବ କରାଇ
ବହୁତ ସମ୍ଭବେ ସମାର୍ଜଇ ରାଜସାଇଂ ।୧୩୫।
ବାବୁ ମୁହିଂ ସୂର୍ଯ୍ୟବଂଶୀ ହୋ ଶ୍ରୀରାମଚନ୍ଦ୍ରଂକର ବାଳ
ଶ୍ରୀରଘୁନାଥଂକ ପ୍ରସନ୍ନେ ମୁହିଂ ବଞ୍ଚିଲ ଯେତେ କାଳ ।୧୩୬।
ତୋହୋର ଗୁଣ ସରୂପ ମୁଂ ନୁଆରିଲ ଚହ୍ନି
ଅଦୋଷେ ନାଶଗଲେ ଯେତେ ମୋହୋର ସଇନି ।୧୩୭।

ନକୁଳ ବୋଇଲେ ତୁମ୍ଭେ ଶୁଣ ଦଣ୍ଡଧାରୀ
ଯମପ୍ରଶସ୍ତକୁ ଯାଅ ଯା ତୋହୋର ସମଦଣ୍ଡ ସାକକରି ।୧୩୮।
ଯେତେ ପାଶଦଣ୍ଡ ଥାଠ ତୋହୋର ସଇନ
ସମ୍ମୁଖ ହୋଇଣ ଯାଅସି ତୋହୋର ଦେଖା ଦରଶନ ଧନ ଘେନ ।୧୩୯।
ନିମନ୍ତ୍ରଣ ଯୋଗାଡ଼ ଯେ ହେଲେକ ନକୁଳ କୁମାର
ଋତୁପର୍ଣ୍ଣ ବୋଇଲା ବାବୁ ତୁମ୍ଭେ ମୋହୋର ବୋଲକର ।୧୪୦।
ଉଜକ ତୁମ୍ଭେ ମୋହୋର ଭୁବନରେ ରହ
ବାଞ୍ଛାସିଦ୍ଧି ହୋଉ ମୋହୋର ପୂରେ କରିବା ମୁଣୋହ୍ମ ।୧୪୧।
ନକୁଳ ବୋଇଲେ ରାଜା ମୁଂ ବହନ ହୋଇଯିବ
ରାଜାମାନନ୍ତ ସବୁନ୍ତ ମୁହ୍ମ ଯେ ସାଧିବ ।୧୪୨।
ସାତସହସ୍ର ରାଜା ମୁଂ ସାଧିବ ନଉଦିନେ
ମହା ମହା ଦୁର୍ଦ୍ଦଣ୍ଡ ସେଥେ ବସନ୍ତ ରାଜାମାନେ ।୧୪୩।
ନଉଦିବସେ ସାଧି ହୋଇବେ ଗୃହଉଣା ଲକ୍ଷେକ ନୃପତି
ସେଥୁଂ ହନେକ ବିଳମ୍ବ ହୋଇଲେ ବାସୁଦେବର କୋପେ ବ୍ରତ ।୧୪୪।
ଋତୁପର୍ଣ୍ଣ ରାଜାକଇଂ ଚଳାଇ ମାଦ୍ରୀ ଦେବୀର ବଳା
ପଶ୍ଚିମ ମୂରତ ହୋଇ ତହୁଂ ଚଳଣ ଯେ ଗଲା ।୧୪୫।
ବଦସୁନ୍ତ ଅଗସ୍ତି ହୋ ଶୁଣ ବଇବସୁତ ମନୁ
ବିଜୟା ନଗ୍ରୁଂ ବାହାର ହୋଇଲେ ରେହନ୍ତ ସାରଥିକୁ ଘେନି
ଅଶ୍ୱିନୀ କୁମାରଂକ ତନୁ ।୧୪୬।
ତୁଳମାସ କୃଷ୍ଣପକ୍ଷ ଯେ ଅମାବଇ ଚନ୍ଦ୍ରବାର
ସ୍ୱାତି ନକ୍ଷତ୍ର ତୁଳାରାଶି ଯେ ଭୋଗ ସେ ହିନର ।୧୪୭।
ଶକୁନି ନାମେ କରଣ ନାଗନାମେ ଯୋଗ
ତୁଳ ସଂକ୍ରାନ୍ତକ ସପ୍ତବଂଶ ହିବସ ଯୋଗ ଭୋଗ ।୧୪୮।
ସେହିନ ନକୁଳ କୁମାର ତହୁଂ ସମଦଣ୍ଡ ଚଳାଇ
ରୁଦ୍ରଗିରି ପର୍ବତେ ପ୍ରବେଶ ହୋଇଲେ ଯାଇଂ ।୧୪୯।
ବାଜନ୍ତ ବୀରତୂର ଯେ ଠମକ ନିଶାଣ
ମହୀ ହାହୋଳ ହୋଉଛି ପଡନ୍ତେଣ ବଜ୍ରବାଣ ।୧୫୦।
ମାନଧାତ୍ରୀ ବୋଲକରି ସେକଇ ନଦୀଗୋଟି
ବଷ୍ଟୁଭଦ୍ରାଉଂ ସେ ଦକ୍ଷିଣ ଭାଗୁଂ ଫୁଟି ।୧୫୧।

ସାଗର ସଙ୍ଗମେ ସେ ଅଭୟେ ଧବଳାଙ୍ଗୀ
ଚର୍ମ୍ମଂର କୂଟଳ ଦେଖିଲେ ସେ ବିରୂପାକ୍ଷ ପରମ ଯୋଗୀ ।୧୫୨।
ମଙ୍ଗଳ ମେଖଳ ନୀଳବର୍ଣ୍ଣ ନନ୍ଦେକ କନକ ପିଙ୍ଗଳକଣ୍ଠ
ଗଙ୍ଗା ଯମୁନା ସରସ୍ୱତୀ ବହଇ ସେ ତ୍ରିଧାର ରୁଦ୍ର ସଉକଣ୍ଠ ।୧୫୩।
କରେଣ ହି ଦଣ୍ଡ ଯେ ସୀତାଂଶୁ ମଣ୍ଡଳ
ଜଳଦ ନୀଳଦ ଅନଳ ଦୀପିତ କାପାଳୀ ।୧୫୪।
ଅଜପା ଯୋଗ ହଟେ ପିତାର ଶିର ମୋଡ଼ି
କ୍ଷିଶ୍ରମ୍ନା ମନ୍ତ୍ର ସାଧି ବ୍ରହ୍ମହତ୍ୟା ପାରକର ।୧୫୫।
କପିଳାର ମୁଣ୍ଡ ଯେ ମୋଡ଼ିଲେ ବାଳକାଳେ
ମାଇଲେ ଗାଇତଶ୍ମ ଯେ ଖେଡ଼ର କୁତୂହଳେ ।୧୫୬।
ଭଇରେବୀ ରୂପେଣ ଗୋମାତାର ଚିହ୍ନ ବହ୍ନି
ନାରୀକୁଳ ନାଥ ପ୍ରସନ୍ନେ ରୂପ ସେହ୍ନି ।୧୫୭।
ଦେଖିଣ ବିସ୍ମରଇ ସେ ମାଦ୍ରୀଦେବୀର ବଚ୍ଛ •
କେବଣ ପୁରୁଷ ନାଥ ଅଦଭୁତ ପ୍ରତକ୍ଷ ।୧୫୮।
ସ୍ୱରୂପେ ଯୋଗେଶ୍ୱର ଅଗ୍ୟାନକୁ ଗ୍ୟାନବନ୍ତ
ପରମାନନ୍ଦ ଯୋଗୀପ୍ସେ ପ୍ରତକ୍ଷେ ବିଶ୍ୱନାଥ ।୧୫୯।
ରଥରୁ ଓହ୍ଲାଇ ସେ ପାଣ୍ଡବ ବୀରମଣି
ସ୍ଥମ୍ଭରେ ଦ୍ରଶନ କଲ୍ଲ ପିନାକୀ ଶୂଳପାଣି ।୧୬୦।
ମଜ୍ଜନବ୍ରତେ ମହାତମା ସେ ନ ହଅଇ ସମ୍ଭାଷି
ବନସ୍ପୃଷ୍ୱବ ହୋଇ ସେ ନକୁଳ ବୀର ଋଷି ।୧୬୧।
ପ୍ରସନ୍ନେଣ ଆଗ୍ୟାଂ ଯେ ହଲେକ କାପାଳୀ
ସାଧୁରେ ନକୁଳ କୁମର ତୋର ପ୍ରାକ୍ରମ ମହାବଳୀ ।୧୬୨।
ଛତ୍ରୀବର ସୋହଜ୍ଞ ତୁ ପ୍ରତଗ୍ୟାଂ ବଳବନ୍ତା
ମହାଭାର ଉଦ୍ଧାରେଣ ତୁ ପ୍ରଚଣ୍ଡ କୁନ୍ତହସ୍ତା ।୧୬୩।
ଅନେକ ପ୍ରଶଂସା ଯେ କଲେ ବିଶ୍ୱନାଥେ
ଜଗୁକତା ଖଡ଼ଗ ଦଲେ ନକୁଳ କୁମାରର ହାତେ ।୧୬୪।

---

୧୬୨।୨ ସାଧୁରେ ନକୁଳ କୁମର ତୋର ବଂଶେ ମହାବଳୀ ।
(ଛ,ଙ,ଖ,ଜ)

ଅନେକ ସ୍ତୁତି ବୋଲି ନକୁଳ ପରଣାମି
ପ୍ରସନ୍ନେ ଆଜ୍ଞା ତାଙ୍କୁ ଦିଲେ ଦେବସ୍ୱାମୀ ।୧୬୫।
ଯାଆସି ନକୁଳ ହୋ ତୋତେ ସମସ୍ତ ହେଉ ସାଧି
ଦକ୍ଷିଣ ଦିଗେ ଜଣ ଭୁ ସମସ୍ତ ମହାଯୋଧୀ ।୧୬୬।
ଉତ୍ତର ଦିଗ ସାଧ୍ୟ ହୋଇଲାନି ଅର୍ଜୁନ ବୁଦ୍ଧି ବଳେ
ରାଜାମାନନ୍ତ ନିମନ୍ତ୍ରିଣ ଯେବେ ସେ ପ୍ରବେଶ ଅମର ମଣ୍ଡଳେ ।୧୬୭।
ନକୁଳ ଅକ୍ଷତ ଗୁଆ ଦିଲେ ସେ ବିରୂପାକ୍ଷ ଦେବସ୍ୱାମୀଙ୍କ
ତୁମ୍ଭେ ବିଜେ କରିବା ରାଜସୂୟ ଯାଗ ଦେଖି ।୧୬୮।
ସାନନ୍ଦେ ପ୍ରସନ୍ନ ଯେ ହୋଇଲେ ବିରୂପାକ୍ଷ
ହେମବନ୍ତେ ବରିଲାନି ଆମ୍ଭନ୍ତ ତୋର ଜ୍ୟେଷ୍ଠଭ୍ରାଥ ବିବସ୍ତ୍ର ।୧୬୯।
ନକୁଳଙ୍କୁ ଅନେକ କହିଲେ ଦେବ ଗ୍ୟାନ
ତତକ୍ଷଣ ବିରୂପାକ୍ଷ ସ୍ୱାମୀ ହୋଇଲେ ଅନ୍ତର୍ଧାନ ।୧୭୦।
ତତକ୍ଷଣ ସେ ବିଜେକଲେ ମାଦ୍ରୀଦେବୀର ନାନ
ରେହନ୍ତ ସାରଥି ବାହଇ ବେଗେ ଯାନ ।୧୭୧।
ବିଜୟେ ମାଦ୍ରୀନନ୍ଦନ ଯେ କାବେରୀ ପ୍ରଶସ୍ତେ
ବହଇ ପୁଣ୍ୟଜଳ ନିର୍ମଳ ସେତୁ ତୀର୍ଥେ ।୧୭୨।
ବହଇ କାବେରୀ ନଦୀ ଈଶାନ୍ୟ ଭଗିନୀ
ସେ ନଦୀରେ ସ୍ନାହାନ କଲେ ପାଣ୍ଡବ ସଇନ ।୧୭୩।
ବୀରତୂର ଶବଦ ଯେ ଉଚ୍ଛୁଳଇ ଘୋରନାଦ
ଅନେକ ରାଜ୍ୟକୁ ଶୁଭଇ ପାଣ୍ଡବ ବୀରର ଚମକ ଶବଦ ।୧୭୪।
ବିଜୟନଗ୍ରେ ଯତ୍ନ ଶୁଣିଲେ ସର୍ବସାଧି
ସମଦଣ୍ଡ ଘେନି ଆସନ୍ତ ସମସ୍ତ ମହାଯୋଧୀ ।୧୭୫।
ନକୁଳ ବିଜେ କରିଅଛନ୍ତି ଶ୍ରୀଗିରିବର ଉପରେ
ରାଜାଏ ଦ୍ରଶନ ଆସି କରନ୍ତି ସମ୍ଭରେ ।୧୭୬।
କାଞ୍ଚିରାଜା ଯେ ଆଜାନୁ ଚକ୍ରବର୍ତ୍ତୀ
ସେ ରାଜାକୁ ଖଟଇ ବତିଶ ସହସ୍ର ହାଥୀ ।୧୭୭।
ରଥ ମଣ୍ଡିତ ପାଦାନ୍ତ ପାଞ୍ଚ କ୍ଷଉଣୀ ଖଟଇ
ବଡ ପୁଣ୍ୟବନ୍ତ ରାଜା ସେ କାବେରୀ ନଦୀତଟଇ ।୧୭୮।

କାଞ୍ଚି ନଗ୍ର ବୋଲି ଯେ ତାହା ଜାଣି
ବହଇ କାବେରୀ ଯେ ଭେଟଇ ଉଜାଣି ।୧୭୯।
ଦେଶାନ୍ତରେ ବାରତା କହିଲେ ରାଜାର ଅଗ୍ରତେ
ଶୁଣିମା ଦେବ ସାବଧାନେ ପରରାଷ୍ଟ୍ରର ବାରତେ ।୧୮୦।
ସୋମବଂଶର ରାଜା ଯୁଧିଷ୍ଠିର ନରପତି
ବ୍ରହ୍ମହତ୍ୟା କଲେ ତାହାଂକର ପିତା ପଣ୍ଡୁ ମହାରଥୀ ।୧୮୧।
ତହିଂର ନିମନ୍ତେ ଦେବ ରାଜସୂୟ ଯାଗ ସଭା
ଲକ୍ଷେ ନୃପତି ଆସିବେ ସମସ୍ତ ରାଜଦେବା ।୧୮୨।
ଆକାଶୁଂ ଆସିବେ ସମସ୍ତ ବୃନ୍ଦାଅର୍କେ
ପାତାଳ ଜଗତୁଂ ଯେ ଆସିବେ ନାଗଲୋକେ ।୧୮୩।
ଆପଣେ ଯାଗ ସଜ୍ଜା କରନ୍ତି ଜଗନ୍ନାଥେ
ଯେବଣ ରାଜା ନ ଯିବେ ନାଶିବେ ଶସ୍ତ୍ରଘାତେ ।୧୮୪।
ପଶ୍ଚିମେ ଭୀମସେନ ଉତ୍ତରେ ଅରଜୁନ
ଦକ୍ଷିଣେ ନକୁଳ କୁମାର ସହଦେବ ଈଶାନ ।୧୮୫।
ସ୍ୱାମୀ ଚରଗଣ ଲକ୍ଷେକ ରାଜାନ୍ତ ନିମନ୍ତି
ବହୁତ ଶାସ୍ତି ପାଇଲେ ଦେବ ବିଜୟା ନଗ୍ରର ଭୃଗୁପତି ନୃପତି ।୧୮୬।
ସମଦଣ୍ଡ ସାଜ ଦେବ ବେଗେ ରାଜସୂୟଯାଗକୁ ଯିବା
ତୁଙ୍ଗଭଦ୍ରା ନଦୀକୂଳେ ଯାଇଂ ଦର୍ଶନ କରିବା ।୧୮୭।
ଚରଗଣ ମୁଖୁଂ ବାରତା ପାଇ ମନ୍ତ୍ରୀକ ପଚାର
ମନ୍ତ୍ରୀ କହଇ ରାଜାକୁ କରପଦ୍ମ ଯୋଡି ।୧୮୮।
ସ୍ୱାମୀ ସାମାନ୍ୟ ବଳ ଘେନି ଚଳି ଯିବା ଶ୍ରୀଗିରି ପର୍ବତେ
ଆମ୍ଭ ରାଜ୍ୟକୁ ନକୁଳ ଘେନି ଆସିବା ବହୁତ ପୁରୁଷାର୍ଥେ ।୧୮୯।
ଦର୍ଶନେ ପ୍ରସନ୍ନ ଦେବ ପ୍ରସନ୍ନେ କାର୍ଯ୍ୟସିଦ୍ଧି
ଯୁଗତେ ନ ଗଲେ ସ୍ୱାମୀ ହୋଇବା ମନ୍ଦବୁଦ୍ଧି ।୧୯୦।
ମନ୍ତ୍ରୀର ବଚନେ ରାୟେ ସାଜିଲେ ସମଦଣ୍ଡ
ବହୁତ ବାଦ୍ୟ ଶବଦେ କମ୍ପିଲା ଭୂଅଖଣ୍ଡ ।୧୯୧।
ବେନିଶତ ଘରଯା ତୁଲେଣ କୁମର ଚର
ଶ୍ୱେତଅଶ୍ୱେକ ଆରୋହିଲେ ସେ କାବେରୀ ଦଣ୍ଡଧାରୀ ।୧୯୨।

ବିଜୟେ ନୃପତି ଯାଇଂ ଶ୍ରୀଗିରି ପର୍ବତେ
ନକୁଳଙ୍କୁ ଦର୍ଶନ କରଇ ସେ ପ୍ରସନ୍ନ ମଳୟନାଥେ ।୧୯୩।
ଯେମନ୍ତର ସମୟେ ସେ କାବେରୀ ଦେଶର ରାୟେ
ନକୁଳ ଛାମୁରେ ସେହୁ ଦର୍ଶନ ଯାଇଂ କୟେ ।୧୯୪।
ନକୁଳ ବିଜେ କରିଛନ୍ତି ଦିବ୍ୟ ସିଂହାସନେ
ପର୍ବତ ତଳେ ଦର୍ଶନ କରୁଛନ୍ତି ସେ କାବେରୀ ଦେଶର
ରାଜାମାନେ ।୧୯୫।
ଏହାନ୍ତ ସାରଥି ଜଣାଇଲେ ନକୁଳଙ୍କୁ
ବାବୁ କାଞ୍ଚନଗ୍ର ରାଜା ଯେ ଦର୍ଶନ କରଇ ତୁମ୍ଭୁ ।୧୯୬।
ବଡ ପୁଣ୍ୟବନ୍ତ ରାଜା ଯେ ଦକ୍ଷିଣ ପ୍ରଦେଶେ
ମହାଲକ୍ଷ୍ମୀ ବିଜେ କରିଥାଇ ନଗ୍ର ଚଉପାଶେ ।୧୯୭।
ସ୍ୱାମୀ ପୂର୍ବେ ରାଜ୍ୟ କରୁଥିଲା ଯେଥେଂ ମହେନ୍ଦ୍ର ନୃପତି
ବିଷ୍ଣୁର ବଳ୍ଲଭାଙ୍କୁ ହୋଇଲା ଅନେକ ଭଗତି ।୧୯୮।
ସେ କମଳାର ପ୍ରସନ୍ନେ ତାହାର ଅତୁଟ ଯେ ରାଜ୍ୟ
ବ୍ରତନ୍ତି ଯାବତ କାଳେ ଯେ ସଂସାର ଅଇଶ୍ବର୍ଯ୍ୟ ।୧୯୯।
ଘରେ ଘରେ କମଳା ଯେଥେଂ ଥାନ୍ତି ବିଜେକରି
ଅଳକା ଭୂବନ ଜାଣି ଯେ କାଞ୍ଚନଗ୍ର ପୁରୀ ।୨୦୦।
କନେକରେ ଘଟଣ ଯେ ସର୍ବୁଂକର ଗୃହବାସ
ସର୍ବୁଂକର ପୀଡାରେ ବସଇ ସୁବର୍ଣ୍ଣ କଳସ ।୨୦୧।
ନେତର ପାତାଙ୍ଗ ଯେ ଉଡନ୍ତି ଘରହର
ବିଷ୍ଣୁର ଭୂବନ ଜାଣି ଯେ ରାଜାର ସମ୍ଭାର ।୨୦୨।
କଟକର ମଧ୍ୟେ ନବଲକ୍ଷ ଘର ବସଇ
ସୁବର୍ଣ୍ଣର ପାଚେରୀ ଯେକ ଯୋଜନ ପଞ୍ଚଦଶଇ ।୨୦୩।
ଯେ ଦକ୍ଷିଣ ଦିଗରେ ଯେ ମହାପୁଣ୍ୟ ଭୂମି
ସତ୍ୟଯୁଗେ ଯେଥେଂ ଯାଗକଲା ମାହେନ୍ଦ୍ର ରାଜସ୍ୱାମୀ ।୨୦୪।

---

୧୯୩।୨ ନକୁଳଙ୍କଇଂ ଦର୍ଶନ କରଇ ପ୍ରସନ୍ନ ଶଲ୍ୟନାଥେ । (ଙ,ଥ)
୧୯୭। ବଡ ପୁଣ୍ୟବନ୍ତ ରାଜା ଯେ ଦକ୍ଷିଣ କଉଶଲେ
ମହାଲକ୍ଷ୍ମୀ ବନ୍ଧିତ ଯେ ଅଟଇ ସର୍ବକାଳେ ।
୧୯୭।୨ ମହାଲକ୍ଷ୍ମୀ ବନ୍ଧିତ ଯେ ବିଜୟ । ନଗ୍ରବାସେ । (ଙ,ପ)

ପ୍ରସନ୍ନେ କାବେଶ୍ୱ ଦେବ ସର୍ବଦ୍ୱାରେଣ ଭେଟଇ
ଧନେଣ ଗାଡ ସେ ରାଜ୍ୟେ କୁବେର ସମାନ ଅଟଇ ।୨୦୫।
ରେବନ୍ତର ବଚନେ ନକୁଳ ତୋଷମନେ
ରାଜାକୁ ଦୃଷ୍ଟିପାତ କଲେ ଅବଲୋକନ ନୟନେ ।୨୦୬।
ପୁଣ ପୁଣ ପ୍ରଣପତ୍ୟ ରାଜା ନକୁଳ ପାଦତଳେ
ସନ୍ନିଧେ ଆଣିଲେ ତାକୁ ମାଦ୍ରୀଦେବୀର ବାଳେ ।୨୦୭।
ଉଠ ଉଠ ବୋଲି ଆଜ୍ଞାଂଦଲେ ମାଦ୍ରୀଦେବୀର ବାଳେ
ପୁଣ ପୁଣ ପ୍ରଣପତ୍ୟ ରାଜା ନକୁଳ ପାଦତଳେ ।୨୦୮।
ସପତସର ମାଳା ମୁକୁତା ରତ୍ନ ଯେଜ୍ଞ
ସହସ୍ରେକ ମାଳା ଆଣି ଦଲେ ରାଜାର ସଇନ୍ୟ ।୨୦୯।
ସପତସର ମାଳା ଯେଜ୍ଞ ଆଜାନୁ ଚନ୍ଦ୍ରବର୍ତ୍ତି
ନକୁଳର କଣ୍ଠେ ଭୂଷଣ କଲେକ ଶାନ୍ତମୂର୍ତ୍ତି ।୨୧୦।
ମୁକୁଟ ସୀମନ୍ତିମା ବାହୁଟି ଜଗଦଳା
ତାଡ଼ ପୃଷ୍ଠ୍ୟ ସରଳ ଯେ ଅଞ୍ଚଳ ହୃଦେ ମାଳା ।୨୧୧।
ଅନେକ ରତ୍ନ ଯେଜ୍ଞ ସେ କାଞ୍ଚନଗ୍ର ରାଜା
ନକୁଳ କୁମାର ପାଦେ କରଇ ଦିବ୍ୟପୂଜା ।୨୧୨।
ଶ୍ରୀ ମଲ୍ଲିକା ଅଞ୍ଜନ ନାଥ ଦର୍ଶନ ନିମନ୍ତେ
ଶ୍ରୀରାମ ଜଙ୍ଗମ ବୋଲି ତହିଁର ପ୍ୟେକ ନୃପତେ୍ୟ ।୨୧୩।
ରୁଦ୍ରଚନ୍ଦ୍ର ବହଇ ସେ କଷ୍ୟା ବସନ ଜଟାଧାରୀ
ଶ୍ରୀଗିରି ପର୍ବତେ ସେ କ୍ଷେତ୍ର ଅଧିକାରୀ ।୨୧୪।
ଶ୍ରୀରୁଦ୍ର ମଲୟୂ ନାଥ ସ୍ୱାମୀଂକ କରନ୍ତ ପୂଜା
ତିନିଲକ୍ଷ ଜଙ୍ଗମ ଖଟନ୍ତ ସେ ରାମରାଜା ।୨୧୫।
ଶ୍ରୀରାମ ଜଙ୍ଗମେ ଦେଖାଇଲେ ମଲୟୂନାଥ
ପ୍ରସନ୍ନେ ମଲ୍ଲିକା ଅଞ୍ଜନ ନାଥ ଶୂନ୍ୟେ ଯେ ଗୁପତ ।୨୧୬।
ଗୁପତ ସାଗର ଯେ ବଇଡୁର୍ଯ୍ୟର ତାଂକୁଣୀ
ଉପରେ ଶୋଭିତ ଯେହ୍ନେ ଇନ୍ଦ୍ରମାଳ ମଣି ।୨୧୭।

---

୨୧୭। ମର୍କତ ସ୍ତାରକ୍ଷେ ବଇଡୂର୍ଯ୍ୟ ତାଂକୂଣୀ
ଶୁଦ୍ଧ ସୁବର୍ଣ୍ଣ ତହିଂର ଉପରେ ରସାଣି । (ଖ,ଘ,ଟ,ଠ,ନ)

*

ଶ୍ରୀରାମ ଜଙ୍ଗମଙ୍କୁ ନକୁଳ କଲେ ପୁଚ୍ଛା
ଶ୍ରୀମଲ୍ଲିକା ଅଞ୍ଜନ ନାଥ ଯେ କେମନ୍ତେ ଆଦ୍ୟଭାଷା ।୨୧୮।
ନକୁଳ ଷ୍ଟୁମୁରେଣ କହଇ ଜଙ୍ଗମ
ରାବଣକୁ ବଧକରି ଯେଥକୁ ଅଇଲେ ଶ୍ରୀରାମ ।୨୧୯।
ଯେଉଁ ଶ୍ରୀଗିରି ପର୍ବତେ ବିଜୟେ ରାମ ଆସି
ଯେ ତୁଙ୍ଗଭଦ୍ରା ନଦୀକୂଳେ କଟକ କଲେ ବସି ।୨୨୦।
ଶ୍ରୀରାମଚନ୍ଦ୍ର ବୋଇଲେ ସୁଷେଣ ବଦ୍ୟଙ୍କୁ ରାଇ
ଯେ ଶ୍ରୀଗିରି ପର୍ବତେ ରାଜା କରିବା ତୁକୁଇ ।୨୨୧।
ସୁଷେଣ ବୋଇଲା ମୋତେ ନ ରୁଚଇ ଅନ୍ୟ ଭୂମି
ଅନୁବ୍ରତେ ତୋର ଚରଣେ ଖଟିଥିବି ଦେବସ୍ୱାମୀ ।୨୨୨।
ସୁଷେଣେ ଆଜ୍ଞାଂଦେଲେ ତୁ ରହିଥାସି ଯେଥେଂ
କାଲି ଅଭିଷେକ କରିବା ରଯେଣୀ ପ୍ରଭାତେ ।୨୨୩।
ଶ୍ରୀଗିରି ପର୍ବତେ ରୁହାଇଲେ ସୁଷେଣ
ଶ୍ରୀରାମେ ବିଜେକଲେ ବିଜୟା ନଗ୍ରେଣ ।୨୨୪।
ସ୍ୱାମୀ କଳପ ଆୟୁଷ ବୋଲି ଯେଉଁ ନଦୀଗୋଟି
ଯେଥି ସ୍ନାହାନ କଲେ କଳପେ ପରିଯନ୍ତେ ଥାଇ ଆଷ୍ୟ ଯେ
ନ ତୁଟି ।୨୨୫।
ଆହୋ ସୀତାୟୁ ଶୁଣିଲେ ଯହୁଂ କଳପି ମହାତମ୍ୟ
ଯେ ନଦୀରେ ସ୍ନାହାନ କରି ପଶିଲେ ସୀତାୟୁ ଶ୍ରୀରାମେ ।୨୨୬।
ବ୍ରହ୍ମାଯେ ହକାରି ଆଜ୍ଞାଂ ଦେଲେ ସେ ନଦୀକି
ଶ୍ରୀରାମ ସୀତାୟୁ ସ୍ନାହାନ କରି ଆସୁଛନ୍ତି ତୋହୋର ତହ୍ନଂକ ।୨୨୭।
ତୋର ତହ୍ନଂ ସ୍ନାନ କଲେ ହୋଇବେ କଲ୍ପଜୀବୀ
ଭାର ନିବାରଣ ପୁଣ କେ କରିବ ଯେ ପୃଥିବୀ ।୨୨୮।
ସେ ଲକ୍ଷ୍ମୀ ନାରାୟଣେ ଯେବେ ଯେଥେ ଅବତରି ଥାନ୍ତେ ପୁଣ ପୁଣ
ତେବେ ସେ ଦୁଷ୍ଟ ଦାନବେ ହୁଅନ୍ତେ ନିବାରଣ ।୨୨୯।
ଯେସନେକ ଆଜ୍ଞାଂ ଯହୁଂ ଦେଲେ ଧାତା ଦେବସ୍ୱାମୀ
ସେ କଳପୀ ଧବଳାଙ୍ଗୀ ହୋଇଲା ପାତାଳଗାମୀ ।୨୩୦।
ଶ୍ରୀରାମଚନ୍ଦ୍ର ଜଙ୍ଗମ କହଇ ନକୁଳଙ୍କୁ
ତେଣୁକରି ଯେ ଗଙ୍ଗା ଗଲା ପାତାଳକୁ ।୨୩୧।

ସୁସ୍ଥାନେ ଗୋପ୍ୟାନ ହୋଇଲେ ଜାହ୍ନବୀ
ସଗରେଣ ଶାପ ତାଙ୍କୁ ଦଲେ ଜାନକୀ ମହାଦେବୀ ।୨୩୨।
ମୋତେ ଦେଖି ଭୁହ୍ନ ଯେବେ ପଶିଲୁ ପାତାଳେ
ଗୋପ୍ୟାନଭଗିନୀ କୁହ୍ନ ହୋଅସି ସର୍ବକାଳେ ।୨୩୩।
ଜାନକୀର ବଚନେ ସେ ହୋଇଲା ଅଗତ
ସୁଷେଣଙ୍କୁ ପାଠଦେବାକୁ ଲେଡଲେ ରାମ ସ୍ୱେଥି ।୨୩୪।
ଶ୍ରୀରାମଚନ୍ଦ୍ର ଜଙ୍ଗମ ଯେ କହଇ ଉତ୍ତର
କୁମ୍ଭମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନର ।୨୩୫।
ବୃହସ୍ପତି ବାର କଉଲବ କରଣ ଯେ ପୁନର୍ବସୁ ନକ୍ଷତ୍ରେ
ସୁଷେଣ ପ୍ରାଣତ୍ୟାଗ ହୋଇଲା ଶ୍ରୀଗିରି ପର୍ବତେ ।୨୩୬।
ହନୁମନ୍ତଙ୍କୁ ରାଇଣ ବୋଇଲେ ଦାଶରଥି
ତୁ ମହାବୀର ଯାଇ ଅବଶେଷ ଯୋଗାଡ କରସି ତତକ୍ଷଣ ।୨୩୭।
ସ୍ୱାମୀର ବଚନେ ଯେ ଚଳଇ ପାବନି
ଶ୍ରୀଗିରି ପର୍ବତେ ହନୁମନ୍ତ ଲେଡଇ ରଯ୍ଯଣୀ ।୨୩୮।
ସୁଷେଣ ବସୁରଇ ସ୍ୱେହ୍ଣ ପର୍ବତେଣ ବସି
ଶ୍ରୀରାମ ସଦୟେ ମୋତେ ନ କଲେ ଗୁଣରାଶି ।୨୩୯।
ମୁହ୍ନଂ ଯେ ଇସ୍କିନ୍ଧା ରାଜ୍ୟରୁ ସ୍ୱାମୀଙ୍କ ଗୋଡାଇ ଅଇଲି
ଶ୍ରୀଚରଣେ ସେବା କରିବାକୁ ଭାଜନ ନୋହିଲି ।୨୪୦।
ମୋତେ ଆଗ୍ୟାଂହେଲେ ତୁ ରାଜା ହୋଅସି ସ୍ୱେଥେ
ସ୍ୱାମୀ ଶ୍ରୀଚରଣ ନ ଦେଖିଲେ ମୁଂ ବ୍ରତିବ କେମନ୍ତେ ।୨୪୧।
ସ୍ୱେ ଶରୀରୁ ଛୁଡ ହୋ ମୋର ପଞ୍ଚଭୂତ ଆତ୍ମା
ସ୍ୱତେ ବୋଲି ଧ୍ୟାନେଶେ ବସିଲା ମହାତମା ।୨୪୨।
ଶ୍ରୀରାମ ଶ୍ରୀରାମ ବୋଲି ଶବଦେ ଡାକ ଦିଲା
ଜୀବନ ନିଆଶୀ ପଞ୍ଚଭୂତ ଆତ୍ମା ତାହାର ଶରୀରୁ ଛୁଡିଲା ।୨୪୩।
ସ୍ୱେହ୍ଣ ପର୍ବତ ଉପରେ ପଡିଲା ନିଜ କାୟାଗୋଟି
ଶ୍ରୀରାମ ସୁମରି ସେ ପଡିଲା ମହୀଲୋଟି ।୨୪୪।

---

୨୩୨।୧ ସୁତଳେ ଯାଇଂ ଗୋପନ ହୋଇଲା ଜାହ୍ନବୀ । (ଖ,ନ)

ୟେସନେକ ସମୟେ ଆସି ପ୍ରବେଶ ହନୁମନ୍ତ
ଦେଖିଲା ସୁଷେଣ ଯେ ହୋଇଅଛି ପ୍ରାଣେହତ ।୨୪୫।
ହନୁମନ୍ତ ଡାକ ଦିଅଇ ଉଠ ହୋ କଞ୍ଚନ ରଜାର ବଳା
କେତେ ନିଦ୍ରାଯାଉ ରୟଣୀ ପ୍ରସର ହୋଇଲା ।୨୪୬।
ରାମାୟଣ ଯୁଦ୍ଧରେ ତୁ ଯେ ଅନିଦ୍ରା ହୋଇଥିଲୁ
ୟେଥେ ସୁସ୍ଥପାଇ ନିଚିନ୍ତେ ନିଦ୍ରାଗଲୁ ।୨୪୭।
ପୁଣ ପୁଣ ପଚ୍ଚରଇ ସନ୍ନିଧେଣ ବସି
ନ ଚଳଇ ବ୍ରହ୍ମଭେଦ ସେ ନ ଦିଅଇ ସମ୍ଭାଷି ।୨୪୮।
କୋଳକରି ହନୁମନ୍ତ ତୋଳଇ ସୁଷେଣକୁ
ଆତ୍ମା ଆତଯାତ ନାହିଁ ବାହୁଡ଼ାଇ ଥୋଇଲା ତାହାକୁ ।୨୪୯।
ହା ହା ସୁଷେଣ ବୋଲି ରୁବଇ ହନୁମନ୍ତ
ବାବୁ କେଉଁଣ ପାତକରେ ହୋଇଲୁ ମୃତ୍ୟୁଗତ ।୨୫୦।
ୟେହି ଶ୍ରୀଗିରି ପର୍ବତେ ଶ୍ରୀରାମଚନ୍ଦ୍ର ତୋତେ କରିବେ ଅଭିଷେକ
ହୋଇବୁ ରାଜ୍ୟପତି ତୋତେ ଖଟିବେ ସର୍ବଲୋକ ।୨୫୧।
ଅନ୍ତଅନ୍ତ ମନ୍ଦପଣ ତୋର କେଉଁଣ ଅଭାଗ୍ୟ
ସୁର ଇନ୍ଦ୍ରପଣ ଛୁଡ଼ି ତୁ ହୋଇଲୁ ମୃତ୍ୟୁଯୋଗ ।୨୫୨।
ଅନେକ ବନୋୟୀ ହୋଇ ସେ ପବନର ନାନ
ତାରକ ବ୍ରହ୍ମମନ୍ତ୍ର ଯେ କହିଲା ତାର କର୍ଣ୍ଣ ।୨୫୩।
ପର୍ବତ ଉପରେ ଗୋଇଠାୟେ ପ୍ରହାର କଲା ହନୁ
ତିନିତାଳ ଗର୍ଭରେ ପୋତିଲା ତାର ତନୁ ।୨୫୪।
ମଲ୍ଲି ପୁଷ୍ପ ଗୁଡ଼ାୟେ ଘୋଡ଼ାଇଲା ଉପରେ
କୃଷ୍ଣାଜିନ ଛାଲ ଘୋଡ଼ାଇଲା ତାହାର ଉପରେ ।୨୫୫।
ତାରେକ ବ୍ରହ୍ମଗ୍ୟାନ ଯେ କହିଲା ପାବେନି
ଶ୍ରୀରାମଚନ୍ଦ୍ର ବନେକଲେ ଆସି ସମସ୍ତ ଦଣ୍ଡ ସଇନ ଘେନି ।୨୫୬।
ଝାଡ଼କାରେ ଉଠିଲେ ପ୍ରଭୁ ଶ୍ରୀଗିରି ଉପରେ
ପଦ୍ମ ଆସନେ ଦେବ ବସିଲେ କୃଷ୍ଣାଜିନ ଛାଲରେ ।୨୫୭।
ଶ୍ରୀରାମ ଆଗ୍ୟାଂଦିଲେ ସୁଷେଣକୁ ବେଗେ ଆଣ
ୟେହି ଶ୍ରୀଗିରି ପର୍ବତେ ତାକୁ ଅଭିଷେକ କରିବା ୟେହିକ୍ଷଣ ।୨୫୮।

ହନୁମନ୍ତ କହିଲା ଯାଇ ଲକ୍ଷ୍ମଣେ ଅଗ୍ରତେ
ସୁଷେଣ ପ୍ରାଣତ୍ୟାଗ ହୋଇଲା ସେହି ପରବତେ ।୨୫୯।
ଲକ୍ଷ୍ମଣ ବୋଇଲେ ତାର କାହିଁ ଅଛି ଶବ
ହନୁ ବୋଇଲା ସେ ପରବତେ ପୋଡିଅଛି ମୋ ଦେବ ।୨୬୦।
ସୁଷେଣକୁ ଆଣ ବୋଲି ରାମ ଆଜ୍ଞାଂ ଅବଧାରି
ଲକ୍ଷ୍ମଣ କହଇ ଶ୍ରୀରାମ-ର କରମନ୍ତ ଯୋଡିକରି ।୨୬୧।
ସ୍ୱାମୀ ସୁଷେଣ ସେଥି ରାଜ୍ୟ କରିବାକୁ ନାହିଁ ଇଚ୍ଛା
ତୋହୋର ଚରଣେ ସେବା କରିବାକୁ କଲାକ ମନବାଞ୍ଛା ।୨୬୨।
ଶ୍ରୀଗିରି ପର୍ବତେ ଅଭିଷେକ ହୋଇବାକ ଜାଣି
ପ୍ରାଣ ବିସର୍ଜିଲି ସ୍ୱାମୀ ଆଜର ରଯୂଣୀ ।୨୬୩।
ଶ୍ରୀରାମଚନ୍ଦ୍ର ଶୁଣିଣ ହୋଇଲେ ଅସ୍ଥିଭୂତ
ଆହା ସୁଷେଣରେ ମୋର ପ୍ରାଣର ସଙ୍ଗାତ ।୨୬୪।
ବାବୁ ଲଂକାଗଡ ଜିଣିଲ ତୋହୋର ଦିବ୍ୟବୁଦ୍ଧି
ଲକ୍ଷ୍ମଣକଇଂ ପ୍ରାଣଦେଲୁ କହିଣ ମଉଷଧି ।୨୬୫।
ବାବୁ ଅନାଥର ବନ୍ଧୁ ମୋଇ କେଉଂକତି ଗଲୁ
ବିପଦକାଳେ ରହିଲୁ ସଂପଦ କାଳେଣ ଲେଛିଲୁ ।୨୬୬।
ହନୁମନ୍ତ ହକାରି ବୋଲନ୍ତି ରଘୁବୀର
ବାବୁ ସୁଷେଣ ମୃତ ପିଣ୍ଡଗୋଟି କେଉଂଣ ଠାବେ ଅଛୁ ।୨୬୭।
ହନୁମନ୍ତ ବୋଇଲା ସ୍ୱାମୀ ତୋହୋର ଆସନର ତଳେ
ମୁହିଂ ତାହା ପର୍ବତେ ମାଣ୍ଡିଲି ଦେବ ପ୍ରାଣର ବିକଳେ ।୨୬୮।
ହନୁମନ୍ତର ବଚନେ ଶ୍ରୀରାମଚନ୍ଦ୍ରେ ଉଠି
ଲକ୍ଷ୍ମଣ କାଡିଲା କୃଷ୍ଣାଜିନ ଛାଲଗୋଟି ।୨୬୯।
ମଲ୍ଲୀପୁଷ୍ପ ଯୋଡା କାଡିଲା ହନୁମନ୍ତ
ପୁଣି ତାରେକ ମନ୍ତ୍ର ଯେ ପଢିଲେ ଶ୍ରୀରଘୁନାଥ ।୨୭୦।
ଲକ୍ଷ୍ମଣ ରଘୁନାଥ ଚାହିଁଲେ ଅମୃତଦୃଷ୍ଟି
ଲଙ୍ଗେକ ସଂଭୂତ ହୋଇଲା ପର୍ବତ ଫୁଟି ।୨୭୧।
ଦେଖିଲେ ରଘୁନାଥ ବିଜୟେ ମହାଶମ୍ଭୁ
ହନୁମନ୍ତକୁ ବୋଇଲେ ପର୍ବତ ବେଡାଇ ଖୋଳ ବାବୁ ।୨୭୨।

ସ୍ୱାମୀର ଆଗ୍ୟାଂଏ ପର୍ବତ ବେଢାଇ କାଟି
ପାତାଳ ଭୁବନକଇଂ ସେ ଲିଙ୍ଗ ଲକ୍ଷେ ଯୋଜନ କଣ୍ଟି ।୨୭୩।
ଦେଖିଣ ସାନନ୍ଦ ସେ ହୋଇଲେ ରଘୁନାଥ
ଶ୍ରୀରାମ ପୂଜିଲେ ସେ ମହାଶମ୍ଭୁ ଦେବତାନ୍ତ ।୨୭୪।
ହନୁମନ୍ତ ଘୋଡାଇଲେ ମଲ୍ଲୀଫୁଲ ଗୁଡାଏ
ଉପରେ ଦିଲେ ସେ କୃଷ୍ଣାଞ୍ଜନ ସ୍ଥୁଲ ଗୋଟିଏ ।୨୭୫।
ମଲ୍ଲିକା ଅଞ୍ଜନ ସେ ଲିଙ୍ଗେକ ଉତପତ୍ତି
ମଲ୍ଲିକା ଅଞ୍ଜନ ନାଥ ନାମ ତାଂକୁ ଦିଲେକ ଦାଶରଥି ।୨୭୬।
ଶ୍ରୀରାମଚନ୍ଦ୍ର ଜଙ୍ଗମ ବୋଲି ଯେବଣ ନୃପତି
ନକୁଳକଇଂ କହିଲ ସେ ଶାହାସ୍ତ୍ର ସଂଗତି ।୨୭୭।
ଶୁଣସି କୁମାର ତୁ ଅଶ୍ୱିନୀ କୁମାରଂକ ନାନ
ଏ ସେ ମହାଲିଙ୍ଗ ମଲ୍ଲିକା ମଳୟୁ ଅଞ୍ଜନ ।୨୭୮।
ଶ୍ରୀରାମଚନ୍ଦ୍ରେ ତ୍ରେତୟା ଯୁଗେ ବୀର ପ୍ରସିଦ୍ଧି
ମୁହିଂ ସେ ବିଶ୍ରବା ନନ୍ଦନ ରାବଣେଶ୍ୱର ବଧି ।୨୭୯।
ବ୍ରହ୍ମହତ୍ୟା ଦୋଷ ମୋତେ ଅଛି କେବଣ କଳ୍ପ
ଦ୍ରଶନ ମାତ୍ରକେ ଖଣ୍ଡଇ ସକଳ ମହାପାପ ।୨୮୦।
ଜଙ୍ଗମ କହିଲ ଯେ ନକୁଳ ଅଗ୍ରତେ
ଖଣ୍ଡଇ ମହାପାତେକ ବଂଶରେ ହତ୍ୟା ଥାଇଂ ଯେତେ ।୨୮୧।
ଜଙ୍ଗମ ବଚନେ ନକୁଳ ମହାରଥୀ
ଶ୍ରୀ ମଲ୍ଲିକା ଅଞ୍ଜନ ନାଥ ମୋହୋର ଫେଡିବା ଦୁର୍ଗତି ।୨୮୨।
ସ୍ୱାମୀ ପ୍ରସନ୍ନେ ପରମ ଯୋଗୀ ଶ୍ରୀରାମ ଅଭିଷେକୀ
କୋଟିଏ ଜନ୍ମର ପାତକ ହରଇ ନାଥ ନୟନେ ତୋତେ
ଦେଖି ।୨୮୩।

ଗଙ୍ଗା ଗୟା ଗୋଦାବରୀ ହରପାଦ ବଇତରଣୀ
ନର୍ମଦା ସରସ୍ୱତୀ ଯେ ଆବର କୃଷ୍ଣବେଣୀ ।୨୮୪।
ସାଗର ସଙ୍ଗମ ଯେ ପ୍ରାଗରୁଦ୍ର ପ୍ରାଚୀ
କାଶୀ କଉଶିକ ଅନେକ ରୁଦ୍ରସାକ୍ଷୀ ।୨୮୫।

ପୁଣ୍ୟଭଦ୍ରା ସର୍ବଭଦ୍ରା ସୁବର୍ଣ୍ଣଭଦ୍ରା ପିଙ୍ଗଳୀ
ଅନନ୍ତା ବିଜୟା ଚନ୍ଦ୍ରଭାଗା ଚନ୍ଦୋପୃଳା ଧବଳୀ ।୨୮୬।
କୋଟିଏ ତୀର୍ଥ ଯେତେ କ୍ଷେତ୍ରାଧି ପୁଷ୍କର
ପ୍ରାତଃକାଳେ ଅଭିଷେକ କରିଅଛନ୍ତି ଯାହାର ପୟର ।୨୮୭।
ପାତାଳ ବାସେନୀ ଗୋ ଶବରୀ ଭଇରେବୀ
ସ୍ୱାମୀ ମୁକତି ବାଞ୍ଛା ନିମନ୍ତେ ଯାହାର ଚରଣେ ସେବି ।୨୮୮।
ସ୍ୱାମୀ ମଳୟ ବସନ୍ତ ଯେ ଅମୃତାକ୍ଷ ଶୀତଳ
ସଚରାଚର ଦେବାଧିବୃନ୍ଦେ ଖଟନ୍ତି ଯାହାର ଚରଣ ତଳ ।୨୮୯।
ଭଗତ ବିଭବ ନାହିଁ ତାରକ ଗ୍ୟାନ ମନ୍ତ୍ରେ
ଘାବଳ ସର୍ବଥା ମୁହିଁ ଶିବ ପୁରାଣମତେ ।୨୯୦।
ସଂସାର ତାରଣ ତୁ ପ୍ରସନ୍ନ ତ୍ରିଲୋଚନ
ନାନା ହତ୍ୟା ପାତକ ସ୍ୱାମୀ ଦର୍ଶନ ବିମୋଚନ ।୨୯୧।
ଯେ ଜନେ ଭକତି ମୁକତି ପ୍ରାପତି ଯେ ଯାହାର ଇଚ୍ଛା
ଆୟୁଷ ଧନ ପୁତ୍ର ଇଚ୍ଛା ଶ୍ରୀ ମଲ୍ଲିକା ଅଞ୍ଜନ ନାଥ ବାଞ୍ଛା ।୨୯୨।
ଜୀବନର ସୁଫଳ ଶ୍ରୁତି ଲଭିବ ସୁଖଭୋଗୀ
ତାଙ୍କୁ ସାତ ପୁରୁଷ ପର୍ଯ୍ୟନ୍ତେ ଧନଧାନ୍ୟ ସଂପଦ ହୋଇବ
ନୋହିବେ ସର୍ବେରୋଗୀ ।୨୯୩।
ଶ୍ରୀଗିରି ପର୍ବତ ଉପରେ ଶ୍ରୀମଲ୍ଲିକା ଅଞ୍ଜନ ନାଥ ସ୍ୱାମୀ
ଶୂଦ୍ରମୁନି ସାରଳା ଦାସ ଶତ ସହସ୍ର ଦଣ୍ଡ ପରଣାମି ।୨୯୪।
ବଦୟନ୍ତି ଅଗସ୍ତି ଶୁଣିମା ଯୋଗେଶ୍ୱର
ନକୁଳ ଭୁସ୍ତି ବଚନ ଶୁଣି ପ୍ରସନ୍ନେ ମଲ୍ଲିକା ଅଞ୍ଜନ ତୋଷେଣ
ଦଅନ୍ତି ଅଭୟେ ବର ।୨୯୫।
ଶୂନ୍ୟେଣ ଶବଦେକ ଯେ ଶୁଭିଲ ଅନ୍ତର୍ଦ୍ଧାନୁ
ତ୍ରିଭୁବନେ ବନ୍ଦିତ ହୁଅ ତୁ ଅଶ୍ୱିନୀ କୁମାରଂକର ତନୁ ।୨୯୬।
ଯିଏ ଏବା ପାଠେକ ଥିଲ ତୋହୋର ବଂଶେ
ଆଜହୁଁ ତୋହୋର ଦୁରିତ ସମସ୍ତ ଗଲ ଧ୍ୱଂସେ ।୨୯୭।
ଏଥୁ ଅନନ୍ତରେ ଯେ ନକୁଳ କୁମାର
ନିମନ୍ତ୍ରଣ ଯୋଗାଡ଼ ହେଲ ମଲ୍ଲିକା ଅଞ୍ଜନ ଗ୍ରାମୁର ।୨୯୮।

ରାଜାଗଣମାନନ୍ତ ନିମନ୍ତ୍ରଣ କରଇ
ଦୁଇଶତ ଛୟାଶୋଇ ରାଜା ତହିଁ ଥିଲେ ରୁଣ୍ଡ ହୋଇ ।୨୯୯।
ସମସ୍ତଙ୍କୁ ନିମନ୍ତ୍ରଣ କଲା ରତ୍ନମାଳମାନ ଦେଇ
ପୁରୁଷାର୍ଥ କଲେ ସେ ଅନେକ କଥା କହି ।୩୦୦।
ଅକ୍ଷତ ଗୁଆ ଦେଇ ଯେ ନିମନ୍ତ୍ରଣ କଲେ
ରାଜସୂୟ ଯାଗକୁ ସର୍ବେ ଚଳ ହୋ ବୋଇଲେ ।୩୦୧।
ଆହୋ ରଥ ଗଜ ଅଶ୍ୱ ପାଦାନ୍ତ ଅଛନ୍ତି ଯାହାର ଯେତେ
ଭ୍ରାଥ ବନ୍ଧୁ କୁଟୁମ୍ବ ଭାରଯା ପୁତ୍ର ଯେ ସର୍ବତେ ।୩୦୨।
ଦେଖା ଦରଶନ ଧନ ଯେତେ ରତ୍ନମାନ ପାର
ଯେମନ୍ତେ ପୁରୁଷାର୍ଥ ଉପୁଜଇ ତୁମ୍ଭର ରାଜସୂୟ ଯାଗ ସଭାର ।୩୦୩।
ନକୁଳର ବଚନେ ସେ ସମସ୍ତ ରାଜା ହୋଇଲେ ତୁଷ୍ଟ
ସାଜିଲେ ସମଦଣ୍ଡ ଯେ ଯାହାର ଥାଠ ।୩୦୪।
ବାଜିଲା ବୀରତୂର ଢମକ ନିଶାଣ ଗହନ ବାଦ୍ୟ
ଆକାଶ ଉଛୁଳଇ ବୀରବାଦ୍ୟର ଶବଦ ।୩୦୫।
ଯେ ଯାହାର ଥାଠସନ୍ୟ ସମସ୍ତ ପଲାଣି
ଯମପ୍ରଶସ୍ତକଇଁ ଚଳିଲେ ସମସ୍ତ ନୃପମଣି ।୩୦୬।
ରାଜାନ୍ତ ଚଳାଇ ସେ ନକୁଳ ମହାଛସୀ
ଦଣ୍ଡ ଘେନି ବାହାର ହୋଇଲା ପଚ୍ଛିମ ମୂରତି ।୩୦୭।
ଦୁରନ୍ତେକ ବନେ ସେ ସୁମନ୍ତକ ନାମେ ପର୍ବତ
କୃଶାଙ୍ଗୀ ନାମେ ନଦୀ ବହଇ ପଚ୍ଛିମ ପ୍ରଶସ୍ତ ।୩୦୮।
ଇଚ୍ଛାପୁର ବୋଲି ତହିଁ ଏକ ନଗ୍ର ଗୋଟିଏ
ରାଜ୍ୟର ବିସ୍ତାର ଆଏତନ ଯୋଜନ ଶଏ ।୩୦୯।
ବାମଦେବ ବୋଲିକରି ତହିଁର ନୃପତି
ବତିଶ ମର୍ତ୍ତ ଖଟଇ ତାହାକଇଁ ମତ୍ତହାଥୀ ।୩୧୦।
ଅଶ୍ୱ ଯୋଦ୍ଧା ପାଦାନ୍ତ ନାହିଁ ଆନ କଛୁ
ଶତେ ପାରିଦଣ୍ଡ ଭୁଲେ ରାଜା ତହିଁ ରାଜ୍ୟ କରୁଅଛୁ ।୩୧୧।
ବନସ୍ତ ଜିଣିକରି ତହିଁ ଚଳଇ ନକୁଳ
ଦଣ୍ଡ ଘେନି ରହିଲେ ଯାଇଁ କୃଶାଙ୍ଗୀ ନଦୀକୂଳ ।୩୧୨।

ବୀରତୂର ଶବଦେ କମ୍ପଇ ମହୀସ୍ଥଳୀ
ରାଜାର କଟକେ ଯାଇଂ ବାଦ୍ୟ ଯେ ଉଚ୍ଛୁଳ ।୩୧୩।
ଆସ୍ଥାନେ ବାରତା ଯାଇଂ ଜଣାଇଲା ମୁନେନ୍ଦ୍ର
ସ୍ୱାମୀ ଶୁଣ ଦେବ ଅବଧାରି ନୃପତି ବାମଦେବ ଶାସ୍ତ୍ର ।୩୧୪।
ଆହୋ କେବଣ ଯୋଦ୍ଧା ଯେତୁଁ ବଢ଼ୁତ ନଗ୍ର ଜିଣି
ପର୍ବତ ଉଙ୍ଗର ଜିଣି ଆସଇ କେଉଂଣ ଦେଶର ନୃପମଣି ।୩୧୫।
ରାଜ୍ୟର ଭିତରେ ଦେବ ପଶିଲା ତାର ଦଣ୍ଡ
ଗର୍ଜନ୍ତି ଯୋଦ୍ଧାଯେତୁଁ ଯେ ମହା ପରଚଣ୍ଡ ।୩୧୬।
ଶୁଣିଣ ନୃପତି ଯେ କଲାକ ପ୍ରତାପ୍ୟାଂ
ଗର୍ଜିଣ ଉଠିଲା ରାଜା କହଇ ଅବଗ୍ୟାଂ ।୩୧୭।
ମନ୍ତ୍ରୀ ଜଣାଇଲା ଦେବ ଶୁଣିମା ବାମଦେବ
ବିଶ୍ରାମ କର ସ୍ୱାମୀ ଯେତୁଁ ତୋହୋର ପ୍ରତାପ୍ୟାଂ ସ୍ୱଭାବ ।୩୧୮।
ଯେତୁଁ ମହାଗହନ ଦେବ ଦକ୍ଷିଣ ଦ୍ୱାର ସ୍ଥଳୀ
ବସନ୍ତ ରାଜାଯେତୁଁ ଯେତୁଥେ ପ୍ରତାପ୍ୟାଂ ମହାବଳୀ ।୩୧୯।
ସମରେ ଅଭୟ୍ସ୍ୱା ଦେବ ସେ ଅଟନ୍ତି ଅସାଧ୍ୟ
ତାହାର ସ୍ମୁମୁରେ ଦେବ ମିଳନ୍ତା ନାହ୍ୱଂ ଯୋଧୀ ।୩୨୦।
ମନ୍ତ୍ରୀବର ବଚନେ ସେ ନୃପତି ବଇରାଗୀ
ସାଜରେ ସଇନ୍ୟ ମୋର ସମଦଣ୍ଡ ବେଗି ବେଗି ।୩୨୧।
ଆକାଶ ଉଚ୍ଛୁଳଇ ଯେ ବୀରତୂର ଶବଦେ
ସମୁଦ୍ର ଘୋଷ ପ୍ରାୟେତୁଁ ଶୁଭଇ ହାଥୀଂକର ଘଣ୍ଟନାଦ୍ୟେ ।୩୨୨।
ପର୍ବତ ସମାନେ ଯେ ଦ୍ୱଶନ୍ତି ମହାଗଜ
ଆସ୍ଥାନୁ ବାହାର ହୋଇ ହାଥୀଯେତୁଁକ ଚଢିଲା ମହାରାଜ ।୩୨୩।
ଲକ୍ଷେ ଯୋଦ୍ଧା ସଙ୍ଗେ ଘେନିଣ ମହାରାଯେତୁଁ
କଟକୁଂ ବାହାର ହୋଇ ନୃପତି ବେଗେ ଆଯେତୁଁ ।୩୨୪।
ବାହାର ଦୁଆରେ ଆସି ଓଗାଳିଲେ ସଇନ୍ୟ
ଲକ୍ଷେକ କୁନ୍ତ ନାରାଜ ଛେଲଚର୍ମ ପଟ୍ଟରନ୍ତି କରେ ଘେନ୍ୟ ।୩୨୫।
ପ୍ରତାପ୍ୟାଂ କରଣ ସେ ନୃପତି ବାମଦେବ
ରାଜ୍ୟରୁ ବାହାରତି ହୋଇଲା ସଦାଶିବ ।୩୨୬।

*

ଦୁସହ ପ୍ରତାପ୍ୟାଂ ସେ କରନ୍ତ ସମରାଷ୍ଟ
ଗର୍ଜନ୍ତେ କମ୍ପିଲ ସେ ସମସ୍ତ ବଇରାଷ୍ଟ୍ର ।୩୨୭।
କଟକେ ପଶନ୍ତେ ବାମଦେବ ରାୟେ ସାଇଂ
କାନ୍ଥିର ତଳେ ବୀର ଓଗାଳିଲେ ଯାଇଂ ।୩୨୮।
କବନଣି କୋନ୍ତ ରାଜା ଧରଅଛୁ ହାଥେ
ମୁଖରାବ ଶବଦେ ଯେ ପ୍ରତାପ୍ୟାଂ ସାମରଥେ ।୩୨୯।
ବାମଦେବ ମୂରତ୍ତ ଦେଖିଣ ବୋଲଇ ସୁରସେନ
ଅକାରଣେ ନରେନ୍ଦ୍ର କୋପ କଂପା କରୁ ଉଚ୍ଚବାଚ ସ୍ୱନ ।୩୩୦।
ସୋମବଂଶେ ନୃପତ୍ତ ହୋ ଯୁଧିଷ୍ଠି ଦେବରାୟେ
ରାଜସୂ ଯାଗ ସଭା କରିବେ ଆସିବେ ସମସ୍ତ ଦେବତାୟେ ।୩୩୧।
ଦକ୍ଷିଣ ଦ୍ୱଗବଜେ ଯୁଧିଷ୍ଠି ଦେବଂକ ଅନୁଜ
ନକୁଳ କୁମାର ଯେ ଅଶ୍ୱିନୀ କୁମାରଂକ ତନୁଜ ।୩୩୨।
ଦକ୍ଷିଣ ଦ୍ୱଗକଇଂ ବୀର ଅଇଲେ ବରଣେ
ସମଦଣ୍ଡ ଘେନି ଯାଉଛନ୍ତ ସମସ୍ତ ରାଜାଗଣେ ।୩୩୩।
ତୁ ଯେବେ ସଇନ୍ୟ ଘେନି ଆସୁ କସ ଅର୍ଥେ
ଭାବକୁ ଅଭାବ ତୁହ୍ୱ ହୋଉଅଛୁ କେଉଂମତେ ।୩୩୪।
ଆହୋ ବାମଦେବ ତୁ ଅଟୁ ବଡ ମନ୍ଦ
ପ୍ରୀତ୍ତ ଲୋକଠାରେ କମ୍ପେ ଉପୁଜାଉ ତୁହ୍ୱ ଦ୍ୱନ୍ଦ ।୩୩୫।
ମୋହୋର ବଚନରେ ମରିବାକୁ ତୋର ବୁଦ୍ଧି
ପାଦେଣ ପେଲଉ କଂପା ଯେହ୍ନେ ବଡ ସମ୍ପଧି ।୩୩୬।
ଶୁଣିଣ ପ୍ରତାପ୍ୟାଂ କଲା ସେ ବାମଦେବ ମହାରାଜା
କୁନ୍ତେକ ବୁଲଇ ସେ ଧାମଇଂ କରଣ ତରଜା ।୩୩୭।
ରାଜାର ଆଗ୍ୟାଂୟେ ଚଳିଲେ ସକଳ ସଇନ୍ୟ
ବନ୍ଧିଲେ ନାରଜମାନ କରେଣ ଶସ୍ତ୍ର ଘେନି ।୩୩୮।
ଆଗିଆଣି ଥାଠେ ସେ ଲକ୍ଷେକ ମହାଯୋଧୀ
ଅବଛନ୍ନେ ନାରଜ ଯେ ସଇନ୍ୟ ତାର ବନ୍ଧ ।୩୩୯।

---

୩୩୬। ୨ ପାଦେ ଏଡ ହ, ଝେଲଭ, ଠେଲହ, ଡେଲହ ପ୍ରଭୃତ
ପାଠାନ୍ତରମାନ ଅଛୁ ।

ନାରାଜ ପଡନ୍ତେ ଯେ ଦେଖିଲେ ପାଣ୍ଡବ ବୀରେ
ସେହି ସମସ୍ତେ ଶର ବିନ୍ଧିଲେ ସଇନ୍ୟଙ୍କ ଉପରେ ।୩୪୦।
ନକୁଳର ସଇନ୍ୟ ଯେ ପ୍ରତଗ୍ୟାଂ ବଳବନ୍ତା
ପରରାଷ୍ଟ୍ର ଥାଟକଇଂ ସେ ନ ଯାଇ ଗଣିତା ।୩୪୧।
ରେ ରେ କାର ଶବଦେ ଯେ ପାଡିଲେ ଘୋରରଡି
ବାମଦେବ ସଇନ୍ୟ ଉପରେ ପଡିଲେ ବୀରେ ମାଡି ।୩୪୨।
କୋନ୍ତ ଅସିବର ଗୁରୁଜ ଖଷଣରେ
ପଡି ନିକଳିଲେ ସେ ଯୋଦ୍ଧାଙ୍କ ଉପରେ ।୩୪୩।
ଘାୟେଣ ଘୁମାଇଲେ ସେ ପଡିଲେ ମୁହଂ ମାଡି
କାହାର କନ୍ଧରୁ ଶିର ପଡିଲାକ ଛିଡି ।୩୪୪।
ପଡିଲେ ସଇନ୍ୟ ଅବଚ୍ଛନ୍ନେ ବାଣଘାୟେ
ଦିଶନ୍ତ ଶରୀର ସେ ମନ୍ଦାର ପୁଷ୍ପ ପ୍ରାୟେ ।୩୪୫।
ବାଜିଲା ରଣ ହାନ୍ଦୋଳ ରୈଖାର ମତ୍ତହାଥୀ
ନିକଳି ନାରାଜ ଯେ ଛଇଶ୍ଚୁଣ୍ଡ ଗଲା ଫୁଟି ।୩୪୬।
ଭାଜିଲେ ସଇନ୍ୟ ଯେ ପାଇଣ ବିମୁଖ
ଦନ୍ତେଣ ତୃଣ ଧେନି ବୋଲନ୍ତି ରଖ ରଖ ।୩୪୭।
ସୈନ୍ୟଭଗ୍ନ ଦେଖିଣ ସେ ବାମଦେବ ନୃପତି
ଆପଣେ ଉଠିଲା ଭୁଲେ ବେନିଲକ୍ଷ ହାଥୀ ।୩୪୮।
ବହୁତ ପ୍ରତଗ୍ୟାଂ ଦେଖି ସେ ବାମଦେବ ଶାହ୍ନି
ଆରେ ଆରେ ବୋଲି ରାଜା ବାମଦେବ ଗଜନ୍ତ ଧୁଆଇଂ ।୩୪୯।
ନକୁଳର ସଇନ୍ୟ ଥାଠେ ଆଗିଆଣି
ମଳୟୁ ବସନ୍ତ ବେନି ସେନାପତି ରାଜାକୁ ବିନ୍ଧିଲେ ବେଗେ ଟାଣି ।୩୫୦।
ନବନିଶି କୋନ୍ତେକ ଧେନି ବସନ୍ତ ସେନାପତି
ବାମଦେବ ରାଜା ହାଥୀକି ମାଇଲା ତତକ୍ଷଣାନ୍ତି ।୩୫୧।
ଘାୟେଣ ଘୁମାଇଲା ସେ ମହାମତ୍ତ ନାଗ
ଆରେକ ହାଥୀରେ ରାଜା ଚଢିଲାକ ଯାଇଂ ଅତି ବେଗ ।୩୫୨।
ବଜ୍ର ମୁଦଗରେକ ଯେ ନୃପତି ବୁଲାଇ
ବସନ୍ତ ସେନାପତି ଉପରେ ପ୍ରହାର କଲେ ନେଇ ।୩୫୩।

ଅଶ୍ୱ ଘୁଞ୍ଚାଇଣ ବସନ୍ତସେନ ତାହା ମେଣ୍ଟି
ପୁଣିହିଂ ବାମଦେବ ପ୍ରହାର କଲା ଯଷ୍ଟି ।୩୫୪।
ବସନ୍ତସେନ ବଞ୍ଚାଇଲା ପଟା ଆଡ଼ ଆବୋରି
ପରହେଳ ଯେହ୍ନେ ବସନ୍ତ ସେନାପତି ରାଜାର ଉପରେ ପ୍ରହାରି ।୩୫୫।
ବାମଦେବ ହାଥୀର ପଡ଼ିଲା କୁମ୍ଭସ୍ଥଳେ
ଗର୍ଜିଣ ମହାମତ୍ତ ଗଜ ପଡ଼ିଲା ଅଗ୍ରଗଳେ ।୩୫୬।
ପୁଣିହିଂ ବିରଥୀ ହୋଇଲା ରାଜା ବାମଦେବ
ଆରେକ ହାଥୀଯେ ଚଢ଼ି ଧାଇଂଲା ଅତି ବେଗ ।୩୫୭।
ପୁଣିହିଂ ନବନଶି କୋନ୍ତେକ ବୁଲାଇ
ବସନ୍ତସେନ ଉପରେ ପ୍ରହାର କଲା ନେଇ ।୩୫୮।
କୋନ୍ତ ଫେଡ଼ାଇ ଗୁରୁଜେକ ବୁଲାଇ ପିଟିଲା ବସନ୍ତସେନ
ଘାଯେଣ ଘୁମାଇ ମହାନାଗ ହୋଇଲା ଅଚେତନ ।୩୫୯।
ବାହାନ ବିଅର୍ଥେ ସେ ବାମଦେବ ନୃପତି
ଥାଠ ଭିତରେ ଧାମଇଂ ପାଦଗତି ।୩୬୦।
ଅଶ୍ୱେ ଅଶ୍ୱେ ଚଢ଼ିଣ ସେ ମଳୟ ବସନ୍ତ ବେନି
ରେ ରେ କାର କରି ଉଠିଲେ କରେଣ ଲଂକଆ ଶର ଯେହ୍ନି ।୩୬୧।
ରାଜାର ପଳାବନ୍ତେ ଯେ ଭାଜିଲେ ତାହାର ବଳ
ନକୁଳର ସଇନି ପଶି ଯେ କଲେ ମହାଗୋଳ ।୩୬୨।
ପରକେ ଆପଣା ବୋଲି ବାରିତ ନ ଯାଇ
ଆଦିତ୍ୟ ଅସ୍ତ ମେରୁ ଉହାଡ଼େଣ ହୋଇ ।୩୬୩।
ଅନ୍ଧାରବେଳେ ଭାଜିଲେ ରାଜାର ସଇନି
ଗଡ଼ରେ ପଶିଲା ରାଜା ଭଗବାଳ ଯେହ୍ନି ।୩୬୪।
ନକୁଳ ସଇନି ରହିଲେ ବାହାର ଗଡ଼ଦ୍ୱାରେ
ବସନ୍ତ ସେନାପତି କହିଲା ନକୁଳ ସ୍ଥମୁରେ ।୩୬୫।
ସ୍ୱାମୀ ଗଡ଼ ବେଢ଼ିବା ଗ୍ଭଲ ଯିବା ରାତ୍ରକାଳେ
ନପୁଣ ପଳାଇ ରାଜା ପ୍ରାଣର ବିକଳେ ।୩୬୬।
ନକୁଳ ବୋଇଲା ସେ ରେ ପଳାଇବ କେତେ ଦୂର
ଯେ ଦକ୍ଷିଣ ଦ୍ୱିଗ ଯାକ ତ ଅଟଇ ମୋହୋର ।୩୬୭।

ଯଦ୍ୟପି ରାଜା ଯୁଦ୍ଧରୁଂ ପଳାଇବ ଦୂରହୋଇ
ଭୀମସେନ ଠାକୁରେ ଛନ୍ତି ପଶ୍ଚିମ ଦିଗେ ରହି ।୩୬୮।
ପୂର୍ବଦିଗେ ଗଲେ ତ ଅଛଇ ସହଦେବ
ଉତ୍ତରକୁ ପଳାଇଲେ ଅଛଇ ପାର୍ଥିବ ।୩୬୯।
ପଳାଇଣ ଯିବ ଅବା କେଉଂଣ ଦିଗକୁ
ସର୍ବଦିଗ ରାଜାମାନେ ଯିବେତ ଯାଗକୁ ।୩୭୦।
ସେହି ନଗ୍ର ଭିତରେ ଯେ ରହିଲେ ନକୁଳ
ବୀରତୂର ଶବଦେଣ ସମୁଦ୍ର ଜାଣି ଗୋଳ ।୩୭୧।
ତ୍ରାସ କରଣ ସେ ବାମଦେବ ନୃପତି
ସନ୍ୟବଳ ଘେନି ରାଜା ପଳାଇଲା ନିଶାରାତ୍ରି ।୩୭୨।
ପୁତ୍ରବନ୍ଧୁ କୁଟୁମ୍ବନ୍ତ ଘେନିଣ ସମସ୍ତ
ପଳାବନ୍ତ ସଇନ ଯେ ହୋଇଣ ଭଗନସ୍ତ ।୩୭୩।
ଆହୋ କରବୀର ଦେଶର ରାଜା ଭୂମନୁ ନୃପତି
ତାହାର ଦୁହିତା ଯେ ଅଟଇ ଭାନୁମତି ।୩୭୪।
ଦୁର୍ଯୋଧନ ରାଜାର ସେ ଅଟଇ ପାଟରାଣୀ
ସଇନ ଖଟଇ ରାଜାକୁ ଚଉବଂଶ ଷଉଣୀ ।୩୭୫।
ସାତ ମର୍ବୁଦ ରଥ ଯେ ବାଇଶୀ ମର୍ବୁଦ ହାଥୀ
ଚଉରାଶୀ ମର୍ବୁଦ ଅଶ୍ୱ ଚଉବଂଶ ଷଉଣୀ ପାଦାନ୍ତି ।୩୭୬।
ପାଞ୍ଚଶତ ପାଶଦଣ୍ଡ ଉପରେଣ ଅଧିକାଶ୍ୱ
ଦକ୍ଷିଣ କୋଶଳେ ତାହାକୁ ନୃପତି କେହି ନାହିଂ ସମସର ।୩୭୭।
ବାମଦେବ ନୃପତି ରାଜ କାଳେଣ ପଳାଇ
କରବୀର ପୁରେ ସେ ପଶିଲାକ ବେଗେ ଯାଇଂ ।୩୭୮।
ଆସ୍ଥାନେ ବଜପ୍ୟେ କରଛନ୍ତି ନୃପତି ଭୂମନୁ
ଭଗ୍ନବଳ ଘେନି ପ୍ରବେଶ ମହାଦେବ ରାଜାର ତନୁ ।୩୭୯।
ପ୍ରଣପତ୍ୟ ହୋଇ ଶୁଭିଲା ଭୂମନୁର ଆସ୍ଥାନ ତଳେ
ଶରଣ ଫୁକାରଇ ରାଜା ପ୍ରାଣର ବିକଳେ ।୩୮୦।
ବାମଦେବକଇଂ ପଚ୍ଚରଇ ସେ ଭୂମନୁ ନୃପତି
କାହାର ଭୟେ ପଳାଇ ଅଇଲୁ ରାଜା କାହାକୁ ସ୍ୟେତେ ଭୀତି ।୩୮୧।

କହଇ ବାମଦେବ ହୋଇଣ କୃତ ଅଞ୍ଜୋଳ
ସ୍ୱାମୀ କେଉଂଣ ଦେଶ ରାଜା ଯେତି କ୍ଷତ୍ରିୟ ମହାବଳୀ ।୩୮୨।
ଅଳପ ସଇନ ଘେନିକର କରଇ ବିଗବଜେ
ବାରତା ନ କର ସେ ପଶିଲା ଆମ୍ଭର ରାଜ୍ୟେ ।୩୮୩।
ଅନେକ ସଂଗ୍ରାମ ମୁଂ କଲ୍ଲଇଂ ତାର ଭୁଜେ
ଶରୀର ବିଦ୍ଧାତ ଲୁହଇ ନାରାଜ ପଡ଼ଲେ ।୩୮୪।
ବହୁତ ସଇନ ମୋହୋର ଦେବ ମରାଇଲ ରଣେ
ଅଗୋଚର ଯୁଦ୍ଧ ସେ କଲେ ବେନିଜନେ ।୩୮୫।
ସଇନ ମରାଇଦେଇ ପଳାଇ ଅଇଲି ବଳେ
ଗଡ଼ରୁ ବାହାରୁ ହୋଇଲ ମହା ନିଶାକାଳେ ।୩୮୬।
ଗଡ଼ ବେଢି ବାବୁ ସେ ରହିଲେ ନିଶାରାତ
ଧର୍ମେଣ ପଳାଇ ଅଇଲି ଦେବ ରକ୍ଷାକର ଜୀବନ୍ତ ।୩୮୭।
ତୁ ଶରଣ ପଞ୍ଜର ସ୍ୱାମୀ ଦକ୍ଷିଣ କୋଶଳେ
ବଡ଼ାଇ ଦୁରପଦ ଦେବ ମୋତେ ପଡ଼ିଲା ଯେତେକୋଳେ ।୩୮୮।
ମନ୍ତ୍ରୀକି ରାଇଣ ଯେ ପଚ୍ଚରଇ ଭୂମନୁ
ପଚ୍ଚର ନୁଆରଲୁ କି ସେ ଅଟନ୍ତି କାହାର ତନୁ ।୩୮୯।
ମନ୍ତ୍ରୀ ବୋଇଲା ଦେବ ସଂଗ୍ରାମର କାଳେ
ଉଚ୍ଚବାଚ ପ୍ରଚରଗ୍ୟାଂ ପଡ଼ିଲା ଯେତେତେବେଳେ ।୩୯୦।
ମଳୟ ବସନ୍ତ ବୋଲି ତାହାର ବେନି ସେନାପତି
ସେ ବୋଇଲା ତୁମ୍ଭେ ରେ ମୂର୍ଖ ପାମର ହୀନଜାତି ।୩୯୧।
ସୋମବଂଶ ଠାକୁର ଯେ ଯୁଧିଷ୍ଠି ନୃପତ୍ୟେ
ନକୁଳ କୁମାର ସ୍ୱେ ତାହାଂକର କନେଷ୍ଠ ଭ୍ରାଥେ ।୩୯୨।
ରାଜୁସି ଯାଗ କରବେ ପଣ୍ଡୁ ବ୍ରହ୍ମହତ୍ୟା ଦୋଷ ହୋଇବ ଶାନ୍ତ
ତଉହଗ ରାଜାନ୍ତ ଆମ୍ଭେ ନେମୁଂ ସେ ନିମନ୍ତ୍ର ।୩୯୩।
ଯେସନେକ ପ୍ରଚରଗ୍ୟାଂ କଲେ ଯେତେତେବେଳେ
ଅନେକ ସଂଗ୍ରାମ ହୋଇଲା ମହାବେଳେ ।୩୯୪।
ତାହାର ଆମ୍ଭର ଦେବ ହୋଇଲା ବଡ଼ ଦ୍ୱନ୍ଦ
ଭୂମନୁ କହିଲା ତୁମ୍ଭେ ନ ଜାଣି କଲ ମନ୍ଦ ।୩୯୫।

ରାଜୂସି ଯାଗ ଯେ କରିବେ ଧର୍ମସୁତେ
ଜାରସନ୍ଧ ନାଶଗଲା ତହିଂର ନିମନ୍ତେ ।୩୯୬।
କଂକେ ନ ଚେତିଲୁ ରାଜା ଗ୍ୟାନ କି ତୋର ନାହିଂ
ଅଇଲୁ ଯେ ଭଲକଲୁ ରହି ଥାଅସି ମୋର ତହିଂ ।୩୯୭।
ଆହେ। ମୋହୋର ନଗ୍ରର ନାମ ଅଟଇ ଖାନୂମଣ୍ଡି
ତାହାକଇଂ ପ୍ରଧାନ ଯେ ହୋଇଲେ କୁରୁପତି ।୩୯୮।
ଯୁଦ୍ଧେଷ୍ଟି ଦେବଂକର ଦୁର୍ଯୋଧନ ଅଟନ୍ତି ସାନୁଜ
ବଡ଼ାଇ ବିଚକ୍ଷଣ ସେ ପଞ୍ଚୁ କଟକେ ମହାରାଜ ।୩୯୯।
ଭୀମସେନ ବୋଲି ଯେ ଅଟଇ ତାହାଂକର ସାନ
ଭୀମସେନଙ୍କ ସାନ ଯେ ପାଣ୍ଡବ ଫାଲଗୁନ୍ୟ ।୪୦୦।
ଅର୍ଜୁନର ଅନୁଜ ନକୁଳ ମହାଛଳୀ
ତାହାର ସାନୁଜ ଯେ ଅଟଇ ସହଦେବ ମନ୍ତ୍ରୀ ।୪୦୧।
ଆହେ। ବାମଦେବ ରାଜା ନ କର ତୁ ଭ୍ରାନ୍ତି
ସେ ପଞ୍ଚୁପାଣ୍ଡବେ ସୋଦର ଜୁଆଇଂ ମୋହୋର ଅଟନ୍ତି ।୪୦୨।
ତାଂକ ଭରସାରେ ମୁଂ ଜଗତେ ଜଗୁଛି ତା
ତୁହେ। ବାମଦେବ ମନେ ନ କରସି କିଛି ଚିନ୍ତା ।୪୦୩।
ଭ୍ରାନ୍ତି ନ କରି ତୁହି ଥାଅ ସେଥି ନିମନ୍ତେ
ଚେତେ ଦୋଷକଲୁ ମାଗିବି ସେ ତୋହୋର ନିମନ୍ତେ ।୪୦୪।
ମନ୍ତ୍ରୀକି ରାଇଣ ଆଗ୍ୟାଂଦଲେ ନୃପବର
ବାମଦେବ ନୃପତିକି ସୁସ୍ତ ତୁ ବେଗେ କର ।୪୦୫।
ରାଜାର ଆଗ୍ୟାଂରେ ସେ ମନ୍ତ୍ରୀ ବାମଦେବ ରାଜାକଇଂ ନେଲେ
ଉତ୍ତମ ଗୃହ ଦେଇ ମୁଣୋହି ଭୋଜନ ଦିଲେ ।୪୦୬।
ନିଚନ୍ତ ହୋଇ ରହେ ବାମଦେବ ନୃପତି
ସେଥୁ ଅନନ୍ତରେ ପୁଣ ହୋଇଲା ରପୂଣୀ ପ୍ରଭାତ ।୪୦୭।
ରପୂଣୀ ପ୍ରଭାତେ ନକୁଳ ବିଜେକଲେ ଇଚ୍ଛାପୁର ଗଡ଼େ
ଦେଖିଲେ ଜନ ମଣିଷ ନାହିଂ କେହି ଗଡ଼ର ଭିତରେ ।୪୦୮।
ନକୁଳ ସଇନ୍ୟ ସେ ବସିଲେ ଗଡ଼ ମାଡ଼ି
ବିଚାରିଲେ ହାସେଣ ରାଜା ପଳାଇଲେ ରାଜ୍ୟ ଛାଡ଼ି ।୪୦୯।

ରାଜ୍ୟରୁ ବାହାର ହୋଇ ଦେଖନ୍ତି ନକୁଳର ସନ୍ୟମାନେ
ଲୋଡନ୍ତି ଗିରି କନ୍ଦରେଣ ଯେ ଗହନ ବିପିନେ ।୪୧୦।

ରାଜାର ବର୍ତ୍ତିଚିହ୍ନ ସେ ନ ପାଇଲେ ଲୋଡି
ପଚୁରନ୍ତି ଜନନ୍ତ ନୃପତି କାହିଁ ଅଛି ତୋହୋର ।୪୧୧।

ପନ୍ଥ ଉପନେସି ରାଜାକୁ ଗୋଡାବନ୍ତ ସଇନ
କରବୀର ପୁରରେ ଆସି ପ୍ରବେଶ ହୋଇଲେ ଦଣ୍ଡସନ୍ୟ ଘେନି ।୪୧୨।

ଡଗରେ ବ ରତା ଜଣାଇଲେ ନୃପତି ଭୂମନୁ
ସ୍ୱାମୀ ରାଜ୍ୟରେ ପ୍ରବେଶ ଆସି ହୋଇଲେ ମାଦ୍ରୀଦେବୀର ତନୁ ।୪୧୩।

ନକୁଳ ଦଗବଜେ ବୋଲି ଯେ ବାରତା ଜଣାଇ
ଶୁଣିଣ ସାନନ୍ଦେ ରାଜା ନଗ୍ରେଣ ଉତ୍ସବ କରାଇ ।୪୧୪।

ସୁବର୍ଣ୍ଣର କଳସ ନେତର ପାତାଙ୍ଗ ଉଭାନ୍ତି
ଦ୍ୱାରେଣ ପୂର୍ଣ୍ଣକୁମ୍ଭ କଦଳୀ ଚୂତପତ୍ର ତୋରଣା ଲମ୍ବାନ୍ତି ।୪୧୫।

ନଗ୍ରେଣ ଘୋଷଣ ମେ ହୋଣ ଉଭା ସତା
ତିନିକୋଶ ପରଯନ୍ତେ ରାଜା ପାଡିଲ ପାସ୍ୱେଡା ।୪୧୬।

ନବ ମର୍ଭୂତି ରଥଗଜ ଅଶ୍ୱ ପାଞ୍ଚକୋଟି
ସମଦଣ୍ଡ ଘେନି ଭୂମନୁ ଆସଇ ପାଗ୍ଲେଟି ।୪୧୭।

ସମଦଣ୍ଡ ଘେନିଣ ଯେ ପାଣ୍ଡବ ନକୁଳ
ପ୍ରାତସ୍ନାନ ସାରନ୍ତି ସେ କୃଷ୍ଣାବେଣୀ ନଦୀକୂଳ ।୪୧୮।

କରପତ୍ର ଯୋଡିଣ ଯେ ଜଣାନ୍ତି ଡଗର
ଭୂମନୁ ନୃପତି କଟକୁ ଦେବ ହୋଇଲା ବାହାର ।୪୧୯।

ପାଣ୍ଡବ ସଇନମାନେ ସ୍ନାନ କରୁଥିଲେ
ଝାଡିକାରେ ଯେ ଯାହାର ଶହସ୍ତ୍ର ଧଇଲେ ।୪୨୦।

---

୪୧୨।୧ ପଥ ଅନୁଭବି ରାଜାକୁ ଗୋଡାବନ୍ତି ସଇନ । (ଝ,ଙ,ଡ,ଥ)
୪୧୮।୨ ପ୍ରାତସ୍ନାନ ସାରନ୍ତି ସେ ବସ୍ତୁଭଦ୍ରା ନଦୀକୂଳ । (ଡ,ଙ)

ଝଣଝଁଣ ଶବଦ ଯେ କରନ୍ତି ସଇନ
ଚଡନ୍ତି ଯାନବାହାନ ଦ୍ଵାରେ କରେଣ ଶସ୍ତ୍ର ଘେନି ।୪୨୧।
ନକୁଳର ସଇନ ଯେ ଉଛବାଚ ଦେଖି
ଝାଡକାରେ ଭୂମନୁ ରାଜା ବାହାନ ଉପେଖି ।୪୨୨।
ବେନିକରେ ଶ୍ରମର ଯେ ଘେନିଣ ମହାପଣ୍ଡ
ସଇନି ଛାଡି ରାଜା ଆସଇ ପାଦଗଣ୍ଡ ।୪୨୩।
ଥୋକାଏକ ଦୂରେ ରାଜା ଶାଳବୃକ୍ଷ ତଳେ ରହିଲେ
ଗ୍ରାମକୁ ଆସିପାରନ୍ତି କ ଆଜ୍ଞାଂ ନ ପାଇଲେ ।୪୨୪।
ରାଜାର ଥୋକାଏକ ଦୂରେ ଯେ ପଞ୍ଚାଶ କୁମରେ
ଶ୍ରମରେ ଶ୍ରମରେ ଘେନି ହୋଇଲେ ଅନ୍ତରେ ।୪୨୫।
ପାଞ୍ଚ ଅମନାତ୍ୟ ଯେ ରହିଲେ ଅପସର
ଯେ ଯାହା ଅନରୂପେ କଲେ ପଟୋଆଶ୍ର ।୪୨୬।
ତାହାଂକର ପଛ ଅନ୍ତରେ ରହିଲେ ସଇନ
ସମରାଷ୍ଟ୍ର ଦଣ୍ଡ ମାଡଅଛି ଯୋଜନ ତିନି ।୪୨୭।
ପ୍ରାତସ୍ନାନ ସାରିକରି ଉଦେକ ଆଞ୍ଜୋଳ
ଈଶାନ୍ୟ ମୂର୍ତ୍ତି ନକୁଳ ପ୍ରଣପତ୍ୟ ଅଂଶୁମାଳୀ ।୪୨୮।
ଜପପୀଡା ମାଡ ବସିଲେ ଲକ୍ଷ୍ୟ ଅର୍ଥେ
କୁଶହାଥ ହୋଇଲେ ସେ ନାମ ସଂକେତେ ।୪୨୯।
ମଳୟ ବସନ୍ତ ଜଣାଇଲେ ସ୍ଵାମୀ କରିବା ଲକ୍ଷ୍ୟେ
ସ୍ଵାମୀ କୁଟୁମ୍ବ ଘେନି ରହିଅଛି ଭୂମନୁ ଦେବରାଏ ।୪୩୦।
ସ୍ଵାମୀ ଯଦ୍ୟପି ଅଟଇ ସେ ଦକ୍ଷିଣ ଚକ୍ରବର୍ତ୍ତୀ
ଆଜ୍ଞାଂ ନୋହିଲେ ଶ୍ରୀ ଗ୍ରାମକୁ ନୁଆସି ପାରଇ ଝାଡ ।୪୩୧।
ସ୍ଵାମୀ ସୁରବର ସୁନ୍ଦର ନାଥ କଇଛା ଜଗଜ୍ଜେଠୀ
ଚତୁର୍ଦ୍ଦିଗେ ଚମକ ପଡୁଅଛି ଯାହାର ନାମଗୋଟି ।୪୩୨।
ନାମ ସଂକୀର୍ତ୍ତନ ସାରି ବସିଲେ କନକ ପୀଡାର ଉପରେ
ଦକ୍ଷିଣ ମୂର୍ତ୍ତି ଯେ ହୋଇ ବସିଲେ କୁମାରେ ।୪୩୩।
ଭୂମନୁ କଟକ ଶ୍ରହିଂଲେ ଅବଲୋକନେ
ନଉଛାଳ କରି ଶୁଝିଲେ ପାରଦଣ୍ଡେ ରାଜାମାନେ ।୪୩୪।

❋

ପୁଣ କୁଟୁମ୍ବନ୍ତ ଘେନ ସେ ଭୂମନୁ ନୃପତି
ନିଉଛାଳି କରି ରାଜା ଶୁତିଲା ଚଉଡି ।୪୩୫।
ପାଦ୍ୱେ ଆସି ନୃପତି କରଇ ନିଉଛାଳି
ଶ୍ରମେଣ କର୍ଦ୍ଧନ ଲାଗିଣ ଭୂମି ରଜଧୂଳି ।୪୩୬।
ସ୍ୱାମୀ ରାଜାଧି ରାଜେଶ୍ୱର ତୁ ଅଭୟେ ସୋମବଂଶୀ
ମହାଭାର ଉଦ୍ଧାରଣେ ନାଥ ଗୁଣେ ଗୁଣରାଶି ।୪୩୭।
ତୁ ଦେବ ଶରଣ ଉଦ୍ଧାରଣ ନାଥ ମନସିଜ
ଜଗୁଜନ ମୋହନ ନାଥ ମଣ୍ଡଳ ମକରଧ୍ୱଜ ।୪୩୮।
ତୁ ଦେବ ଶରଣ ରକ୍ଷଣ ଆଦିଗୁରୁ
ତୁ ଦେବ ପରମ ସାନନ୍ଦ ଭଗତ ଉଦ୍ଧାରୁ ।୪୩୯।
ସନ୍ନିଧେ ଆସି ଯୋଡିଲା ବେନି କରଗୋଟି
ସାଷ୍ଟାଙ୍ଗେ ଗଡଧାଳି ଶୁତିଲା ପରମେଷ୍ଠୀ ।୪୪୦।
ପୁଣ ଉଭା ହୋଇ ସେ ବୋଲଇ ନୃପମଣି
ପ୍ରତକ୍ଷେ ନାରାୟଣ ତୁ ପ୍ରସନ୍ନ ଚକ୍ରପାଣି ।୪୪୧।
ସ୍ୱାମୀ ଜୀବନ ମୋହୋର ପୁଣ୍ୟ ରାଜ୍ୟର ମୋର ଧନ
ଆଜ ସେ ସୁଫଳ ହୋଇଲା ମୋହୋର ମେଦିନୀ ।୪୪୨।
ଅନେକ ସ୍ତୁତି ବଚନ ବିନୟ ଭାବେ ବୋଲି
ସନ୍ନିଧେ ଆସି ରାଜା ଶୁତିଲା ଗଡଧାଳି ।୪୪୩।
ନକୁଳ ବୋଇଲା ହୋ ଅନନ୍ତ ଦୂତପତି
ଆରେ ଭୂମନୁ ରାଜାକଇଁ ତୋଳ କୋଳକରି ଝାଡି ।୪୪୪।
ନକୁଳର ବଚନେ ସେ ଧାଂଇଲେ ଅନନ୍ତ
ଉଠ ହୋ ଭୂମନୁ ରାଜା ଆଗ୍ୟାଂ ହୋଇଲା ତୁମ୍ଭନ୍ତ ।୪୪୫।
ଆଗ୍ୟାଂ ପ୍ରମାଣେ ଯେ ଉଠିଲା ମହାରାୟେ
ମଥାରେ ହାଥ ଦେଇ ବହୁତ ବିନୟେ ।୪୪୬।
ନକୁଳ ବୋଇଲେ କଂପା ଯେତେକ ଭଗତ
ହାନୁବନ୍ତଂକର ପିଅର ତୁମ୍ଭେ ଆମ୍ଭ ଜ୍ୟେଷ୍ଠତାତ ।୪୪୭।
ସେ ସେ ମାହେଶ୍ୱରୀ ଯେ ଅନାଦି ଅପର୍ଣ୍ଣା
ହସ୍ତିନାର ମଣ୍ଡଳମଣି ଆମ୍ଭର ପରମଗୁରୁ ସିନା ।୪୪୮।

ସେ ମାହେଶ୍ୱରୀର ତୁମ୍ଭେ ଅଟ ଯେ ପିଅର
ବେଢରେ ପିତାର ସମାନେ ହୋଇବ ଆମ୍ଭର ।୪୪୯।
ଆସ ଆସ ମହାରାଜା ବସ ମୋହୋର କତ
ବାରତା ପାଇଲୁନି କ ଆମ୍ଭର ରାଜସୂୟ ଯାଗର ଗତ ।୪୫୦।
ନକୁଳର ବଚନେ ସେ ଘଟନୃମନ୍ତ୍ରୀର ତାତ
ଶିରେ କର ଦେଇ ଯୋଡ ବିନୟେ ଭଗତ ।୪୫୧।
ସ୍ୱାମୀ ଦୁଷ୍ଟ ନିରଞ୍ଜନ ଦେବ ଯାହାର ଆସ୍ଥାନ
ତୁମ୍ଭଂର ସନ୍ନିଧେ ବସିବାକଇଂ ମୁଂ ହୋଇବ ଭାଜନ ।୪୫୨।
ଯଦ୍ୟପି ସମର୍ପଣ ମୁଂ କଲାଇଂ କୁମାରୀ
ସ୍ୱାମୀ ସେବକ କି ହୋଇବ ସାମନ୍ତ ସମସରି ।୪୫୩।
ସ୍ୱାମୀ ଆସ୍ଥାନର ତଳେ ଯାହାର ଲକ୍ଷେକ ରାଜା ଖଟି
ମୁହିଂ ତୋହୋର ଭୃତ୍ୟର ଭୃତ୍ୟ ଦାସର ଦାସ ହେଟି ।୪୫୪।
ମସ୍ତକରେ ହାଥ ଦେଇ ରାଜା ହୋଇଅଛି ଊଭା
ନକୁଳର ଶରୀର ବିକାଶଇ କି ଚନ୍ଦ୍ର କିରଣର ଆଭା ।୪୫୫।
ଆହୋ ଅନେକ ରତନ ଆଭରଣ ତାର ଅଙ୍ଗେ
ଝିନବସନ ପରିହରଣ ଉଦୟେ ଦେବାଙ୍ଗେ ।୪୫୬।
ମାତ୍ର ଗୋଟିଏକ ତାର ଶରୀରେ ବସିଲେ
ଶତେ ପଲ ଚନ୍ଦନ ଲେପଇ ଯେ ମନେ ବିକୃତ ପାଇଲେ ।୪୫୭।
ଦ୍ୟାବା ପୃଥିବୀ ଯେ ଧରଇ କୁନ୍ତମୁନେ
ଜଗଦର୍ପ ଭଜା ସେ କେଶବ ପରସନ୍ନେ ।୪୫୮।
ସ୍ୱାମୀ ପରଶୁରାମଂକର ହିଗବିଜେ ବୋଲି ଅଗସ୍ତିଂକର ପୁରାଣେ
ଶୁଣିଥିଲୁ
ପାଣ୍ଡବଂକ ହିଗବିଜେ ବୋଲି ଯେବେ ପ୍ରତକ୍ଷେ ଦେଖିଲୁଂ ।୪୫୯।

---

୪୫୮।୨ ଯମ ଦର୍ପ ଗଞ୍ଜଇ ସେ କେଶବ ପରସନ୍ନେ । (ଙ,ଠ,ଝ,ଘ)
୪୫୮।୨ "ଜଗଦର୍ପ ଭଞ୍ଜା ସେ କେଶବ ପରସନେ" ପରେ
'କ' ପୋଥିରେ ଅଧିକା ପାଠ—
ରୂପେଣ କାମ କି ସାକ୍ଷେ ଅନଙ୍ଗ
ଲକ୍ଷେ ରାଜାର ମୁଖେ ଯେ ବୋଲଇ ଭୁଜଙ୍ଗ ।

ଯେତେ ଜନର ଜୀବନ ସୁଫଳ ମହାଭାଗ୍ୟ
ସେ ସେ ଦେଖିବ ସିନା ରାଜସୂୟ ମହାଯାଗ ।୪୬୦।
ରାଜାର ପୁତ୍ରମାନେ ଚରଣେ ପ୍ରଣାମି
ରାଜ୍ୟକୁ ବିଜୟେ ଯେବେ ଆମ୍ଭର କରିବା ଦେବସ୍ୱାମୀ ।୪୬୧।
ରାଜ୍ୟର ଜନେ ମୋହୋର ଦେଖିବେ ବେଳାତ୍ତୋଳେ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ହୋଇବ ସର୍ବକାଳେ ।୪୬୨।
ସ୍ୱାମୀ ଯେ ଜମ୍ବୁଦ୍ୱୀପର ମଧ୍ୟେ ସୁଲଭ ଯେତେକ ରାଜ୍ୟ
ସବୁଂକର ଭୁବନେ ପଡ଼ିବ କି ତୁମ୍ଭର ପାଦରଜ ।୪୬୩।
ନକୁଳ ଆଗ୍ୟାଂ ହଲେ ଚଳ ହୋ ସନ୍ୟମାନେ
ଶଳାଂକର ବଚନ ଆମ୍ଭେ ଭାଙ୍ଗିବୁ କେସନେ ।୪୬୪।
ରଥ ଗଜ ଅଶ୍ୱମାନ ଯେ ବହୁତ ପାଦାନ୍ତ
ରାଜ୍ୟ ତେଜି କଟକରେ ସମ୍ଭରେ ପଶନ୍ତି ।୪୬୫।
ଦାଣ୍ଡରେଣ ପାୟେଡ଼ା ରାୟେ ପାରିଲେ ତିନିକୋଶ
ଅନେକ ଉପହାର ଯେ ରାଜା ବାଢ଼ିଲ ରତ୍ନକୋଷ ।୪୬୬।
ମୃଗ ବ୍ୟାଘ୍ର ଶୃଙ୍ଖଳ ଯେ ପରିବା ଅପ୍ରମିତ
ଦାଣ୍ଡେଣ କୁଡ଼ କୁଡ଼ କରି କୁଡ଼ାଇଛନ୍ତି ବହୁତ ।୪୬୭।
ଗହଳ ଧନ୍ଦୋଳ ଲୋକେ ପୂରିତ ଦାଣ୍ଡର
ପାଦ ପଡ଼ି ରତ୍ନମାନ ହୋଉଛନ୍ତି ଚୂର ।୪୬୮।
ଗହଳ ଧନ୍ଦୋଳେଣ ଯେ ଉଡ଼ୁଛନ୍ତି ଧୂଳି
ଆକାଶରେ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ ।୪୬୯।
ଇନ୍ଦ୍ର ବିଜେକଲେ ଯେହ୍ନେ ମଣ୍ଡକଇଂ ଅପୂର୍ବ
ସେହ୍ନମନ୍ତ ଦେଖନ୍ତି ଜନେ ରହିତେ ନାହିଂ ଠାବ ।୪୭୦।
ବିଜୟେ ଭ୍ରମନ୍ତି କରେଣ ଚାମର ଧରି
କୁମରଂକ ଭୁଲେ ରାଜା ଡାଳଇ ଉଭାରି ।୪୭୧।
କରବୀର ନଗରେ ପଶନ୍ତେଣ ଶୋହଇ
ମାଦ୍ରୀର ନନ୍ଦନ ଯେ ତ୍ରଇଲୋକ୍ୟ ଭୁବନ ମୋହଇ ।୪୭୨।
ପ୍ରବେଶ ହୋଇଲେ ଯାଇଂ ଆସ୍ଥାନ ଉପରେ
ଝଟନ୍ତି ବିଳାସୁଣୀ ତାଣ୍ଡେବ ସମ୍ଭରେ ।୪୭୩।

ଦେବତା ଆସ୍ଥାନ ପ୍ରାୟେ ଦିଶଇ ଜଗଣ୍ଡର ଆୟୁତନ
ଅଳକା ଭୁବନ ଯେହ୍ନେ ଦିଶଇ ଶୋଭାବନ ।୪୭୪।
ପବନ ବ୍ରାହ୍ମଣେ ଯେ କରନ୍ତି ରନ୍ଧନ
ଛଡରସେ ସଞ୍ଚିଲେ ପାକ ଅମୃତ ପଂକୁମାନ ।୪୭୫।
ଶୀତଳ ଯୋଗାଣ୍ଡ ଯେ ଦ୍ରବ୍ୟ ନାନ୍ତପ୍ରନ୍ତ
ମର୍ଦ୍ଦନେ ବଜେକଲେ କୁମାର ମହାଛତ୍ରୀ ।୪୭୬।
ସୁବାସିତ ଶୀତଳ ପନିର ରସ ପାଣି
ବେଣିଭଦ୍ରା ନଦୀଉଂ ବେଗେ ଯୋଗାଉଛନ୍ତି ସର୍ବେ ଆଣି ।୪୭୭।
ସ୍ନାହାନ ସାରଣ ଯେ ବିଜୟେ ଆସ୍ଥାନେ
ଡାଳନ୍ତି ଚାମର ଯେ ଭୂମନୁ ପୁତ୍ରମାନେ ।୪୭୮।
କେଶ ଶୁଖାଇଣ ଦ୍ୱାଦଶ ବର୍ଣ୍ଣ ଗନ୍ଧ
ସାଞ୍ଜୋବନ୍ତି କେଶ ଯେ ପରମ ବଇଷ୍ଣବା ।୪୭୯।
ବିଜୟେ କୁମାର ଯାଇ ମୁଣୋହ୍ମ ଭୁବନେ
ସମ୍ପର୍ବେ ବସିଲେ ଯାଇ ସମସ୍ତ ସନ୍ୟମାନେ ।୪୮୦।
ସୁବର୍ଣ୍ଣର ପଇଲମେ ନବରତନ ଯୋଗାଣ୍ଡେ
ସବୁ ସଇନିଂକ ଆସନ ସୁବର୍ଣ୍ଣ ପୀଢାରେ ।୪୮୧।
ସବୁ ସଇନିଂକ ସୁବର୍ଣ୍ଣର ଥାଳୀ ଗିନା ଖୁରା
ଜଣେ ଜଣେକେ ବସାଇଲେ ସୁବର୍ଣ୍ଣର ଝରା ।୪୮୨।
ପରଶନ୍ତି ବ୍ରାହ୍ମଣେ ଅମୃତ ରସ ପାଗ
ଅନେକ ହରଷେ ସେ ସଇନି କରନ୍ତି ଯେ ଭୋଗ ।୪୮୩।
ଗୋରସ ଯୋଗାଣ୍ଡମାନ ଅପ୍ରମିତ ଫଳଦ୍ରବ୍ୟ
ନିପୁଣ ଭୋଜନ ସମସ୍ତ ସଇନି ଯେକଭାବ ।୪୮୪।
ଭୁଞ୍ଜନ୍ତେ ନିପୁଣ ଯେ ହୋଇଲେ ସମସ୍ତ ସଇନ
ଆଂଚ୍ଛେବନ କରନ୍ତି କରେଣ ସୁବର୍ଣ୍ଣ ଝରା ଘେନି ।୪୮୫।
କର୍ପୂର ତାମ୍ବୁଳ ଯେ ଭୁଞ୍ଜନ୍ତି କୁତୁହୋଳେ
ବିଜୟେ ବାହାର ବାଂକଆରେ କୁମାର ନକୁଳେ ।୪୮୬।
ଆଲଟ ଚାମରମାନ ଡାଳନ୍ତି ଚଉକତି
ଭୁମନୁର କୁମାରେ ଯେ ବେଢିଣ ଖଟନ୍ତି ।୪୮୭।

ବୀଣା ବଇଂଶୀ ଯେ ସରଗୁଣା ଅଧାଣ୍ଟି
ଫଠା କୁଣ୍ଡଳୀ ତାଳ ହରଷେ ଖଣ୍ଟି ।୪୮୮।
ତଜସ୍ବ କୁମାର ଯେ ପ୍ରସନ୍ନର ବେଳେ
ବାମଦେବ ରାଜାକଇଂ ଦ୍ରଶନ କରାଇଲେ ମହୀପାଳେ ।୪୮୯।
ଭୂମନୁର ପୁତ୍ରମାନେ ଶୁଣିଲେ ପରଣାମି
ଇଚ୍ଛାପୁର ନୃପତିପ୍ତେ ବାମଦେବ ଦ୍ରଶନ କରଇ ଦେବସ୍ୱାମୀ ।୪୯୦।
ଜଗନ୍ତର ଚଳେ ବାମଦେବ ଦନ୍ତେ ତରଣ ଘେନି
ସହସ୍ରେକ ଭାର ପାଣିଦ୍ରବ୍ୟ ଦଲ୍ଲ ଦେଖା ଦରଶନି ।୪୯୧।
ପହଣ୍ଡେକ ଦୂରେ ଯାଇ ବୋଲଇ ଭୂମନୁ
ସ୍ୱାମୀ ବାମଦେବ ରାଜା ପଳାଇ ଅଇଲା ଇଚ୍ଛାପୁର ନଗ୍ରସ୍ଥାନୁଂ ।୪୯୨।
ଭୟେ ପଳାଇ ଅଇଲା ଦେବ ଯେବେ ସେ ଶରଣ ମାଗଇ ସ୍ୱାମୀ
ଅବଲୋକନେ ଗୃହାନ୍ତେ ରାଜା ହୋଇଲା ପରଣାମି ।୪୯୩।
ନକୁଳ ଆଗ୍ୟାଂ ଦେଲେ ନୃପତି ଭୂମନୁକୁ
ବାମଦେବ ଆସିବାକୁ ବୋଲ ଉପରକୁ ।୪୯୪।
ତୁମ୍ଭ ସିନା ସକଳ ନାଶକଲୁ ବାମଦେବ
ଆପଣାର ସଇନ ମରାଇଲୁ ତୁ ନ ଜାଣିଲୁ ତେବେ ।୪୯୫।
ବାମଦେବ ନୃପତିର ଚରଣେ ପରଣାମି
ଅନେକ ଅପରାଧ ମୋହୋର କ୍ଷମା କରିବା ଦେବସ୍ୱାମୀ ।୪୯୬।
ନକୁଳ ବୋଇଲେ ହୋ ନଜାଣି ତୁମ୍ଭେ ଦୋଷୀ
ଆମ୍ଭେ ଆସିନାହୁଂ ତ ତୋହୋର ପ୍ରାଣନାଶି ।୪୯୭।
ଭୋଜନ ଦେବୁଂ ଅକ୍ଷତ ଦେବୁହିଂ ଅପାର
ଷୋଳଦିନ ପରଯନ୍ତେ ହୋଇବ ସମ୍ଭାର ।୪୯୮।
ଯେ ଯାହାର ଅନରୂପେ କରିବୁ ଗଉରବେ
ଅନେକ କଉତୁକ ଯେ ମହିମାଂ ଦେଖିବ ।୪୯୯।
ଆକାଶୁଂ ଦେବତାମାନେ ସମସ୍ତେ ଆସିବେ
ଆବର ନାଗରାଜା ସହିତେ ସମସ୍ତେ ମିଳିବେ ।୫୦୦।

---

୫୦୦।୨ "ଆବର ନାଗରାଜା ସହିତେ ସମସ୍ତେ ମିଳିବେ" ପରେ 'ଘ' ପୋଥିରେ ଅଧିକା ପାଠ—

ଆହେ। ମହାବ୍ରହ୍ମ ସେ ଆସିବେ ବ୍ରହ୍ମଲୋକେ
ଦେବଲୋକେ ଆସିଣ ଥିବେଟି ନାଗଲୋକେ ।

ଯେସନେକ ମହିମାଂ ଦେଖିଲେ ହୋଇବ ପାପକ୍ଷୟେ
ଲକ୍ଷେଜନ ଦେଖିଲେ ହୋ ବିଷ୍ଣୁ ଦର୍ଶନ ହୋୟେ ।୫୦୧।
ଯେ ପୃଥୀର ମଧ୍ୟେ ଯେ ଅଛନ୍ତି ଲକ୍ଷେକ ନୃପତି
ଯେଉଂଣ ରଜାର ଯେତେକ ରଥ ଗଜ ଅଶ୍ୱ ପାଦାନ୍ତି ।୫୦୨।
ଆହୋ ଉତ୍ସବ ଯାତ୍ରା ଯେ ବିଭା ମଙ୍ଗଳର କାଳେ
ପୁଣ୍ୟକ୍ଷେତ୍ର ତୀର୍ଥ ସ୍ନାହାନକୁ ଗଲେ ହୋଅଇ ସୁଫଳେ ।୫୦୩।
ଯେତେକ ସୁଫଳକୁ ନେଇ ଅଇଲୁ ଯେ ଆମ୍ଭେ
କାଳେଣ ନ ଜାଣିକରି ବନ୍ଧ କଲ ତୁମ୍ଭେ ।୫୦୪।
ଆହୋ ଜରାସନ୍ଧ ନେଇଥିଲା ତୁମ୍ଭନ୍ତ ବନ୍ଦୀକରି
ଆଶିନ୍ୟ ଶୁକ୍ଳ ଅଷ୍ଟମୀରେ ତୁମ୍ଭନ୍ତ ଆହୁତିରେ ଦ୍ୟନ୍ତା ମାରି ।୫୦୫।
ଯେମନ୍ତ ସମୟରେ କୃଷ୍ଣ ଫାଲଗୁନ ଭୀମସେନ ହୋଇଲେ ପରବେଶ
ସଂସାରର ହିତେ ଜରାସନ୍ଧକଇଂ କଲେ ପ୍ରାଣନାଶ ।୫୦୬।
ଯେବେ ସେ ଜାଣିଲୁ ରେ ତୁମ୍ଭର ଦୁଷ୍ଟ ମନ୍ଦପଣ
ମରଣୁ ଉଦ୍ଧରିଲୁ ଯେ ପାଶୋରିଲ ତହିଂର ଗୁଣ ।୫୦୭।
ବାମଦେବ ବୋଇଲା ସ୍ୱାମୀ ଯେତେ କଥା କହୁ
ଆମ୍ଭର ବୋଇଲେ କୋପ କରିବୁ ମହାପ୍ରଭୁ ।୫୦୮।
ସ୍ୱାମୀ ବାଳୁତ ବୟସ ଯେ ଅଳ୍ପମାତ୍ର ବୁଦ୍ଧି
ବାରତା ନ କହି ଆମ୍ଭନ୍ତ କରୁଛ ଅବଧି ।୫୦୯।
ବାରତା ନ ଦେଇ ରାଜ୍ୟେ ତୁମ୍ଭେ ପଶ ଅନମିତେ
ଅନେକ ବିବାଦେଣ ଆମ୍ଭେ ପଶୁଂ ଯେ ସମସ୍ତେ ।୫୧୦।
କରୁ ମହାଯୁଦ୍ଧ ଆମ୍ଭେ ପରଥାଠ ବୋଲି
ଅଗ୍ୟାନପଣେ ତେଣୁ ମୁହିଂ ନାଶଗଲି ।୫୧୧।
ନକୁଳ ବୋଇଲେ ତୁମ୍ଭେ ଅପାର କଥା କହି
ବଳମ୍ଭେ ରହିବାକୁ ନୁଆରଇ ବାବୁ ମୁହିଂ ।୫୧୨।
ନିମନ୍ତ୍ରଣ ଯୋଗାଡ଼ ହେଲେ ଭୁମନୁ ନୃପତିକ
ଘେ ତାତ ଯତନେ ଅଇଲି ତୁମ୍ଭର ତହିଂକ ।୫୧୩।

---

୫୦୧। ନରଲୋକେ ମହିମାଂ ଦେଖି ହେବେ ପାପକ୍ଷୟେ
ଲକ୍ଷେ ରଜା ଯେ ହୁଅଇ ନାରାୟଣମୟେ । (ଖ,ଠ)

ଯେତେ ନିକଟରେ ଅଛନ୍ତି ଯେତେକ ରାଜାଗଣମାନ
ସବୁନ୍ତକୁ ନିମନ୍ତ୍ରଣ କରି ଆଣସି ବହନ ।୫୧୪।
ନକୁଳର ବଚନେ ନୃପତି ଭାନୁମତ
ଶ୍ରୀମୁଖ ଦେଇ ଅଣାଇଲା ରାଜାଗଣମାନନ୍ତ ।୫୧୫।
ଉଡଙ୍ଗ ଚୂଡଙ୍ଗ ତେଲଙ୍ଗ ଯେ ନେପାଳ ଭୂପାଳ
ସଉନିକ କଉନିକ ଡାହାଳ ବେଲ୍ଲାଳ ।୫୧୬।
କ୍ଷୀରଦେଶ ଚରଦେଶ ଖେଚର ଦେଶ ମାନଭଙ୍ଗ ବସ୍ତୁ ମଣ୍ଡଳ
ଶ୍ରୀମୁଖ ଦେଇଣ ଯେ ଅଣାଇଲା ଯେତେ ଯେତେକ ଭୂପାଳ ।୫୧୭।
ଦକ୍ଷିଣ କୋଶଳରେ ଥିଲେ ଯେତେକ ନୃପତି
କାହାକୁ ଶତେ କାହାକୁ ଦୁଇଶତ ପାରିଦଣ୍ଡ ରାଜା ଖଟନ୍ତି ।୫୧୮।
ଯେତେସନେକ ସମଦଣ୍ଡ ଘେନି ସମସ୍ତ ମହୀପତୟେ
କରବୀର ପୁରେ ଆସି ମିଳିଲେ ତୁରିତେ ।୫୧୯।
ଦେଖା ଦରଶନି ପାଣିଦ୍ରବ୍ୟ ଘେନିଣ ହାଥର
ପ୍ରଳମ୍ବିତ ହୋଇଲେ ନକୁଳ ପୟର ।୫୨୦।
ଅକ୍ଷତ ଗୁଆ ଦିଲେ କୁମାର ନକୁଳ
ସମଦଣ୍ଡ ଘେନି ଚଳ ସମସ୍ତ ମହୀପାଳ ।୫୨୧।
ରାଜସୂୟ ଯାଗକଇଂ ସେ ନକୁଳ ନିମନ୍ତ୍ରଣେ
ଭୂମନୁ ନୃପତି ରାଜାନ୍ତ ଘେନି ଚଳିଲା ତତକ୍ଷଣେ ।୫୨୨।
ଦକ୍ଷିଣ କୋଶଳର ଯେତେକ ନୃପତି
ସିନ୍ଧୁକୂଳ ପରଯନ୍ତେ ଗୋଡାଇ ନକୁଳ ସବୁନ୍ତ ନିମନ୍ତ
।୫୨୩—୬୩୫୧।

—: ପ୍ରଥମ ଖଣ୍ଡ ସମାପ୍ତ :—

